**ଶ୍ରୀଜଗନ୍ନାଥ**
**ମହୀମୋହନ ତ୍ରିପାଠୀ**

ପ୍ରକାଶକ : ଆମ ଓଡ଼ିଶା
୪ ଆର୍ ୧/୨, ଇଉନିଟ୍-୩
ଭୁବନେଶ୍ୱର-୭୫୧୦୦୧

ମୁଦ୍ରଣ : ଶ୍ରୀରାମ ସ୍କ୍ରିନ୍ ପ୍ରିଣ୍ଟିଂ
ଭୁବନେଶ୍ୱର-୭

ପ୍ରଥମ ସଂସ୍କରଣ : ଦେବସ୍ନାନ ପୂର୍ଣ୍ଣିମା-୨୦୧୨
ଦ୍ୱିତୀୟ ସଂସ୍କରଣ : ଡିସେମ୍ବର-୨୦୧୨
ତୃତୀୟ ସଂସ୍କରଣ: ନଭେମ୍ବର-୨୦୧୪



ପ୍ରଚ୍ଛଦ : ଶଶିକାନ୍ତ ରାଉତ

**ମୂଲ୍ୟ : ଟ.୧୬୦/-**

**SRIJAGANNATHA**
**Mahimohan Tripathy**

Publisher : Aama Odisha
4R 1/2, Unit-3,
Bhubaneswar-751001
e-mail: aamaodisha@gmail.com

Printed at : Sriram Screen Printing
Bhubaneswar-751007

1st edition : Debasnana Purnami, 2012
2nd edition : December, 2012
3rd edition : November, 2014



Cover : Sashikant Rout

Price : ₹ 160/-

ISBN 978-81-89436-30-8



# ଦୁଇପଦ

ଶ୍ରୀଜଗନ୍ନାଥ ଓ ଶ୍ରୀକ୍ଷେତ୍ର ଆମ ଓଡ଼ିଆ ଜାତିର ଏକମାତ୍ର ପରିଚୟ କହିଲେ ଅତ୍ୟୁକ୍ତି ହେବ ନାହିଁ । ବିଦେଶରେ ଏବଂ ଓଡ଼ିଶା ବାହାରେ ଥିବାବେଳେ ମୁଁ ଲକ୍ଷ୍ୟ କରିଛି, 'ଓଡିଶାରୁ ଆସିଛି' ବୋଲି କହିଲେ ପ୍ରାୟ କେହି ଆମ ଓଡ଼ିଶାକୁ ହଠାତ୍ ଠାବ କରିପାରନ୍ତି ନାହିଁ । ତେବେ 'ଜଗନ୍ନାଥଦେଶ'ରୁ ଆସିଛି କହିଲେ ଜାତି, ଧର୍ମ ନିର୍ବିଶେଷରେ ସମସ୍ତେ ଚିହ୍ନି ପାରନ୍ତି ଏବଂ ସମ୍ମାନ ଜଣାନ୍ତି । ଶ୍ରୀକ୍ଷେତ୍ର ଓ ଶ୍ରୀଜଗନ୍ନାଥଙ୍କୁ ନେଇ ଆମ ଜାତି ଆଜି ବିଶ୍ୱ ଦରବାରରେ ଯେତିକି ପରିଚିତ, ଆମ ଉତ୍ତର ପିଢ଼ି ଶ୍ରୀଜଗନ୍ନାଥଙ୍କ ସଂପର୍କରେ ସେତିକି ଅଜ୍ଞ ।

ଶ୍ରୀ ମହୀମୋହନ ତ୍ରିପାଠୀ ଦୀର୍ଘକାଳ ଧରି ପୁରୀ ଶ୍ରୀଜଗନ୍ନାଥ ମନ୍ଦିର ପ୍ରଶାସନ ସହିତ ସଂପୃକ୍ତ ଥିଲେ । ବହୁ ଶ୍ରମ ଓ ଗବେଷଣା କରି ସେ ଏହି 'ଶ୍ରୀଜଗନ୍ନାଥ' ପୁସ୍ତକ ପ୍ରସ୍ତୁତ କରିଛନ୍ତି । ଏହା ଏକ ପ୍ରାମାଣିକ ଓ ତଥ୍ୟପୂର୍ଣ୍ଣ ଗ୍ରନ୍ଥ । ଶ୍ରୀକ୍ଷେତ୍ର ଓ ଶ୍ରୀଜଗନ୍ନାଥଙ୍କ ସଂପର୍କରେ ଅଧିକରୁ ଅଧିକ ଜାଣିବାକୁ ଚାହୁଁଥିବା ପାଠକ ପାଠିକାଙ୍କ ପାଇଁ ଏହା ଅତ୍ୟନ୍ତ ଉପାଦେୟ ହେବ ବୋଲି ମୋର ବିଶ୍ୱାସ ।

'ଆମ ଓଡ଼ିଶା' ତରଫରୁ ୨୦୧୨ ମସିହା ପବିତ୍ର ଦେବସ୍ନାନପୂର୍ଣ୍ଣମୀରେ ଏହି ପୁସ୍ତକ ପ୍ରକାଶ ପାଇଥିଲା । ଆଜି ଏହାର ତୃତୀୟ ପରିମାର୍ଜିତ ଓ ପରିବର୍ଦ୍ଧିତ ସଂସ୍କରଣ ପ୍ରକାଶପାଉଥିବାରୁ ମୁଁ ବ୍ୟକ୍ତିଗତ ଭାବେ ଅତ୍ୟନ୍ତ ଆନନ୍ଦିତ ଓ ଗର୍ବିତ । ଆମ ପାଠକ ପାଠିକାଙ୍କ ନିକଟରେ ଏହି ନୂଆ ସଂସ୍କରଣ ଆଦୃତ ହେବ ବୋଲି ମୁଁ ଆଶା କରୁଛି ।

**ସୌମ୍ୟରଂଜନ ପଟ୍ଟନାୟକ**



# ସୂଚିପତ୍ର

ନିକାପ - ବିରିବୁହା ସେବକ - ଦଉଡ଼ି ବଳା - ଚୂନରା ଗରୁଡ଼ ସେବକ - ସାବତ ନିଯୋଗ - ପାଣିଆପଟ - ମଣ୍ଡଣି ସେବା - ଚକା ଅପସର ସେବକ - ମୂଳିଆ ସୁଆଁସିଆ - ବୀଣାକାର ସେବା - ଦର୍ପଣିଆ ଓ ବଇରଖିଆ - କୋଠ ସୁଆଁସିଆ - ମହାଭୋଇ - ଗୀତଗୋବିନ୍ଦ ସେବା - ଭିତର ଗାଆଣୀ ଦେବଦାସୀ - ସମ୍ପ୍ରଦା ନିଯୋଗ - ଦୟଣାମାଳୀ - ମାଦେଳି - ପ୍ରସାଦବଡୁ - ତାଟୁଆ - ପତର ବନ୍ଧା - ବଜୟନ୍ତ୍ରୀ (ବାଦ୍ୟକାର) - ଛତାର ସେବକ - କାହାଳିଆ - ଶଙ୍ଖୁଆ - ପର୍ବଯାତ୍ରା ଯୋଗାଣିଆ - ଚିତ୍ରକାର - ରୂପକାର - ବଣିଆ - ତାମରା ବିଶୋଇ - କରତିଆ - ବେଣ୍ଟବିନ୍ଧା ପାଇକ - ପାଟରା ବିଶୋଇ - କଳାବେଠିଆ - ଦରଜି ସେବା - କୁମ୍ଭାର ବିଶୋଇ - ରଥ ଭୋଇ - ମାଳଚୂଳ ସେବା - ବାଣୁଆ - ଚକ୍ର ଦିହୁଡ଼ିଆ - ଓଝା ମହାରଣା - ଘଣ୍ଟସେବା - ଘଣ୍ଟୁଆ - ରଥ ଡାହୁକ - ବଢ଼େଇ ସେବକ - ବୈଦ୍ୟ - ଅମୋଣିହା ଛତାର - ଛାମୁ ଦିହୁଡ଼ି - ଚାପ ବେହେରା ଓ ଚାପ ଦଳାଇ - ଚାପ ଦଳାଇ - ମାପ ସାଇତା କରଣ / ମହାପ୍ରଶସ୍ତ ସେବା - ତଡ଼ଉକରଣ - ଦେଉଳକରଣ - ବଇଠିକରଣ - କୋଠକରଣ - ଚର୍ଚ୍ଚାଇତକରଣ - ଦୟଣାପତ୍ରୀ - ଚାଉଳବଛା କରଣ - ବ୍ୟକ୍ତିଗତ ବା ଆନୁଷ୍ଠାନିକ ସେବା - ବେହେରାକରଣ

## ଶ୍ରୀମନ୍ଦିରର ନୀତି (୯୭-୧୧୧)

***ଦୈନନ୍ଦିନ ନୀତି :*** ଦ୍ୱାରଫିଟା ଓ ମଙ୍ଗଳ ଆରତି - ମଇଲମ - ଅବକାଶ - ମଇଲମ - ସାହାଣମେଲା - ବେଶଲାଗି - ରୋଷ ହୋମ - ସୂର୍ଯ୍ୟପୂଜା - ଦ୍ୱାରପାଳ ପୂଜା - ଗୋପାଳବଲ୍ଲଭ ଭୋଗ - ସକାଳ ଧୂପ - ମଇଲମ ଓ ଭୋଗ ମଣ୍ଡପ - ମଧ୍ୟାହ୍ନ ଧୂପ - ମଧ୍ୟାହ୍ନ ପହୁଡ଼ - ସନ୍ଧ୍ୟା ଆରତି - ସନ୍ଧ୍ୟା ଧୂପ - ମଇଲମ ଓ ଚନ୍ଦନଲାଗି - ବଡ଼ସିଂହାର ବେଶ - ବଡ଼ସିଂହାର ଭୋଗ - ଖଟଶେଯ ଲାଗି ଓ ରାତ୍ରପହୁଡ଼

***ବିଶେଷ ବା ସାମୟିକ ନୀତି :*** ଗୁରୁବାର ନୀତି (ମାଜଣା ଓ ଏକାନ୍ତ) - ନକ୍ଷତ୍ର ବନ୍ଦାପନା - ଏକାଦଶୀ ନୀତି - ବାର ଅନୁସାରେ ଏକାଦଶୀ ନୀତି - ଅମାବାସ୍ୟା ନୀତି ବା ସାଗର ବିଜେ - ବାର ଅନୁସାରେ ବିଭିନ୍ନ ରଙ୍ଗର ଘୋଡ଼ (ଶୀତବସ୍ତ୍ର) - ବନକଲାଗି ବା ଶ୍ରୀମୁଖ ସିଂହାର - ବେଣ୍ଟ ବା ଶିକାର - ଚନ୍ଦ୍ରଗ୍ରହଣ ଓ ସୂର୍ଯ୍ୟୋପରାଗ ନୀତି - ଅଶୌଚ ବା ଦୁର୍ଘଟଣାଜନିତ ନୀତି

## ଯାତ୍ରା ଓ ପର୍ବପର୍ବାଣି (୧୧୨-୧୬୦)

ଦେବସ୍ନାନ ପୂର୍ଣ୍ଣିମା - ଅଣସର (ଅନବସର) - ଶ୍ରୀଗୁଣ୍ଡିଚା ଯାତ୍ରା - ହେରାପଞ୍ଚମୀ - ଏକାଦଶୀ ନୀତି : ସୁନାବେଶ ଓ ଶୟନଠାକୁର ବିଜେ - ଦ୍ୱାଦଶୀ ନୀତି : ଅଧରପଣା ଓ ଗରୁଡ଼ ଶୟନ - ତ୍ରୟୋଦଶୀ ନୀତି: ନୀଳାଦ୍ରି ବିଜେ - କର୍କଟ ସଂକ୍ରାନ୍ତି ବା ଦକ୍ଷିଣାୟନ ବନ୍ଦାପନା - ଚିତାଲାଗି ଅମାବାସ୍ୟା - ବାଡ଼ି ନୃସିଂହ ବିଜେ - ଝୁଲଣ ଯାତ୍ରା - ଶ୍ରାବଣ ଶୁକ୍ଳ ଏକାଦଶୀ - ଝୁଲଣପୂର୍ଣ୍ଣିମା - ରାହୁରେଖା ଲାଗି (ରେଖାପଞ୍ଚମୀ) - ଶ୍ରୀକୃଷ୍ଣ ଜନ୍ମ :ନନ୍ଦୋତ୍ସବ ଓ କୃଷ୍ଣଲୀଳା - ଭାଦ୍ରବ କୃଷ୍ଣ ଚତୁର୍ଦ୍ଦଶୀ ଓ ସପ୍ତପୁରି ଅମାବାସ୍ୟା - ଭାଦ୍ରବ ଶୁକ୍ଳ ଚତୁର୍ଥୀ (ଗଣେଶ ପୂଜା) - ଭାଦ୍ରବ ଶୁକ୍ଳ ପଞ୍ଚମୀ (ଋଷି ପଞ୍ଚମୀ) - ଭାଦ୍ରବ ଶୁକ୍ଳ ଅଷ୍ଟମୀ (ରାଧାଷ୍ଟମୀ) - ଭାଦ୍ରବ ଶୁକ୍ଳ ଏକାଦଶୀ

(ପାର୍ଶ୍ୱପରିବର୍ତ୍ତନ) - ଭାଦ୍ରବ ଶୁକ୍ଳ ଦ୍ୱାଦଶୀ (ବାମନ ଜନ୍ମ, ସୁନିଆଁ, ଗରୁଡ଼ ପାର୍ଶ୍ୱପରିବର୍ତ୍ତନ, ଇନ୍ଦ୍ରଧ୍ୱଜପୂଜା) - ଭାଦ୍ରବ ଶୁକ୍ଳ ଚତୁର୍ଦ୍ଦଶୀ (ଅନନ୍ତ ଚତୁର୍ଦ୍ଦଶୀ) - ଭାଦ୍ରବ ପୂର୍ଣ୍ଣିମା (ଇନ୍ଦୁ ପୂର୍ଣ୍ଣିମା) - ସହସ୍ର କୁମ୍ଭାଭିଷେକ (ବିମଳାଙ୍କ ଷୋଡ଼ଶ ପୂଜାରମ୍ଭ) - ଆଶ୍ୱିନ କୃଷ୍ଣ ଅଷ୍ଟମୀ (ଦ୍ୱିତୀୟା ଓଷା) - ଆଶ୍ୱିନ ଶୁକ୍ଳ ଦଶମୀ (ଦଶହରା ଓ ଆୟୁଧ ପୂଜା) - କାର୍ତ୍ତିକ ମାସ ନୀତି - ଆଶ୍ୱିନ ମାସର ପୂର୍ଣ୍ଣିମା (କୁମାର ପୂର୍ଣ୍ଣିମା) - ଗର୍ଭଣା ସଂକ୍ରାନ୍ତି - ନବାନ୍ନ - ପ୍ରଥମାଷ୍ଟମୀ - ଦୀପଦାନ ଓ ପିତୃଶ୍ରାଦ୍ଧ - ଓଢ଼ଣ ଷଷ୍ଠୀ ବା ପ୍ରାବରଣ ଷଷ୍ଠୀ - ମାର୍ଗଶିର ପୂର୍ଣ୍ଣିମା - ଧନୁସଂକ୍ରାନ୍ତିଠାରୁ ମକର ସଂକ୍ରାନ୍ତି - ବକୁଳ ଅମାବାସ୍ୟା - ପୁଷ୍ୟାଭିଷେକ - ନବାଙ୍କ ଓ ମକର ସଂକ୍ରାନ୍ତି - ପଦ୍ମବେଶ - ବସନ୍ତ ପଞ୍ଚମୀ - ତିଳ ସପ୍ତମୀ (ମାଘ ଶୁକ୍ଳ ସପ୍ତମୀ) - ଭୌମ ଏକାଦଶୀ (ମାଘ ଶୁକ୍ଳ ଏକାଦଶୀ) - ଗଜ ଉଦ୍ଧାରଣ ବେଶ (ମାଘ ପୂର୍ଣ୍ଣିମା) - ଶିବରାତ୍ରି (ଫାଲଗୁନ କୃଷ୍ଣ ଚତୁର୍ଦ୍ଦଶୀ) - ଦୋଳ ଯାତ୍ରା (ଫାଲ୍‌ଗୁନ ଶୁକ୍ଳ ଦଶମୀଠାରୁ ଚୈତ୍ର କୃଷ୍ଣ ପ୍ରତିପଦ) - ଦୋଳ ପୂର୍ଣ୍ଣିମା - ହୋରି - ଚୈତ୍ର ଗୁଣ୍ଡିଚା - ଅଶୋକାଷ୍ଟମୀ - ଶ୍ରୀରାମନବମୀ - ରାମାଭିଷେକ -ଦମନକ ଚୋରି - ଦମନକ ଚତୁର୍ଦ୍ଦଶୀ (ଦୟଣା ଲାଗି) - ମହାବିଷୁବ ସଂକ୍ରାନ୍ତି (ପଣା ସଂକ୍ରାନ୍ତି) - ଅକ୍ଷୟ ତୃତୀୟା (ଚନ୍ଦନ ଯାତ୍ରାରମ୍ଭ) - ନୀଳାଦ୍ରି ମହୋଦୟ - ଶ୍ରୀନୃସିଂହ ଜନ୍ମ - ଶୀତଳ ଷଷ୍ଠୀ - ରାଜେନ୍ଦ୍ରାଭିଷେକ - ରୁକ୍ମିଣୀ ହରଣ ଏକାଦଶୀ ଓ ବିବାହ - ଚମ୍ପକ ଦ୍ୱାଦଶୀ

**ଶ୍ରୀଜଗନ୍ନାଥଙ୍କ ବେଶ** (୧୬୧-୧୭୦)

ଅବକାଶ (ତଡ଼ପ ଉତ୍ତରୀ) ବେଶ - ବଡ଼ସିଂହାର ବେଶ - ଗଣପତି ବେଶ ବା ହାତୀ ବେଶ - ରାଜବେଶ ବା ସୁନାବେଶ - ବଣଭୋଜି ବେଶ - କାଳୀୟଦଳନ ବେଶ - ପ୍ରଳମ୍ବାସୁରବଧ ବେଶ - କୃଷ୍ଣ-ବଳରାମ ବେଶ - ବାମନ ବେଶ - ରାଧା-ଦାମୋଦର ବେଶ - ଲକ୍ଷ୍ମୀ-ନାରାୟଣ ବେଶ - ବାଙ୍କଚୂଡ଼ା ବେଶ - ତ୍ରିବିକ୍ରମ (ଆଡ଼କିଆ) ବେଶ - ଲକ୍ଷ୍ମୀ ନୃସିଂହ (ଡାଳିକିଆ) ବେଶ - ଶ୍ରାଦ୍ଧ ବେଶ - ନାଗାର୍ଜୁନ ବେଶ - ଘୋଡ଼ଲାଗି ବେଶ - ଚାଚେରୀ ବେଶ - ପଦ୍ମ ବେଶ - ଗଜ ଉଦ୍ଧାରଣ ବେଶ - ରଘୁନାଥ ବେଶ - ଚନ୍ଦନ ବେଶ - ମକରଚୌରାସୀ ବେଶ

**ବିଭିନ୍ନ ମଠ ଓ ଶ୍ରୀମନ୍ଦିର** (୧୭୧-୧୮୧)

ଜଗନ୍ନାଥବଲ୍ଲଭ ମଠ - ରାଘବ ଦାସ ମଠ - ଓଡ଼ିଆ ମଠ - ଶ୍ରୀରାମଦାସ ମଠ - ଏମାର ମଠ - ଗୋପାଳ ତୀର୍ଥ ମଠ - ଗୋବର୍ଦ୍ଧନ ମଠ - ବଡ଼ଛତା ମଠ - ରାଧାକାନ୍ତ ମଠ - ତ୍ରିମାଳୀ ମଠ - ଉତ୍ତର ପାର୍ଶ୍ୱ ମଠ - ମହୀପ୍ରକାଶ ମଠ - ସୁନା ଗୋସ୍ୱାମୀ ଓ ଦର୍ପନାରାୟଣ ମଠ - ଚାଉଳିଆ ମଠ - ଶଙ୍କରାନନ୍ଦ ମଠ - ଗଙ୍ଗାମାତା ମଠ - ମଙ୍ଗୁ ମଠ - ରାଧାବଲ୍ଲଭ ମଠ - ଲବଣଖିଆ ମଠ - ଛାଉଣୀ ମଠ - ଝାଡୁ ମଠ - ପାପୁଡ଼ିଆ ମଠ - ରାଜଗୋପାଳାଚାରୀ ମଠ - ଭେଙ୍କଟାଚାରୀ ମଠ - ନରସିଂହ ଆଚାରୀ ମଠ - ନେବଳ ଦାସ ମଠ - ଦେବଗିରି ମଠ - ପିପିଲି ସଦାବର୍ତ୍ତ ମଠ - ସମାଧି ମଠ - ରାମଜୀ ମଠ - ରାମଚନ୍ଦ୍ର ବ୍ରହ୍ମଚାରୀ ମଠ - ବଳରାମ କୋଟ ମଠ - ସୁନ୍ଦର ଦାସ ମଠ - ବଡ଼ସନ୍ତ ମଠ - ସିଦ୍ଧ ବକୁଳ ମଠ - ସାତ ଛତା ମଠ - ନୂଆ ମଠ - ମହାନନ୍ଦ ବନଗୋସ୍ୱାମୀ

**ସ୍ମ**ରଣାତୀତ କାଳରୁ ଶ୍ରୀକ୍ଷେତ୍ର ପୁରୀରେ ମହାପ୍ରଭୁ ଶ୍ରୀଜଗନ୍ନାଥ ଆବିର୍ଭୂତ ହୋଇଛନ୍ତି । ଏହି ପରମପାବନ କ୍ଷେତ୍ର ଯେ ପୃଥିବୀର ଏକ ପ୍ରାଚୀନ ଧର୍ମପୀଠ- ଏହା ବିନା ଦ୍ୱିଧାରେ କୁହାଯାଇପାରେ । କିନ୍ତୁ ଏହି କ୍ଷେତ୍ରର ମୁଖ୍ୟ ଅଧିଷ୍ଠାତା ଦେବତା ଶ୍ରୀଜଗନ୍ନାଥଙ୍କର ଇତିବୃତ୍ତ ଅଦ୍ୟାବଧି ରହସ୍ୟାବୃତ ହୋଇ ରହି ଆସିଛି । ବିଭିନ୍ନ ପୁରାଣ, କିମ୍ବଦନ୍ତୀ ଓ ଇତିହାସ ସେ ରହସ୍ୟ ଭେଦକରି ପାରି ନାହାନ୍ତି ।

କଥାରେ କୁହାଯାଇଛି, ପୁରୁଷୋତ୍ତମ ଶ୍ରୀଜଗନ୍ନାଥଙ୍କ ରହସ୍ୟ ଦେବଗଣଙ୍କୁ ମଧ୍ୟ ଅଗୋଚର; ସାଧାରଣ ମାନବ ପକ୍ଷେ ସେ ରହସ୍ୟ ଭେଦ କରିବା ଅସମ୍ଭବ । ଶ୍ରୀଜଗନ୍ନାଥ ବେଦବର୍ଣ୍ଣିତ ବିରାଟ ପୁରୁଷଙ୍କ ପ୍ରତୀକ ବିଗ୍ରହ । ସେ ଦୁର୍ବୋଧ୍ୟ, ଉପନିଷଦ ଦର୍ଶନର ମୂର୍ତ୍ତିମନ୍ତ ବିଗ୍ରହ ।

ପୁରୀର ନାମ ହୁଏତ ଦିନେ ଥିଲା ପୁରୁଷୋତ୍ତମ-ପୁରୀ ଓ ଜଗନ୍ନାଥ-ପୁରୀ । ନାମ ସଂକ୍ଷିପ୍ତୀକରଣ ପ୍ରକ୍ରିୟାରେ ହୋଇଗଲା 'ପୁରୀ' । ଏହାର ଅନ୍ୟାନ୍ୟ କେତୋଟି ନାମ ହେଲା- ଶ୍ରୀକ୍ଷେତ୍ର, ନୀଳାଚଳ କ୍ଷେତ୍ର, ନୀଳାଚଳ ଧାମ, ଶଙ୍ଖକ୍ଷେତ୍ର, ପୁରୁଷୋତ୍ତମ କ୍ଷେତ୍ର, ପୁରୁଷୋତ୍ତମ ଧାମ, ନୀଳାଦ୍ରି । ବ୍ରିଟିଶ୍ ଶାସନ ସମୟର ସରକାରୀ ନଥିପତ୍ରରେ ଠାଏ ଠାଏ ପୁରୀ ଜାଗାରେ 'ଜଗନ୍ନାଥ' ଶବ୍ଦ ବ୍ୟବହୃତ ହୋଇଛି । ଉଭୟ ଶବ୍ଦ ହୋଇଯାଇଛି ସମାର୍ଥକ ।

ପୁର ଓ ପୁରୀ ଶବ୍ଦର ଅନେକ ଅର୍ଥ ରହିଛି । ପୁର ଅର୍ଥ ଗୃହ, ଦେଶ, ନଗର, ଦେହ ଇତ୍ୟାଦି । ଆତ୍ମା ସମସ୍ତ ପ୍ରାଣୀଙ୍କର ପୁରରେ ଅର୍ଥାତ୍ ଦେହରେ ଅବସ୍ଥାନ କରେ ବା ତାହାକୁ ପୂର୍ଣ୍ଣ କରି ରହେ ବା ସେଥିରେ ଶୟନ କରେ । ତେଣୁ ଆତ୍ମାକୁ 'ପୁରୁଷ' କୁହାଯାଏ । ପୁରୁଷ ଉତ୍ତମ, ପୁରୁଷୋତ୍ତମ- ଜଗନ୍ନାଥଙ୍କ ପୁର ହେତୁ ଏହି ଧାମର ନାମ ପୁରୁଷୋତ୍ତମପୁରୀ ବା ସଂକ୍ଷେପରେ ପୁରୀ ହୋଇଥିବ ।

ପୁରୀ ଶବ୍ଦକୁ ନେଇ ଭାଷାତତ୍ତ୍ୱବିତ୍ ଓ ଗବେଷକଙ୍କ ମଧ୍ୟରେ ଭିନ୍ନ ଭିନ୍ନ ମତ ରହିଛି । ପ୍ରଫେସର ପଞ୍ଚାନନ ମହାନ୍ତି 'ପୁରୀ' ଶବ୍ଦର ବ୍ୟାଖ୍ୟା କରିଛନ୍ତି । ସେ କହିଛନ୍ତି ଯେ ଓଡ଼ିଶା ଗୋଟିଏ ଆଦିବାସୀ ମୁଣ୍ଡାଭାଷୀ ଅଧ୍ୟୁଷିତ ରାଜ୍ୟ । ସମୁଦାୟ ପ୍ରାୟ ୧୨ଗୋଟି ମୁଣ୍ଡା ଭାଷା ମଧ୍ୟରୁ ଅନ୍ୟୂନ ଦଶଗୋଟି ଭାଷା ଓଡ଼ିଶାର ବିଭିନ୍ନ ଅଞ୍ଚଳରେ କଥିତ ହୁଏ । ମହାପ୍ରଭୁ ଜଗନ୍ନାଥ ମୁଖ୍ୟତଃ ଶବର ଦେବତା ଥିଲେ । ଶବରମାନେ ମୁଣ୍ଡା ଗୋଷ୍ଠୀର ଅନ୍ତର୍ଭୁକ୍ତ । ସାରଳା ମହାଭାରତ ଅନୁଯାୟୀ, ନୀଳାଚଳ ଥିଲା ଗୋଟିଏ ଶବର ଅଧ୍ୟୁଷିତ କ୍ଷେତ୍ର । ପୁରୀରେ ପ୍ରାଚୀନକାଳରେ ଶବରମାନେ ରାଜତ୍ୱ କରୁଥିଲେ ବୋଲି ଐତିହାସିକମାନେ ମଧ୍ୟ ମତ ପୋଷଣ

କରନ୍ତି । ଏ ମତକୁ ଗ୍ରହଣ କଲେ, ଶବରମାନେ ଏ ସ୍ଥାନଟିର କିଛି ଗୋଟିଏ ନାମ ଦେଇଥିବେ ଓ ସେହି ନାମଟି ଯେ ମୁଣ୍ଡା ଭାଷାର ଶବ୍ଦ ହୋଇଥିବ, ଏ କଥା ସ୍ୱୀକାର କରିବାକୁ ପଡ଼ିବ । ପ୍ରଫେସର ମହାନ୍ତି ବିଶ୍ୱାସ କରନ୍ତି ଯେ, ଏହି ପ୍ରାଚୀନ ନାମଟି 'ପୁରୀ' । କାରଣ ମୁଣ୍ଡା ଗୋଷ୍ଠୀର ବିଭିନ୍ନ ଭାଷାରେ ଏହି ଶବ୍ଦ ଜଳାଶୟ ଓ ସମୁଦ୍ର ସହିତ ସଂପୃକ୍ତ । ପୁରୀ ଗୋଟିଏ ମୁଣ୍ଡା ଭାଷାର ଶବ୍ଦ । ଏହି ଶବ୍ଦ ସମୁଦ୍ରପାଇଁ ବ୍ୟବହୃତ ହୋଇ ସମୟକ୍ରମେ ସମୁଦ୍ରକୂଳସ୍ଥିତ ସ୍ଥାନଟିର ନାମରେ ପରିଣତ ହୋଇଯାଇଛି । କିନ୍ତୁ ଅନ୍ୟ ଜଣେ ବିଦ୍ୱାନ ଗବେଷକ ପ୍ରଫେସର ଗଗନେନ୍ଦ୍ର ନାଥ ଦାଶଙ୍କ ମତରେ, ନାମ ସଂକ୍ଷିପ୍ତୀକରଣ ପ୍ରକ୍ରିୟା ମାଧ୍ୟମରେ 'ପୁରୁଷୋତ୍ତମ-ପୁରୀ' ବା 'ଜଗନ୍ନାଥ-ପୁରୀ'ର ସଂକ୍ଷିପ୍ତ ରୂପ 'ପୁରୀ' ହୋଇଛି ।

ଅନ୍ୟ ଦୃଷ୍ଟିରୁ ବିଚାର କଲେ, ଇଣ୍ଡୋନେସିଆର ବାଲିଦ୍ୱୀପ ସହିତ ପ୍ରାଚୀନ ଉତ୍କଳର ବାଣିଜ୍ୟ ସଂପର୍କ ରହିଥିଲା । ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀରେ ଭାରତୀୟ ସାଧବମାନେ ଏହି ଦ୍ୱୀପରେ ପହଞ୍ଚିଯାଇଥିଲେ । ପ୍ରାଚୀନ ଉତ୍କଳ ତଥା କଳିଙ୍ଗରୁ ବହୁ ସାଧବ ସେଠାକୁ ଯାଇଥିଲେ । ସେମାନଙ୍କ ସଂସ୍କୃତିର ପ୍ରଭାବ ସେଠାରେ ପଡ଼ିଥିଲା । ବାଲିଦ୍ୱୀପରେ ଲୋକମାନେ ମନ୍ଦିରକୁ 'ପୁର' କହନ୍ତି । ଏହାଛଡ଼ା ମନ୍ଦିରକୁ ପ୍ରାସାଦ ମଧ୍ୟ କୁହାଯାଏ । ବାଲିଦ୍ୱୀପର 'ପୁରବୈଶାଖୀ' ମନ୍ଦିରକୁ ଠିକ୍ ପୁରୀର ଶ୍ରୀଜଗନ୍ନାଥ ମନ୍ଦିର ଭଳି 'ପ୍ରାସାଦ' କୁହାଯାଏ । ଏଥିରୁ ସ୍ପଷ୍ଟ ଜଣାଯାଏ ଯେ, ଏକଦା ଶ୍ରୀକ୍ଷେତ୍ରର ଶ୍ରୀମନ୍ଦିରକୁ 'ପୁର' କୁହାଯାଉଥିଲା । କାଳକ୍ରମେ ଏହାର ନିକଟବର୍ତ୍ତୀ ଅଞ୍ଚଳ 'ପୁରୀ' ନାମରେ ବିଖ୍ୟାତ ହେଲା ।

କବିସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ 'କୋଟିବ୍ରହ୍ମାଣ୍ଡ ସୁନ୍ଦରୀ' କାବ୍ୟରେ ପୁରୀର ଶ୍ରୀମନ୍ଦିରକୁ 'ପ୍ରାସାଦ' କୁହାଯାଇଛି ।

''ସ୍ନାନ ଗୁଣ୍ଡିଚା ଏ ବେନି ସ୍ୱୟଂ ଲୀଳା ଯାର
ପତିତପାବନ ଅର୍ଥେ ପ୍ରାସାଦୁଁ ବାହାର ।''

ଜୀବଦେବାଚାର୍ଯ୍ୟ (ଷୋଡ଼ଶ ଶତାବ୍ଦୀର ଉତ୍କଳୀୟ କବି) ତାଙ୍କର ସଂସ୍କୃତ ରଚନା 'ଉତ୍ସାହବତୀ ରୂପକ'ରେ ଲେଖିଛନ୍ତି-''ଅସ୍ମିନ୍ ବସନ୍ତ ସମୟେ ପୁରୁଷୋତ୍ତମସ୍ୟ ପ୍ରାସାଦ... ।'' ଗଙ୍ଗବଂଶର ପ୍ରତିଷ୍ଠାତା ଚୋଡ଼ଗଙ୍ଗ ଦେବଙ୍କ ପ୍ରଦତ୍ତ ଏକ ଅଭିଲେଖରେ 'ପ୍ରାସାଦ ପୁରୁଷୋତ୍ତମସ୍ୟ' ବୋଲି ଉଲ୍ଲେଖ ଅଛି ।

ବ୍ରହ୍ମ ଦେଶର ପ୍ରତ୍ନତାତ୍ତ୍ୱିକ ସର୍ବେକ୍ଷଣ ବିବରଣୀ (୧୯୧୬)ରୁ ଜଣାଯାଏ ଯେ, ସେଠାର ପ୍ରାଚୀନ ପ୍ରୋମ୍ ଅଞ୍ଚଳର ନାମ ଥିଲା 'ଶ୍ରୀକ୍ଷେତ୍ର' । ଉତ୍କଳର ଉପନିବେଶକାରୀମାନେ ବ୍ରହ୍ମଦେଶର ପ୍ରୋମ୍ ଅଞ୍ଚଳରେ ପରିବ୍ୟାପ୍ତ ହୋଇଥିଲେ । ଖ୍ରୀଷ୍ଟପୂର୍ବ ଦୁଇଶହରେ ଉତ୍କଳୀୟମାନେ ସେଠାରେ ଉପନିବେଶ ସ୍ଥାପନ କରିଥିଲେ । 'ପ୍ରୋମ୍' ନାମଟି ହୁଏତ 'ପୁରମ୍' (ପୁର) ଶବ୍ଦରୁ ସୃଷ୍ଟି ହୋଇଥିବ ।

## ପୁରାଣରେ ଶ୍ରୀକ୍ଷେତ୍ର

କେଉଁ ନିର୍ଦ୍ଦିଷ୍ଟ କାଳରୁ ଏହି କ୍ଷେତ୍ର ପ୍ରାଧାନ୍ୟ ଲାଭ କରିଛି କିମ୍ବା ପ୍ରଥମେ କେବେ ଶ୍ରୀଜଗନ୍ନାଥଙ୍କ ମନ୍ଦିର ନିର୍ମାଣ କରାଗଲା, ତାହାର ନିର୍ଦ୍ଦିଷ୍ଟ ଓ ସର୍ବଗ୍ରାହ୍ୟ ତଥ୍ୟ ଏଯାବତ୍ ଉପଲବ୍ଧ ହୋଇ ନାହିଁ । ପ୍ରାଚୀନ ଧର୍ମଗ୍ରନ୍ଥ ଓ ପୁରାଣମାନଙ୍କରେ ପୁରୁଷୋତ୍ତମ ଧାମ ବା ପୁରୁଷୋତ୍ତମ ଜଗନ୍ନାଥଙ୍କ ସଂପର୍କରେ ରହିଥିବା ବର୍ଣ୍ଣନା ବା ସୂଚନାକୁ ଭିତ୍ତିକରି କୁହାଯାଇ ପାରିବ ଯେ, ଏହି ପବିତ୍ର କ୍ଷେତ୍ର ଓ ତା'ର ଅଧିଷ୍ଠାତା ଦେବତା ଅତି ପ୍ରାଚୀନ । କେତେକ ପୁରାଣର ନିର୍ଦ୍ଦିଷ୍ଟ ରଚନାକାଳ ନିରୂପଣ ଅବଶ୍ୟ କଷ୍ଟକର ବ୍ୟାପାର । ଅଧିକାଂଶ ପୁରାଣରେ ପ୍ରକ୍ଷେପାଂଶ ରହିଅଛି । ପ୍ରକ୍ଷେପାଂଶ ସାଧାରଣତଃ ଅର୍ବାଚୀନ । ନିମ୍ନରେ କେତେକ ପ୍ରସିଦ୍ଧ ପୁରାଣର ଆନୁମାନିକ ରଚନା ଅବଧି ଦର୍ଶାଗଲା ।

| | | |
|---|---|---|
| ଅଗ୍ନି ପୁରାଣ | | (ଖ୍ରୀଷ୍ଟାବ୍ଦ ୭୦୦-୯୦୦) |
| ବ୍ରହ୍ମ ପୁରାଣ | | (ଖ୍ରୀଷ୍ଟାବ୍ଦ ୯୦୦-୧୫୦୦) |
| ପଦ୍ମ ପୁରାଣ | (ଉତ୍ତର ଖଣ୍ଡ) | (ଖ୍ରୀଷ୍ଟାବ୍ଦ ୬୦୦-୭୦୦) |
| | | (ମତାନ୍ତରେ ୯୫୦-୧୪୦୦) |
| ନାରଦୀୟ ପୁରାଣ | | (ଖ୍ରୀଷ୍ଟାବ୍ଦ ୬୦୦-୭୦୦) |
| ମତ୍ସ୍ୟ ପୁରାଣ | | (ଖ୍ରୀଷ୍ଟାବ୍ଦ ୨୦୦-୪୦୦) |
| | | (ମତାନ୍ତରେ ୪୦୦-୧୨୫୦) |
| ସ୍କନ୍ଦ ପୁରାଣ | (ବୈଷ୍ଣବ ଖଣ୍ଡ) | (ଖ୍ରୀଷ୍ଟାବ୍ଦ ୮୦୦-୯୦୦) |
| | | (ମତାନ୍ତରେ ୮୦୦-୧୩୦୦) |
| କପିଳ ପୁରାଣ/ କପିଳ ସଂହିତା | | (ଖ୍ରୀଷ୍ଟାବ୍ଦ ୧୩୦୦) |
| ବ୍ରହ୍ମାଣ୍ଡ ପୁରାଣ | | (ଖ୍ରୀଷ୍ଟାବ୍ଦ ୫୦୦-୬୦୦) |

ଉଲ୍ଲିଖିତ ସଂସ୍କୃତ ପୁରାଣ ବ୍ୟତୀତ ଆଉ କେତୋଟି ସଂସ୍କୃତ ଧର୍ମଶାସ୍ତ୍ର, ଯଥା-ତନ୍ତ୍ର ଯାମଳ, ରୁଦ୍ର ଯାମଳ, କାଳିକା ପୁରାଣ, ବାମଦେବ ସଂହିତା, ନୀଳାଦ୍ରି ମହୋଦୟ, ମହାପୁରୁଷ ବିଦ୍ୟା ଇତ୍ୟାଦିରେ ଏହି କ୍ଷେତ୍ର ଓ ଦେବଦେବୀଙ୍କ ସଂପର୍କରେ ବର୍ଣ୍ଣନା ଅଛି ।

ବ୍ରହ୍ମପୁରାଣର ଆରମ୍ଭରୁ ୬୯ଟି ଅଧ୍ୟାୟ ଯାଏ ପୁରୁଷୋତ୍ତମ କ୍ଷେତ୍ର ଓ ଅନ୍ୟାନ୍ୟ କ୍ଷେତ୍ରର ବର୍ଣ୍ଣନା ଅଛି । କୋଣାର୍କର ମଧ୍ୟ ଉଲ୍ଲେଖ ଅଛି । ଏଥିରେ 'ଗୁଣ୍ଡିଚା' ଶବ୍ଦର ମଧ୍ୟ ପ୍ରୟୋଗ ହୋଇଛି । ଏହି ପୁରାଣ ତ୍ରୟୋଦଶ ଶତାବ୍ଦୀ ପରେ ରଚିତ ବୋଲି କେହି କେହି ମତବ୍ୟକ୍ତ କରିଛନ୍ତି । ପଦ୍ମପୁରାଣର 'ଉତ୍ତର ଖଣ୍ଡ'ରେ ନାନା ତୀର୍ଥସ୍ଥାନର ବର୍ଣ୍ଣନା ସହିତ ପୁରୁଷୋତ୍ତମ କ୍ଷେତ୍ର ବିଷୟରେ ବର୍ଣ୍ଣନା ହୋଇଛି । ଏହାର 'ପାତାଳ ଖଣ୍ଡ'ରେ ମଧ୍ୟ ପ୍ରଭୁ ଜଗନ୍ନାଥଙ୍କ କଥା ଅଛି । ନାରଦୀୟ ପୁରାଣରେ ପୁରୁଷୋତ୍ତମ କ୍ଷେତ୍ର ମାହାତ୍ମ୍ୟ ସ୍ଥାନ ପାଇଛି । ମାତ୍ର ସ୍କନ୍ଦ ପୁରାଣର

ପୁରୁଷୋତ୍ତମ କ୍ଷେତ୍ର ମାହାତ୍ମ୍ୟଠାରୁ ବିଷୟ ସଂଯୋଜନା ଦୃଷ୍ଟିରୁ ଏହା ଅସ୍ପଷ୍ଟ ଓ ପ୍ରାଚୀନ ମନେହୁଏ ବୋଲି ପ୍ରଖ୍ୟାତ ଗବେଷକ ତଥା ସଂସ୍କୃତ ପ୍ରଫେସର ଗୋପୀନାଥ ମହାପାତ୍ର ମତ ଦେଇଛନ୍ତି । ମତ୍ସ୍ୟପୁରାଣରେ ବିଭିନ୍ନ ତୀର୍ଥ ବର୍ଣ୍ଣନାରେ ପୁରୀର ମାହାତ୍ମ୍ୟ ଅଛି । ଏଥିରେ ଲେଖାଅଛି- ''ଗଙ୍ଗାୟାଂ ମଙ୍ଗଳା ନାମ ବିମଳା ପୁରୁଷୋତ୍ତମେ ।'' ସ୍କନ୍ଦ ପୁରାଣ ଅଷ୍ଟାଦଶ ପୁରାଣ ମଧ୍ୟରେ ବୃହତ୍ତମ । ଏହି ପୁରାଣ ଅନ୍ତର୍ଗତ ବିଷ୍ଣୁଖଣ୍ଡ ବା ବୈଷ୍ଣବ ଖଣ୍ଡରେ 'ଶ୍ରୀପୁରୁଷୋତ୍ତମ ମାହାତ୍ମ୍ୟ' ସ୍ଥାନ ପାଇଛି । ପ୍ରଫେସର ଗୋପୀନାଥ ମହାପାତ୍ରଙ୍କ ମତରେ ବୈଷ୍ଣବ ଖଣ୍ଡର ରଚନାକାଳ ୮ମ ଓ ୯ମ ଶତକ । ଆଚାର୍ଯ୍ୟ ବଳଦେବ ଉପାଧ୍ୟାୟ କହିଛନ୍ତି ଯେ, ସମୁଦାୟ ସ୍କନ୍ଦ ପୁରାଣ ଖ୍ରୀଷ୍ଟୀୟ ସପ୍ତମ ଶତକଠାରୁ ନବମ ଶତକ ମଧ୍ୟରେ ଲେଖାଯାଇଛି । ଅନ୍ତତଃ ତୃତୀୟ ଶତକ ବେଳକୁ ସ୍କନ୍ଦ ପୁରାଣର ସ୍ୱରୂପ ଥିଲା, ଯଦିଓ ଦଶମ ଓ ଏକାଦଶ ଶତକ ଯାଏଁ ବିଭିନ୍ନ ଖଣ୍ଡ ଲେଖାଯାଇ ଏହି ପୁରାଣର ଅନ୍ତର୍ଗତ କରାଯାଇଥିଲା । ସ୍କନ୍ଦ ପୁରାଣର ଅନେକ ଅଂଶ ସପ୍ତମ ଶତକର ଲେଖା । ବ୍ରହ୍ମାଣ୍ଡ ପୁରାଣରେ ଗଂଜାମର ମହେନ୍ଦ୍ର ପର୍ବତର ଉଲ୍ଲେଖ ଅଛି । ପରବର୍ତ୍ତୀ କାଳରେ ଏଥିରେ ଅନେକ ଅଂଶ ଲେଖାଯାଇ ଅନ୍ତର୍ଭୁକ୍ତ କରାଯାଇଛି । ବାଲ୍ମୀକି ରାମାୟଣରେ ଏହି କ୍ଷେତ୍ର ସଂପର୍କରେ ଉଲ୍ଲେଖ ନାହିଁ । କିନ୍ତୁ ଏହାର 'ଉତ୍ତରାକାଣ୍ଡ'ରେ ପ୍ରଭୁ ଶ୍ରୀରାମ ଶ୍ରୀଜଗନ୍ନାଥଙ୍କୁ ଉପାସନା କରିବାକୁ ବିଭୀଷଣଙ୍କୁ ଉପଦେଶ ଦେଇଛନ୍ତି ।

''କିଂ ଚାନ୍ୟବକ୍ତୁ ମିଛାମି ରାକ୍ଷସେନ୍ଦ୍ର ମହାବଳ
ଆରାଧୟ ଜଗନ୍ନାଥମିକ୍ଷାକୁ କୁଳଦୈବତମ୍ ।''

ଏଥିରେ ନିଜ ବଂଶ (ଇକ୍ଷ୍ୱାକୁ)ର କୁଳ ଦେବତା ଜଗନ୍ନାଥଙ୍କୁ ପୂଜା କରିବାକୁ ଶ୍ରୀରାମଚନ୍ଦ୍ର କହିଛନ୍ତି । ତେବେ 'ଉତ୍ତରାକାଣ୍ଡ' ବାଲ୍ମୀକିଙ୍କ ରଚନା ନୁହେଁ ବୋଲି ଜଣାଯାଏ ।

ବ୍ୟାସଦେବଙ୍କ ମହାଭାରତରେ ସର୍ବପାପ ବିନାଶିନୀ ବୈତରଣୀ ନଦୀ ଓ ବିରଜା କ୍ଷେତ୍ରର ବର୍ଣ୍ଣନା ରହିଥିବା ବେଳେ ଶ୍ରୀକ୍ଷେତ୍ର ସଂପର୍କରେ କୌଣସି ଉଲ୍ଲେଖ ନାହିଁ । କିନ୍ତୁ ବୈତରଣୀ ନଦୀ ଓ ମହେନ୍ଦ୍ର ପର୍ବତ ମଧ୍ୟରେ ଏକ ଦିବ୍ୟ ଅରଣ୍ୟରେ ବିଶ୍ୱକର୍ମା ଯଜ୍ଞ କରିଥିବା ଏବଂ ଏକ ପବିତ୍ର ବେଦୀ ରହିଥିବା ଉଲ୍ଲେଖ ଅଛି । ବନବାସ ସମୟରେ ପାଣ୍ଡବମାନେ ଏହି ଅଞ୍ଚଳ ଦେଇ ମହେନ୍ଦ୍ରଗିରିକୁ ଯାଇଥିଲେ । ଯିବାବେଳେ ଜ୍ୟେଷ୍ଠ ପାଣ୍ଡବ ଯୁଧିଷ୍ଠିର ସମୁଦ୍ରରେ ସ୍ନାନ କରି ଉକ୍ତ ବେଦୀ ଆରୋହଣ କରିଥିଲେ । ମନେହୁଏ, ଏହି ପବିତ୍ର ଯଜ୍ଞସ୍ଥଳ ଓ ବେଦୀ ଥିବା ଅଞ୍ଚଳ ଏବର ଶ୍ରୀକ୍ଷେତ୍ର । କଳିଙ୍ଗ ତଥା ଶ୍ରୀକ୍ଷେତ୍ର (ନୀଳାଚଳ)କୁ ପଞ୍ଚପାଣ୍ଡବ ଓ ଦ୍ରୌପଦୀ ଆସିଥିବା କଥା ଯାହା ମହାଭାରତରୁ ସୂଚନା ମିଳେ, ତାହା ଅନୁଧ୍ୟାନ କଲେ ବିଶ୍ୱାସଯୋଗ୍ୟ ମନେହୁଏ ।

ଋଗ୍‌ବେଦର ନିମ୍ନୋକ୍ତ ମନ୍ତ୍ରରେ ଥିବା 'ଦାରୁ'କୁ ଦାରୁବ୍ରହ୍ମ ଶ୍ରୀଜଗନ୍ନାଥ ବୋଲି କେତେକ ଜଗନ୍ନାଥ ତତ୍ତ୍ୱଦର୍ଶୀ ପ୍ରତିପାଦନ କରନ୍ତି । ମନ୍ତ୍ରଟି ହେଲା;

''ଅଦୋ ଯଦ୍ଦାରୁ ପ୍ଳବତେ ସିନ୍ଧୋ ପାରେ ଅପୁରୁଷମ୍ ।
ତଦା ରଭସ୍ୱ ଦୁର୍ହଣୋ ତେନଗଚ୍ଛ ପରସ୍ତରମ୍ ॥''
(୧୦-୧୫୫:୩)

ଅର୍ଥାତ୍, ହେ ଦୁର୍ଭିକ୍ଷରୁ ନିବାରଣ ଚାହୁଁଥିବା ମଣିଷଗଣ ! ଏହି ଯେଉଁ କାଷ୍ଠମୟୀ ନୌକା, ସମୁଦ୍ର ବା ନଦୀକୁ ପାରି ହେବାପାଇଁ ବିନା କୌଣସି ମଣିଷଦ୍ୱାରା ଜଳ ଉପରେ ବିଦ୍ୟମାନ ଅଛି, ତାକୁ ଅବଲମ୍ବନ କର । ତା' ମାଧ୍ୟମରେ ଦୂରଦେଶ ବା ଦ୍ୱୀପକୁ ଚାଲିଯାଅ । ଏହାକୁ ସାୟଣାଚାର୍ଯ୍ୟ (୧୪ଶ ଶତାବ୍ଦୀ) ତାଙ୍କ ଭାଷ୍ୟରେ ଲେଖିଛନ୍ତି- ''ବର୍ତ୍ତମାନ ସମୁଦ୍ରରେ ପୁରୁଷୋତ୍ତମ ନାମ ଦେବତା ଶରୀର ଜଳ ଉପରେ ଭାସୁଛି । ନିର୍ମାଣ ରହିତ ଯୋଗୁଁ ସେ ଅପୌରୁଷ । ଏହି ଦାରୁମୟ ଦେବତାଙ୍କୁ ଉପାସନା କରିବା ଲୋକ ବୈଷ୍ଣବ ଲୋକକୁ ଗମନ କରନ୍ତି ।'' ପରବର୍ତ୍ତୀ କାଳରେ ଉପରୋକ୍ତ ମନ୍ତ୍ରଟି ସ୍କନ୍ଦ ପୁରାଣରେ ପରିବର୍ତ୍ତିତ ରୂପରେ ସ୍ଥାନ ପାଇଛି:

''ଅହୋ ତବାୟଂ ଖଲୁ ଭାଗ୍ୟରାଶି
ର୍ଯେନା ବିରାସୀଦ୍‌ଭୁ ବି ଦାରୁ ମୂର୍ତ୍ତି
ଯସ୍ୟାପ୍ୟୁପାସ୍ତିଂ ଶ୍ରୁତିରାହ ମୁକ୍ତି
ପ୍ରଦାନ ମାସ୍ୱଜ୍ଞ ବିମୋହିତ ନାମ
ଯ(ସ) ଏଷ ପ୍ଳବତେ ଦାରୁଃ-ସିନ୍ଧୁପାରେ ହ୍ୟୁ ପୌରୁଷଃ
ତମୁପାସ୍ୟ ଦୁରାରାଧଂ ମୁକ୍ତିଂ ଯାତି ସୁଦୁର୍ଲଭମ୍ ।'' (୨୧ ଅଧ୍ୟାୟ)

ଅର୍ଥାତ୍ ହେ ନରପତି ! ତୁମର ଭାଗ୍ୟରାଶି ଅତି ଆଶ୍ଚର୍ଯ୍ୟ । ପୁରୁଷୋତ୍ତମ ଭଗବାନ ଜଗତରେ ଦାରୁମୂର୍ତ୍ତି ଧାରଣ କରି ଆବିର୍ଭୂତ ହୋଇଥିଲେ । ଶ୍ରୁତି (ବେଦ)ରେ କୁହାଯାଇଛି ,ଏହାଙ୍କୁ ଉପାସନା କଲେ ଆତ୍ମଜ୍ଞାନ ବିମୋହିତ ବ୍ୟକ୍ତିମାନଙ୍କର ମଧ୍ୟ ମୋକ୍ଷ ଲାଭ ହୁଏ । (ଶ୍ରୁତି ବର୍ଣ୍ଣିତ) ସେହି ଅପୌରୁଷେୟ ଦାରୁ ସମୁଦ୍ରତୀରରେ ଭାସମାନ ହେଉଛନ୍ତି । ଏ ଦୁରାରାଧ୍ୟ । ଏହାଙ୍କୁ ଉପାସନା କଲେ ଦୁର୍ଲଭ ମୁକ୍ତି ପ୍ରାପ୍ତ ହୁଏ ।

ଋଗ୍‌ବେଦର ଉଲ୍ଲିଖିତ ମନ୍ତ୍ର ସହିତ ଦାରୁବ୍ରହ୍ମ ପୁରୁଷୋତ୍ତମଙ୍କ ସଂପର୍କ ନାହିଁ ବୋଲି କହିଛନ୍ତି ଗବେଷକ ଡକ୍ଟର ଗୌରାଙ୍ଗ ଚରଣ ନାୟକ, ଡକ୍ଟର ସତ୍ୟନାରାୟଣ ରାଜଗୁରୁ, ଡକ୍ଟର ଉମେଶ ପତ୍ରୀ, ସଚ୍ଚିଦାନନ୍ଦ ମିଶ୍ର ଓ ଟି.ଏନ୍ ଧର୍ମାଧିକାରୀ ପ୍ରମୁଖ । ଡକ୍ଟର ରାଜଗୁରୁ ଲେଖିଛନ୍ତି- ''ଭୁଲରେ ଏହି ସୂତ୍ରଟି ଶ୍ରୀଜଗନ୍ନାଥଙ୍କ ଦାରୁବ୍ରହ୍ମ ପ୍ରତି ପ୍ରଯୁଜ୍ୟ କରି ନିଜେ ମଧ୍ୟ ତାହା ସନ୍ଦେହ କରିଥିବା ତାଙ୍କ (ସାୟଣାଚାର୍ଯ୍ୟଙ୍କ) ଭାଷ୍ୟରୁ ଜଣାଯାଏ । କାରଣ ଶଂସିତ ବୈଦିକ ସୂତ୍ରଟି ଅନ୍ୟ ପ୍ରସଙ୍ଗର ଅର୍ଥବୋଧ କରୁଛି ।'' ଡକ୍ଟର ପତ୍ରୀ କହନ୍ତି- ''ପ୍ରକୃତରେ ଋଗ୍‌ବେଦର ସେହି ମନ୍ତ୍ରଟି କ'ଣ ଶ୍ରୀଜଗନ୍ନାଥଙ୍କୁ ପ୍ରତିପାଦନ କରୁଛି ? ଏହି ଅଲକ୍ଷ୍ମୀ ସୂକ୍ତରେ ପାଞ୍ଚଟି ମନ୍ତ୍ର ଅନୁଷ୍ଟୁପ ଛନ୍ଦରେ ପରସ୍ପର ସହିତ ଛନ୍ଦାୟିତ ହୋଇ ସଂରଚିତ ହୋଇଛି । ପୂର୍ବାପର ସଂପର୍କକୁ ନ ଜାଣିଲେ କେବଳ ଗୋଟିଏ

ମନ୍ତ୍ରରୁ ପ୍ରତିପାଦ୍ୟ ବିଷୟ ଜଣାପଡ଼ିବ ନାହିଁ ।'' 'ଦାରୁ' ଶବ୍ଦ ଦେଖି ତାକୁ ଜଗନ୍ନାଥଙ୍କ ଦାରୁମୂର୍ତ୍ତି ବୋଲି ଧରିନେବା ଯୁକ୍ତିଯୁକ୍ତ ନୁହେଁ । ବେଦରେ ଅଲକ୍ଷ୍ମୀକୁ ସମୁଦ୍ରରେ ଭାସୁଥିବା ଗୋଟିଏ ଦାରୁ ବା କାଷ୍ଠ ଉପରେ ବସି ଅନ୍ୟତ୍ର ଚାଲିଯିବାପାଇଁ ନିର୍ଦ୍ଦେଶ ଦିଆଯାଇଛି ।

ଆହୁରି ମଧ୍ୟ କୁହାଯାଇଛି,କୌଣସି ବ୍ୟକ୍ତି ଯଦି ଧନ ବା ଲକ୍ଷ୍ମୀବିହୀନ ହୋଇ ଜୀବନ ଯାପନ କରୁଥାନ୍ତି, ତେବେ ସେ ଋଗ୍ ବେଦ ଦଶମ ମଣ୍ଡଳର ୧୫୫ ତମ ସୂକ୍ତର ପାଞ୍ଚଗୋଟି ମନ୍ତ୍ରକୁ ନିତ୍ୟ ପ୍ରାତଃ କାଳରେ ସ୍ନାନ କରିବା ପରେ ୧୦୧ ଥର ଜପ କରନ୍ତୁ । ଏହି ଜପ ପୂର୍ବରୁ ଓ ପରେ ଗାୟତ୍ରୀ ମହାମନ୍ତ୍ରର ଗୋଟିଏ ମାଳା ଜପ ଆବଶ୍ୟକ । (ଯୁଗଶକ୍ତି ଗାୟତ୍ରୀ,ଜାନୁଆରି, ୨୦୦୫)

ବୌଦ୍ଧ ବଜ୍ରଯାନର ପ୍ରସିଦ୍ଧ ଗ୍ରନ୍ଥ 'ଜ୍ଞାନସିଦ୍ଧି'ରେ ଉଲ୍ଲେଖ ଅଛିଃ 'ପ୍ରଣିପତ୍ୟ ଜଗନ୍ନାଥଂ ସର୍ବଜିନ ବରାର୍ଚ୍ଚିତମ୍ । ସର୍ବ ବୁଦ୍ଧମୟଂ ସିଦ୍ଧି ବ୍ୟାପିନଂ ଗଗନୋପମମ୍ ।।'' (୧/୧) । ଏହି ଗ୍ରନ୍ଥର ପ୍ରଣେତା ଖ୍ରୀଃ ସପ୍ତମ/ଅଷ୍ଟମ ଶତାବ୍ଦୀର ସମ୍ବଳକ (ଏବର ସମ୍ବଲପୁର)ର ରାଜା ଇନ୍ଦ୍ରଭୂତି । ଏହି ଗ୍ରନ୍ଥର ମଙ୍ଗଳାଚରଣ ପାଠକରି କେତେଜଣ ଲେଖକ ତଥା ଗବେଷକ ମତ ଦିଅନ୍ତି ଯେ, ଏଥିରେ ପ୍ରଥମଥରପାଇଁ 'ଜଗନ୍ନାଥ' ଶବ୍ଦ ବ୍ୟବହୃତ ହୋଇଛି ଓ ତାହା ଶ୍ରୀକ୍ଷେତ୍ରର ଜଗନ୍ନାଥ ମହାପ୍ରଭୁଙ୍କୁ ବୁଝାଉ ଅଛି । ଏହି ଗ୍ରନ୍ଥରୁ ଉଦାହରଣ ଦେଇ ବୌଦ୍ଧ ଏପରିକି ଜୈନମାନେ ମଧ୍ୟ ଜଗନ୍ନାଥ ମହାପ୍ରଭୁଙ୍କୁ ଯଥାକ୍ରମେ ବୁଦ୍ଧ ଓ ଜୀନନାଥ ମନେକରନ୍ତି ।

ନୀଳାଚଳ ଧାମର ପ୍ରସିଦ୍ଧି ଖ୍ରୀଃ ଅଷ୍ଟମ ବା ନବମ ଶତାବ୍ଦୀରେ ଥିବା କଥା ମୁରାରି କବିଙ୍କ 'ଅନର୍ଘ ରାଘବ' ନାଟକରୁ ପ୍ରତିପାଦିତ ହୁଏ ବୋଲି ସତ୍ୟନାରାୟଣ ରାଜଗୁରୁ ଲେଖିଛନ୍ତି । କିନ୍ତୁ ମୁରାରିଙ୍କ ସମୟ ଏକାଦଶ ଶତାବ୍ଦୀ ବୋଲି ଐତିହାସିକ ନବୀନ କୁମାର ସାହୁ ମତ ଦେଇଛନ୍ତି ।

ପ୍ରଫେସର ସାହୁ ଆହୁରି କହିଛନ୍ତି ଯେ, ଚୋଡ଼ଗଙ୍ଗଦେବଙ୍କ ଉତ୍କଳ ଅଧିକାର ପୂର୍ବରୁ ପୁରୀଠାରେ ପୁରୁଷୋତ୍ତମ ଜଗନ୍ନାଥଙ୍କର ଏକ ମନ୍ଦିର ଥିବା କଥା ପ୍ରାଚୀନ ଗ୍ରନ୍ଥ ଓ ଅଭିଲେଖଗୁଡ଼ିକରୁ ଜଣାଯାଏ । ଏହି ସବୁ ଗ୍ରନ୍ଥ ଓ ଅଭିଲେଖରୁ ଗୋଟିଏ ସୁଦ୍ଧା ଏକାଦଶ ଶତାବ୍ଦୀର ପୂର୍ବବର୍ତ୍ତୀ ନୁହେଁ । 'ଅନର୍ଘ ରାଘବ'ର ରଚୟିତା ମୁରାରିଙ୍କ ସମୟ ଏକାଦଶ ଶତାବ୍ଦୀ, କୃଷ୍ଣମିଶ୍ରଙ୍କ ରଚିତ 'ପ୍ରବୋଧ ଚନ୍ଦ୍ରୋଦୟ' ନାଟକର ସମୟ ଖ୍ରୀଷ୍ଟାବ୍ଦ ୧୦୭୩ରୁ ୧୦୭୬ ମଧ୍ୟରେ । 'ଭାସ୍ୱତି' ଓ 'କୃତ୍ୟ କଳ୍ପତରୁ' ଗ୍ରନ୍ଥ ଯଥାକ୍ରମେ ୧୧୦୦ ଓ ୧୧୧୦ ଖ୍ରୀଷ୍ଟାବ୍ଦରେ ରଚିତ । 'ବ୍ରହ୍ମ ଯାମଳ ତନ୍ତ୍ର' ଏକାଦଶ ଶତାବ୍ଦୀର ପୂର୍ବବର୍ତ୍ତୀ ନୁହେଁ ।

ଓଡ଼ିଆ ସାହିତ୍ୟରେ ଆଦି କବି ସାରଳା ଦାସ (୧୫ଶ ଶତାବ୍ଦୀ)ଙ୍କ ମହାଭାରତରେ ପ୍ରଥମ କରି ଶ୍ରୀଜଗନ୍ନାଥଙ୍କ ସଂପର୍କରେ ବିସ୍ତୃତ ବିବରଣୀ ପ୍ରଦାନ କରାଯାଇଛି । ପରବର୍ତ୍ତୀ 'ପଞ୍ଚସଖା' ସାହିତ୍ୟରେ ଅର୍ଥାତ୍ ଜଗନ୍ନାଥ ଦାସ, ଅଚ୍ୟୁତାନନ୍ଦ, ଯଶୋବନ୍ତ, ଅଚ୍ୟୁତ ଓ ଅନନ୍ତ ଦାସଙ୍କ ରଚନାରେ ଶ୍ରୀଜଗନ୍ନାଥଙ୍କ ମାହାତ୍ମ୍ୟ ବର୍ଣ୍ଣିତ ହୋଇଅଛି ।

ପଣ୍ଡିତ ନୀଳମଣି ମିଶ୍ର ଲେଖିଛନ୍ତି, ଆଦିମ ଯୁଗର 'ଦାରୁ ଦେବତା' ହିଁ ପରବର୍ତ୍ତୀ କାଳରେ ଶ୍ରୀଜଗନ୍ନାଥ ନାମରେ ରୂପାୟିତ ହୋଇଛନ୍ତି । ଏହି ବିଗ୍ରହଙ୍କ ପ୍ରଶସ୍ତି ଇନ୍ଦ୍ରଭୂତିଙ୍କ ପ୍ରଣୀତ ଜ୍ଞାନସିଦ୍ଧି, ମୁରାରିଙ୍କ ଅନର୍ଘରାଘବ, ଶତାନନ୍ଦଙ୍କ ରତ୍ନମାଳା, ଜଗତଗୁରୁ ଶଙ୍କରାଚାର୍ଯ୍ୟଙ୍କ ସ୍ତୋତ୍ର ଆଦି ପ୍ରାଚୀନ ଗ୍ରନ୍ଥ ତଥା ସ୍ତୁତି ସ୍ତୋତ୍ରରେ ଦେଖିବାକୁ ମିଳେ । ତେଣୁ ସପ୍ତମ-ଅଷ୍ଟମ ଶତାବ୍ଦୀ ବେଳକୁ ଶ୍ରୀଜଗନ୍ନାଥ ବିଶ୍ୱବିଶ୍ରୁତ ବିଗ୍ରହ ରୂପେ ପ୍ରତିଷ୍ଠା ଲାଭ କରିସାରିଥିଲେ ।

## ଶିଳାଲିପି ଓ ତାମ୍ରପତ୍ର ଲିପିରେ ଶ୍ରୀକ୍ଷେତ୍ର ଓ ପୁରୁଷୋତ୍ତମ-ଜଗନ୍ନାଥ

ନିମ୍ନଲିଖିତ ଅଭିଲେଖମାନଙ୍କରେ ପୁରୁଷୋତ୍ତମ କ୍ଷେତ୍ର ଓ ଶ୍ରୀଜଗନ୍ନାଥଙ୍କ ସମ୍ପର୍କରେ ଊଣା ଅଧିକେ ସୂଚନା ମିଳେ ।

| | |
|---|---|
| ନାଗପୁର ଶିଳାଲିପି | (ଖ୍ରୀଷ୍ଟାବ୍ଦ ୧୧୦୪) |
| ଗୋବିନ୍ଦପୁର ଶିଳାଲିପି | (ଖ୍ରୀଷ୍ଟାବ୍ଦ ୧୧୩୭) |
| ଲିଙ୍ଗରାଜ ମନ୍ଦିର ଶିଳାଲିପି | (ଖ୍ରୀଷ୍ଟାବ୍ଦ ୧୨୩୦-୩୮) |
| ଶ୍ରୀକୂର୍ମ ମନ୍ଦିର ଶିଳାଲିପି | (ଖ୍ରୀଷ୍ଟାବ୍ଦ ୧୩୧୦) |
| ରାଜା ନରସିଂହଦେବଙ୍କ କପିଳାସ ଶିଳାଲିପି | (ଖ୍ରୀଷ୍ଟାବ୍ଦ ୧୨୩୮-୬୪) |
| ଶୁଭକର ଦେବଙ୍କ ନେଉଳପୁର ଶିଳାଲିପି | (ଖ୍ରୀଷ୍ଟାବ୍ଦ ୭୮୦-୮୦୦)<br>(ମତାନ୍ତରେ ଏକାଦଶ ଶତାବ୍ଦୀ) |
| ସତାନା (ମଧ୍ୟପ୍ରଦେଶ) ଶିଳାଲିପି | (ଖ୍ରୀଷ୍ଟାବ୍ଦ ଦଶମ ଶତାବ୍ଦୀ)<br>(ମତାନ୍ତରେ ଏକାଦଶ ଶତାବ୍ଦୀ) |
| ବରମଦେବ ମନ୍ଦିର ଶିଳାଲିପି | (ଖ୍ରୀଷ୍ଟାବ୍ଦ ୮୪୦-୧୦୮୮) |
| ସୀମାଚଳ ମନ୍ଦିର ଶିଳାଲିପି | (ଖ୍ରୀଷ୍ଟାବ୍ଦ ୧୩୧୯) |
| ପୁରୀର ନୃସିଂହ ମନ୍ଦିର, ମାର୍କଣ୍ଡେଶ୍ୱର ଓ ପାତାଳେଶ୍ୱର ଶିଳାଲିପି | (ଖ୍ରୀଷ୍ଟାବ୍ଦ ୧୧୧୩-୧୨୩୮) |
| ନାଗରୀ ତାମ୍ରପତ୍ର (ରାଜା ଅନଙ୍ଗଭୀମଦେବ-୩ୟ) | ଖ୍ରୀଷ୍ଟାବ୍ଦ ୧୨୩୦ |
| ଦ୍ରାକ୍ଷାରାମ ଶିଳାଲିପି | (ଖ୍ରୀଷ୍ଟାବ୍ଦ ୧୨୧୬) |
| ଦାସଗୋବା ତାମ୍ରପତ୍ର | (ଖ୍ରୀଷ୍ଟାବ୍ଦ୧୧୯୨-୧୨୧୧) |
| ଅସନଖଲି ତାମ୍ରପତ୍ର | (ଖ୍ରୀଷ୍ଟାବ୍ଦ ୧୩୩୭) |
| ପୁରୀର ପଞ୍ଜାବୀ ମଠରେ ଥିବା ୨ୟ ଭାନୁଦେବଙ୍କ ତାମ୍ରପତ୍ର ଅନୁଶାସନ | (ଖ୍ରୀଷ୍ଟାବ୍ଦ ୧୩୧୧) |

## ଶ୍ରୀଜଗନ୍ନାଥ ମନ୍ଦିରର ନିର୍ମାତା ଓ ନିର୍ମାଣ କାଳ

ଓଡ଼ିଶାରେ ଗଙ୍ଗ ରାଜବଂଶର ପ୍ରତିଷ୍ଠାତା ରାଜା ଅନନ୍ତବର୍ମନ ଚୋଡ଼ଗଙ୍ଗ ଦେବଙ୍କଦ୍ୱାରା ଦ୍ୱାଦଶ ଶତାବ୍ଦୀରେ ବର୍ତ୍ତମାନର ପୁରୀ ଶ୍ରୀଜଗନ୍ନାଥ ମନ୍ଦିର ନିର୍ମାଣ କରାଯାଇଛି ବୋଲି ବିଶ୍ୱାସ କରାଯାଏ । ଏହା ସାଧାରଣ ଭାବେ ସ୍ୱୀକୃତ । କେତେଜଣ ବିଦ୍ୱାନ ମତ ଦିଅନ୍ତି ଯେ ଚୋଡ଼ଗଙ୍ଗଦେବ ମନ୍ଦିର ନିର୍ମାଣ କାର୍ଯ୍ୟ ଆରମ୍ଭ କରିଥିଲେ, କିନ୍ତୁ ଅନଙ୍ଗଭୀମଦେବ(୩ୟ)ଙ୍କ ସମୟରେ ତାହାର ନିର୍ମାଣ କାର୍ଯ୍ୟ ସଂପୂର୍ଣ୍ଣ ହୋଇଥିଲା । ଷ୍ଟର୍ଲିଙ୍ଗ୍ ତାଙ୍କର ଓଡ଼ିଶା ଇତିହାସରେ ଲେଖିଛନ୍ତି ଯେ, ଅନଙ୍ଗଭୀମଦେବ (୩ୟ) ଖ୍ରୀଷ୍ଟାବ୍ଦ ୧୧୯୬ରେ ମନ୍ଦିର ନିର୍ମାଣ କରିଥିଲେ । ହଣ୍ଟରଙ୍କ ମତରେ ମନ୍ଦିର ନିର୍ମାଣ ଖ୍ରୀଷ୍ଟାବ୍ଦ ୧୧୭୪ରେ ଆରମ୍ଭ ହୋଇ ୧୧୯୮ରେ ଶେଷ ହେଲା । ଆର୍. ଡି. ବାନାର୍ଜିଙ୍କ ମତରେ ଏକାଦଶ ଶତାବ୍ଦୀର ଶେଷ ଭାଗରେ ଚୋଡ଼ଗଙ୍ଗ ଦେବ ମନ୍ଦିର ନିର୍ମାଣ କରିଥିଲେ । ମହାମହୋପାଧ୍ୟାୟ ସଦାଶିବ କାବ୍ୟକଣ୍ଠ ଲେଖିଛନ୍ତି ଯେ, ଖ୍ରୀଷ୍ଟାବ୍ଦ ୧୧୯୬ରେ ଚୋଡ଼ଗଙ୍ଗଦେବ ମନ୍ଦିର ନିର୍ମାଣ କରିଥିଲେ । ମାଦଳାପାଞ୍ଜି (ସଂପାଦନା- ପ୍ରଫେସର ଆର୍ତ୍ତବଲ୍ଲଭ ମହାନ୍ତି)ରେ ଉଲ୍ଲେଖ ଅଛି ଯେ ଅନଙ୍ଗଭୀମ ଦେବ ମନ୍ଦିର ନିର୍ମାଣ କରିଥିଲେ । ଇତିହାସ ପ୍ରାଧ୍ୟାପକ କୈଳାସ ଚନ୍ଦ୍ର ଦାସଙ୍କ ମତରେ ଚୋଡ଼ଗଙ୍ଗ ଦେବଙ୍କ ଦ୍ୱାରା ମନ୍ଦିର ନିର୍ମାଣ କରାଯାଇଥିଲା ଓ ସେଥିରେ ବିଗ୍ରହମାନଙ୍କୁ ଖ୍ରୀଷ୍ଟାବ୍ଦ ୧୧୨୪-୨୫ରେ ସ୍ଥାପନା କରାଯାଇଥିଲା ।

ବିଶିଷ୍ଟ ଗବେଷକ ତଥା ଶିଳାଲେଖବିତ୍ ଡକ୍ଟର ସତ୍ୟନାରାୟଣ ରାଜଗୁରୁ ଲେଖିଛନ୍ତି ଯେ ଶ୍ରୀକ୍ଷେତ୍ରର ସମୁଦ୍ରତଟରେ ଏକ ପୁରୁଷୋତ୍ତମ ମନ୍ଦିର ଥିଲା । କୌଣସି କାରଣରୁ ଏହି ମନ୍ଦିର ଭାଙ୍ଗିପଡ଼ିବାରୁ ଏହାର ଦେବତାଙ୍କୁ ରାଜା ଯଯାତି (୨ୟ)ଙ୍କ ଦ୍ୱାରା ନିର୍ମିତ ଏକ ନୂତନ ମନ୍ଦିରକୁ ସ୍ଥାନାନ୍ତର କରାଯାଇଥିଲା । ଯଯାତିକେଶରୀଙ୍କ ଉକ୍ତ ମନ୍ଦିରଟି ହେଉଛି ବର୍ତ୍ତମାନର ଶ୍ରୀଜଗନ୍ନାଥ ମନ୍ଦିର ଭିତରବେଢ଼ାର ଦକ୍ଷିଣ ପାର୍ଶ୍ୱରେ ଥିବା ନୃସିଂହଦେବଙ୍କ ମନ୍ଦିର । ଏକାଦଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ନିର୍ମିତ ଏହି ବିଷ୍ଣୁ ମନ୍ଦିରରେ ଚତୁର୍ଭୁଜ ବିଶିଷ୍ଟ ଶ୍ରୀପୁରୁଷୋତ୍ତମଙ୍କର ବିଗ୍ରହ ସ୍ଥାପନ କରାଯାଇଥିବା ସମ୍ଭବ । ଏହି ବିଗ୍ରହ ନୀଳ ପ୍ରସ୍ତରରେ ନିର୍ମିତ ହୋଇଥିଲା ।

ରାଜା ଚୋଡ଼ଗଙ୍ଗଦେବଙ୍କ ଜୀବନକାଳରେ ମନ୍ଦିର ନିର୍ମାଣ ଯଦିଓ ପ୍ରାଥମିକ ସ୍ତରରେ ଶେଷ ହୋଇସାରିଥିଲା, ବହୁକାଳ ପର୍ଯ୍ୟନ୍ତ ସେଥିରେ କାରୁକାର୍ଯ୍ୟ ଶେଷ ହୋଇ ପାରି ନଥିଲା । ଖ୍ରୀଷ୍ଟାବ୍ଦ ୧୨୩୦ରେ ପୁରୀର ଶ୍ରୀଜଗନ୍ନାଥ ମନ୍ଦିର ଓ ସେଥିରେ ପ୍ରତିଷ୍ଠିତ ବିଗ୍ରହମାନଙ୍କୁ ଅନଙ୍ଗଭୀମଦେବ (୩ୟ) ସମ୍ପନ୍ନ କରିଥିଲେ । ଯାଗଯଜ୍ଞରେ ପ୍ରଥମେ ନୃସିଂହଙ୍କ ପ୍ରତିମା ସ୍ଥାପନ କରି ତାଙ୍କରି ପୂଜା ସମ୍ପନ୍ନ କରିବା ବିଧି ଧର୍ମଶାସ୍ତ୍ରରେ ଉଲ୍ଲେଖ ଅଛି । ସେହି ନୃସିଂହଙ୍କ ବିଗ୍ରହକୁ ଯଜ୍ଞ ନୃସିଂହ ନାମରେ ପରିଚିତ କରାଯାଏ । ବୋଧହୁଏ ଶ୍ରୀମନ୍ଦିର ପ୍ରତିଷ୍ଠାପାଇଁ ଯଜ୍ଞ ନୃସିଂହ ପୂଜିତ ହୋଇଥିଲେ; ତାଙ୍କୁ ନୃସିଂହ ମନ୍ଦିରରେ ସ୍ଥାପନ କରିଥିବାରୁ ସେହି ମନ୍ଦିର ପରବର୍ତ୍ତୀ ୧୩ଶ ଶତାବ୍ଦୀ ବେଳକୁ ନୃସିଂହଙ୍କ ନାମରେ ପରିଚିତ ହେଲା । ଏଣୁ ମହାରାଜା ଯଯାତିଙ୍କ ରାଜତ୍ୱ କାଳରେ ଏକାଦଶ ଶତାବ୍ଦୀର

ଶ୍ରୀପୁରୁଷୋତ୍ତମ ମନ୍ଦିର ତ୍ରୟୋଦଶ ଶତାବ୍ଦୀରେ ଅର୍ଥାତ୍ ପ୍ରାୟ ଦୁଇଶହ ବର୍ଷ ପରେ 'ନୃସିଂହ ମନ୍ଦିର'ରେ ପରିଣତ ହୋଇଥିବା ସୁନିଶ୍ଚିତ ('ଶ୍ରୀପୁରୁଷୋତ୍ତମ ଓ ଶ୍ରୀମନ୍ଦିର' ପ୍ରବନ୍ଧ) । ଅନଙ୍ଗଭୀମ ଦେବଙ୍କ ନଗରୀ-ତାମ୍ରଶାସନରୁ ଜଣାଯାଏ ଯେ, କାଶ୍ୟପ ଗୋତ୍ରୀୟ ବ୍ରାହ୍ମଣ ଚନ୍ଦ୍ରକର ଶର୍ମାଙ୍କୁ ଏହି ପ୍ରତିଷ୍ଠା କର୍ମରେ ଆଚାର୍ଯ୍ୟ ରୂପେ ବରଣ କରାଯାଇଥିଲା ।

ଡକ୍ଟର ରାଜଗୁରୁ ଅନ୍ୟତ୍ର ଲେଖିଛନ୍ତି, ଚୋଡ଼ଗଙ୍ଗ ଦେବ ବଡ଼ ଦେଉଳ ନିର୍ମାଣ ପୂର୍ବରୁ ନୃସିଂହ ମନ୍ଦିରରେ ତିନି ମୂର୍ତ୍ତି ଶ୍ରୀ ପୁରୁଷୋତ୍ତମ, ଶ୍ରୀବଳଭଦ୍ର ଓ ଦେବୀ ସୁଭଦ୍ରାଙ୍କୁ ସ୍ଥାପନ କରିଥିଲେ । କିନ୍ତୁ ପୂର୍ବରୁ ସେହି କ୍ଷୁଦ୍ର ମନ୍ଦିରଟି ଶ୍ରୀପୁରୁଷୋତ୍ତମଙ୍କ ପାଇଁ ଉଦ୍ଦିଷ୍ଟ ଥିଲା । ସେଥିର ଆକାର ପ୍ରକାରରୁ ଏହା ହିଁ ଜଣାଯାଇଛି । କିନ୍ତୁ କୌଣସି ଅଜ୍ଞାତ କାରଣରୁ ସେହି ମନ୍ଦିରରେ ପ୍ରତିଷ୍ଠିତ ଶ୍ରୀପୁରୁଷୋତ୍ତମ ବିଗ୍ରହଙ୍କୁ ସ୍ଥାନାନ୍ତର କରାଯାଇଥିଲା । ଅନ୍ତତଃ ୧୧୩୭ ଖ୍ରୀଷ୍ଟାବ୍ଦ ଯାଏ ବଡ଼ଦେଉଳ ନିର୍ମାଣ କାର୍ଯ୍ୟ ଆରମ୍ଭ ହୋଇ ନଥିଲା । ବଡ଼ ଦେଉଳ ନିର୍ମାଣ ନିମନ୍ତେ କର୍ମକାର କୁଳପୁତ୍ର ପଲ୍ଲ ନାମକ ଉତ୍କଳର ଜଣେ ଶିଳ୍ପୀଙ୍କୁ ଦାୟିତ୍ୱ ନ୍ୟସ୍ତ କରାଯାଇଥିଲା । ଏତେ ବଡ଼ ବ୍ୟୟବହୁଳ ମନ୍ଦିର ଚୋଡ଼ଗଙ୍ଗଦେବଙ୍କ ଜୀବନକାଳରେ ପୂର୍ଣ୍ଣ ହୋଇ ପାରି ନଥିବ ବୋଲି ରାଜଗୁରୁ ସନ୍ଦେହ ପ୍ରକାଶ କରିଛନ୍ତି । ('ଶ୍ରୀମନ୍ଦିର ଶିଳ୍ପ କଳାରେ ବୈଷ୍ଣବ ସଂସ୍କୃତି' ପ୍ରବନ୍ଧ)

ବିଶିଷ୍ଟ ଐତିହାସିକ ପ୍ରଫେସର ନବୀନ କୁମାର ସାହୁଙ୍କ ମତରେ, ବର୍ତ୍ତମାନର ନୃସିଂହ ମନ୍ଦିର ହେଉଛି ସମ୍ଭବତଃ ଦ୍ୱିତୀୟ ଯଯାତି ମହାଶିବ ଗୁପ୍ତ(ଖ୍ରୀ. ୧୦୨୩-୧୦୪୦) ନିର୍ମାଣ କରିଥିବା ପୁରୁଷୋତ୍ତମ-ନୃସିଂହ ମନ୍ଦିର । ପରବର୍ତ୍ତୀ କାଳରେ ନୃସିଂହ ମନ୍ଦିରର ସଂସ୍କାର ସାଧନ କରାଯାଇଛି ଏବଂ ତାହାର କେତେକ ଭଗ୍ନାଂଶ ମାର୍କଣ୍ଡେଶ୍ୱର ମନ୍ଦିରର ସଂସ୍କାର ସମୟରେ ବ୍ୟବହାର କରାଯାଇଛି । ପୁରୁଷୋତ୍ତମଙ୍କ ମନ୍ଦିର (ବଡ଼ଦେଉଳ) ଚୋଡ଼ଗଙ୍ଗ ଦେବଙ୍କ ଦ୍ୱାରା ଆଂଶିକ ଭାବେ ନିର୍ମିତ ହୋଇଥିବା ଏବଂ ପରେ ତାହା ଅନଙ୍ଗଭୀମ ଦେବଙ୍କ ଦ୍ୱାରା ପରିସମାପ୍ତ ହେଲା ବୋଲି ଯେଉଁ ଅଭିମତ ପ୍ରକାଶ ପାଏ ତାହା ନିଶ୍ଚିତ ରୂପେ ଭ୍ରମାତ୍ମକ ('ପୁରୁଷୋତ୍ତମ ଉପାସନା' ପ୍ରବନ୍ଧ) ।

ଗବେଷକ ରବି ରାୟ ୧୯୯୩ ଖ୍ରୀଷ୍ଟାବ୍ଦରେ ଚୌଦ୍ୱାର ଅଞ୍ଚଳରୁ ଏକ ତାମ୍ରଲେଖ ଆବିଷ୍କାର କରିଥିଲେ । ଏହି ତାମ୍ରଲେଖ ଚୋଡ଼ଗଙ୍ଗ ଦେବଙ୍କ ପୁତ୍ର କାମାର୍ଣ୍ଣବ ଦେବଙ୍କ ଦ୍ୱାରା ପ୍ରଦତ୍ତ । ଏହାକୁ ଭିତ୍ତି କରି ଗବେଷକ ରାୟ ଲେଖିଛନ୍ତି ଯେ ବର୍ତ୍ତମାନର ପୁରୀ ଶ୍ରୀଜଗନ୍ନାଥ ମନ୍ଦିରର ନିର୍ମାତା ଚୋଡ଼ଗଙ୍ଗଦେବ ନ ହୋଇ ପାରନ୍ତି । ଚୋଡ଼ଗଙ୍ଗଦେବଙ୍କ ଉତ୍କଳ ବିଜୟର ବହୁ ପୂର୍ବରୁ ଏହି ଶ୍ରୀଜଗନ୍ନାଥ ମନ୍ଦିର ବିଦ୍ୟମାନ ଥିଲା । କିନ୍ତୁ ଐତିହାସିକ କୈଳାସ ଚନ୍ଦ୍ର ଦାଶ ତାମ୍ରଲେଖରେ ପ୍ରଦତ୍ତ ତଥ୍ୟ ଯଥେଷ୍ଟ ନୁହେଁ ଏବଂ ଗ୍ରହଣୀୟ ନୁହେଁ ବୋଲି ଲେଖିଛନ୍ତି ।

ପୁରୀ ଶ୍ରୀଜଗନ୍ନାଥ ମନ୍ଦିର (ଶ୍ରୀମନ୍ଦିର) ଚୋଡ଼ଗଙ୍ଗ ଦେବଙ୍କ ସମୟରେ ନିର୍ମିତ ହୋଇଥିଲା ବୋଲି ବହୁ ବିଶିଷ୍ଟ ଐତିହାସିକ ତଥା ଗବେଷକ ମତ ଦେଇଛନ୍ତି । ଏହି ମନ୍ଦିରର ଚାରିଟି ଭାଗ ରହିଛି ଯଥା- ବିମାନ, ମୁଖଶାଳା, ନାଟମନ୍ଦିର ଓ ଭୋଗମଣ୍ଡପ । ବିମାନ (ଗର୍ଭଗୃହ) ଓ ମୁଖଶାଳା

ହିଁ ଚୋଡ଼ଗଙ୍ଗଦେବ ନିର୍ମାଣ କରାଇଥିଲେ । ନାଟମନ୍ଦିର ଏବେ ସାଧାରଣତଃ ଜଗମୋହନ ନାମରେ ପରିଚିତ । ନାଟ ମନ୍ଦିର (ଜଗମୋହନ) ଓ ଭୋଗମଣ୍ଡପ ଯଥାକ୍ରମେ ରାଜା ପୁରୁଷୋତ୍ତମ ଦେବ (ଖ୍ରୀଷ୍ଟାବ୍ଦ ୧୪୬୮-୧୪୯୭) ଏବଂ ରାଜା ପ୍ରତାପରୁଦ୍ର ଦେବ (ଖ୍ରୀଷ୍ଟାବ୍ଦ ୧୪୯୭-୧୫୩୩)ଙ୍କ ସମୟରେ ନିର୍ମାଣ କରାଯାଇଥିବା କଥା କୁହାଯାଇଛି । କିନ୍ତୁ 'ମାଦଳା ପାଞ୍ଜି'ରେ ଉଲ୍ଲେଖ ଅଛି ଯେ, ପୁରୁଷୋତ୍ତମ ଦେବ ତାଙ୍କର ୭ମ ଅଙ୍କରେ ଭୋଗମଣ୍ଡପ ତୋଳାଇଲେ । ସେ ମଧ୍ୟ ନାଟମନ୍ଦିର ନିର୍ମାଣ କରିଥିବେ । ଏହି ରାଜା ଶ୍ରୀମନ୍ଦିରର ଭିତର ବେଢ଼ା (କୁରୁମ ବେଢ଼ା) ଗଢ଼ାଇଥିଲେ । ରାଜା କପିଳେନ୍ଦ୍ର ଦେବଙ୍କ ସମୟ(ଖ୍ରୀ. ୧୪୩୫-୧୪୬୮)ରେ ୧୫ ଅଙ୍କରେ ବାହାର ବେଢ଼ା ଗଢାଯାଇଥିଲା ବୋଲି 'ମାଦଳା ପାଞ୍ଜି'ରେ ଉଲ୍ଲେଖ ଅଛି ।

ପୁରାଣ ଓ କିମ୍ବଦନ୍ତୀ ଅନୁସାରେ ମାଳବର ରାଜା ଇନ୍ଦ୍ରଦ୍ୟୁମ୍ନ ସର୍ବପ୍ରଥମେ ପୁରୁଷୋତ୍ତମ-ଜଗନ୍ନାଥଙ୍କ ମନ୍ଦିର ନିର୍ମାଣ କରିଥିଲେ । କିନ୍ତୁ ରାଜା ଇନ୍ଦ୍ରଦ୍ୟୁମ୍ନଙ୍କ ସପକ୍ଷରେ ଐତିହାସିକ ପ୍ରମାଣ ନାହିଁ ।



**ଶ୍ରୀ**ମନ୍ଦିରର ଅଧିଷ୍ଠାତା ଦେବଦେବୀ ହେଉଛନ୍ତି- ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର ଓ ଦେବୀ ସୁଭଦ୍ରା । ଏହି ତିନି ଦିଅଁ ତ୍ରିମୂର୍ତ୍ତି ନାମରେ ପରିଚିତ । ଏହି ତ୍ରିମୂର୍ତ୍ତିଙ୍କ ସହିତ ସୁଦର୍ଶନ ଠାକୁରଙ୍କୁ ମିଶାଇ ଚତୁର୍ଦ୍ଧାମୂର୍ତ୍ତି କୁହାଯାଏ । ରତ୍ନବେଦୀ ବା ରତ୍ନ ସିଂହାସନ ଉପରେ ଚତୁର୍ଦ୍ଧାମୂର୍ତ୍ତିଙ୍କ ସହିତ ଆଉ ତିନିଟି କ୍ଷୁଦ୍ରକାୟ ମୂର୍ତ୍ତି ବିରାଜମାନ କରିଛନ୍ତି । ସେମାନେ ହେଲେ- ଭୂଦେବୀ (ବିଶ୍ୱଧାତ୍ରୀ), ଶ୍ରୀଦେବୀ (ଲକ୍ଷ୍ମୀ) ଏବଂ ନୀଳମାଧବ । ଶ୍ରୀଦେବୀ ଓ ଭୂଦେବୀ ଯଥାକ୍ରମେ ସ୍ୱର୍ଣ୍ଣ ଓ ରୌପ୍ୟ ବିଗ୍ରହ ଓ ଜଗନ୍ନାଥ ମହାପ୍ରଭୁଙ୍କ ବାମ ଓ ଦକ୍ଷିଣ ପାର୍ଶ୍ୱରେ ବିରାଜିତ । ନୀଳମାଧବ ମଧ୍ୟ ବାମ ପାର୍ଶ୍ୱରେ ବିରାଜିତ । ଶ୍ରୀଦେବୀ ଓ ଭୂଦେବୀଙ୍କୁ ଛାଡ଼ିଦେଲେ ଅନ୍ୟ ଚାରିମୂର୍ତ୍ତି ବା ଚତୁର୍ଦ୍ଧାମୂର୍ତ୍ତି ଓ ନୀଳମାଧବ ହେଉଛନ୍ତି ଦାରୁମୂର୍ତ୍ତି । ଏହି ସମସ୍ତ ମୂର୍ତ୍ତିଙ୍କୁ ସପ୍ତମୂର୍ତ୍ତି ବା 'ସପ୍ତାଭରଣ' କୁହାଯାଏ ।

ନୀଳମାଧବଙ୍କୁ 'ମାଧବ' ଓ 'ଶ୍ରୀବାଳପୁରୁଷୋତ୍ତମ ଦେବ' ମଧ୍ୟ କୁହାଯାଏ । ଶ୍ରୀଜଗନ୍ନାଥ ମନ୍ଦିରର ସ୍ୱତ୍ୱଲିପି ବା ରେକର୍ଡ-ଅଫ୍-ରାଇଟସ୍‌ରେ ଏପରି ଉଲ୍ଲେଖ ଅଛି [୧] । ବିଶ୍ୱଧାତ୍ରୀଙ୍କୁ ସରସ୍ୱତୀ କୁହାଯାଇଛି । ସ୍ୱତ୍ୱଲିପିରେ ରତ୍ନବେଦୀ (ପ୍ଲଟ୍ ନମ୍ବର-୧) ସମ୍ପର୍କରେ ଉଲ୍ଲେଖ ଅଛି- ''ଏହି ବେଦୀ ଉପରେ ଶ୍ରୀଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ଦେବୀ ବିରାଜମାନ । ଶ୍ରୀଜଗନ୍ନାଥଙ୍କ ବାମରେ ଲକ୍ଷ୍ମୀ, ସୁଦର୍ଶନ, ନୀଳମାଧବ ଓ ଦକ୍ଷିଣରେ ସରସ୍ୱତୀ ଦେବୀ ବିଦ୍ୟମାନ ।'' ପ୍ରକୃତରେ 'ସରସ୍ୱତୀ' ନହୋଇ ଭୂଦେବୀ ହେବ । ନୀଳାଦ୍ରି ମହୋଦୟ ଓ ବାମଦେବସଂହିତା ଗ୍ରନ୍ଥରେ ଧରାଦେବୀ ବା ଭୂଦେବୀ କୁହାଯାଇଛି । ସ୍କନ୍ଦ ପୁରାଣରେ ମଧ୍ୟ ଭୂଦେବୀ ବୋଲି ସୂଚିତ । ତାଙ୍କର ଧ୍ୟାନ ଓ ପୂଜା, ସରସ୍ୱତୀଙ୍କ ଧ୍ୟାନ ଓ ପୂଜାଠାରୁ ଭିନ୍ନ । ସେ ଧରାଦେବୀ (ଭୂଦେବୀ) ବା ବିଶ୍ୱଧାତ୍ରୀ ଭାବରେ ବିଶ୍ୱଧାତ୍ରୀ ମନ୍ତ୍ରରେ ପୂଜା ପାଆନ୍ତି ।

ରତ୍ନବେଦୀର ଚତୁର୍ପାର୍ଶ୍ୱ ସ୍ଥାନ 'ଭିତର ପୋଖରିଆ' (ବା ପୋଖରିଆ) ନାମରେ ନାମିତ । ଏହି ଅଞ୍ଚଳ ଶ୍ରୀମନ୍ଦିରର ପ୍ଲଟ୍ ନମ୍ବର-୨ ବୋଲି ସ୍ୱତ୍ୱଲିପିରେ ଲେଖାଅଛି ।

ବିଶ୍ୱାସ କରାଯାଏ ଯେ, ଶ୍ରୀଜଗନ୍ନାଥ କିମ୍ବା ଚତୁର୍ଦ୍ଧାମୂର୍ତ୍ତିଙ୍କ ସଂସ୍ଥାପନ ପୂର୍ବରୁ କେବଳ ନୀଳମାଧବ ହିଁ ଅଧିଷ୍ଠାତା ଦେବତା ଥିବାରୁ ଏବେ ମଧ୍ୟ ନୀଳମାଧବ ମୂର୍ତ୍ତି ରତ୍ନବେଦୀରେ ସ୍ଥାନ ପାଉଛନ୍ତି । (ନୀଳ) ମାଧବ, ଜଗନ୍ନାଥଙ୍କର ଏକ କ୍ଷୁଦ୍ର ଆକୃତିର ମୂର୍ତ୍ତି । ନୀଳାଦ୍ରି ମହୋଦୟରେ ଲେଖାଅଛି- ''ପ୍ରଭୋଃ ସ୍ୱରୂପମ୍ ଭଜନ୍ନାଧବୋ ହ୍ରସ୍ୱରୂପକଃ'' । (ଅର୍ଥାତ୍, ମାଧବ ଖୁବ୍ କ୍ଷୁଦ୍ରାକାର ହୋଇ ପ୍ରଭୁଙ୍କର ସ୍ୱରୂପ ଗ୍ରହଣ କରିଛନ୍ତି) । ସ୍କନ୍ଦ ପୁରାଣରୁ ଜଣାଯାଏ ଯେ ନୀଳଗିରି ଅର୍ଥାତ୍

୧. Record of Rights - prepared under the Puri Shri Jagannath Temple (Administration) Act, 1952

ପୁରୁଷୋତ୍ତମ କ୍ଷେତ୍ର ବା ପ୍ରାଚୀନ ପୁରୀରେ ନୀଳମାଧବ ଓ ନୃସିଂହ ଠାକୁର ପୂଜା ପାଉଥିଲେ । ନୃସିଂହ ଠାକୁର ଏବେ ଶ୍ରୀମନ୍ଦିରର ଭିତର ବେଢ଼ାରେ ମୁକ୍ତିମଣ୍ଡପ ସଂଲଗ୍ନ ଏକ ସ୍ୱତନ୍ତ୍ର ମନ୍ଦିରରେ ବିରାଜିତ । ଏହି ମନ୍ଦିର ଏବର ଶ୍ରୀଜଗନ୍ନାଥ ମନ୍ଦିରଠାରୁ ପ୍ରାଚୀନ । ସ୍କନ୍ଦ ପୁରାଣ ଅନୁସାରେ ଶବର ରାଜା ବିଶ୍ୱାବସୁଙ୍କଦ୍ୱାରା ପୂଜିତ ନୀଳମାଧବ ବିଗ୍ରହ ଥିଲେ ଇନ୍ଦ୍ରନୀଳମଣି ପ୍ରସ୍ତରନିର୍ମିତ ଓ ଶଙ୍ଖ, ଚକ୍ର, ଗଦା, ପଦ୍ମଧାରୀ ଚତୁର୍ଭୁଜ । ବର୍ତ୍ତମାନ ଶ୍ରୀମନ୍ଦିରର ରତ୍ନବେଦୀସ୍ଥିତ ମାଧବ ଅବିକଳ ଶ୍ରୀଜଗନ୍ନାଥଙ୍କ ଆକୃତିର କ୍ଷୁଦ୍ରମୂର୍ତ୍ତି । ତେଣୁ ସେ ବାଳ ପୁରୁଷୋତ୍ତମ । ଶ୍ରୀଜଗନ୍ନାଥଙ୍କ ଅନ୍ୟ ନାମ ପୁରୁଷୋତ୍ତମ । ଶ୍ରୀବଳଭଦ୍ର ଓ ଦେବୀ ସୁଭଦ୍ରାଙ୍କର କ୍ଷୁଦ୍ରମୂର୍ତ୍ତି ରତ୍ନବେଦୀ ଉପରେ ସ୍ଥାପନା କରାଯାଇ ନଥିବାବେଳେ ପ୍ରଭୁ ଜଗନ୍ନାଥଙ୍କର ଏପରି କ୍ଷୁଦ୍ରମୂର୍ତ୍ତି ସ୍ଥାପନାର ତାତ୍ତ୍ୱିକ ଅର୍ଥ ନିଶ୍ଚୟ ଅଛି । ରତ୍ନବେଦୀସ୍ଥ ଦେବଦେବୀମାନଙ୍କ ମଧ୍ୟରୁ କେବଳ ନୀଳମାଧବଙ୍କର ପୂଜା ନାହିଁ । ଅନ୍ୟ ଛଅଟି ବିଗ୍ରହଙ୍କର ପୂଜା କରାଯାଏ । ଜଣେ ପୂଜାପଣ୍ଡା ଶ୍ରୀବଳଭଦ୍ରଙ୍କୁ, ଜଣେ ଦେବୀ ସୁଭଦ୍ରାଙ୍କୁ ଓ ଆଉ ଜଣେ ଶ୍ରୀଜଗନ୍ନାଥଙ୍କୁ ପୂଜା କରନ୍ତି । ନୀଳମାଧବଙ୍କର ସ୍ୱତନ୍ତ୍ର ପୂଜା ନହେବାର କାରଣ ହେଲା, ସେ ଓ ଶ୍ରୀଜଗନ୍ନାଥ ସର୍ବସମ (identical) ବୋଲି ବିବେଚନା କରାଯାଏ । ଶ୍ରୀମନ୍ଦିରର ଦୁଇଟି ବିଶେଷ ନୀତି, ମା' ବିମଳାଙ୍କ ଷୋଡ଼ଶ ପୂଜାରେ ଦଶହରାରେ ଓ କାର୍ତ୍ତିକ ପୂର୍ଣ୍ଣିମାରେ ମାଧବ ସ୍ୱୟଂ ଜଗନ୍ନାଥଙ୍କ ସ୍ୱରୂପ ଅଂଶଗ୍ରହଣ କରନ୍ତି । ରଥଯାତ୍ରାରେ ମାଧବ ଯାଆନ୍ତି ନାହିଁ; ଶ୍ରୀମନ୍ଦିରରେ ରହିଥାନ୍ତି ଶ୍ରୀଜଗନ୍ନାଥଙ୍କ ସତ୍ତା ଭାବରେ ।

ଶ୍ରୀଜଗନ୍ନାଥ ତତ୍ତ୍ୱ ବୁଝିବା ଓ ବୁଝାଇବା ସହଜ ବା ସମ୍ଭବ ନୁହେଁ । ଏ ସମ୍ପର୍କରେ ଯାହା କହିଲେ ବି ସଂପୂର୍ଣ୍ଣ ଠିକ୍ ହେବନାହିଁ । ପୁରାଣ, କିମ୍ବଦନ୍ତୀ ଓ ଇତିହାସ ତାଙ୍କର ରହସ୍ୟକୁ ଭେଦ କରିପାରି ନାହାନ୍ତି । ତାଙ୍କର ତତ୍ତ୍ୱ ଜାଣିବାକୁ ଅଧ୍ୟୟନ କଲେ ସେ ଅଧିକ ରହସ୍ୟମୟ ମନେହୁଅନ୍ତି । 'ନେତି', 'ନେତି' (not this, not this) ହେଉଛି ଦାରୁବ୍ରହ୍ମରୂପୀ ପରଂବ୍ରହ୍ମ ଜଗନ୍ନାଥଙ୍କ ତତ୍ତ୍ୱର ସମୁଚିତ ବ୍ୟାଖ୍ୟାନ ।

Not this, not this, is an appropriate description of Brahman in as much as no better description can be given (Bruhadaranyaka Upanishad, 2.6.6)

ଶ୍ରୀଜଗନ୍ନାଥ ପ୍ରଥମେ ନୀଳମାଧବ ନାମରେ ବିଶ୍ୱାବସୁ ନାମକ ଜନୈକ ଶବର ରାଜାଙ୍କ ଦ୍ୱାରା ଗୋପନରେ ଅରଣ୍ୟରେ ପୂଜିତ ହେଉଥିଲେ ବୋଲି କେତେକ ପୁରାଣରେ କୁହାଯାଇଛି । ସେ ଥିଲେ ମୂଳତଃ ଆଦିବାସୀ (ଶବର) ଦେବତା । ଜଗନ୍ନାଥ ସଂସ୍କୃତିର ଜଣେ ପ୍ରସିଦ୍ଧ ଗବେଷକ ଡକ୍ଟର ବେଣୀମାଧବ ପାଢ଼ୀ ଲେଖିଛନ୍ତି; ''ଜଗନ୍ନାଥ ଶବ୍ଦଟି ମଧ୍ୟ ଯେପରି ପାଲି-ମୂଳ ନୁହେଁ ସେହିପରି ସଂସ୍କୃତ-ମୂଳ ବି ନୁହେଁ; ବରଂ ଏହାକୁ ଶାବର-ମୂଳ କହିବାରେ ଅଧିକ ଯୁକ୍ତି ରହିଛି । ମନେହୁଏ, ଏହା ଶାବର ଭାଷାରେ ବ୍ୟବହୃତ 'ଜଗନ୍ତ' ଶବ୍ଦର ସଂସ୍କୃତ ରୂପ । 'ଜଗନ୍ତ' ହେଉଛନ୍ତି ଶବର ଦେବତା । ଶାବର ବା ସୌରା ଭାଷାରେ 'କିତୁଙ୍ଗ' କହିଲେ 'ଦେବତା' । 'କିତୁଙ୍ଗ' ବୋଲି କୌଣସି ନିର୍ଦ୍ଦିଷ୍ଟ ଦେବତାଙ୍କ ନାମ ନାହିଁ । ଦେବତା ଶବ୍ଦ ଯେପରି ସାଧାରଣ ଅର୍ଥ ସୂଚକ 'କିତୁଙ୍ଗ' ମଧ୍ୟ ସେହିପରି ସାଧାରଣ ଅର୍ଥବାଚୀ । .....କିତୁଙ୍ଗ ସମସ୍ତ ଶବର ଜାତିର

ମୂଳ ଦେବତା ଓ ସେ ସମସ୍ତ ଶବର ଗୋଷ୍ଠୀ ସୃଷ୍ଟି କରିଛନ୍ତି ବୋଲି ସୌରାମାନେ କହନ୍ତି । ଯେଉଁ ବୃକ୍ଷକୁ ସେମାନେ 'ଜଗନ୍ତ' (କିତୁଙ୍ଗଙ୍କର ଏକ ବିଶେଷ ନାମ) ବୋଲି କହନ୍ତି, ସେହି ବୃକ୍ଷକୁ ଏପରିକି ସେ ଥିବା ଉଦ୍ୟାନ ଭିତର କୌଣସି ବୃକ୍ଷକୁ ସେମାନେ ଛେଦନ କରନ୍ତି ନାହିଁ । ଏଥିରୁ ମନେହୁଏ, ଯେଉଁ ବୃକ୍ଷ ବା ଦାରୁକୁ ସେମାନେ 'ଜଗନ୍ତ' ଆଖ୍ୟାରେ ପୂଜା କରୁଥିଲେ, ତାହା ପରବର୍ତ୍ତୀ 'ଜଗନ୍ନାଥ' ଶବ୍ଦର ମୂଳ ହୋଇଥାଇପାରେ [୨] ।'' ଜଗନ୍ତ ବ୍ୟତୀତ ଶବରମାନେ ସେମାନଙ୍କର ପ୍ରସିଦ୍ଧ ଦେବତାଙ୍କୁ 'ଜଗାବୋଇ' ବୋଲି ଶ୍ରଦ୍ଧାରେ ଡାକିଥାନ୍ତି । 'ବୋଇ' ଶବ୍ଦର ଅର୍ଥ ଦେବତା । ଶବରମାନଙ୍କ ମଧ୍ୟରେ ଜଗନ୍ନାଥଙ୍କର ଆଉ ଏକ ନାମ ଥିଲା 'ଜଗାନାଏଲୋ' । ଅଷ୍ଟ୍ରିକ୍ (ଆଦିବାସୀ) ଗୋଷ୍ଠୀର ସଙ୍କେତବାଦ (Totemism)ରୁ ଜଣାଯାଏ ଯେ ସେମାନେ ମୁଖ୍ୟତଃ ବୃକ୍ଷକୁ ଦେବତା ରୂପେ ପୂଜା କରୁଥିଲେ । ପ୍ରଥମେ ଭାରତରେ ପ୍ରବେଶ କରିଥିବା ଅଷ୍ଟ୍ରିକ୍ ଗୋଷ୍ଠୀ ନିଗ୍ରିଟୋମାନଙ୍କ ମଧ୍ୟରେ ପିପ୍‌ପଳ ବୃକ୍ଷ ଉପାସନା ପ୍ରଚଳିତ ଥିଲା ।

ଋଗ୍‌ବେଦରେ ''ଅଦୋ ଯଦ୍ଦାରୁ ପ୍ଲବତେ ସିନ୍ଧୋଃ ପାରେ ଅପୌରୁଷମ୍''ରେ 'ଦାରୁ'କୁ 'ଅପୌରୁଷମ୍' କୁହାଯିବାଦ୍ୱାରା ଏହାକୁ ଅନାର୍ଯ୍ୟ ଦେବତା ବା ଶବର ଦେବତା ଭାବରେ ଗ୍ରହଣ କରାଯାଇଛି ବୋଲି ପଣ୍ଡିତ ନୀଳକଣ୍ଠ ଦାସ ମନେ କରନ୍ତି । ଏଥିରୁ ସମୁଦ୍ରତୀରବର୍ତ୍ତୀ ଆଦିବାସୀଙ୍କ ଦାରୁଦେବତା ପ୍ରତି ବୈଦିକ ଋଷିଙ୍କର ଘୃଣାଭାବ ସୂଚିତ ହେଉଥିବା କୁହାଯାଇଛି । ଗବେଷକ କେଦାରନାଥ ମହାପାତ୍ର, ଡକ୍ଟର ବଂଶୀଧର ମହାନ୍ତି, ଡକ୍ଟର ନବୀନ କୁମାର ସାହୁ, ଗୁରୁଦାସ ସରକାର ପ୍ରମୁଖ ଜଗନ୍ନାଥ ସଂସ୍କୃତିରେ ଶବର ସଂସ୍କୃତିର ପ୍ରଭାବ ସ୍ୱୀକାର କରିଛନ୍ତି । ପ୍ରଭାତ ମୁଖାର୍ଜୀ ଜଗନ୍ନାଥଙ୍କୁ ବ୍ରାହ୍ମଣ୍ୟ ଦେବତା ରୂପେ ପ୍ରମାଣ କରିବାକୁ ପ୍ରୟାସ କରିଥିଲେ ମଧ୍ୟ ପ୍ରାଚୀନ କାଳରୁ ଶବରକର୍ତ୍ତୃକ ଦାରୁଦେବତାଙ୍କର ଉପାସନା ପରମ୍ପରାକୁ ଅସ୍ୱୀକାର କରିପାରି ନାହାନ୍ତି । ଡକ୍ଟର ହରେକୃଷ୍ଣ ମହତାବ ଓ ଐତିହାସିକ ମନମୋହନ ଗାଙ୍ଗୁଲି ଜଗନ୍ନାଥଙ୍କୁ ପ୍ରାକ୍ ବୌଦ୍ଧକାଳୀନ ଦେବତା କହି ଜଗନ୍ନାଥଙ୍କ ସହିତ ଶାବର ସଂସ୍କୃତିର ସମ୍ପର୍କ ସମ୍ବନ୍ଧରେ ସଚେତନ ରହିଛନ୍ତି [୩] । ପ୍ରଫେସର ମହାନ୍ତି କହିଛନ୍ତି ଯେ ଓଡ଼ିଆ ସଂସ୍କୃତିର ପରିଚୟରେ ଆଦିବାସୀ ସଂସ୍କୃତି ହିଁ ଆମ୍ଭମାନଙ୍କର ପ୍ରଥମ ଓ ପ୍ରଧାନ ପଥ ପ୍ରଦର୍ଶକ ଏବଂ ଜଗନ୍ନାଥ ଧର୍ମ ମୁଖ୍ୟତଃ ଓ ପ୍ରଥମତଃ ଆଦିବାସୀ ଧର୍ମ ।

ବିଦ୍ୱାନ ଗବେଷକ ପ୍ରଫେସର ଗୋପୀନାଥ ମହାପାତ୍ର କହନ୍ତି ଯେ, ଜଗନ୍ନାଥଙ୍କ ବିଷ୍ଣୁତ୍ୱକୁ ସ୍ୱୀକାର କରି ମଧ୍ୟ ଅନେକ ଗବେଷକ ଭ୍ରମ ମରୀଚିକାରେ ପଡ଼ି ଜଗନ୍ନାଥଙ୍କୁ ଶବର ଦେବତା ବୋଲି କହିବାକୁ ଚେଷ୍ଟା କରିଛନ୍ତି । ବିଶ୍ୱାବସୁଙ୍କର ନୀଳମାଧବ ଉପାସନା ଓ ଜଗନ୍ନାଥଙ୍କ ରୂପ ସେମାନଙ୍କୁ ଏହି ଭ୍ରାନ୍ତିରେ ପକାଇଛି । କେହି ଭାବି ନାହାନ୍ତି ଯେ, ବିଶ୍ୱାବସୁ କ'ଣ ଏକ ଶବର

---

**୨. ଦାରୁ ଦେବତା- ବେଣୀମାଧବ ପାଢ଼ୀ । କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର, ୩ୟ ସଂସ୍କରଣ, ୧୯୮୫**

**୩. ଓଡ଼ିଆ ସାହିତ୍ୟରେ ଶ୍ରୀଜଗନ୍ନାଥ ଚେତନା - ପ୍ରଫେସର ବାସୁଦେବ ସାହୁ, କୋଣାର୍କ ପବ୍ଲିଶର୍ସ, କଟକ-୨, ପ୍ରଥମ ସଂସ୍କରଣ, ୧୯୯୧**

ନାମ ? ପୁଣି ସେ ଯେଉଁ ନୀଳମାଧବଙ୍କୁ ପୂଜା କରୁଥିଲେ, ତାହା କ'ଣ ସତ୍ୟ ? ଯଦି ସତ୍ୟ, ତେବେ ପଥରନିର୍ମିତ ଚତୁର୍ଭୁଜ ବିଷ୍ଣୁ ପ୍ରତିମା କ'ଣ ଶବରଦ୍ୱାରା ନିର୍ମିତ ? କେହି ହେଲେ ଚିନ୍ତା କରିନାହାନ୍ତି ଯେ, ନୀଳମାଧବ ଗୋଟିଏ ହିନ୍ଦୁ ପ୍ରତିମା ଓ କୌଣସି କାରଣରୁ ଏହା ଶବର ହାତରେ ପଡ଼ିଥିବ ଆଉ ଏଡ଼େ ସୁନ୍ଦର ପ୍ରତିମା ପାଇ ସେ ତାକୁ ଗୋପନରେ ପୂଜା କରୁଥିବ । ପରେ ହୁଏତ ଜଣେ ହିନ୍ଦୁରାଜା (ଇନ୍ଦ୍ରଦ୍ୟୁମ୍ନ) ପ୍ରତିମାକୁ ଉଦ୍ଧାର କରିବାକୁ ଚେଷ୍ଟା କରିଥିବେ । ଫଳରେ ସେମାନେ ତାଙ୍କୁ ଲୁଚାଇ ଦେଇ ଅନ୍ତର୍ଦ୍ଧାନ ହେବାକଥା ପ୍ରଚାର କରିଥିବେ [୪] ।

ସ୍କନ୍ଦ ପୁରାଣ (ଉତ୍କଳ ଖଣ୍ଡ)ରୁ ସୂଚନା ମିଳେ ଯେ କେବଳ ବିଶ୍ୱାବସୁ ନୁହେଁ, ସ୍ୱର୍ଗରୁ ଦେବଗଣ ଆସି ନୀଳମାଧବଙ୍କୁ ଅପୂର୍ବ ଦ୍ରବ୍ୟ ନୈବେଦ୍ୟ ପ୍ରଦାନପୂର୍ବକ ପୂଜାର୍ଚ୍ଚନା କରୁଥିଲେ । ଏଣୁ ଏହି ଚତୁର୍ଭୁଜ ବିଷ୍ଣୁମୂର୍ତ୍ତିଙ୍କୁ କେବଳ ଶାବର ଦେବତା କହିବା ଠିକ୍ ନୁହେଁ ।

୧୯୭୦ ମସିହାରେ ଜର୍ମାନୀର ଦୁଇଟି ବିଶ୍ୱବିଦ୍ୟାଳୟ ଆନୁକୂଲ୍ୟରେ ଜଗନ୍ନାଥ ତଥା ଓଡ଼ିଶା ସଂସ୍କୃତି ଉପରେ ଗବେଷଣା ଲାଗି ଏକ ପ୍ରକଳ୍ପ (Orissa Research Project) ଗଢ଼ା ଯାଇଥିଲା । ଏଥିରେ ହରମାନ୍ କୁଲ୍‌କେ (H.Kulke), ଏ.ଏସ୍‌ମାନ୍ (A. Eschmann), ଷ୍ଟିଟେନ୍‌କ୍ରୋନ୍ (H. Stietencron), ଭାରତର ସଂସ୍କୃତ ଅଧ୍ୟାପକ ଗୟାଚରଣ ତ୍ରିପାଠୀ ଏବଂ ଓଡ଼ିଶାର କେତେଜଣ ବିଦ୍ୱାନ ଗବେଷକ କାର୍ଯ୍ୟ କରିଥିଲେ । ଉକ୍ତ ଗବେଷଣା ପ୍ରକଳ୍ପ ତରଫରୁ ଏକ ପୁସ୍ତକ ୧୯୭୮ ମସିହାରେ ପ୍ରକାଶିତ ହୋଇଥିଲା [୫] । ଏହି ପୁସ୍ତକରେ ଶ୍ରୀଜଗନ୍ନାଥ ତତ୍ତ୍ୱର ସ୍ପଷ୍ଟ ଚିତ୍ର ନାହିଁ । ସେମାନଙ୍କର ମୋଟାମୋଟି ବକ୍ତବ୍ୟ ହେଲା, ପୁରୀଠାରେ ତ୍ରିମୂର୍ତ୍ତି- ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ଖ୍ରୀଷ୍ଟାବ୍ଦ ୧୨୩୦ରେ ରାଜା ଅନଙ୍ଗଭୀମ ଦେବଙ୍କ ଦ୍ୱାରା ପ୍ରତିଷ୍ଠିତ ହେଲେ । ଏହା ପୂର୍ବରୁ ଏହି ତ୍ରିମୂର୍ତ୍ତି ଦାରୁବିଗ୍ରହ ନଥିଲେ । ପଥର ମୂର୍ତ୍ତି ଲକ୍ଷ୍ମୀ-ନୃସିଂହ ପୂଜା ପାଉଥିଲେ । ତତ୍‌ପୂର୍ବରୁ ଏ ଦେଶରେ ସ୍ତମ୍ଭେଶ୍ୱରୀ ପୂଜାର ପ୍ରଚଳନ ଥିଲା । ଏହି ପୂଜାର ପ୍ରଭାବରେ ସୁଭଦ୍ରା ତଥା ତ୍ରିମୂର୍ତ୍ତି ଗଠିତ ହେଲେ । ଅନଙ୍ଗଭୀମଦେବ (ତୃୟ)ଙ୍କ ସମୟ (ଖ୍ରୀ. ୧୨୧୧-୧୨୩୮)ରେ ଜଗନ୍ନାଥଙ୍କ ସହିତ ବଳଭଦ୍ର ମୂର୍ତ୍ତି ଯୁକ୍ତ ହେଲେ । ସୁଦର୍ଶନ ହେଉଛନ୍ତି ନୃସିଂହଙ୍କ ସ୍ୱରୂପ । ଜଗନ୍ନାଥ ହେଉଛନ୍ତି, ନୃସିଂହଙ୍କ ଏକ ରୂପାନ୍ତର । ଏ ସମସ୍ତ ବିଗ୍ରହଙ୍କ ପ୍ରତିଷ୍ଠା ସେହି ରାଜା ଅନଙ୍ଗଭୀମ ଦେବଙ୍କ ରାଜତ୍ୱ କାଳରେ ହୋଇଛି । ଏ ପୁସ୍ତକରେ ଏଣେ କୁହାଯାଇଛି, ସୁଦର୍ଶନ ଜଗନ୍ନାଥଙ୍କ ମୂଳରୂପ; ତେଣେ କୁହାଯାଇଛି, ନୃସିଂହ ଜଗନ୍ନାଥଙ୍କ ମୂଳରୂପ । ଆହୁରି କୁହାଯାଇଛି ଯେ, ଜଗନ୍ନାଥ ହେଉଛନ୍ତି ମୂଳତଃ ଆଦିବାସୀ ଦେବତା । ଦଶମ ଶତକ ପୂର୍ବରୁ ଜଗନ୍ନାଥଙ୍କ ସ୍ଥିତି ସମ୍ପର୍କରେ ତଥା ସ୍ୱରୂପ ଉପରେ ଏଥିରେ ସ୍ପଷ୍ଟ ଭାବରେ ଆଲୋକପାତ ହୋଇପାରି ନାହିଁ । ସବୁକିଛି ଅନୁମାନ ଉପରେ ଆଧାରିତ [୬] ।

---

୪. **ଶ୍ରୀଜଗନ୍ନାଥ ତତ୍ତ୍ୱ- ଡକ୍ଟର ଗୋପୀନାଥ ମହାପାତ୍ର, ନାଳନ୍ଦା, କଟକ, ପ୍ରଥମ ପ୍ରକାଶ, ୧୯୮୯**

୫. The Cult of Jagannath and the Regional Tradition of Orissa- (Ed. by A. Eschmann, H. Kulke, Manohar publications, New Delhi

୬. **ଶ୍ରୀଜଗନ୍ନାଥ ତତ୍ତ୍ୱ- ଡକ୍ଟର ଗୋପୀନାଥ ମହାପାତ୍ର**

ଡକ୍ଟର ହରେକୃଷ୍ଣ ମହତାବ ମନେ କରନ୍ତି ଯେ ଜଗନ୍ନାଥ ମୂଳରୁ ଶାବର । ତାହା ପରେ ବୌଦ୍ଧ ଦେବତା । ପୁଣି ଦଶମ ଶତାବ୍ଦୀବେଳକୁ ସେ ହେଲେ ହିନ୍ଦୁ ଦେବତା । କାରଣ, ତାଙ୍କ ମତରେ ଏତିକିବେଳେ ବୌଦ୍ଧଧର୍ମରେ ବ୍ରାହ୍ମଣ୍ୟଧର୍ମ ଅନୁପ୍ରବେଶ କରି ବୌଦ୍ଧ ଦେବତାଙ୍କୁ ହିନ୍ଦୁଦେବତା ଭାବରେ ରୂପାନ୍ତରିତ କରିଥିଲା [୭] ।

କୁହାଯାଇଛି, ନୀଳମାଧବ ପରେ ଜଗନ୍ନାଥ ନାମରେ ପୂଜିତ ହେଲେ ଓ ପ୍ରଥମରେ ଏକା ପୂଜା ପାଉଥିଲେ । ପରେ ପରେ ବଳଭଦ୍ର, ସୁଭଦ୍ରା ଓ ସୁଦର୍ଶନଙ୍କୁ ଶୈବ ଓ ଶାକ୍ତଧର୍ମର ପୁନରୁତ୍‌ଥାନ ଫଳରେ ସଂସ୍ଥାପନ କରାଯାଇଥିଲା । ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀ ପରଠାରୁ ଶକ୍ତିବାଦର ଦ୍ରୁତ ପୁନରୁତ୍ଥାନ ହୋଇଥିଲା । ତେଣୁ ଶକ୍ତି ବା ଦୁର୍ଗା ରତ୍ନବେଦୀରେ ସ୍ଥାପିତ ହେଲେ । ଦୁର୍ଗାଙ୍କୁ ମଧ୍ୟ ସୁଭଦ୍ରା/ମଙ୍ଗଳା କୁହାଯାଏ । ଭଦ୍ରା, ସୁଭଦ୍ରା (ଶ୍ରୀକୃଷ୍ଣଙ୍କ ଭଗ୍ନୀ) ଭାବରେ ପୂଜିତା ହେଲେ । ଶିବ ବା ବୀରଭଦ୍ର ମଧ୍ୟ ବଳଭଦ୍ର (ଶ୍ରୀକୃଷ୍ଣଙ୍କ ଜ୍ୟେଷ୍ଠଭ୍ରାତା) ଭାବରେ ପୂଜା ପାଇଲେ, ବୈଷ୍ଣବ ଧର୍ମର ପ୍ରାବଲ୍ୟ ପ୍ରଭାବରୁ [୮] ।

ବିଶିଷ୍ଟ ସାହିତ୍ୟିକ ସୁରେନ୍ଦ୍ର ମହାନ୍ତି ଲେଖିଛନ୍ତି ଯେ, ଏକଦା ଜଗନ୍ନାଥ କେବଳ ଶୂନ୍ୟ (void) ଭାବରେ ବୌଦ୍ଧତନ୍ତ୍ରର କର୍ମକର୍ମାଣିରେ ପୂଜା ପାଉଥିଲେ । ପରବର୍ତ୍ତୀ କାଳରେ ଶଙ୍କରାଚାର୍ଯ୍ୟଙ୍କ ଅନୁପ୍ରେରଣାରେ ରାଜା ଯଯାତିକେଶରୀଙ୍କ ସକ୍ରିୟ ସମର୍ଥନଯୋଗୁଁ ବଳଭଦ୍ର ଶିବ ଭାବରେ ଓ ସୁଭଦ୍ରା ଭୁବନେଶ୍ୱରୀ ଭାବରେ ଯୁକ୍ତ ହେଲେ ଏବଂ ତ୍ରିମୂର୍ତ୍ତି (Triad) ବିବେଚିତ ହେଲେ । ଏହି ପ୍ରକାରେ ହିନ୍ଦୁ ଆଧ୍ୟାତ୍ମିକ ସଂସ୍କୃତିର ପ୍ରମୁଖ ଉପାଦାନ- ଶୈବ, ଶାକ୍ତ ଓ ବୈଷ୍ଣବ ମତବାଦ ଏକତ୍ର ଅବସ୍ଥାନ କରିଥିଲେ; ବୈଷ୍ଣବ ମତବାଦର ସାଧାରଣ ବା କୋଠଛତ୍ର ତଳେ [୯] ।

ତନ୍ତ୍ର ଗବେଷକ ଡକ୍ଟର ସର୍ବେଶ୍ୱର ଶତପଥୀଙ୍କ ମତରେ, ବଳଭଦ୍ରଙ୍କ ମନ୍ତ୍ର "ଓଁ ନମୋ ଭଗବତେ ବାସୁଦେବାୟ" ତାନ୍ତ୍ରିକ ବୀଜମନ୍ତ୍ରକୁ କାଏମ କରୁନଥିବାରୁ ଅନୁମାନ କରାଯାଏ ଯେ ଜଗନ୍ନାଥ ଉପାସନାର ପରବର୍ତ୍ତୀ ସମୟରେ ବଳଭଦ୍ରଙ୍କୁ ସଂସ୍ଥାପନ କରାଯାଇଛି । ସୁଭଦ୍ରାଙ୍କ ବୀଜମନ୍ତ୍ର 'ହ୍ରୀଂ' ଭୁବନେଶ୍ୱରୀଙ୍କ ମନ୍ତ୍ରଠାରୁ ଭିନ୍ନ ନୁହେଁ । ମହାବିଦ୍ୟା ଦେବୀ କ୍ରମରେ ଚତୁର୍ଥ ଦେବୀ ହେଉଛନ୍ତି ଭୁବନେଶ୍ୱରୀ । ସେ ଜ୍ଞାନଶକ୍ତି ବା ସର୍ବଶକ୍ତିମାନ ବ୍ରହ୍ମ । ବିଚିତ୍ର ବିଷୟ ଯେ ସୁଭଦ୍ରା ବା ଭୁବନେଶ୍ୱରୀ ଜଗନ୍ନାଥଙ୍କ ପାଖରେ ବିରାଜିତା ଥିଲେ ବି, ଜଗନ୍ନାଥଙ୍କୁ ବଜ୍ରଯାନରେ ଭୈରବ କୁହାଯାଉଥିଲେ ବି ସୁଭଦ୍ରାଙ୍କୁ ଭୈରବୀ କୁହାଯାଉନାହିଁ; ଅଥଚ ଅନ୍ୟ ଏକ ମନ୍ଦିରରେ ବିରାଜିତା ବିମଳାଙ୍କୁ ଭୈରବୀ କୁହାଯାଉଛି । ତାନ୍ତ୍ରିକ ଧର୍ମର ଏକ ପରବର୍ତ୍ତୀ ଉପାସନାପଦ୍ଧତି

---

**୭. ତତ୍ରୈବ**

୮. Jagannath Puri - Published by Puri Shri Jagannath Temple Managing committee.

୯. Lord Jagannath - Surendra Mohanty

ହେଲା ମହାବିଦ୍ୟା ଉପାସନା । ପରିଣାମ ସ୍ୱରୂପ ସୁଭଦ୍ରା ଓ ବଳଭଦ୍ରଙ୍କ ଅବସ୍ଥାପନ ଜଗନ୍ନାଥ ଓ ବିମଳାଙ୍କ ଉପାସନାର ପରବର୍ତ୍ତୀ ସମୟରେ ହୋଇଥିଲା, ହୁଏତ ଗୌଡ଼ୀୟ ବୈଷ୍ଣବଧର୍ମର ପ୍ରଭାବରେ [୧୦] ।

ବିଶିଷ୍ଟ ଶିଳାଲେଖବିତ୍ ତଥା ଗବେଷକ ଡକ୍ଟର ସତ୍ୟନାରାୟଣ ରାଜଗୁରୁ ଲେଖିଛନ୍ତି ଯେ ଓଡ଼ିଶାର ସୋମବଂଶର ରାଜା ଯଯାତିଙ୍କ ସମୟରେ ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ପୂଜା ପାଉଥିବା ପ୍ରଧାନ ଦେବଦେବୀମାନଙ୍କୁ ଗୋଟିଏ ସ୍ଥାନରେ ପୂଜା କରାଯିବାପାଇଁ ଉଦ୍ୟମ କରାଯାଇଥିଲା । ପଶ୍ଚିମ ଓଡ଼ିଶାର ସ୍ତମ୍ଭେଶ୍ୱରୀ ବା ଏକାନଂସା ସୁଭଦ୍ରା, ତୋଷାଳି (ଉତ୍ତର ଓଡ଼ିଶା)ର ବଳଦେବ (ପ୍ରାଚୀନ ନାଗରାଜ) ଏବଂ କଳିଙ୍ଗ-କଙ୍ଗୋଦର ପୁରୁଷୋତ୍ତମ ଜଗନ୍ନାଥ ମିଳିତ ତ୍ରିକଳିଙ୍ଗ ସାମ୍ରାଜ୍ୟର ରାଷ୍ଟ୍ରଦେବତା ଭାବରେ ପୁରୀଠାରେ ପୂଜା ପାଇଲେ [୧୧] ।

## ଜୈନଧର୍ମ ଓ ଜଗନ୍ନାଥ

ଜେନେରାଲ କନିଂହାମ୍, ପ୍ରଫେସର ଉଇଲସନ୍, ଜେମସ୍ ଫର୍ଗୁସନ୍, ଡକ୍ଟର ହରେକୃଷ୍ଣ ମହତାବ ପ୍ରମୁଖ ବିଦ୍ୱାନମାନେ ଜଗନ୍ନାଥଙ୍କୁ ବୌଦ୍ଧଧର୍ମର ପ୍ରତୀକ ରୂପେ ମାନ୍ୟତା ଦେଇଥିବାବେଳେ, ପଣ୍ଡିତ ନୀଳକଣ୍ଠ ଦାସ, ପଣ୍ଡିତ ବିନାୟକ ମିଶ୍ର, କେଦାରନାଥ ମହାପାତ୍ର ତାଙ୍କୁ ଜୈନଧର୍ମର ପ୍ରତୀକ ମନେ କରନ୍ତି । ପଣ୍ଡିତ ନୀଳକଣ୍ଠ 'ଜଗନ୍ନାଥ' ଶବ୍ଦଟି ମୂଳତଃ ଜୈନଧର୍ମ ସହିତ ଜଡ଼ିତ ଓ ଏହା ଋଷଭନାଥଙ୍କ ସହିତ ସମାନ ମନେ କରନ୍ତି । ଋଷଭନାଥ ହେଉଛନ୍ତି ଆଦି ଜିନ । 'ଜଗନ୍ନାଥ' ଶବ୍ଦ ଜୈନ 'ଜିନ', 'ଜିନନାଥ' ବା 'ଜିନେଶ୍ୱର' ଶବ୍ଦର ନାମାନ୍ତର । ଜଗନ୍ନାଥଙ୍କ ପୁରୁଷୋତ୍ତମ ନାମ ସହିତ ଜୈନ ପୁରୁଷୋତ୍ତମଙ୍କ ସମ୍ପର୍କ ରହିଛି । ଋଷଭନାଥ ହେଉଛନ୍ତି ଜଗତ୍‌ନାଥ ଓ ପୁରୁଷୋତ୍ତମ । ପଣ୍ଡିତ ନୀଳକଣ୍ଠ କହନ୍ତି 'ଋଷଭନାଥ' ଅର୍ଥ ସୂର୍ଯ୍ୟନାଥ । ସୂର୍ଯ୍ୟ ଜଗତର ଜୀବନ । ତେଣୁ ଋଷଭନାଥ ହେଉଛନ୍ତି ଜଗତର ଜୀବନ ରୂପୀ 'ପୁରୁଷ'ର ନାଥ ବା ପୁରୁଷୋତ୍ତମ । ଜୈନଧର୍ମ ଭାରତର ଦାର୍ଶନିକ ଧର୍ମର ମୂଳ । ଜୈନ, ଜିନ, ମୁନି, ତ୍ରିରତ୍ନ ପ୍ରଭୃତି ଶବ୍ଦ ସହିତ ଜୈନ ଓ ବୌଦ୍ଧ ଉଭୟ ଧର୍ମର ସମ୍ପର୍କ ରହିଛି । ବୌଦ୍ଧଧର୍ମ ଜୈନଧର୍ମର ପରବର୍ତ୍ତୀ ମାର୍ଜିତ ପ୍ରକାଶ । ଜଗନ୍ନାଥ ମହାପ୍ରଭୁଙ୍କର ମହାପ୍ରସାଦର ଅନ୍ୟ ନାମ କୈବଲ୍ୟ । ଜୈନ ଦର୍ଶନର 'କେବଳୀ' ଭାବ, କେବଳ ଜୀବସତ୍ତା ହେଉଛି କୈବଲ୍ୟ । କୈବଲ୍ୟ ପ୍ରାପ୍ତି ହେଲେ ନିର୍ବାଣ ପ୍ରାପ୍ତି ହୁଏ । ଜଗନ୍ନାଥଙ୍କ ରଥଯାତ୍ରା ଆଷାଢ଼ ଶୁକ୍ଳ ଦ୍ୱିତୀୟା ତିଥିରେ ହୁଏ; ଏହି ତିଥି ପ୍ରଥମ ତୀର୍ଥଙ୍କର ଋଷଭଙ୍କ ଗର୍ଭସ୍ଥ ହେବା ଦିବସ । ଏହି ତିଥିରେ ଋଷଭଙ୍କ ରଥଯାତ୍ରାର ବିଧାନ ଅଛି । ତାଙ୍କର ବୃକ୍ଷ ହେଉଛି କଳ୍ପବଟ, ଚକ୍ର ହେଉଛି ଧର୍ମଚକ୍ର ।

---

**୧୦.** Worship of Lord Jagannath - S. Satapathy, Puri S.C.S. College Bulletin, 1985-86

**୧୧. ଶ୍ରୀଜଗନ୍ନାଥଙ୍କ ଐତିହାସିକ ସ୍ୱରୂପ - ଡକ୍ଟର ସତ୍ୟନାରାୟଣ ରାଜଗୁରୁ, (ପ୍ରବନ୍ଧ) ଶ୍ରୀପୁରୁଷୋତ୍ତମ ଓ ଶ୍ରୀମନ୍ଦିର, ଓ.ସା.ଏ, ୧୯୯୬**

ପଣ୍ଡିତ ନୀଳକଣ୍ଠ ଜଗନ୍ନାଥଙ୍କୁ ଜୈନ ଦେବତା ବୋଲି ବିଚାର କରିବା ସଙ୍ଗେ ସଙ୍ଗେ ପୁଣି ତାଙ୍କୁ ପ୍ରଣବରୂପୀ ଓ ଶବର ଦେବତା ଜ୍ଞାନ କରି ତାଙ୍କର ପ୍ରାଚୀନତା ବେବିଲୋନ୍ ସମୟର ବୋଲି ମନେ କରିଛନ୍ତି । ସେ 'ଗୀତା ପ୍ରବେଶ'ରେ କହିଛନ୍ତି ଯେ ବୁଦ୍ଧଯୁଗ ପୂର୍ବରୁ ଏପରିକି ବେବିଲୋନ୍ ସଭ୍ୟତା ଆରମ୍ଭରୁ ଜଗନ୍ନାଥଙ୍କ ଅସ୍ତିତ୍ୱ ଥିଲା । ସେତେବେଳେ ଶବରଙ୍କ ବିନା ତାଙ୍କର ଉପାସକ ଆଉ କେହି ନଥିଲେ । ନୀଳକଣ୍ଠ ଓଡ଼ିଶା ବିଧାନସଭାରେ କହିଥିଲେ ଯେ ଶ୍ରୀଜଗନ୍ନାଥ ଏକ ବିଶ୍ୱଦର୍ଶନର ସଂକେତ । "ଏହି ସଂକେତଟି ଯଦି କେହି ଅନୁସନ୍ଧାନ କରିବାକୁ ଚାହାନ୍ତି, ସେ ଦେଖିବେ ଏଇଟା ପ୍ରଥମେ ଆରମ୍ଭ ହୋଇଛି ବେବିଲୋନ୍‌ରେ । ଏ ଗୋଟିଏ ବିରାଟ ଅପ୍ରକାଶ ଚତୁର୍ଦ୍ଧା ମୂର୍ତ୍ତି । ଏହାର ସଂକେତ ପ୍ରଥମେ ମୁଁ ପାଇଲି ଖ୍ରୀଷ୍ଟପୂର୍ବ ୨୦୦୦ ବର୍ଷ, ଅର୍ଥାତ୍ ଆଜକୁ ପ୍ରାୟ ୪୦୦୦ବର୍ଷ ତଳେ ବେବିଲୋନ୍‌ରୁ । ବର୍ତ୍ତମାନ ସେହି ସଂସ୍କୃତି ଏଠି ଅଛି [୧୨] ।"

ବୁଦ୍ଧଦେବଙ୍କ ପରି ଋଷଭଦେବ ହିନ୍ଦୁମାନଙ୍କଦ୍ୱାରା ବିଷ୍ଣୁଙ୍କର ଏକ ଅବତାର ରୂପେ ଗୃହୀତ । ଜଗନ୍ନାଥଙ୍କୁ ଋଷଭନାଥ ମନେ କରାଯାଏ । ପାର୍ଶ୍ୱନାଥ (ଖ୍ରୀ:ପୂ: ୮୨୦-୭୫୦)ଙ୍କୁ ଜୈନଧର୍ମର ପ୍ରବର୍ତ୍ତକ କୁହାଯାଏ । ଜୈନ ତୀର୍ଥଙ୍କର ମହାବୀର (ଖ୍ରୀ:ପୂ: ୫୫୭-୫୨୭) ଓ ତାଙ୍କ ପୂର୍ବରୁ ପାର୍ଶ୍ୱନାଥ କଳିଙ୍ଗରେ ଜୈନଧର୍ମ ପ୍ରଚାର କରିଥିଲେ ବୋଲି କେତେଜଣ ଐତିହାସିକ କହିଛନ୍ତି । ଖାରବେଳଙ୍କ ସମୟରେ ଓଡ଼ିଶା ଏକ ପ୍ରସିଦ୍ଧ ଜୈନଭୂମି ଥିଲା । କଳିଙ୍ଗ ସମ୍ରାଟ ଖାରବେଳ ଜଣେ ନୈଷ୍ଠିକ ଜିନ ଥିଲେ । ଗୌତମ ବୁଦ୍ଧଙ୍କ ଆବିର୍ଭାବ ପୂର୍ବରୁ, ଏପରିକି ମହାବୀର ବର୍ଦ୍ଧମାନଙ୍କ ପୂର୍ବରୁ ଏହି ସ୍ଥାନର ପ୍ରାଧାନ୍ୟ ଥିଲା । କଳିଙ୍ଗର ପିହୁଳ ନାମକ ବନ୍ଦର ଜୈନମାନଙ୍କର ତୀର୍ଥସ୍ଥଳୀ ଥିଲା । ଖ୍ରୀ:ପୂ: ତୃତୀୟ ଶତାବ୍ଦୀ ବେଳକୁ ମଗଧ ସମ୍ରାଟ ଅଶୋକଙ୍କ କଳିଙ୍ଗ ବିଜୟ ପରେ ଏଠାରେ ବୌଦ୍ଧଧର୍ମ ପ୍ରସାରିତ ହୋଇଥିଲା । ହୁଏନ୍‌ସାଂ (୭ମ ଶତାବ୍ଦୀ) ଉଡ୍ଡୀୟାନ (ଓଡ଼ିଶା)ରେ ଏକ ଜିନମୂର୍ତ୍ତି ପୂଜା ପାଉଥିଲା ବୋଲି କହିଛନ୍ତି । ସେପରି ଏକ ଜିନମୂର୍ତ୍ତି ଖ୍ରୀ:ପୂ: ଚତୁର୍ଥ ଶତାବ୍ଦୀରେ କଳିଙ୍ଗରେ ପୂଜା ପାଉଥିଲା, ଯାହାକି ମଗଧର ରାଜା ମହାପଦ୍ମ ନନ୍ଦ କଳିଙ୍ଗରୁ ବଳପୂର୍ବକ ମଗଧକୁ ନେଇ ଯାଇଥିଲେ । ଜୈନସମ୍ରାଟ ଖାରବେଳ (ଖ୍ରୀ:ପୂ: ୨ୟ ଶତାବ୍ଦୀ) ମଗଧ ଆକ୍ରମଣ କରି ଏହି ଜିନମୂର୍ତ୍ତିକୁ ଫେରାଇ ଆଣିଥିଲେ । ହୁଏନ୍‌ସାଂ ଉଡ୍ଡୀୟାନରେ ନବେଫୁଟ ଉଚ୍ଚର ଏକ କାଷ୍ଠ ସ୍ତମ୍ଭ ମୂର୍ତ୍ତି ପୂଜା ପାଉଥିବା କଥା ଯାହା ଲେଖିଛନ୍ତି, ତାହା ଶବରୀ ନାରାୟଣ ମୂର୍ତ୍ତି ବୋଲି କେହି କେହି ଅନୁମାନ କରିଛନ୍ତି ।

ଶବରମାନଙ୍କର ଶବରୀ ନାରାୟଣ ହେଲେ ପରବର୍ତ୍ତୀ କାଳର ଜଗନ୍ନାଥ । ଏହି ବିଗ୍ରହ ନିମ୍ବକାଠରେ ନିର୍ମିତ ଏକ ମସ୍ତକଯୁକ୍ତ ସ୍ତମ୍ଭ । ପଣ୍ଡିତ ନୀଳକଣ୍ଠ ଲେଖିଛନ୍ତି :

In this connection it is interesting to note that the Kolarians or Savaras (Suarois or Sabarais of ancient Greek Geographers like Pliny and Ptolemy) who at a time were an important element among the inhabitants of some coastal and up-land area of Kalinga.

---

୧୨. O.L.A. Procedings, dated 8.7.1952

These Kolarians were mostly Sun-worshippers or the worshippers of the Surajnarayana as they sometimes called it. The Sun is again the Vedic Vishnu which originally meant the Sun. They were worshippers of images of this Sun or Vishnu made of Neem-wood placed on pillars [13].

ଡକ୍ଟର ବେଣୀମାଧବ ପାଢ଼ୀ ତାଙ୍କର 'ଦାରୁଦେବତା' ପୁସ୍ତକରେ ଲେଖିଛନ୍ତି- ''ଶବରମାନଙ୍କର ଉପାସ୍ୟ ଦାରୁଦେବତା ଉପରେ ଜୈନ ପୁରୁଷୋତ୍ତମ ଯେପରି ପ୍ରତିପତ୍ତି ବିସ୍ତାର କରୁଥିଲେ, ସେହିପରି ବୈଦିକ ଆର୍ଯ୍ୟ ସୁଦ୍ଧା ଶବରର ଦାରୁକୁ ନିଜର କରିବା ସଙ୍ଗେ ସଙ୍ଗେ ଜୈନ 'ପୁରୁଷୋତ୍ତମ'ଙ୍କୁ ଆପଣାର ବୋଲି ପ୍ରମାଣିତ କରିବାକୁ ବସିଲା । ସେଥିସକାଶେ ଜୈନ ପୁରୁଷୋତ୍ତମଙ୍କ ସହିତ ବେଦ ବର୍ଣ୍ଣିତ 'ସହସ୍ର-ଶୀର୍ଷା ପୁରୁଷ'ର ଅଭେଦ ସମ୍ବନ୍ଧ କଳ୍ପିତ ହେଲା । ...ତା'ପରେ ନିଜର କରିବାପାଇଁ ଜୈନମାନେ ଯେପରି ମୂଳ 'ଜଗନ୍ତ' ସହିତ ସ୍ୱଧର୍ମର ସର୍ବୋତ୍କର୍ଷ ପ୍ରତିପାଦକ 'ନାଥ' ଶବ୍ଦ ଯୋଗକରି ଦାରୁକୁ ଜଗନ୍ତନାଥ ବା ଜଗନ୍ନାଥ ବୋଲି ଅଭିହିତ କଲେ, ସେହିପରି ଆର୍ଯ୍ୟମାନେ ସୁଦ୍ଧା ମୂଳ 'ଦାରୁ ସହିତ ପରମଭାବ ଦ୍ୟୋତକ' ବ୍ରହ୍ମ ଶବ୍ଦ ଯୋଗକରି 'ଦାରୁବ୍ରହ୍ମ' ବୋଲି ଆଖ୍ୟାଦେଲେ ।''

ଶବରମାନଙ୍କ ଦାରୁଦେବତା ଭିତରେ ନିଜ ଧର୍ମ ସଂକେତ (ବଦ୍ଧ ମଙ୍ଗଳ ଓ ନନ୍ଦୀପଦ)ର ସାମ୍ୟ ଲକ୍ଷ୍ୟ କରି ତାହାଙ୍କୁ ଜୈନମାନେ ନିଜର କରି ନେଇଛନ୍ତି । ଶବର ଗୋଷ୍ଠୀ (ଅଷ୍ଟ୍ରିକ୍ ଗୋଷ୍ଠୀ) ପ୍ରଥମେ ଏକ ମୂର୍ତ୍ତି ପୂଜା କରୁଥିଲେ । ପରେ ଜୈନ ତ୍ରିରତ୍ନ ପ୍ରଭାବରେ ତ୍ରିମୂର୍ତ୍ତି ପୂଜା କଲେ । ପରବର୍ତ୍ତୀ କାଳରେ ଚତୁର୍ଦ୍ଧା ମୂର୍ତ୍ତି ପୂଜାର ପ୍ରଚଳନ ହେଲା । ଜୈନ ତ୍ରିରତ୍ନ ହେଲା- ସମ୍ୟକ ଦର୍ଶନ, ସମ୍ୟକ ଜ୍ଞାନ ଓ ସମ୍ୟକ ଚରିତ୍ର । ମୋକ୍ଷ ପ୍ରାପ୍ତିପାଇଁ ଏହି ତ୍ରିରତ୍ନ ଅପରିହାର୍ଯ୍ୟ । ଗବେଷକ କେଦାରନାଥ ମହାପାତ୍ର, ଜଗନ୍ନାଥଙ୍କ ତ୍ରିମୂର୍ତ୍ତି ତତ୍ତ୍ୱକୁ ଜୈନ ତ୍ରିମୂର୍ତ୍ତି ସହିତ ସଂପୃକ୍ତ କରିଛନ୍ତି । ତାଙ୍କ ମତରେ ଗାଲମାଧବ ଓ ଇନ୍ଦ୍ରଦ୍ୟୁମ୍ନ ରାଜାଙ୍କ ପୁରୀ ମନ୍ଦିର ନିର୍ମାଣ ବୃତ୍ତାନ୍ତ ଖାରବେଳଙ୍କ ରାଜତ୍ୱର ବୃତ୍ତାନ୍ତର ଛାୟାମାତ୍ର । କିମ୍ବଦନ୍ତୀ ବର୍ଣ୍ଣିତ ନୀଳମାଧବ ମୂର୍ତ୍ତି ନୀଳପ୍ରସ୍ତର ଖଣ୍ଡରେ ଖୋଦିତ ଜୈନ ତ୍ରିରତ୍ନ ମୂର୍ତ୍ତି । ଏହାହିଁ କଳିଙ୍ଗର ଜିନାସନ ବା ଜିନ ସିଂହାସନ ଯାହାରି ଉପରେ ଦଣ୍ଡାୟମାନ ଥିଲେ ତ୍ରିମୂର୍ତ୍ତି । ଏହାକୁ କେବଳ ଜୈନମାନେ ନୁହେଁ, ବୌଦ୍ଧ ଓ ଶବରମାନେ ମଧ୍ୟ ପୂଜା କରୁଥିଲେ । ତ୍ରିରତ୍ନର ଅନୁକରଣରେ ଏହି ତ୍ରିମୂର୍ତ୍ତି ନିର୍ମିତ ହୋଇଥିବାରୁ ଥିଲେ ହସ୍ତପଦ ଶୂନ୍ୟ । ଏମାନଙ୍କର ହସ୍ତପଦ ଶୂନ୍ୟତାପାଇଁ ପୌରାଣିକମାନେ ଓ ସାଧାରଣ ଲୋକମାନେ ବିଚିତ୍ର କଳ୍ପନା କରି ନାନାପ୍ରକାର ଗଳ୍ପ ଉଦ୍ଭାବନ କରିଅଛନ୍ତି । ହିନ୍ଦୁଧର୍ମର ପୁନରୁତ୍‌ଥାନ ଯୁଗରେ ତ୍ରିରତ୍ନ ପାଷାଣ ମୂର୍ତ୍ତି ପରିବର୍ତ୍ତେ ତିନିଟି ହସ୍ତପଦ ଶୂନ୍ୟ କାଷ୍ଠମୂର୍ତ୍ତି ସ୍ଥାପିତ ହୋଇଅଛି [୧୪] ।

ଏବର ପରିଦୃଶ୍ୟମାନ ଶ୍ରୀମନ୍ଦିରର ନିର୍ମାତା ଗଙ୍ଗବଂଶର ରାଜା ଚୋଡ଼ଗଙ୍ଗଦେବ (ଦ୍ୱାଦଶ ଶତାବ୍ଦୀ) ହିଁ ପୁରାଣବର୍ଣ୍ଣିତ ଇନ୍ଦ୍ରଦ୍ୟୁମ୍ନ ଏବଂ ରାମାନୁଜାଚାର୍ଯ୍ୟ ହିଁ ନାରଦ ବୋଲି ପଣ୍ଡିତ ନୀଳକଣ୍ଠଙ୍କ

---

**୧୩.** Hints on the Significance and History of Jagannath- Pandit Nilakantha Das (Nikhila Bharata Prabasi Utkal Sammelan souvenir, Calcutta, January, 1959)

**୧୪. ଓଡ଼ିଆ ସାହିତ୍ୟରେ ଶ୍ରୀଜଗନ୍ନାଥ ଚେତନା- ଡକ୍ଟର ବାସୁଦେବ ସାହୁ**

ପୂର୍ବୋକ୍ତ ପ୍ରବନ୍ଧରୁ ସୂଚନା ମିଳେ । ତା'ମାନେ ସ୍କନ୍ଦ ପୁରାଣର ଉତ୍କଳଖଣ୍ଡ, ପଦ୍ମପୁରାଣର ପାତାଳଖଣ୍ଡ ଇତ୍ୟାଦି ଯେଉଁ ରଚନାମାନଙ୍କରେ ଇନ୍ଦ୍ରଦ୍ୟୁମ୍ନ ଓ ପୁରୁଷୋତ୍ତମ କ୍ଷେତ୍ରରେ ମନ୍ଦିର ନିର୍ମାଣ ଉପାଖ୍ୟାନ ରହିଛି, ସେ ସବୁ ରଚନା ଚୋଡ଼ଗଙ୍ଗ ଦେବଙ୍କ ପରବର୍ତ୍ତୀ ସମୟରେ ରଚିତ ବୋଲି ଧରିନିଆଯାଇପାରେ । ନୀଳକଣ୍ଠ ଲେଖିଛନ୍ତି :

It seems now certain that Choraganga in the Puranas became Indradyumna and the sage Ramanuja became Narada.

One thing however, appears to be clear that it is perhaps at this time that instead of one image of a fact at the head of a pillar, named Savarinarayana, four images made of neem-wood replaced the old Nilamadhava. These four images which are said to be four aspects (Chaturdha Murti) of the word Purusha Jagannatha, and was probably derived from the meaning of Nilamadhava, as has been hinted, now represent Vasudeva religion; the Dharmachakra, which was perhaps eternally associated with the Nilamadhava or the old Kalinga Jina, it has been said, became Sudarsana, perhaps according to its Hindu names, Sudarsana Chakra of Vishnu.

ରାଜା ଇନ୍ଦ୍ରଦ୍ୟୁମ୍ନ ପ୍ରଭୁ ନୀଳମାଧବଙ୍କୁ ଦର୍ଶନ କରିବାକୁ ଯିବା ବାଟରେ ଭୁବନେଶ୍ୱର (ଏକାମ୍ର କ୍ଷେତ୍ର)ର ବିନ୍ଦୁସାଗରରେ ସ୍ନାନ ସାରି ଉକ୍ତ ପୁଷ୍କରିଣୀ ତଟର ପୁରୁଷୋତ୍ତମ ବିଗ୍ରହଙ୍କୁ ଦର୍ଶନ କରିଥିବା କଥା ସ୍କନ୍ଦ ପୁରାଣରେ ଉଲ୍ଲେଖ ଅଛି । ଏହି ପୁରୁଷୋତ୍ତମ ବିଗ୍ରହ ହିଁ ଅନନ୍ତ ବାସୁଦେବ । ଏହାଙ୍କ ମନ୍ଦିର ୧୨୭୮ ଖ୍ରୀଷ୍ଟାବ୍ଦରେ ନିର୍ମିତ ହୋଇଥିଲା । ଏହି ମନ୍ଦିରରେ ବଳରାମ, କୃଷ୍ଣ ଓ ସୁଭଦ୍ରା ବିରାଜିତ । ସୁତରାଂ ସ୍କନ୍ଦ ପୁରାଣର ଉତ୍କଳଖଣ୍ଡ ୧୨୭୮ ଖ୍ରୀଃର ବହୁ ବର୍ଷ ପରେ ରଚିତ ହୋଇଥାଇପାରେ ବୋଲି ପଣ୍ଡିତ ନୀଳକଣ୍ଠ କହିଛନ୍ତି ।

ନୀଳମାଧବ କହିଲେ ଜଣେ ନୁହେଁ, ତିନିଜଣ ଦିଅଁଙ୍କୁ ବୁଝାଏ । ନୀଳ (କୃଷ୍ଣ) ଶୂନ୍ୟର ପ୍ରତୀକ- ଜଗନ୍ନାଥ । ସୁଭଦ୍ରା ହେଉଛନ୍ତି 'ମା', ଜନନୀର ପ୍ରତୀକ; ବଳଭଦ୍ର ହେଉଛନ୍ତି 'ଧବ', ଅର୍ଥାତ୍ ଶୁଭ୍ର ଦୃଶ୍ୟମାନ ବିଶ୍ୱପ୍ରକାଶର ପ୍ରତୀକ । ନୀଳକଣ୍ଠ କହିଛନ୍ତି, ରାଜା ଚୋଡ଼ଗଙ୍ଗ ଦେବ ଶୈବରୁ ବୈଷ୍ଣବ ହେବା ପରେ ଜୈନପ୍ରତୀକ ନୀଳମାଧବଙ୍କ ନିମନ୍ତେ ଏକ ବୃହତ୍ ମନ୍ଦିର ନିର୍ମାଣ କରାଇ ତାହାକୁ ହିନ୍ଦୁଧର୍ମର ପ୍ରଧାନ ପୀଠରେ ପରିଣତ କରିବାକୁ ଚେଷ୍ଟା କରିଥିଲେ ।

ପଣ୍ଡିତ ନୀଳକଣ୍ଠ ପୁରୁଷୋତ୍ତମ ଚେତନାକୁ ବିଶ୍ଳେଷଣ କରି କହିଛନ୍ତି, ଯେତେବେଳେ ବ୍ୟକ୍ତି ନିଜ ସୁଖପାଇଁ ନିଜକୁ ନିୟୋଜିତ କରେ, ସେତେବେଳେ ସେ ପୁରୁଷ । କ୍ରମଶଃ ପରିବାର, ଅଞ୍ଚଳ, ଦେଶର ସୁଖଦୁଃଖକୁ ନିଜର ସୁଖଦୁଃଖ ବୋଲି ଭାବିବାଦ୍ୱାରା ସେ ହୋଇଯାଏ ପୁରୁଷୋତ୍ତର । ସେ ଯଦି ସମଗ୍ର ମାନବ ସମାଜ ବା ଜଗତକୁ ନିଜର ଆତ୍ମାପୁରୁଷ ସଙ୍ଗରେ ଏକାକାର କରିପାରେ ଓ ଜଗତପାଇଁ ନିଜକୁ ଉତ୍ସର୍ଗ କରିପାରେ ସେତେବେଳେ ତା'ର 'ପୁରୁଷୋତ୍ତର' ଚେତନା 'ପୁରୁଷୋତ୍ତମ' ଚେତନାରେ ପରିଣତ ହୁଏ । ଜଗନ୍ନାଥ ସଂସ୍କୃତିରେ

ଅଛି ସମଗ୍ର ବିଶ୍ୱର ଅନୁଭବକୁ ନିଜର ଅନୁଭବ ସହିତ ସମୀକୃତ କରିବାର ଉଦାର ଚେତନା । ପୁରୁଷକୁ ଜଗତ ଓ ଜଗତକୁ ପୁରୁଷ ସହ ଅଭେଦ କଳ୍ପନା କରିବା ହେଉଛି ଜୈନଧର୍ମର ନିଜସ୍ୱ । ଏଇଠି ଜଗନ୍ନାଥ ଧର୍ମ ଓ ଜୈନଧର୍ମ ମଧ୍ୟରେ ରହିଛି ଅନନ୍ୟ ସାଧାରଣ ସାମ୍ୟ (୧୫) ।

ଜଗନ୍ନାଥ ଧର୍ମରେ ଅନ୍ୟାନ୍ୟ ଧର୍ମର ପ୍ରଭାବ ପରି ଜୈନଧର୍ମର ମଧ୍ୟ ପ୍ରଭାବ ରହିଛି; କିନ୍ତୁ ତାହା ଯେ ମୁଖ୍ୟତଃ ଜିନଦେବ, ଏହାର ପ୍ରମାଣ ମୂର୍ତ୍ତିତତ୍ତ୍ୱ ଓ ଇତିହାସ ଦୃଷ୍ଟିରୁ ବିଶେଷ କିଛି ନାହିଁ ବୋଲି ମନେକରାଯାଏ (୧୬) । ପଣ୍ଡିତ ନୀଳକଣ୍ଠ ଦାସ ଜଗନ୍ନାଥ ତତ୍ତ୍ୱକୁ ଅବୈଦିକ ମାନିଥିଲେ ମଧ୍ୟ ଏଥିରେ ଜୈନଙ୍କ ଆତ୍ମବାଦ, ବୈଷ୍ଣବୀୟ ଯୌଗିକ ଶୂନ୍ୟବାଦ, ଶାକ୍ତ, ତାନ୍ତ୍ରିକ, ଶାବର, ଦ୍ରାବିଡ଼ ତତ୍ତ୍ୱ ସହ ଗୀତାର କ୍ଷର, ଅକ୍ଷର ଓ ପୁରୁଷୋତ୍ତମ ତତ୍ତ୍ୱ ଯୋଡ଼ି ଦେଇଛନ୍ତି (୧୭) ।

ଡକ୍ଟର ବେଣୀମାଧବ ପାଢ଼ୀଙ୍କର ବିଚାରକୁ ବିରୋଧ କରି ପ୍ରଫେସର ଗୋପୀନାଥ ମହାପାତ୍ର କହନ୍ତି ଯେ, ଶାବର ଭାଷାରେ ଜଗନ୍ତର ଅର୍ଥ କ'ଣ ଜଗନ୍ନାଥ ? ଆର୍ଯ୍ୟମାନେ ଏହି ଜଗନ୍ତଦେବଙ୍କୁ ଆଣି ଜଗନ୍ନାଥ ବୋଲି ଡାକିଲେ- ଏପରି ପ୍ରମାଣ କେଉଁ ଆର୍ଯ୍ୟଗ୍ରନ୍ଥରେ ନାହିଁ । ଜୈନମାନେ ଏହି ଜଗନ୍ତଦେବଙ୍କୁ ଜଗନ୍ତନାଥ ବୋଲି ଡାକୁଡାକୁ ଜଗନ୍ନାଥ ବୋଲି ଡାକିଲେ ଏ କଥା ମଧ୍ୟ କୌଣସି ଜୈନଗ୍ରନ୍ଥରେ ନାହିଁ । ତା'ଛଡ଼ା ଜୈନମାନଙ୍କର ପାଲି ଭାଷାରେ ଯେଉଁ ଗ୍ରନ୍ଥ ଓ ଶିଳାଲେଖ ଇତ୍ୟାଦି ଥିଲା, ସେହି ଭାଷାରେ କ'ଣ ଜଗନ୍ତନାଥର ଅର୍ଥ ଜଗତର ନାଥ ହୁଏ ? ପୁ'ଣି ସେ ଭାଷାରେ କ'ଣ ଜଗନ୍ନାଥ ଶବ୍ଦ ଗଠିତ ହୋଇପାରେ ? କେବେ ନୁହେଁ । ଏ ସବୁ ଭାଷାତତ୍ତ୍ୱ ଏଥିରେ କିଛି ଆଲୋଚନା ହୋଇନାହିଁ (୧୮) ।

(ଏଠାରେ ଏକ ସୂଚନା ପ୍ରଦାନ କରାଯାଉଛି । ଶ୍ରୀମନ୍ଦିର (ବଡ଼ ଦେଉଳ)ର ବେହରଣ ଦ୍ୱାର ବା ଦକ୍ଷିଣ ଦ୍ୱାର ପାର୍ଶ୍ୱରେ କାନ୍ଥରେ ଏକ ପ୍ରସ୍ତରନିର୍ମିତ ମହାବୀର ଜୈନମୂର୍ତ୍ତି ଶୋଭାପାଉଛନ୍ତି । ଏହି ମୂର୍ତ୍ତି ପ୍ରଥମେ କୁଆଡ଼େ ରତ୍ନବେଦୀ ପାର୍ଶ୍ୱରେ ଖଞ୍ଜା ଯାଇଥିଲେ ଏବଂ ପରେ ଶ୍ରୀମନ୍ଦିରର ମ୍ୟାନେଜର ସଖୀଚାନ୍ଦଙ୍କ ସମୟ (ଖ୍ରୀ: ୧୯୨୧-୧୯୨୫)ରେ ସେଠାରୁ ଅପସାରଣ କରାଯାଇ ଏହି ଦ୍ୱାର ପାର୍ଶ୍ୱରେ ସ୍ଥାପିତ ହୋଇଥିଲେ ।)

## ବୌଦ୍ଧଧର୍ମ ଓ ଜଗନ୍ନାଥ

ଜଗନ୍ନାଥ ଉପାସନା ବୌଦ୍ଧଧର୍ମରୁ ଉଦ୍ଭବ ଓ ଜଗନ୍ନାଥ ମୂଳତଃ ବୌଦ୍ଧ ବୋଲି କେତେକ ବିଦ୍ୱାନ ଗବେଷକ ଲେଖିଛନ୍ତି । ସେମାନଙ୍କ ମଧ୍ୟରୁ ଡକ୍ଟର ହରେକୃଷ୍ଣ ମହତାବ ଅନ୍ୟତମ । ସେମାନଙ୍କର ମୁଖ୍ୟ ଯୁକ୍ତିଗୁଡ଼ିକ ନିମ୍ନରେ ସଂକ୍ଷେପରେ ପ୍ରଦତ୍ତ ହେଲା:

---

**୧୫. ଓଡ଼ିଆ ସାହିତ୍ୟର କ୍ରମ ପରିଣାମ (୨ୟ ଭାଗ)- ପଣ୍ଡିତ ନୀଳକଣ୍ଠ ଦାସ**
**୧୬. ଓଡ଼ିଆ ସାହିତ୍ୟର ଇତିହାସ (୧ମ ଭାଗ)- ଡକ୍ଟର ବଂଶୀଧର ମହାନ୍ତି**
**୧୭. ଜଗନ୍ନାଥଙ୍କ ବୈଦିକତା ଅଭ୍ରାନ୍ତ କି ? (ପ୍ରବନ୍ଧ)- ଉମେଶ ପତ୍ରୀ, ଝଙ୍କାର, ଜୁଲାଇ, ୨୦୦୩**
**୧୮. ଶ୍ରୀଜଗନ୍ନାଥ ତତ୍ତ୍ୱ- ଡକ୍ଟର ଗୋପୀନାଥ ମହାପାତ୍ର**

୧) ପୁରୀର ତ୍ରିମୂର୍ତ୍ତି- ଜଗନ୍ନାଥ, ସୁଭଦ୍ରା ଓ ବଳଭଦ୍ର ବୌଦ୍ଧଧର୍ମର ତ୍ରିରତ୍ନ - ବୁଦ୍ଧ, ଧର୍ମ ଓ ସଂଘର ପ୍ରତୀକ । ବୌଦ୍ଧଧର୍ମରେ 'ଧର୍ମ' (ଧମ୍ମ) ନାରୀ ବୋଲି କଳ୍ପିତ ହୁଅନ୍ତି । 'ସଙ୍ଘ' ମଧ୍ୟରେ ଥାଏ ଭ୍ରାତୃ-ଭଗିନୀର ପବିତ୍ର ସମ୍ପର୍କ । ବୌଦ୍ଧଧର୍ମର ପରବର୍ତ୍ତୀ କାଳରେ ଯେତେବେଳେ ମୂର୍ତ୍ତିପୂଜାର ପ୍ରଚଳନ ହେଲା, ସେତେବେଳେ ଏହି ତ୍ରିରତ୍ନଙ୍କୁ ସ୍ୱତନ୍ତ୍ର ଭାବରେ ରଖାଯାଇ ତ୍ରିମୂର୍ତ୍ତିଙ୍କର କଳ୍ପନା କରାଗଲା । ଏହି ତ୍ରିମୂର୍ତ୍ତିଙ୍କର ମୁଖ୍ୟ ହେଲେ ବୁଦ୍ଧ । ଅଶୋକଙ୍କ ସମୟରେ ଓଡ଼ିଶାରେ ଶବରମାନେ ବୌଦ୍ଧଧର୍ମରେ ଦୀକ୍ଷିତ ହେଲେ । ପୁରୀରେ ବୌଦ୍ଧସ୍ତୂପ ନିର୍ମିତ ହୋଇଥିଲା ଏବଂ ସେଥିରେ ତ୍ରିରତ୍ନ ଅଙ୍କିତ ହୋଇଥିଲେ । ଏ ସ୍ତୂପ ଶବରମାନଙ୍କର ଶ୍ରେଷ୍ଠ ପୂଜାପୀଠ ଥିଲା । ସମୂହ ଭାବରେ ଏହି ଚିହ୍ନ ତ୍ରୟକୁ 'ଜଗନ୍ନାଥ' ବୋଲି କୁହାଯାଉଥିଲା । ମୂର୍ତ୍ତି ପୂଜାର ପ୍ରଚଳନ ପରେ ସେ ତିନି ଚିହ୍ନଙ୍କୁ କାଠରେ ମୂର୍ତ୍ତି ନିର୍ମାଣ କରି ପୂଜା କରାଗଲା । ତାହାକୁ ମନୁଷ୍ୟାକୃତି ଦେବାପାଇଁ, ଆଖି ନାକ ଦେଖାଇବାପାଇଁ ଯେତେଦୂର ସମ୍ଭବ ଚିତ୍ରର ବ୍ୟବସ୍ଥା କରାଗଲା । ''ଏହା ଯେ ବୌଦ୍ଧଧର୍ମର ଅବଶେଷ ଏହା ନିଃସନ୍ଦେହ'' [୧୯] ।

୨) ପୁରୀର ପ୍ରାଚୀନ ନାମ ଥିଲା ଦନ୍ତପୁରୀ । ଏଠାରେ ବୁଦ୍ଧଦେବଙ୍କ ଦନ୍ତ ପୂଜିତ ହେଉଥିଲା । ବୌଦ୍ଧ କ୍ଷେତ୍ରଟି ବୈଷ୍ଣବ କ୍ଷେତ୍ରରେ ପରିଣତ ହେବା ପରେ ବୌଦ୍ଧସ୍ତୂପର ଧ୍ୱଂସାବଶେଷ ଉପରେ ପୁରୀ ମନ୍ଦିର ନିର୍ମିତ ହେଲା । ଏବେ ମଧ୍ୟ ବୁଦ୍ଧଙ୍କ ଦନ୍ତ ଏଠାରେ ଗୁପ୍ତଭାବରେ ପୂଜା ପାଉଛି । ଜଗନ୍ନାଥ ମହାପ୍ରଭୁଙ୍କର ଶ୍ରୀଅଙ୍ଗର ଅଭ୍ୟନ୍ତରସ୍ଥ ବ୍ରହ୍ମ ପଦାର୍ଥ ହିଁ ବୁଦ୍ଧଦେବଙ୍କ ଦନ୍ତ ।

୩) ବୌଦ୍ଧ ବଜ୍ରଯାନର ଗ୍ରନ୍ଥ 'ଜ୍ଞାନସିଦ୍ଧି'ର ମଙ୍ଗଳାଚରଣରେ ଲେଖା ଅଛି ''ପ୍ରଣିପତ୍ୟ ଜଗନ୍ନାଥଂ ସର୍ବଜିନ ବରାର୍ଚ୍ଚିତମ୍...'' । ଏଠାରେ ପ୍ରଥମ କରି 'ଜଗନ୍ନାଥ' ଶବ୍ଦ ବ୍ୟବହୃତ ହୋଇଅଛି ଏବଂ ସେଥିରେ ପୁରୀର ଜଗନ୍ନାଥଙ୍କୁ ବୁଦ୍ଧ ବୋଲି ଆରାଧନା କରାଯାଇଛି ।

୪) ଜଗନ୍ନାଥଙ୍କ ସ୍ନାନଯାତ୍ରା ଓ ରଥଯାତ୍ରା ବୁଦ୍ଧଦେବଙ୍କ ସ୍ନାନ ଉତ୍ସବ ଓ ଜନ୍ମୋତ୍ସବ ଉପଲକ୍ଷେ ହେଉଥିବା ରଥଯାତ୍ରାର ଅନୁକରଣ । ଜଗନ୍ନାଥଙ୍କର ଅନେକ ପର୍ବପର୍ବାଣି ବୌଦ୍ଧ ଉତ୍ସବରୁ ସୃଷ୍ଟ ।

୫) ଜଗନ୍ନାଥଙ୍କ ମହାପ୍ରସାଦ ସେବନରେ ଯେଉଁ ଜାତିବର୍ଣ୍ଣର ବିଚାର ନାହିଁ, ତାହା ବୌଦ୍ଧତନ୍ତ୍ରର ପ୍ରଭାବରେ ହୋଇଅଛି । ସୁଭଦ୍ରା ଓ ସୁଦର୍ଶନଙ୍କ ପ୍ରତିମା ତାନ୍ତ୍ରିକ ବୌଦ୍ଧଧର୍ମର ଇଙ୍ଗିତ ଦିଏ । ସୁଦର୍ଶନ ମୂର୍ତ୍ତି ଗୋଟିଏ ସ୍ତମ୍ଭ ବା ଲିଙ୍ଗର ସଂକେତ ଦିଏ । ଏହା 'ବଜ୍ରଯାନ'ର ବଜ୍ର ବା ଲିଙ୍ଗର ପ୍ରତୀକ ।

ଉଲ୍ଲିଖିତ ଯୁକ୍ତି ସମୂହକୁ ନିମ୍ନମତେ ଖଣ୍ଡନ କରାଯାଇଛି :

୧) ପୁରୀ ଶ୍ରୀମନ୍ଦିରର ତ୍ରିମୂର୍ତ୍ତିଙ୍କୁ ବୁଦ୍ଧ, ଧର୍ମ ଓ ସଂଘର ପ୍ରତୀକ କହିବା ପଛରେ ବଳିଷ୍ଠ ଯୁକ୍ତି ନାହିଁ । କନିଙ୍ଗ୍‌ହାମ୍ ତ୍ରିମୂର୍ତ୍ତିର ଯେଉଁ ଚିତ୍ର ଦେଇଛନ୍ତି, ତାହା ସହିତ ବୁଦ୍ଧ, ଧର୍ମ ଓ ସଂଘ (ତ୍ରିରତ୍ନ) ଚିତ୍ରର ମେଳ ଅଛି ବୋଲି ସେ ଯାହା ଅନୁମାନ କରିଛନ୍ତି, ତାହା ଠିକ୍ ନୁହେଁ । ତାଙ୍କ ଦ୍ୱାରା ପ୍ରଦତ୍ତ ଚିତ୍ରରେ ବଳଭଦ୍ର ଓ ଜଗନ୍ନାଥ ଊର୍ଦ୍ଧ୍ୱବାହୁ ଥିବାର ଦେଖାଯାଏ । ତ୍ରିରତ୍ନ ମଧ୍ୟରେ

**୧୯. ଓଡ଼ିଶା ଇତିହାସ- ଡକ୍ଟର ହରେକୃଷ୍ଣ ମହତାବ**

ସୁଭଦ୍ରାଙ୍କୁ ଧର୍ମ କୁହାଯାଇଛି । ଧର୍ମର ଚିହ୍ନରେ ହାତର ସଂକେତ ଅଛି । ଏହି ଅମେଳ କନିଙ୍ଗ୍‌ହାମ୍ ଦେଖାଇ ନାହାନ୍ତି [୨୦] ।

'ବୌଦ୍ଧଧର୍ମର ପବିତ୍ର ପ୍ରତୀକ' (Sacred Symbols of Buddhism) ପୁସ୍ତକରେ ବୌଦ୍ଧ ତ୍ରିରତ୍ନର ଚିତ୍ର ରହିଛି । ନିମ୍ନରେ ପ୍ରଦତ୍ତ ଉକ୍ତ ଚିତ୍ର ସହିତ ପୁରୀ ତ୍ରିମୂର୍ତ୍ତିଙ୍କର ଆଦୌ ମେଳ ହେଉନାହିଁ [୨୧] ।

**Tri Ratna :** This represents the three jewels of Buddhism- the Buddha,



the Dharma and the Sangha. It also symbolizes the sanctuary where one can take refuge from the world. It also signifies the 'Enlightened' or the 'Awakened'.

ଜଗନ୍ନାଥଙ୍କୁ ବୁଦ୍ଧଙ୍କର ରୂପାନ୍ତର ବୋଲି ଗ୍ରହଣ କରାଯାଇଛି । କିନ୍ତୁ ଅନ୍ୟାନ୍ୟ ବୁଦ୍ଧମୂର୍ତ୍ତିଠାରୁ ଜଗନ୍ନାଥ ମୂର୍ତ୍ତିର କାହିଁକି ବୈସାଦୃଶ୍ୟ ଲକ୍ଷିତ ହୁଏ , ତା'ର କୌଣସି କାରଣ ନିର୍ଦ୍ଦେଶ ହୋଇନାହିଁ । ପୁଣି ମଧ୍ୟ, ଏହି ଚିହ୍ନଗୁଡ଼ିକ କି ଧରଣର କ୍ରମ ବିବର୍ତ୍ତନ ମଧ୍ୟ ଦେଇ ମାନବୀୟ ମୂର୍ତ୍ତିରେ ପରିଣତ ହୋଇଛନ୍ତି ତା'ର ଧାରାବାହିକ ବିବରଣୀ ଅଦ୍ୟାପି ମିଳିନାହିଁ । ଏ ସମ୍ବନ୍ଧରେ ଡକ୍ଟର ହରେକୃଷ୍ଣ ମହତାବ ଯେଉଁ ବାଇଶଟି ଚିତ୍ରପ୍ଲେଟ୍‌ର ଅବତାରଣା କରିଛନ୍ତି, ତାହା ବିଶେଷ ସନ୍ତୋଷଜନକ ନୁହେଁ [୨୨] ।

---

**୨୦. ଜଗନ୍ନାଥ ମନ୍ଦିର ଓ ଜଗନ୍ନାଥ ତତ୍ତ୍ୱ- ପଣ୍ଡିତ ସୂର୍ଯ୍ୟ ନାରାୟଣ ଦାଶ, ଫ୍ରେଣ୍ଡ୍‌ସ ପବ୍ଲିଶର୍ସ, କଟକ, ପଞ୍ଚମ ସଂସ୍କରଣଃ ୨୦୦୨**

**୨୧. Sacred Symbols of Buddhism- J.R. Santiago, Book Faith India, Delhi-33, First edition, 1999**

**୨୨. ଦାରୁ ଦେବତା- ଡକ୍ଟର ବେଣୀମାଧବ ପାଢ଼ୀ**

ବୌଦ୍ଧ ଧର୍ମରେ ଦୀକ୍ଷିତ ଶବରମାନେ ବୌଦ୍ଧ ତ୍ରିରତ୍ନଙ୍କୁ ପୂଜା କରୁଥିବା କୁହାଯାଇଛି । ଏହାର ପ୍ରମାଣ ନାହିଁ । ଯଦି ପୂଜା କରୁଥିବେ ତେବେ ସେମାନଙ୍କଦ୍ୱାରା ସଂସ୍କୃତମୂଳକ ନାମ ରଖାଯାଇଥାନ୍ତା କାହିଁକି ?[୨୩]

ବୌଦ୍ଧଧର୍ମ ସହିତ ଜଗନ୍ନାଥଙ୍କ ସମ୍ପର୍କର ପ୍ରଧାନ ପ୍ରମାଣ ସ୍ୱରୂପ ବୌଦ୍ଧଯନ୍ତ୍ର ଉପରେ ନିର୍ଭର କରିବାକୁ ହେବ ବୋଲି ଡକ୍ଟର ରାଜେନ୍ଦ୍ରଲାଲ ମିତ୍ର ଲେଖିଛନ୍ତି । ସେ କହିଛନ୍ତି, ଏକମାତ୍ର ବୌଦ୍ଧଧର୍ମର ଚିହ୍ନ (ଯନ୍ତ୍ର)ରେ ଏହି ଜଗନ୍ନାଥ ବୁଦ୍ଧ ସମସ୍ୟାର ସନ୍ତୋଷଜନକ ସମାଧାନ ମିଳିବ । ତାଙ୍କ ମତରେ ସୁଦର୍ଶନ ବୁଦ୍ଧଙ୍କର ଚିହ୍ନ, ବୁଦ୍ଧ ହିଁ ଚକ୍ର । ଏହି ଚକ୍ର ହିଁ ସୁଦର୍ଶନ । ବିଷ୍ଣୁଙ୍କର ସୁଦର୍ଶନ ଚକ୍ର ବୁଦ୍ଧଙ୍କ ଚକ୍ର ଅନୁକରଣରେ ହୋଇଛି । ଏହି ମତକୁ ଗ୍ରହଣ କରିବାକୁ ହେଲେ କହିବାକୁ ହେବ ଯେ, ଚକ୍ରକୁ ବୁଦ୍ଧ ବୋଲି ବୌଦ୍ଧମାନେ ଗ୍ରହଣ କରିବା ସମୟ ପୂର୍ବରୁ ସୁଦର୍ଶନ ଚକ୍ରର ଅସ୍ତିତ୍ୱ ନଥିଲା ।

କିନ୍ତୁ ଏହା ଠିକ୍ ନୁହେଁ । ବୁଦ୍ଧଦେବଙ୍କ ଆବିର୍ଭାବର ବହୁପୂର୍ବରୁ ବିଷ୍ଣୁଙ୍କର ଏବଂ ତାଙ୍କର ଅସ୍ତ୍ର ସୁଦର୍ଶନ ଚକ୍ରର ଅସ୍ତିତ୍ୱ ଥିଲା । ବିଷ୍ଣୁଙ୍କ ସୁଦର୍ଶନଙ୍କୁ ବୌଦ୍ଧଚକ୍ର ବୋଲି କହିବାର କିଛି ଯୁକ୍ତି ନାହିଁ । ପୂର୍ବକଥା ପରକଥାର ଅନୁକରଣ କଲେ ଯୁକ୍ତିର ଅସାରତା କେବଳ ପ୍ରତିପାଦିତ ହୁଏ । ତା'ଛଡ଼ା ବୌଦ୍ଧଚକ୍ର ସହିତ ଶ୍ରୀଜଗନ୍ନାଥ ମନ୍ଦିରର ସୁଦର୍ଶନ ଚକ୍ରର କୌଣସି ସାମ୍ୟ ମଧ୍ୟ ଥିବାର ଦେଖାଯାଏ ନାହିଁ । ଶ୍ରୀଜଗନ୍ନାଥ ମନ୍ଦିରର ସୁଦର୍ଶନ ଗୋଟିଏ କାଠଗଡ଼ ପରି [୨୪] । ଏହାକୁ 'ଗଦାକୃତି' କୁହାଯାଇଛି ।

ଶ୍ରୀମନ୍ଦିରର ସୁଦର୍ଶନ ଓ ନୀଳଚକ୍ର ସହିତ ବୌଦ୍ଧଚକ୍ରର ଆକୃତିରେ ସାମ୍ୟ ନାହିଁ । ବୌଦ୍ଧଧର୍ମର ଚକ୍ର, ଧର୍ମଚକ୍ର ଓ କାଳଚକ୍ରମାନଙ୍କର ରୂପ ଭିନ୍ନ । 'କାଳଚକ୍ର' ହିନ୍ଦୁଧର୍ମର ଶ୍ରୀଯନ୍ତ୍ର/ ଶ୍ରୀଚକ୍ର ସ୍ୱରୂପ ।

The Buddhist sacred symbols and attributes have not diverged completely, in connotation or meaning, from their counterparts in Hinduism. There is only a slight variation in purpose, but when perceived they reveal their origin in the great past of the Hindu creed.

(J.R.Santiago)

୨) ପୁରୀର ପ୍ରାଚୀନ ନାମ ଦନ୍ତପୁରୀ ଥିବାର ପ୍ରମାଣ ନାହିଁ । ଏ ନେଇ ନାନା ମୁନିଙ୍କର ନାନା ମତ । ଯେଉଁ ଯେଉଁ ସ୍ଥାନରେ ଏହାର ଅବସ୍ଥିତି ଥିବା କୁହାଯାଇଛି ସେ ସବୁ ହେଲା- ଗଞ୍ଜାମ ଜିଲ୍ଲାର ପାଲୁର ଓ ବାରୁଆ, କଟକ ଜିଲ୍ଲାର ରତ୍ନଗିରି ଏବଂ ପୁରୀ ଇତ୍ୟାଦି ।

ଶ୍ରୀଜଗନ୍ନାଥଙ୍କ ଶ୍ରୀଅଙ୍ଗରେ ବୁଦ୍ଧଦେବଙ୍କ ଦନ୍ତ ସଂରକ୍ଷିତ, ଏହା କେବଳ ଅନୁମାନ ମାତ୍ର । ହିନ୍ଦୁଧର୍ମରେ କୌଣସି ମୃତ ଶରୀରର ଅଂଶ ପୂଜା କରାଯିବା ନିଷେଧ । ଶ୍ରୀଜଗନ୍ନାଥଙ୍କ 'ବ୍ରହ୍ମ ପଦାର୍ଥ' ଅଦ୍ୟାବଧି ଗୋପନୀୟ ହୋଇ ରହିଛି । ପୁଣି ବୌଦ୍ଧସ୍ତୂପର ଭଗ୍ନାବଶେଷ ଉପରେ

---

**୨୩. ଶ୍ରୀଜଗନ୍ନାଥ ତତ୍ତ୍ୱ- ଡକ୍ଟର ଗୋପୀନାଥ ମହାପାତ୍ର**

**୨୪. ଜଗନ୍ନାଥ ମନ୍ଦିର ଓ ଜଗନ୍ନାଥ ତତ୍ତ୍ୱ - ପଣ୍ଡିତ ସୂର୍ଯ୍ୟ ନାରାୟଣ ଦାଶ**

ଶ୍ରୀମନ୍ଦିର ଗଠିତ ବୋଲି କେହି କେହି କହିଛନ୍ତି । ସ୍ୱାମୀ ବିବେକାନନ୍ଦ ମଧ୍ୟ ଏହା କହିଛନ୍ତି । ତେବେ ଏହାର ପ୍ରମାଣ ଅଦ୍ୟାବଧି ମିଳିନାହିଁ ।

୩) ବୌଦ୍ଧ-ବଜ୍ରଯାନ 'ଜ୍ଞାନସିଦ୍ଧି' ଗ୍ରନ୍ଥର ପ୍ରଣେତା ହେଉଛନ୍ତି ଖ୍ରୀଷ୍ଟୀୟ ସପ୍ତମ-ଅଷ୍ଟମ ଶତାବ୍ଦୀର ସମ୍ବଳକ (ଏବର ସମ୍ବଲପୁର)ର ରାଜା ଇନ୍ଦ୍ରଭୂତି । ଏହି ଗ୍ରନ୍ଥର ମଙ୍ଗଳାଚରଣରେ ଥିବା ଶ୍ଳୋକ ''ପ୍ରଣିପତ୍ୟ ଜଗନ୍ନାଥଂ...'' ପାଠକରି କେହି କେହି ମତ ଦିଅନ୍ତି ଯେ, ଏଥିରେ ଥିବା 'ଜଗନ୍ନାଥ' ହେଉଛନ୍ତି ପୁରୀର ଜଗନ୍ନାଥ; ଯେ କି ବୁଦ୍ଧ । ପ୍ରଥମକରି 'ଜଗନ୍ନାଥ' ଶବ୍ଦ ଏଥିରେ ବ୍ୟବହୃତ ହୋଇଅଛି । ଏଥି ପୂର୍ବରୁ ଅନ୍ୟ କୌଣସି ଗ୍ରନ୍ଥରେ 'ଜଗନ୍ନାଥ' ଶବ୍ଦ ବ୍ୟବହୃତ ହୋଇନାହିଁ । ସଂସ୍କୃତ ଭାଷାର ରାମାୟଣ, ମହାଭାରତ, ଭାଗବତ, ବିଷ୍ଣୁପୁରାଣରେ 'ଜଗନ୍ନାଥ' ଶବ୍ଦ ବ୍ୟବହୃତ ହୋଇଥିଲେ ହେଁ ତାହା ବିଷ୍ଣୁ/କୃଷ୍ଣଙ୍କ ବିଶେଷଣ ଭାବରେ ବ୍ୟବହାର କରାଯାଇଛି । ପ୍ରଶ୍ନ ହେଲା- 'ଜ୍ଞାନସିଦ୍ଧି'ରେ 'ଜଗନ୍ନାଥ' ଶବ୍ଦକୁ ଏକ ନାମବାଚକ ବିଶେଷ୍ୟ ରୂପରେ ଗ୍ରହଣ କରାଯାଇପାରେ କି ? 'ଜ୍ଞାନସିଦ୍ଧି' ବଜ୍ରଯାନର ଏକ ଗ୍ରନ୍ଥ । ବଜ୍ରଯାନର ଆରାଧ୍ୟ ଦେବତା ହେଉଛନ୍ତି ବଜ୍ରସତ୍ତ୍ୱ ବା ବଜ୍ରସତ୍ତ୍ୱ-ବୁଦ୍ଧ । ସେ ବଜ୍ରହସ୍ତ ହୋଇଥିବାରୁ ତାଙ୍କୁ ବଜ୍ରୀ ମଧ୍ୟ କୁହାଯାଏ । ରାଜା ଇନ୍ଦ୍ରଭୂତି ଅନେକ ଅର୍ଥରେ ଜଗନ୍ନାଥ ଶବ୍ଦକୁ ବ୍ୟବହାର କରିଛନ୍ତି । 'ଜ୍ଞାନସିଦ୍ଧି'ରେ ଅନ୍ୟତ୍ର କୁହାଯାଇଛି-

ଦେଶିତଂ ଲୋକନାଥୈସ୍ତୁ ଜ୍ଞାନ ମତ୍ୟଦ୍ଭୁତଂ ପରମ୍
ସିଦ୍ଧିଦଂ ଜନ୍ମନୀହୈବ ସର୍ବବୁଦ୍ଧମୟଂ ଶିବମ୍ ।

ଏଠାରେ ଲୋକନାଥ ଶବ୍ଦକୁ ଜଗନ୍ନାଥ ଅର୍ଥରେ ବ୍ୟବହାର କରାଯାଇଛି । 'ଜ୍ଞାନସିଦ୍ଧି'ର 'ଜଗନ୍ନାଥ'ଙ୍କୁ ଯଦି ପୁରୀର ଜଗନ୍ନାଥ ଅର୍ଥରେ ନେବାକୁ ହେବ, ତେବେ ଏଠାରେ ଥିବା 'ଲୋକନାଥ'ଙ୍କୁ ପୁରୀର ଲୋକନାଥ ଅର୍ଥରେ ନେବାକୁ ହେବ । 'ଜ୍ଞାନସିଦ୍ଧି'ରେ ଅନେକଥର 'ଭୁବନେଶ୍ୱର' ଶବ୍ଦ ବ୍ୟବହାର କରାଯାଇଛି । ଏହି 'ଭୁବନେଶ୍ୱର'ଶବ୍ଦକୁ ଭୁବନେଶ୍ୱରର ଲିଙ୍ଗରାଜ ମହାପ୍ରଭୁ ଅର୍ଥରେ ନେଇ ହେବ କି ? 'ଜ୍ଞାନସିଦ୍ଧି'ରେ ଜଗନ୍ନାଥ ଓ ଲୋକନାଥ ଏକାର୍ଥବାଚକ ଶବ୍ଦ । ଉଭୟ ଶବ୍ଦର ଅର୍ଥ ବୁଦ୍ଧ । 'ଜ୍ଞାନସିଦ୍ଧି'ର 'ଜଗନ୍ନାଥ'ଙ୍କୁ ଜଗତ୍ ସ୍ୱାମୀ, ଜଗତ୍ ପତି, ଜଗତ୍ ଗୁରୁ ଅର୍ଥରେ ନେବାକୁ ପଡ଼ିବ । ତାନ୍ତ୍ରିକ ପରମ୍ପରାରେ ଗୁରୁ, ଦେବତା ଓ ଶିଷ୍ୟ ଅଭିନ୍ନ [୨୫] ।

'ଜ୍ଞାନସିଦ୍ଧି'ରେ 'ଜଗନ୍ନାଥ' ଶବ୍ଦ କେବଳ ବୁଦ୍ଧ ନୁହେଁ, ଜୈନଙ୍କୁ ମଧ୍ୟ ବୁଝାଏ । ପଣ୍ଡିତ ନୀଳକଣ୍ଠ ଦାସ କହିଛନ୍ତି :

In about the early 8th century, Indravuti a king of Uddian made Jagannath represent both Jain and Buddha, which he says mean the same thing. I bow to Jagannath, who is worshipped by all great Jains and who also represents all Buddha and in perfection is like the all pervading sky.

---

**୨୫. ପ୍ରଣିପତ୍ୟ ଜଗନ୍ନାଥଂ- ପ୍ରଫେସର ପ୍ରହ୍ଲାଦ ପ୍ରଧାନ (ଶ୍ରୀଜଗନ୍ନାଥ - ଓ.ସା.ଏ, ପ୍ରଥମ ସଂସ୍କରଣ, ୧୯୮୨)**

(ନିଖିଳ ଭାରତ ଦର୍ଶନ କଂଗ୍ରେସର କଟକ ଅଧିବେଶନ, ୧୯୫୯ରେ ସଭାପତିତ୍ୱ କରି ନୀଳକଣ୍ଠଙ୍କ ଅଭିଭାଷଣ)

ଡକ୍ଟର ବେଣୀମାଧବ ପାଢ଼ୀଙ୍କ ମତରେ ''କିନ୍ତୁ ଟିକିଏ ସୂକ୍ଷ୍ମ ଭାବରେ ବିଚାର କଲେ ଜଣାପଡ଼େ, ଜଗନ୍ନାଥଙ୍କ ନାମ କିମ୍ବା ରୂପ କୌଣସିଟି ବୁଦ୍ଧ ନୁହେଁ । 'ଜଗନ୍ନାଥ' ଯଦି ବୁଦ୍ଧଙ୍କର ଅପର ନାମ ହୋଇଥାନ୍ତା ତା'ହେଲେ ବୌଦ୍ଧ ଅଭିଧାନକାର ହେମଚନ୍ଦ୍ରଙ୍କ ଅଭିଧାନ ଗ୍ରନ୍ଥରେ କିମ୍ବା ବୌଦ୍ଧପନ୍ଥୀ ଅମର ସିଂହଙ୍କ କୃତି 'ଅମର କୋଷ'ରେ ତାହା ବୁଦ୍ଧ ପର୍ଯ୍ୟାୟରେ ଅବଶ୍ୟ ଉଲ୍ଲେଖ ଥାନ୍ତା''[୨୬] ।

ଡକ୍ଟର ପାଢ଼ୀ କହିଛନ୍ତି, ''ବିଷ୍ଣୁପୁରାଣରେ ପ୍ରଥମେ 'ଜଗନ୍ନାଥ' ଶବ୍ଦ ବିଶେଷ୍ୟ ରୂପେ ପ୍ରୟୋଗ ହେବା ଦେଖୁ'' [୨୭] । ଡକ୍ଟର ଗୋପୀନାଥ ମହାପାତ୍ର ଲେଖିଛନ୍ତି- ''ବୁଦ୍ଧଙ୍କ ନାମ ଯଦି ଜଗନ୍ନାଥ ହୋଇଥାନ୍ତା, ତେବେ ବୌଦ୍ଧଗ୍ରନ୍ଥମାନଙ୍କରେ ଏ ନାମ ଦେଖାଯାଉଥାନ୍ତା । ମାତ୍ର କୌଣସି ପିଟକ ଗ୍ରନ୍ଥରେ ଏ ନାମ ମୁକ୍ତ ଭାବରେ ବୁଦ୍ଧଙ୍କ ପାଇଁ ବ୍ୟବହୃତ ହୋଇନାହିଁ । ତେଣୁ ଇନ୍ଦ୍ରଭୂତିଙ୍କ ଜ୍ଞାନସିଦ୍ଧିରେ ବ୍ୟବହୃତ 'ଜଗନ୍ନାଥ' ପଦଟି ଏକ ବିଶେଷଣାତ୍ମକ ପଦ ଭିନ୍ନ ଅନ୍ୟ କିଛି ନୁହେଁ । ଦ୍ୱିତୀୟ କଥା ହେଉଛି, ଜଗନ୍ନାଥ ବିଷ୍ଣୁଙ୍କର ପର୍ଯ୍ୟାୟବାଚୀ ଶବ୍ଦ କି ନା ? ପ୍ରାଚୀନ ପୁରାଣମାନଙ୍କରେ ତ ଏହାର ବ୍ୟବହାର ନିଶ୍ଚୟ ଅଛି । ପୁଣି ବିଷ୍ଣୁସହସ୍ର ନାମରେ ମଧ୍ୟ ସ୍ଥାନ ପାଇଅଛି'' [୨୮] ।

ଇନ୍ଦ୍ରଭୂତିଙ୍କ ସମୟ ବେଳକୁ ଶ୍ରୀକ୍ଷେତ୍ରରେ ଶ୍ରୀଜଗନ୍ନାଥ ଏକ ପ୍ରମୁଖ ବୈଷ୍ଣବ ଦେବତା ଭାବରେ ଉପାସିତ ହୋଇସାରିଲେଣି ଏବଂ ବିଷ୍ଣୁଙ୍କର ଏକ ଅବତାର ଭାବରେ ବୁଦ୍ଧଙ୍କୁ ବିବେଚନା କରାଗଲାଣି । ସମାଜରେ ହିନ୍ଦୁ ଓ ବୌଦ୍ଧମାନଙ୍କ ମଧ୍ୟରେ ଭେଦଭାବରେ ତୀବ୍ରତା ନଥିଲା । ଉଭୟ ଧର୍ମାବଲମ୍ବୀମାନଙ୍କ ମଧ୍ୟରେ ବିବାହ ପ୍ରଚଳିତ ଥିଲା । ସ୍ୱାମୀ ହିନ୍ଦୁ ଓ ସ୍ତ୍ରୀ ବୌଦ୍ଧ ଥିବାର ଦୃଷ୍ଟାନ୍ତ ମଧ୍ୟ ରହିଛି । ଉଭୟେ ଉଭୟଙ୍କ ଗୋଷ୍ଠୀର ଦେବଦେବୀଙ୍କୁ ଉପାସନା କରୁଥିଲେ [୨୯] । ସ୍ୱାମୀ ଅଭେଦାନନ୍ଦ ଖ୍ରୀ: ୧୯୨୨ରେ ତିବ୍ବତ ପରିଭ୍ରମଣରେ ଯାଇ ଦେଖିଥିଲେ ଯେ ମୌଲବା ଚମ୍ବା (Maulaba Chamba) ନାମକ ଏକ ଗ୍ରାମରେ ଗାମଦେବତା ଭାବରେ ଏକ ବିଷ୍ଣୁମୂର୍ତ୍ତିଙ୍କୁ ବୌଦ୍ଧମାନେ ପୂଜା କରୁଛନ୍ତି, ଯେହେତୁ ବୁଦ୍ଧ ବିଷ୍ଣୁଙ୍କର ଏକ ଅବତାର [୩୦] ।

ରାଜା ଇନ୍ଦ୍ରଭୂତି ଆଲୋଚ୍ୟ ଶ୍ଳୋକରେ ଜଗନ୍ନାଥ-ବିଷ୍ଣୁଙ୍କୁ ବୌଦ୍ଧ ଜ୍ଞାନରେ ପ୍ରଣିପାତ କରିଥିବେ । ଜଗନ୍ନାଥ ଯେ ମୂଳତଃ ବୁଦ୍ଧ ଦେବତା, ଏହା ମନେ କରିବାର ଯୁକ୍ତିଯୁକ୍ତ କାରଣ

---

**୨୬. ଦାରୁ ଦେବତା- ଡକ୍ଟର ବେଣୀମାଧବ ପାଢ଼ୀ**

**୨୭. ତତ୍ରୈବ**

**୨୮. ଶ୍ରୀଜଗନ୍ନାଥ ତତ୍ତ୍ୱ- ଡକ୍ଟର ଗୋପୀନାଥ ମହାପାତ୍ର**

**୨୯. ପ୍ରଣିପତ୍ୟ ଜଗନ୍ନାଥଂ...(ପ୍ରବନ୍ଧ)- ମହୀମୋହନ ତ୍ରିପାଠୀ, ଶ୍ରୀମନ୍ଦିର କାର୍ତ୍ତିକସଂଖ୍ୟା, ୨୦୦୫**

୩୦. Swami Abhedananda's journey into Kashmir and Tibet- Ramakrishna Bedanta Matha, Calcutta, May 2001 Edition

ନାହିଁ । ପ୍ରଫେସର ପ୍ରହ୍ଲାଦ ପ୍ରଧାନ ସୁତରାଂ କହିଛନ୍ତି- ''ଜଗନ୍ନାଥଙ୍କୁ ବୁଦ୍ଧ ରୂପେ ଗ୍ରହଣ କରିବାକୁ ଅନ୍ୟାନ୍ୟ ଯୁକ୍ତିର ଆଶ୍ରୟ ନେବାକୁ ହେବ । ସେ ସବୁ ଯୁକ୍ତିକୁ ମଧ୍ୟ ବିଚାର କରିବାକୁ ହେବ ।''

ଏଠାରେ ସୂଚନାଯୋଗ୍ୟ ଯେ ଆସାମର ମଣିକୂଟ ବା ହୋଜୋ ପାହାଡ଼ ଉପରେ ରହିଛି ପ୍ରସିଦ୍ଧ ହୟଗ୍ରୀବ ମନ୍ଦିର । ଏହି ମନ୍ଦିରର ସିଂହାସନରେ ବିଷ୍ଣୁଙ୍କ ଅବତାର ଭାବେ ଅଶ୍ୱମୁଖଧାରୀ ହୟଗ୍ରୀବଙ୍କ ସହ ଯେଉଁ ପାଞ୍ଚଟି ମୂର୍ତ୍ତି ପୂଜା ପାଉଛନ୍ତି, ତନ୍ମଧ୍ୟରେ ରହିଛନ୍ତି ଶ୍ରୀଜଗନ୍ନାଥଙ୍କ ମୂର୍ତ୍ତି । ଏହି ମନ୍ଦିରକୁ ଯିବାପାଇଁ ତୀଖ ପାହାଡ଼ ଉପରେ ପ୍ରାୟ ଶହେଟି ପାହାଚ ଚଢ଼ିବାକୁ ହୁଏ । ସେଥିମଧ୍ୟରେ ରହିଛି ବଡ଼ ବଡ଼ ପ୍ରସ୍ତରରେ ନିର୍ମିତ ୯୨ଟି ମୁଖ୍ୟ ପାହାଚ । ଏହି କଷ୍ଟଦାୟକ ଯାତ୍ରାକୁ ଭ୍ରୂକ୍ଷେପ ନକରି ଆସାମର ରାଜ୍ୟପାଳ ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ ଏହି ବିପଦପୂର୍ଣ୍ଣ ଗିରିପଥରେ ଚାଲିଚାଲି ଯାଇ ମନ୍ଦିର ଉପରେ ତା. ୨୦.୯.୨୦୧୦ରେ ପହଞ୍ଚିଥିଲେ । ହଜାର ହଜାର ବର୍ଷ ଧରି ସୁଦୂର ଆସାମର ଏକ ପାହାଡ଼ ଉପରେ ଥିବା ହୟଗ୍ରୀବ ମନ୍ଦିରରେ ଶ୍ରୀଜଗନ୍ନାଥ ଯେ ପୂଜା ପାଉଛନ୍ତି, ଓଡ଼ିଶାରେ ଏକଥା ଖୁବ୍ କମ୍ ଲୋକେ ଜାଣିଥିବେ । ମନ୍ଦିରଟି କେବଳ ହିନ୍ଦୁଙ୍କ ପାଇଁ ନୁହେଁ, ବୌଦ୍ଧମାନଙ୍କ ପାଇଁ ମଧ୍ୟ ଏକ ବିଶେଷ ତାତ୍ପର୍ଯ୍ୟପୂର୍ଣ୍ଣ ପର୍ଯ୍ୟଟନସ୍ଥଳୀ । ଏଠାରେ ବୁଦ୍ଧ ନିର୍ବାଣ ଲାଭ କରିଥିଲେ ବୋଲି ବୌଦ୍ଧମାନେ ବିଶ୍ୱାସ କରୁଥିବାରୁ ମନ୍ଦିରରେ ପୂଜିତ ହେଉଥିବା ବିଷ୍ଣୁଙ୍କ ଏହି ଅବତାରଙ୍କୁ ସେମାନେ ବୁଦ୍ଧ ଭାବେ ଉପାସନା କରିଥାନ୍ତି [୩୧] ।

୪) ଶ୍ରୀଜଗନ୍ନାଥ ମନ୍ଦିରରେ ପାଳନ କରାଯାଉଥିବା କୌଣସି ପର୍ବପର୍ବାଣି କିମ୍ବା ଦୈନନ୍ଦିନ ନୀତି ଉପରେ ବୌଦ୍ଧଧର୍ମର ପ୍ରଭାବ ପରିଲକ୍ଷିତ ହେଉନାହିଁ । ପୁରୀର ରଥଯାତ୍ରା ବୌଦ୍ଧ ରଥଯାତ୍ରାର ଫଳ ଭାବିବା ଅମୂଳକ ବୋଲି ମଧ୍ୟ ଗବେଷକ ପ୍ରଭାତ ମୁଖାର୍ଜୀ ମତ ଦେଇଛନ୍ତି । ପ୍ରଫେସର ଏ.ଏଲ.ବାସାନ୍‌ଙ୍କ ଯୁକ୍ତି ଦର୍ଶାଇ ଡକ୍ଟର କାହ୍ନୁଚରଣ ମିଶ୍ର କହନ୍ତି ଯେ, ବୌଦ୍ଧଧର୍ମ ହେଉଛି ସନାତନ ଧର୍ମ ବା ହିନ୍ଦୁଧର୍ମର ବାଣୀ ମାତ୍ର । ଜଗନ୍ନାଥ ହେଉଛନ୍ତି ହିନ୍ଦୁଧର୍ମର ଏକ ମୁଖ୍ୟ ଦେବତା । ତାହାଙ୍କ ଉପରେ ବୌଦ୍ଧ ପ୍ରଭାବ ପ୍ରକୃତ ଭାବେ ପଡିଛି ବୋଲି କହିବାରେ କୌଣସି ଯଥାର୍ଥତା ନାହିଁ । ବୌଦ୍ଧଧର୍ମ ଓ ଜୈନଧର୍ମ ଉପରେ ହିନ୍ଦୁଧର୍ମର ଯଥେଷ୍ଟ ପ୍ରଭାବ ପଡ଼ିଛି [୩୨] । ଫାହିୟାନଙ୍କ ପାଟଳୀପୁତ୍ରରେ ହୋଇଥିବା ବୌଦ୍ଧ ରଥଯାତ୍ରାର ବିବରଣୀ ସହିତ ପୁରୀ ରଥଯାତ୍ରାର ମେଳ ହେଉନାହିଁ । ନେପାଳରେ ଅନୁଷ୍ଠିତ ବୌଦ୍ଧ ପର୍ବ ହିନ୍ଦୁପର୍ବରୁ ଗୃହୀତ ।

In sketches from Nepal by Old-fields, he observes that the Buddhist festival is evidently adopted from the Hindu festival of Jagannath. The Kumari represents their sister Subhadra. In the memories of Haaretta Caraeiolo, she wrote about the car festival at Sicily observing that the

---

**୩୧. ସମ୍ବାଦ, ତା. ୨୨-୯-୨୦୧୦**

**୩୨. ଓଡ଼ିଆ ସାହିତ୍ୟରେ ଶ୍ରୀଜଗନ୍ନାଥ ଚେତନା- ଡକ୍ଟର ବାସୁଦେବ ସାହୁ**

functions recall to the mind the famed car festival of Jagannath. The description of the car festival at Pataliputra, as given by Fahian in the travels, does not correspond to the Rath Jatra at Puri [33].

ରାଜେନ୍ଦ୍ରଲାଲ ମିତ୍ର କହିଛନ୍ତି ଯେ ପୁରୀ ମନ୍ଦିରର ଚତୁର୍ଦ୍ଧା ମୂର୍ତ୍ତିଙ୍କ ଅସମ୍ପୂର୍ଣ୍ଣ ଅବସ୍ଥାର କାରଣ ସମ୍ବନ୍ଧରେ ଯେଉଁ କିମ୍ବଦନ୍ତୀ ଶୁଣାଯାଏ, ତାହା ସହିତ ବୁଦ୍ଧଗୟାର ବୁଦ୍ଧଙ୍କ ମୂର୍ତ୍ତିର ଅସମ୍ପୂର୍ଣ୍ଣ ଅବସ୍ଥାର କିମ୍ବଦନ୍ତୀର ମେଳ ରହିଛି । ସପ୍ତମ ଶତାବ୍ଦୀରେ ହୁଏନ୍‌ସାଂ ଏହି କିମ୍ବଦନ୍ତୀ ସମ୍ପର୍କରେ ଲେଖିଛନ୍ତି । ବୁଦ୍ଧଗୟାରେ ମନ୍ଦିର ନିର୍ମିତ ହୋଇସାରିବା ପରେ ତଥାଗତ(ବୁଦ୍ଧ)ଙ୍କ ବୁଦ୍ଧତ୍ୱ ପ୍ରାପ୍ତି ସମୟର ଅବସ୍ଥାର ଏକ ମୂର୍ତ୍ତି ଗଠନ କରିବାପାଇଁ କୌଣସି ଶିଳ୍ପୀ ସକ୍ଷମ ହେଲେ ନାହିଁ । ଶେଷରେ ଜଣେ ବ୍ରାହ୍ମଣ ଏହି ମୂର୍ତ୍ତି ଗଠନପାଇଁ ଆଗଭର ହେଲେ । ତାଙ୍କର ସର୍ତ୍ତ ଥିଲା, ସେ ରୁଦ୍ଧ ବିହାର ମଧ୍ୟରେ ରହି ମୂର୍ତ୍ତିଗଠନ କରିବେ ଏବଂ ଛଅ ମାସ ପୂର୍ବରୁ ଦ୍ୱାର କବାଟ କେହି ଖୋଲିବେ ନାହିଁ । କିନ୍ତୁ ବୌଦ୍ଧଭିକ୍ଷୁମାନେ ଛଅ ମାସ ପୂର୍ଣ୍ଣ ହେବା ପୂର୍ବରୁ ଦ୍ୱାର ଖୋଲିଦେଲେ ଓ ଦେଖିଲେ ଯେ ବିହାରର ମଧ୍ୟସ୍ଥଳରେ ବୁଦ୍ଧଦେବ ଧ୍ୟାନସ୍ଥ ଅବସ୍ଥାରେ ହାତ ଉପରେ ହାତ ରଖିଛନ୍ତି, କିନ୍ତୁ ତାଙ୍କର ବକ୍ଷସ୍ଥଳର ବାମ ଭାଗଟି ପୂର୍ଣ୍ଣ ଭାବରେ ଗଠିତ ହୋଇନାହିଁ । ବ୍ରାହ୍ମଣ ଶିଳ୍ପୀ ଉଭାନ ହୋଇଯାଇଛନ୍ତି । ରାଜେନ୍ଦ୍ରଲାଲଙ୍କ ମତାନୁସାରେ କିମ୍ବଦନ୍ତୀର ଏହି ସାମଞ୍ଜସ୍ୟ, ଜଗନ୍ନାଥ ଯେ ବୁଦ୍ଧମୂର୍ତ୍ତି ଏହାର ଅନ୍ୟତମ ପ୍ରମାଣ । କିନ୍ତୁ ଏହି କିମ୍ବଦନ୍ତୀ ହିନ୍ଦୁ କିମ୍ବଦନ୍ତୀର ଅନୁକରଣରେ ହୋଇନଥିବ ଭାବିବା ମଧ୍ୟ ଅଯୌକ୍ତିକ ହେବ । ସମଗ୍ର ବୌଦ୍ଧଶାସ୍ତ୍ରରେ; ହିନ୍ଦୁଶାସ୍ତ୍ରର, ହିନ୍ଦୁ ଦେବଦେବୀଙ୍କର ଅନେକ ଅନୁକରଣ ଦେଖାଯାଏ । ସୁତରାଂ ବୁଦ୍ଧଗୟାର କିମ୍ବଦନ୍ତୀଟି ପୁରୀ କିମ୍ବଦନ୍ତୀ ଅନୁକରଣରେ ସୃଷ୍ଟି ହୋଇଥିବା ଅସମ୍ଭବ ନୁହେଁ [୩୪] ।

ସ୍ୱାମୀ ଅଭେଦାନନ୍ଦଙ୍କ କାଶ୍ମିର ଓ ତିବ୍ବତ ପରିଭ୍ରମଣ ପୁସ୍ତକରେ ଲେଖାଅଛି ଯେ, ତିବ୍ବତର ଲାସାରେ ଜିଖାଙ୍ଗ (Jekhang) ନାମକ ଏକ ପ୍ରାଚୀନ ମନ୍ଦିରରେ ଏକ ଅଷ୍ଟଧାତୁର ବୁଦ୍ଧମୂର୍ତ୍ତି ବିରାଜିତ । କିମ୍ବଦନ୍ତୀ ଅନୁସାରେ ଗୌତମବୁଦ୍ଧଙ୍କ ଜୀବନକାଳରେ ଏହି ବୁଦ୍ଧମୂର୍ତ୍ତି ମଗଧରେ ନିର୍ମିତ ହୋଇଥିଲା । ଦେବରାଜ ଇନ୍ଦ୍ରଙ୍କ ନିର୍ଦ୍ଦେଶରେ ଦେବଶିଳ୍ପୀ ବିଶ୍ୱକର୍ମା ଏହି ମୂର୍ତ୍ତି ନିର୍ମାଣ କରିଥିଲେ [୩୫] । ଏହି କିମ୍ବଦନ୍ତୀ ଉପରେ ହିନ୍ଦୁ ପୁରାଣର ପ୍ରଭାବ ଲକ୍ଷ୍ୟ କରାଯାଏ ।

୫) ଶ୍ରୀଜଗନ୍ନାଥଙ୍କ ମହାପ୍ରସାଦ ସେବନରେ ଜାତି, ବର୍ଣ୍ଣର ଭେଦଭାବ ନାହିଁ । ଏହା ବୌଦ୍ଧତନ୍ତ୍ରର ପ୍ରଭାବ ବୋଲି କୁହାଯାଇଛି । କିନ୍ତୁ ମୂଳ ବୌଦ୍ଧଧର୍ମରେ ମୂର୍ତ୍ତିପୂଜା ନଥିଲା କି ତନ୍ତ୍ର ପ୍ରବେଶ କରିନଥିଲା । ଖ୍ରୀଷ୍ଟୀୟ ସପ୍ତମ/ଅଷ୍ଟମ ଶତାବ୍ଦୀରେ ବୌଦ୍ଧଧର୍ମରେ ତନ୍ତ୍ର ପ୍ରବେଶ କଲା । ମହାଯାନପନ୍ଥୀ ବୌଦ୍ଧମାନେ ବୌଦ୍ଧଧର୍ମର ମୂଳ ଦର୍ଶନକୁ ଉପେକ୍ଷା କରି ହିନ୍ଦୁଧର୍ମର ତାନ୍ତ୍ରିକ

---

**୩୩.** Report of the Special Officer under the Puri Shri Jagannath Temple (Administration) Act.1952.

**୩୪. ଜଗନ୍ନାଥ ମନ୍ଦିର ଓ ଜଗନ୍ନାଥ ତତ୍ତ୍ୱ- ପଣ୍ଡିତ ସୂର୍ଯ୍ୟ ନାରାୟଣ ଦାଶ**

**୩୫.** Swami Abhedananda's journey into Kashmir and Tibet- May 2001 Edition

ପୂଜାପଦ୍ଧତି ବୌଦ୍ଧଧର୍ମରେ ପୂରାଇଲେ [୩୬] । ମହାପ୍ରଭୁ ଜଗନ୍ନାଥଙ୍କ ପ୍ରସାଦକୁ ମହାପ୍ରସାଦ କାହିଁକି କୁହାଯାଏ, ସେଥିନେଇ ବହୁତ ତାତ୍ତ୍ୱିକ ଅର୍ଥ ଅଛି । ଗୋଟିଏ ଅର୍ଥ ହେଲା ସ୍ୱାମୀ ନିଗମାନନ୍ଦଙ୍କ ଭାଷାରେ-ପରଂବ୍ରହ୍ମଙ୍କ ପୂଜାରେ ବ୍ରହ୍ମାର୍ପିତ ବସ୍ତୁ ମହାପବିତ୍ରକାରୀ ଏବଂ ବ୍ରହ୍ମ ନିବେଦିତ ବସ୍ତୁ ଭୋଜନକାଳରେ ବ୍ରାହ୍ମଣାଦି ବର୍ଣ୍ଣର ବିଚାର ନାହିଁ, ଉଚ୍ଛିଷ୍ଟ ବିଚାର ମଧ୍ୟ ନାହିଁ । ଏଥିରେ କାଳାକାଳ ବା ଶୌଚାଶୌଚର ବିଚାର ମଧ୍ୟ ନାହିଁ [୩୭] । ସେହିପରି ସୁଭଦ୍ରା ଓ ସୁଦର୍ଶନଙ୍କ ପ୍ରତିମା ସହିତ ତାନ୍ତ୍ରିକ ବୌଦ୍ଧଧର୍ମର ସମ୍ପର୍କ ନାହିଁ । ଶ୍ରୀମନ୍ଦିରର ଚତୁର୍ଦ୍ଧାମୂର୍ତ୍ତି ପ୍ରତୀକ ବିଗ୍ରହ । ବିଗ୍ରହ ତତ୍ତ୍ୱ ସମ୍ପର୍କରେ ବହୁତ ପ୍ରକାର ବ୍ୟାଖ୍ୟା କରାଯାଇଛି । ଆଦିବାସୀଙ୍କର ସ୍ତମ୍ଭପୂଜାରୁ ଜଗନ୍ନାଥ ଯଦି କାଳକ୍ରମେ ସୃଷ୍ଟି ହୋଇଛନ୍ତି ବୋଲି ବିଚାର କରାଯାଏ, ତେବେ ସେ ବୈଦିକ ଯୂପ ପୂଜାର କ୍ରମପରିଣତି କାହିଁକି ନହେବେ ବୋଲି ଡକ୍ଟର ଗୋପୀନାଥ ମହାପାତ୍ର ପ୍ରଶ୍ନ କରିଛନ୍ତି । କୃଷ୍ଣ, ବଳରାମ, ଏକାନଂସା ପୂରାପୂରି ବିଗ୍ରହ ମୂର୍ତ୍ତି ହେଲାବେଳେ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ହେଉଛନ୍ତି ପ୍ରତୀକ ମୂର୍ତ୍ତି । ଏଥିରେ ରହିଛି ଅରୂପରେ ସରୂପ ଭାବ ବା ବ୍ରହ୍ମଭାବର ଦାର୍ଶନିକ ଚିନ୍ତା । ଏହି ଭାବନାରେ ରୂପାୟିତ ହୋଇ ଏମାନେ ଦାରୁବ୍ରହ୍ମ ହୋଇଛନ୍ତି [୩୮] । ତାମିଲନାଡୁରେ କିଛି ଲୋକ, ସାଧାରଣତଃ ବନିୟାରମାନେ, ବିଷ୍ଣୁଙ୍କୁ ପେରୁମଲ ଭାବରେ ଏକ ପ୍ରସ୍ତର ବା କାଷ୍ଠ ନିର୍ମିତ ସ୍ତମ୍ଭ ରୂପରେ ପୂଜା କରିଥାନ୍ତି [୩୯] ।

ପ୍ରାଚୀନ କାଳରେ ଅଶୋକଙ୍କ କଳିଙ୍ଗ ଯୁଦ୍ଧ ପୂର୍ବରୁ, ବର୍ମାର ପୁରାତନ ସହର 'ପ୍ରୋମ୍'କୁ ଶ୍ରୀକ୍ଷେତ୍ର କୁହାଯାଉଥିଲା । ବୁଦ୍ଧମନ୍ଦିର, ସିଭଜିଗାନ ପାଗୋଡ଼ା (Shwezigon Pagoda)ର ଶିଳାଲେଖରେ ପ୍ରୋମ୍‌କୁ ଶ୍ରୀକ୍ଷେତ୍ର ବୋଲି ଉଲ୍ଲେଖ କରାଯାଇଛି । ଏହି ଶ୍ରୀକ୍ଷେତ୍ରର ବାସିନ୍ଦାମାନେ ପ୍ୟୁ ନାମରେ ପରିଚିତ ଥିଲେ । ଏମାନେ କେଉଁ ଜାତିର ଲୋକ ତାହା ନିଶ୍ଚିତ ରୂପେ ଜଣାପଡ଼ି ନାହିଁ । ସେମାନେ ତିବ୍ବତୀୟ ହୋଇଥିବା ସମ୍ଭବ । ପ୍ୟୁମାନେ ବୌଦ୍ଧଧର୍ମାବଲମ୍ବୀ ହେଲେହେଁ ସେମାନଙ୍କର ରାଜଧାନୀ ଶ୍ରୀକ୍ଷେତ୍ର ଓଡ଼ିଶାର ସୁପ୍ରସିଦ୍ଧ କ୍ଷେତ୍ର (ପୁରୁଷୋତ୍ତମ ପୁରୀ) ନାମରୁ ହୋଇଥିବା ଅନୁମିତ ହୁଏ । ଉକ୍ତ ପାଗୋଡ଼ାରୁ ମିଳିଥିବା ଏକ ଅଭିଲେଖରୁ ଜଣାଯାଏ ଯେ, ବୁଦ୍ଧ ସେହି ସହରର ପରିଚୟ ଦେବାକୁ ଯାଇ ଶିଷ୍ୟ ଆନନ୍ଦଙ୍କୁ କହିଛନ୍ତି- ତାହା ଏକ ପ୍ରାଚୀନ ସହର ଏବଂ ତାହାକୁ ବିଷ୍ଣୁ ନିଜେ ଦେବରାଜ ଇନ୍ଦ୍ର ଓ ବିଶ୍ୱକର୍ମାଙ୍କ ସାହାଯ୍ୟରେ ନିର୍ମାଣ କରିଥିଲେ । ବିଷ୍ଣୁଙ୍କଦ୍ୱାରା ସ୍ଥାପିତ ଶ୍ରୀକ୍ଷେତ୍ର, ଓଡ଼ିଶାର ସୁପ୍ରସିଦ୍ଧ ଶ୍ରୀକ୍ଷେତ୍ରରୁ ନାମିତ ହୋଇଥିବା ବିଶେଷ ସମ୍ଭାବନା [୪୦] ।

---

**୩୬. ଓଡ଼ିଶାର ପଶ୍ଚିମାଞ୍ଚଳର ବୌଦ୍ଧ ପରମ୍ପରା- ଭକ୍ତପୂରନ ସାହୁ, ଝଙ୍କାର, ମାର୍ଚ୍ଚ ୧୯୮୭**

**୩୭. ତାନ୍ତ୍ରିକ ଗୁରୁ- ସ୍ୱାମୀ ନିଗମାନନ୍ଦ**

**୩୮. ଶ୍ରୀଜଗନ୍ନାଥ ତତ୍ତ୍ୱ- ଡକ୍ଟର ଗୋପୀନାଥ ମହାପାତ୍ର**

**୩୯. ଦକ୍ଷିଣ ଭାରତରେ ଦେବଦେବୀ ସଂସ୍କୃତି- ଅଧ୍ୟାପକ ଅରବିନ୍ଦ ଶତପଥୀ । ନିୟତି, ଅକ୍ଟୋବର, ୨୦୦୯**

**୪୦. ଓଡ଼ିଆ ଜାତିର ଇତିହାସ- ଡକ୍ଟର ନବୀନ କୁମାର ସାହୁ, ଓଡ଼ିଶା ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା, ଭୁବନେଶ୍ୱର, ୧୯୭୪**

ପୁରୀ ସମ ଏକ ସହର ଶ୍ରୀକ୍ଷେତ୍ର, ଭାରତ ବାହାରେ ନିର୍ମାଣ କରାଇବା ଅଭିପ୍ରାୟ ବୁଦ୍ଧଦେବ ଘୋଷଣା କରିଥିବା ଏହି ଶିଳାଲେଖରୁ ଜଣାଯାଏ । ବୁଦ୍ଧଦେବଙ୍କ ଆବିର୍ଭାବ ପୂର୍ବରୁ ପୁରୀ 'ଶ୍ରୀକ୍ଷେତ୍ର' ନାମରେ ଯଶଲାଭ କରିଥିବା ଅନୁମାନ କରାଯାଏ (୪୧) ।

ଏଭଳି ବହୁ ସପକ୍ଷ ଓ ବିପକ୍ଷ ଯୁକ୍ତି ସତ୍ତ୍ୱେ ଜଗନ୍ନାଥ ଓ ବୁଦ୍ଧଙ୍କୁ ଏକ ଓ ସର୍ବସମ ବିବେଚନା କରାଯାଉଛି । ଦ୍ୱାଦଶ ଶତାବ୍ଦୀର ବିଶ୍ୱବିଖ୍ୟାତ କବି ଜୟଦେବ ତାଙ୍କ ସୁପ୍ରସିଦ୍ଧ ରଚନା 'ଗୀତଗୋବିନ୍ଦ'ରେ ଜଗନ୍ନାଥଙ୍କୁ 'ବୁଦ୍ଧଶରୀର' ରୂପେ ବନ୍ଦନା କରିଛନ୍ତି:

''କେଶବଧୃତ ବୁଦ୍ଧ ଶରୀର ଜୟ ଜଗଦୀଶ ହରେ ।''

ଓଡ଼ିଆ ଭକ୍ତକବି, ଯଥା- ସାରଳା ଦାସ, ଅଚ୍ୟୁତାନନ୍ଦ ଦାସ, ବଳରାମ ଦାସ, ଶିଖର ଦାସ, ଯଶୋବନ୍ତ ଦାସ, ଦ୍ୱାରକା ଦାସ ପ୍ରମୁଖ ମଧ୍ୟ ଜଗନ୍ନାଥଙ୍କୁ ବୌଦ୍ଧାବତାର ରୂପେ ବର୍ଣ୍ଣନା କରିଛନ୍ତି । ସାରଳା ଦାସ ଲେଖିଛନ୍ତି:

''ପୁରୁଷୋତ୍ତମ ନଗର ମହୋଦଧି ତୀରେ
ନୀଳଗିରି ପରବତ ଅଛି ତା' ସ୍ଥାନରେ ।
ଦେଉଳ ଭିତରେ ସିଂହାସନେ ବିଜେ ହୋଇ
ବୌଦ୍ଧ ରୂପରେ ପ୍ରଭୁ ଶଙ୍ଖ ଚକ୍ର ବହି ।'' (ମହାଭାରତ)
''ସେ ଜଗନ୍ନାଥ ଯେ ସଂସାର ଉଦ୍ଧାରଣ
ମ୍ଳେଚ୍ଛଜନ ଉଦ୍ଧାରଣେ ସେ ବଉଦ ରୂପେଣ ।'' (ମହାଭାରତ)

ସେହିପରି ଅଚ୍ୟୁତାନନ୍ଦ ଦାସ (୧୬ଶ ଶତାବ୍ଦୀ) ଲେଖିଛନ୍ତି:

''ଶ୍ରୀନୀଳକନ୍ଦରେ ବିଜେ କରିଅଛ ବଉଧ ରୂପ ବହିଛ
ଭକତ ନିମନ୍ତେ ତୁମ୍ଭର ଏ ସବୁ ଭିଆଣ ପ୍ରଭୁ ଶ୍ରୀବତ୍ସ ।'' (ଗରୁଡ଼ ଗୀତା)

ବୌଦ୍ଧରୂପୀ ହେଲେ ମଧ୍ୟ ପୁରୁଷୋତ୍ତମ- ଜଗନ୍ନାଥ ସର୍ବ ଅବତାରର ମୂଳ ବୋଲି ଅଚ୍ୟୁତାନନ୍ଦ କହିଛନ୍ତି :

''ଅବତାର ଦଶ ଏହି ଦାରୁରୂପ   ଏହି ଦାରୁରେ ସେ ଲୀନ,
ଈଶ୍ୱର ସାକ୍ଷାତେ ଲୀଳାର ନିମନ୍ତେ   ବିଜେ ରତ୍ନ ସିଂହାସନ ।'' (ଶୂନ୍ୟ ସଂହିତା)

ଗରୁଡ଼ ଖମ୍ବର ଦକ୍ଷିଣପାର୍ଶ୍ୱ ଜଗମୋହନ କାନ୍ଥରେ ଦଶ ଅବତାର ପ୍ରତିମାମାନଙ୍କ ମଧ୍ୟରେ ବୁଦ୍ଧଙ୍କ ସ୍ଥାନ (ନବମ ସ୍ଥାନ)ରେ ଜଗନ୍ନାଥଙ୍କ ପ୍ରତିମା ଶୋଭା ପାଉଅଛି । ସେହିପରି ପୂର୍ବ ଦ୍ୱାର ବା ସିଂହଦ୍ୱାର ଶୀର୍ଷରେ ମଧ୍ୟ ବୁଦ୍ଧଙ୍କ ପରିବର୍ତ୍ତେ ଜଗନ୍ନାଥ ରହିଛନ୍ତି । ଏଥିରୁ ବୁଦ୍ଧ ଓ ଜଗନ୍ନାଥଙ୍କ ଅଭିନ୍ନତା ସୂଚିତ ହେଉଛି ।

ଋଷଭ ଦେବ ଓ ବୁଦ୍ଧଦେବଙ୍କୁ ଜଗନ୍ନାଥ ମହାପ୍ରଭୁଙ୍କ ସହିତ ସମୀକରଣ କରାଯାଇଛି । ଜୈନଧର୍ମ, ବୌଦ୍ଧଧର୍ମ ଓ ଶିଖଧର୍ମକୁ ହିନ୍ଦୁଧର୍ମ ସହିତ ସମାନ ମନେ କରାଯାଇଛି । କେତେକ ସୀମାବଦ୍ଧତା ଥାଇ ଏହି ଧର୍ମାବଲମ୍ବୀମାନେ ଅବାଧରେ ଶ୍ରୀମନ୍ଦିରକୁ ଦର୍ଶନପାଇଁ ଯାଇ ପାରୁଛନ୍ତି ।

---

**୪୧. ଜଗନ୍ନାଥ ମନ୍ଦିର ଓ ଜଗନ୍ନାଥ ତତ୍ତ୍ୱ- ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ**

ପ୍ରଫେସର ଗୋପୀନାଥ ମହାପାତ୍ର କହନ୍ତି : ''ଜଗନ୍ନାଥଙ୍କ ଉପରେ ଯେତେବେଳେ ଯେଉଁ ମତବାଦୀ ଦୃଷ୍ଟି ନିକ୍ଷେପ କରିଛନ୍ତି, ଜଗନ୍ନାଥ ସେମାନଙ୍କର ନିଜର ହୋଇଛନ୍ତି । ସେହି ଦୃଷ୍ଟିରୁ ବିଚାର କଲେ, ଜଗନ୍ନାଥ ବୌଦ୍ଧଧର୍ମର ଗବେଷକଙ୍କପାଇଁ ସେ ବୌଦ୍ଧ ତ ଜୈନ ମତବାଦୀଙ୍କ ପାଇଁ ଜୈନ । ସେହିଭଳି ନୃତତ୍ତ୍ୱ ଗବେଷକଙ୍କପାଇଁ ଆଦିବାସୀ ଦେବତା ତ ଅନ୍ୟ ଧର୍ମର ଗବେଷକଙ୍କପାଇଁ ସେ ସେହି ଧର୍ମମୂଳକ ଦେବତା ଭାବରେ ଦୃଷ୍ଟିଗୋଚର ହୁଅନ୍ତି । ଯିଏ ଦ୍ୱୈତବାଦୀ, ଜଗନ୍ନାଥ ତାଙ୍କ ଦୃଷ୍ଟିରେ ଦ୍ୱୈତ; ପୁଣି ଅଦ୍ୱୈତବାଦୀଙ୍କ ଦୃଷ୍ଟିରେ ସେ ଅଦ୍ୱୈତ । ବିଶିଷ୍ଟ ଦ୍ୱୈତବାଦୀଙ୍କ ମତରେ ସେ ତଦ୍ରୂପ ; ଆଉ ଶାକ୍ତ ମତରେ ସେ ଦକ୍ଷିଣକାଳିକା । ସେ ପୁଣି ଭୈରବ ଆଉ ବିମଳା ତାଙ୍କର ଭୈରବୀ । ଅତଏବ, ଯିଏ ଯେପରି ତାଙ୍କୁ ପ୍ରଥମରୁ ଭାବି ଗବେଷଣା ଚଳାଇଲା, ତାହା ଦୃଷ୍ଟିରେ ସେ ସେପରି ଦେଖାଯାଆନ୍ତି । 'ଯେ ଯଥା ମାଂ ପ୍ରପଦ୍ୟନ୍ତେ ତାଂ ସ୍ତଥୈବ ଭଜାମ୍ୟହଂ (ଗୀତା) ।' ତେଣୁ ସେ ପ୍ରକୃତରେ ଗୀତାର ଭଗବାନ ଯୋଗେଶ୍ୱର ଶ୍ରୀକୃଷ୍ଣ ପୁରୁଷୋତ୍ତମ ।''

## ଦାରୁବ୍ରହ୍ମ

ଶ୍ରୀମନ୍ଦିର ରତ୍ନବେଦୀରେ ବିରାଜିତ ଚତୁର୍ଦ୍ଧାମୂର୍ତ୍ତି ଓ ମାଧବ ହେଉଛନ୍ତି ଦାରୁ (ନିମ୍ବକାଷ୍ଠ) ବିଗ୍ରହ । କିନ୍ତୁ ଶ୍ରୀଜଗନ୍ନାଥ ସାଧାରଣତଃ ଦାରୁବ୍ରହ୍ମ ନାମରେ ପରିଚିତ । 'ଦାରୁବ୍ରହ୍ମ'ର ଏକ ଅର୍ଥ ହେଲା, ଦାରୁ ଦେହରେ ବିରାଜିତ ପରମ ଆତ୍ମା । ଶ୍ରୀଜଗନ୍ନାଥ କାହିଁକି ଦାରୁମୂର୍ତ୍ତି ରୂପେ ବିରାଜମାନ କରିଛନ୍ତି,ସ୍କନ୍ଦପୁରାଣ ଉତ୍କଳ ଖଣ୍ଡରେ ତା'ର କାରଣ ବ୍ରହ୍ମା ଦେବଗଣଙ୍କୁ କହିଛନ୍ତି :

''ପୂର୍ବେ ପରାର୍ଦ୍ଧେ ଭୋ ଦେବାଃ କ୍ଷେତ୍ରଂ ତତ୍ ପୁରୁଷୋତ୍ତମମ୍ ।
ନୀଳାଶ୍ମବପୁରାସ୍ଥାୟଚ ତତ୍ୟାଜ ଜନାର୍ଦ୍ଦନଃ ।୪୨।
ସାମ୍ପ୍ରତଂ ମେ ଦ୍ୱିତୀୟନ୍ତୁ ପରାର୍ଦ୍ଧଂ ସମୁପସ୍ଥିତମ୍ ।
ମନୁଃ ସ୍ୱାୟମ୍ଭୁବୋ ନାମ ଶ୍ୱେତ ବାରାହକଳ୍ପକେ ।
ପ୍ରବର୍ତ୍ତତେଽୟଂ ଲୋକେ ବୈ ପ୍ରାତରଦ୍ୟ ଦିନସ୍ୟଚ ।
ଦାରୁମୂର୍ତ୍ତିରୟଂ ଦେବୋ ଭୁବନାନାଂ ହି ମଧ୍ୟମେ ।୪୩।''

(ହେ ଦେବଗଣ ! ଏଥିପୂର୍ବେ ମୋର ଏକ ପରାର୍ଦ୍ଧକାଳ ବ୍ୟାପୀ ସେହି ପୁରୁଷୋତ୍ତମ କ୍ଷେତ୍ରରେ ଭଗବାନ ଜନାର୍ଦ୍ଦନ ନୀଳକାନ୍ତ ମଣିମୟ ଶରୀର ଅବଲମ୍ବନ ପୂର୍ବକ ଅବସ୍ଥାନ କରୁଥିଲେ । ବର୍ତ୍ତମାନ ମୋର ଦ୍ୱିତୀୟ ପରାର୍ଦ୍ଧ କାଳ ଉପସ୍ଥିତ । ଏହି ଦିବସର ପ୍ରାତଃକାଳରେ ଶ୍ୱେତବରାହ କଳ୍ପେ ସ୍ୱାୟମ୍ଭୁବ ମନୁ ପ୍ରବର୍ତ୍ତିତ ହୋଇଛି । ପ୍ରଭୁ ଜନାର୍ଦ୍ଦନ ଏହି ପ୍ରାତଃକାଳରୁ ଭୁବନସ୍ଥ ଭୂଲୋକରେ ଦାରୁମୂର୍ତ୍ତି ହୋଇ ଅଧିଷ୍ଠିତ ହୋଇଅଛନ୍ତି [୪୨]।)

---

**୪୨. ସ୍କନ୍ଦ ପୁରାଣ (ଉତ୍କଳ ଖଣ୍ଡ ବା ଶ୍ରୀ ପୁରୁଷୋତ୍ତମ ମାହାତ୍ମ୍ୟମ୍) (ତ୍ରୟୋବିଂଶ ଅଧ୍ୟାୟ) ସଂପାଦନା- ବାବା ଚୈତନ୍ୟ ଚରଣ ଦାସ ।**

ଏହି 'ଉତ୍କଳଖଣ୍ଡ'ରେ 'ଦାରୁ'ର ବ୍ୟୁତ୍ପତ୍ତି ନିମ୍ନପ୍ରକାରେ କଥିତ ଅଛି :

''ଖଣ୍ଡନାତ୍ ସର୍ବଦୁଃଖାନାମଖଣ୍ଡାନନ୍ଦ ଦାନତଃ ।
ସ୍ୱଭାବାଦ୍ ଦାରୁରେଷୋ ହି ପରଂବ୍ରହ୍ମାଭିଧୀୟତେ ।'' (୨୮-୩୯)

'ଦାରୁ' ଶବ୍ଦ ଦୁଇଟି ଧାତୁରୁ ନିଷ୍ପନ୍ନ , ଯଥା- 'ଦା' ଧାତୁ ଓ 'ଦୋ' ଧାତୁ । ଏହି ଦୁଇଟି ଧାତୁରେ 'ରୁ' ପ୍ରତ୍ୟୟ ଯୋଗହୋଇ 'ଦାରୁ' ଶବ୍ଦ ହୋଇଛି । ଶୀଳ ବା ସ୍ୱଭାବ ଅର୍ଥରେ 'ରୁ' ପ୍ରତ୍ୟୟ ହୁଏ । 'ଦା'ର ଅର୍ଥ ଦାନ କରିବା, ଏଣୁ ଦାରୁର ଅର୍ଥ ଦାନଶୀଳ । 'ଦୋ' ଧାତୁର ଅର୍ଥ ଖଣ୍ଡନ କରିବା । ଏଣୁ ଦାରୁର ଅନ୍ୟ ଏକ ଅର୍ଥ ଖଣ୍ଡନଶୀଳ । ସୁତରାଂ, ଅଖଣ୍ଡ ଆନନ୍ଦ ଦାନ ଓ ସର୍ବଦୁଃଖ ଖଣ୍ଡନ ହେଉଛି ଦାରୁବିଗ୍ରହରୂପୀ ପରଂବ୍ରହ୍ମଙ୍କର ବିଶେଷତ୍ୱ [୪୩] ।

ଶ୍ରୀଜଗନ୍ନାଥଙ୍କ ଶ୍ରୀଅଙ୍ଗରେ ଏକ ଗୋପନୀୟ ବ୍ରହ୍ମ -ପଦାର୍ଥ ରହିଥିବା ଜଣାଯାଏ । ନବ କଳେବର ସମୟରେ ଏହି ବ୍ରହ୍ମ-ପଦାର୍ଥ ନୂତନ ବିଗ୍ରହଙ୍କ ଶ୍ରୀଅଙ୍ଗକୁ ସ୍ଥାନାନ୍ତର କରାଯାଏ । ଦାରୁବିଗ୍ରହ ଦେହରେ 'ବ୍ରହ୍ମ-ପଦାର୍ଥ' ଥିବାରୁ ବିଗ୍ରହଙ୍କୁ ଦାରୁବ୍ରହ୍ମ କୁହାଯାଏ ବୋଲି କେହି କେହି କହନ୍ତି । ଜଣାଯାଏ ଯେ, ରତ୍ନବେଦୀସ୍ଥ ଅନ୍ୟାନ୍ୟ ଦାରୁବିଗ୍ରହମାନଙ୍କ ଶ୍ରୀଅଙ୍ଗରେ ମଧ୍ୟ 'ବ୍ରହ୍ମ ପଦାର୍ଥ' ରହିଅଛି । ବାବା ଚୈତନ୍ୟଚରଣ କହନ୍ତି- ''ଏଥିରୁ ଜଣାଯାଉଛି ଯେ, ମୂର୍ତ୍ତି (ଦାରୁ) ହେଉଛି ଶରୀର ଏବଂ ବ୍ରହ୍ମ ହେଉଛି ଆତ୍ମା । ସାଧାରଣ ଜୀବମାନଙ୍କ ଭଳି ତହିଁରେ ଦେହ-ଦେହୀ ଭେଦ ଅଛି । କିନ୍ତୁ ବ୍ରହ୍ମପୁରାଣ, ପଦ୍ମପୁରାଣ ଓ ସ୍କନ୍ଦପୁରାଣରେ ଏ ପ୍ରଥାର କୌଣସି ସୂଚନା ନାହିଁ । ଯଦି ଦାରୁ ଜଡ଼, ବ୍ରହ୍ମ ଚେତନ, ତା'ହେଲେ ବୃକ୍ଷରେ ଶଙ୍ଖ, ଚକ୍ର ଚିହ୍ନ ଏବଂ ଏତେ ସତ୍ ଲକ୍ଷଣ ରହିଲା କିପରି ? ସର୍ବୋପରି ମା' ମଙ୍ଗଳାଙ୍କ ନିର୍ଦ୍ଦେଶର ମହତ୍ତ୍ୱ ରହିଲା କେଉଁଠି ? ଏଣୁ ସ୍କନ୍ଦ ପୁରାଣରେ କୁହାଯାଇଛି- 'ଦାରୁ ଏବ ବ୍ରହ୍ମ' । ଅର୍ଥାତ୍ ସେହି ଦାରୁ ହିଁ ବ୍ରହ୍ମ । ଶ୍ରୀମନ୍ଦିର ଭିତରେ କାଳକ୍ରମେ ବହୁ ସନ୍ଥ, ମହାପୁରୁଷ ଓ ରାଜା, ମହାରାଜା ନିଜ ନିଜ ଇଷ୍ଟ ନିଷ୍ଠାର ପରିପ୍ରକାଶ ପାଇଁ ଅନେକ ମତ ଓ ପଥର ସଂଯୋଗ କରିଛନ୍ତି । ଏହି ବ୍ରହ୍ମ ସ୍ଥାପନ ମଧ୍ୟ ପରବର୍ତ୍ତୀ ସଂଯୋଗ ବୋଲି ମନେହୁଏ [୪୪] ।''

'ନୀଳାଦ୍ରି ମହୋଦୟଃ'ରେ ବ୍ରହ୍ମା କହିଛନ୍ତି :
ଦାରୁବ୍ରହ୍ମ ନିରାକାରଂ ନିର୍ଗୁଣଂ ନିର୍ବିକାରକମ୍ ।
ନିଶ୍ଚେଷ୍ଟଂ ସର୍ବତୋବ୍ୟାପ୍ତଂ ଭାବାଭାବ ବିବର୍ଜିତମ୍ ॥ ୬୨ ॥
ଉପଚାରାଂଶ୍ଚ ତାନ୍ ସର୍ବାନ୍ ଦାତୁଂ ଚ ତରସା ମୁନେ ।
ସଗୁଣଂ ବ୍ରହ୍ମଣୋରୂପଂ ଭାବୟିତ୍ୱାତ୍ମଜୋତ୍ତମ ॥ ୬୩ ॥ (ଷଷ୍ଠ ଅଧ୍ୟାୟ)

---

**୪୩. ଶ୍ରୀପୁରୁଷୋତ୍ତମ ରହସ୍ୟ- ବାବା ଚୈତନ୍ୟ ଚରଣ ଦାସ, ୧ମ ସଂସ୍କରଣ, ୨୦୦୩**
**୪୪. ତତ୍ରୈବ**

ନିରାକାର, ନିର୍ଗୁଣ, ନିର୍ବିକାର, ନିଶ୍ଚେଷ୍ଟ ଭାବ ଓ ଅଭାବରହିତ ପରବ୍ରହ୍ମଙ୍କୁ ସଗୁଣ କରିବା ଉଦ୍ଦେଶ୍ୟରେ ଦାରୁବ୍ରହ୍ମ ଭାବରେ ଆବାହନ କରି ତାଙ୍କର ନାନା ଉପଚାରମାନ ବ୍ୟବସ୍ଥା କରିଅଛି [୪୫] ।

ଦାରୁବିଗ୍ରହ ହେବା ପୂର୍ବରୁ ଶ୍ରୀମନ୍ଦିରରେ ପାଷାଣ ବିଗ୍ରହ ଥିଲେ; ଅର୍ଥାତ୍ ପ୍ରଥମେ ଥିଲେ ଶିଳାବ୍ରହ୍ମ, ତା'ପରେ ଦାରୁବ୍ରହ୍ମ ପ୍ରତିଷ୍ଠିତ ହେଲେ ବୋଲି ଡକ୍ଟର ସତ୍ୟନାରାୟଣ ରାଜଗୁରୁ, ଡକ୍ଟର ଗୋପୀନାଥ ମହାପାତ୍ର ପ୍ରମୁଖ କହିଛନ୍ତି । ଅବଶ୍ୟ ସ୍କନ୍ଦ ପୁରାଣରୁ ମଧ୍ୟ ଏହା ଜଣାଯାଏ । ରାଜଗୁରୁ ଲେଖିଛନ୍ତି- ''ଶ୍ରୀନୃସିଂହ ମନ୍ଦିରରୁ ଆବିଷ୍କୃତ ଏକ ଶିଳାଲେଖରୁ ଜଣାଯାଇଛି ଯେ, ପ୍ରାୟ ୧୧୫୦ ଖ୍ରୀଷ୍ଟାବ୍ଦ କିମ୍ବା ତତ୍‌ପୂର୍ବରୁ ତଥାକଥିତ ନୃସିଂହ ମନ୍ଦିରରେ ଶ୍ରୀପୁରୁଷୋତ୍ତମ, ବଳଭଦ୍ର ଓ ସୁଭଦ୍ରା ତିନିମୂର୍ତ୍ତିଙ୍କୁ ସ୍ଥାପନ କରାଯାଇଥିଲା ଓ ସେହି ମୂର୍ତ୍ତିମାନଙ୍କୁ 'ଶିଳ୍ପଶାସ୍ତ୍ର'ର ପଦ୍ଧତି ଅନୁସାରେ ଗଠନ କରାଯାଇ ଶ୍ରୀମନ୍ଦିରରେ ସ୍ଥାପନ କରାଯାଇଥିଲା । ତେଣୁ ଶ୍ରୀପୁରୁଷୋତ୍ତମଙ୍କର ମୂର୍ତ୍ତି ଶାସ୍ତ୍ରୀୟ ମାଧବ ମୂର୍ତ୍ତିଙ୍କ ପରି ଚତୁର୍ଭୁଜସମ୍ପନ୍ନ ପ୍ରସ୍ତରରେ ଗଠିତ ହୋଇଥିବା ସମ୍ଭବ । ବଳଭଦ୍ର ଓ ସୁଭଦ୍ରା ମଧ୍ୟ ହସ୍ତପଦ ଯୁକ୍ତ ପ୍ରସ୍ତରମୂର୍ତ୍ତି ହୋଇଥିଲେ । ଚୋଡ଼ଗଙ୍ଗ ଦେବଙ୍କ ରାଜତ୍ୱ କାଳରେ ଯେଉଁ ମୂର୍ତ୍ତିମାନ ଗଠିତ ହୋଇ ନୃସିଂହ ମନ୍ଦିରରେ ସ୍ଥାପିତ ହୋଇଥିଲେ, ସେପରି ପ୍ରସ୍ତର ମୂର୍ତ୍ତି ହିଁ ମହାରାଜା ଅନଙ୍ଗ ଭୀମ ଦେବ(୩ୟ) ୧୨୩୦ ଖ୍ରୀଷ୍ଟାବ୍ଦରେ ଶ୍ରୀମନ୍ଦିର (ବଡ଼ଦେଉଳ) ପ୍ରତିଷ୍ଠାବେଳେ ସେଥିରେ ସ୍ଥାପନ କରିଥିଲେ''[୪୬] । ଅନଙ୍ଗଭୀମ ଦେବଙ୍କ ପୁତ୍ର ନରସିଂହ ଦେବ (୧ମ)ଙ୍କ ସମୟରେ ବଙ୍ଗର ମୁସଲମାନ ସୁଲତାନମାନେ ଓଡ଼ିଶା ଆକ୍ରମଣ କରିବାକୁ ବାରମ୍ବାର ଚେଷ୍ଟା କରୁଥାନ୍ତି । ସେମାନଙ୍କର ଯୁଦ୍ଧ ନୀତି ଦୃଷ୍ଟିରୁ ଓଡ଼ିଶାର ହିନ୍ଦୁ ଖଣ୍ଡାୟତ ସୈନ୍ୟମାନେ ପ୍ରତିଆକ୍ରମଣ କରିବା ସମ୍ଭବ ହୋଇନଥିଲା । କାରଣ ଆଉରଙ୍ଗଜେବ ଯେପରି ଶିବାଜୀଙ୍କ ବିପକ୍ଷରେ ଯୁଦ୍ଧ କରୁଥିବାବେଳେ ହିନ୍ଦୁ ସୈନ୍ୟମାନଙ୍କୁ ନିରୁତ୍ସାହିତ କରିବା ଉଦ୍ଦେଶ୍ୟରେ ଗୋଟିଏ ଗୋଟିଏ ଗୋରୁପଲକୁ ଆଗରେ ରଖି ମୁସଲମାନ ସୈନ୍ୟଙ୍କ ସହିତ ପଛରେ ଥାଇ ଯୁଦ୍ଧ କରୁଥିଲେ, ଠିକ୍ ସେହିପରି ବଙ୍ଗର ମୁସଲମାନମାନେ ଉତ୍କଳ ଜୟ କରିବାକୁ ଗୋରୁପଲ ବ୍ୟବହାର କରିଥିବା ସମ୍ଭବ । ତେଣୁ ଉତ୍କଳର ଧର୍ମଭୀରୁ ଖଣ୍ଡାୟତ ସୈନ୍ୟମାନେ ପଶ୍ଚାତ୍‌ପଦ ହୋଇ ଯୁଦ୍ଧ କ୍ଷେତ୍ରରେ ଅସ୍ତ୍ରତ୍ୟାଗ କରିଥିବା ସମ୍ଭବ । ନରସିଂହ ଦେବ ନିଜ ଗୁରୁଙ୍କ ପରାମର୍ଶ କ୍ରମେ ଶବରମାନଙ୍କୁ ଅଣାଇ ସେମାନଙ୍କୁ ନିଜ ସୈନ୍ୟ ଶ୍ରେଣୀରେ ଅନ୍ତର୍ଭୁକ୍ତ କଲେ । ସେମାନଙ୍କର ଉପସ୍ଥିତି ହେତୁ ମୁସଲମାନଙ୍କ ଯୁଦ୍ଧ କୌଶଳ ହାର ମାନିଲା । ଉତ୍କଳର ସୈନ୍ୟ ସେତେବେଳେ ବଙ୍ଗର ଲକ୍ଷଣାବତୀ ପର୍ଯ୍ୟନ୍ତ ଅସ୍ତ୍ରଚାଳନା କରିବାକୁ ସମର୍ଥ ହୋଇପାରିଥିଲେ । ଶବରମାନଙ୍କ ଦେବତାଙ୍କୁ ଆରାଧନା କରିବାପାଇଁ ସେମାନଙ୍କର ପ୍ରବଳ

---

**୪୫. ନୀଳାଦ୍ରି ମହୋଦୟଃ (ସଂ) ଡକ୍ଟର ବ୍ରଜକିଶୋର ସ୍ୱାଇଁ, ସଦ୍‌ଗ୍ରନ୍ଥ ନିକେତନ, ପୁରୀ, ପ୍ରଥମ ସଂସ୍କରଣ, ୨୦୦୦**

**୪୬. ଶ୍ରୀପୁରୁଷୋତ୍ତମ ଓ ଶ୍ରୀମନ୍ଦିର - ଡକ୍ଟର ସତ୍ୟନାରାୟଣ ରାଜଗୁରୁ, ଓ.ସା.ଏ, ୧୯୯୬ (ପୃଷ୍ଠା-୫୮-୫୯)**

ଇଚ୍ଛା ହେତୁ ପ୍ରସ୍ତରମୂର୍ତ୍ତିଙ୍କୁ ଶ୍ରୀମନ୍ଦିରରୁ ବାହାର କରି ଆଦିବାସୀ ପୂଜିତ ଦେବତାଙ୍କ ସ୍ୱରୂପରେ ଦାରୁ ମୂର୍ତ୍ତି ସ୍ଥାପନ କରାଗଲା [୪୭] ।

ରାଜଗୁରୁଙ୍କ ଏହି ମତ କେତେଦୂର ଯଥାର୍ଥ ତାହା ଗବେଷଣାସାପେକ୍ଷ । ଏଠାରେ ଗୋଟିଏ ସାଦୃଶ୍ୟକୁ ଉପସ୍ଥାପନ କରାଯାଉଛି । ମିଶର ଦେଶର ପ୍ରାଚୀନ ଇତିହାସରୁ ଜଣାଯାଏ ଯେ, ଖ୍ରୀଷ୍ଟପୂର୍ବ ତିନିହଜାର ବର୍ଷ ବେଳକୁ ମିଶରରେ ପ୍ରଥମ ରାଜବଂଶ ପ୍ରତିଷ୍ଠିତ ହୋଇଥିଲା । ପ୍ରଥମ ରାଜବଂଶର ପ୍ରଥମ ରାଜାଙ୍କ ନାମ ଥିଲା ମିନିଜ୍ (Menes) ବା ହା (Aha) । ତାଙ୍କର ରାଜଧାନୀ ଥିଲା ମେମ୍ଫିସ୍ (Memphis) ସହର । ଏହା ଥିଲା ପ୍ରାଚୀନ ମିଶରର ଏକ ପ୍ରମୁଖ ଧର୍ମପୀଠ । ମିଶରରେ ଅନେକ ଦେବଦେବୀଙ୍କ ମଧ୍ୟରୁ ପ୍ରଧାନ ଦେବତା ଥିଲେ ଟାହା (ptah) । ରାଜା ମିନିଜ୍ ଟାହାଙ୍କ ପାଇଁ ମେମ୍ଫିସ୍‌ରେ ଏକ ବିରାଟ ମନ୍ଦିର ନିର୍ମାଣ କରିଥିଲେ; ଯାହାକି ମିଶରର ସର୍ବପ୍ରାଚୀନ ମନ୍ଦିରର ମାନ୍ୟତା ପାଇଥିଲା । ଟାହା ଥିଲେ ବିଶ୍ୱ କାରିଗରୀ, ନ୍ୟାୟ, ଦର୍ଶନ ଓ କଳାର ଦେବତା । ପ୍ରାଚୀନ ମିଶରର ଏହି ପରମ ପିତା ଦେବତା ଥିଲେ ଆଦିବାସୀ ଦେବତା । ପ୍ରାକ୍ ରାଜବଂଶ କାଳରେ ଦକ୍ଷିଣ ପାଲେଷ୍ଟାଇନ୍‌ର ଆଦିବାସୀମାନେ ତାଙ୍କୁ ପର୍ବତ ଗୁହାରେ ରଖି ପୂଜା କରୁଥିଲେ । ମେମ୍ଫିସ୍‌ର ସୈନ୍ୟମାନଙ୍କୁ ଯୁଦ୍ଧରେ ସାହାଯ୍ୟ କରିବାକୁ ଆମନ୍ତ୍ରିତ ହୋଇ ଦକ୍ଷିଣ ପାଲେଷ୍ଟାଇନରୁ ଗୁହାବାସୀ ଆଦିବାସୀମାନେ ସେମାନଙ୍କର ଟାହା ଦେବତାଙ୍କୁ ସଙ୍ଗରେ ଆଣି ମିଶରକୁ ଆସିଥିଲେ । ପରେ ଟାହା ହୋଇଗଲେ ମିଶରର ଇଷ୍ଟ ଦେବତା । କେତେ କାଳ ପରେ ଟାହା ଏକ ମିଶ୍ର ଦେବତା ଭାବରେ ପରିଣତ ହୋଇଗଲେ । ଟାହା, ସୋକର ଓ ଓସିରିସ୍ ଭାବରେ ତ୍ରିମୂର୍ତ୍ତିରେ ପରିଣତ ହୋଇ ମେମ୍ଫିସ୍‌ରେ ଉପାସିତ ହେଲେ । ଆଦିବାସୀ ଦେବତା ଟାହାଙ୍କ ଆକୃତି ଥିଲା ଦୁଇହାତ, ଦୁଇଗୋଡ଼ବିଶିଷ୍ଟ ବଳିଷ୍ଠ ମାନବ ପରି । ମିଶର ଦେଶରେ ବିଭିନ୍ନ ଆକୃତିର ଅନେକ ଦେବଦେବୀ ଥିଲେ । ଖ୍ରୀଷ୍ଟପୂର୍ବ ତିନି ହଜାରଠାରୁ ଖ୍ରୀଷ୍ଟପୂର୍ବ ତ୍ରୟୋଦଶ ଶତାବ୍ଦୀ ମଧ୍ୟରେ କାଠ, ପଥର ଓ ବ୍ରୋଞ୍ଜ ଧାତୁରେ ନିର୍ମିତ ଟାହାଙ୍କର ଅନେକ ମୂର୍ତ୍ତି ଦେଖିବାକୁ ମିଳେ । ସେଥିରୁ କୌଣସି ମୂର୍ତ୍ତି ହସ୍ତପଦହୀନ ବା ଖଣ୍ଡିଆ ନଥିଲା । ଶ୍ରୀଜଗନ୍ନାଥ ମୂଳତଃ ଓଡ଼ିଶାର ଆଦିବାସୀ ଶବରଙ୍କଦ୍ୱାରା ପୂଜିତ ଦେବତା ଏବଂ ସେମାନଙ୍କର ଦେବତାଙ୍କ ସ୍ୱରୂପରେ ବିଗ୍ରହ ଗଠିତ ବୋଲି କୁହାଯାଉଛି । ଏହିଭଳି ଅପାଣିପାଦ, ଅସମ୍ପୂର୍ଣ୍ଣ ପ୍ରତୀୟମାନ ହେଉଥିବା ବିଗ୍ରହ ଗଠନ ପଛରେ ଅନ୍ୟ କ'ଣ କାରଣ ଥାଇପାରେ ତାହା ଅଧିକ ଗବେଷଣା ସାପେକ୍ଷ [୪୮] ।

ଦାରୁ ବା କାଠରେ ସୁନ୍ଦର ସୁନ୍ଦର ମୂର୍ତ୍ତି ଗଠନ ଶିଳ୍ପକଳା ଖ୍ରୀଷ୍ଟପୂର୍ବ ବହୁବର୍ଷ ପୂର୍ବରୁ ଗ୍ରୀସ୍ ଓ ଇଜିପ୍ଟରେ ଉତ୍କର୍ଷ ଲାଭ କରିଥିଲା । ଗ୍ରୀକ୍ ମିଥ୍ ଅନୁସାରେ ଦାରୁ ବା କାଠ ହେଉଛି

---

**୪୭. ତତ୍ରୈବ (ପୃଷ୍ଠା-୫୬)**

**୪୮. ମହାପ୍ରଭୁ ଜଗନ୍ନାଥ ଓ ମିଶରର ଦେବତା ଟାହା- ମହୀମୋହନ ତ୍ରିପାଠୀ, ଶ୍ରୀମନ୍ଦିର କାର୍ତ୍ତିକ ସଂଖ୍ୟା, ୨୦୦୭**

ପୃଥିବୀର ସର୍ବପ୍ରଥମ ପବିତ୍ର ତଥା ମୌଳିକ ବସ୍ତୁ । ଖ୍ରୀଷ୍ଟପୂର୍ବ ୪୬୦ ବର୍ଷ ବେଳକୁ ସାହିତ୍ୟ ଓ ସଂସ୍କୃତି କ୍ଷେତ୍ରରେ ଗ୍ରୀସ୍‌ରେ ଅଭୂତପୂର୍ବ ଉନ୍ନତି ଘଟିଥିଲା । ଗ୍ରୀସ୍‌ର ମୁଖ୍ୟ ଦେବତା ଜିଅସ୍ (Zeus)ଙ୍କ ପାଇଁ ଗ୍ରୀସ୍‌ର ପ୍ରଧାନ ଧର୍ମପୀଠ ଅଲମ୍ପିଆରେ ଓ ଜ୍ଞାନର ଦେବୀ ଏଥେନା (Athena)ଙ୍କ ପାଇଁ ପାର୍ଥିନନ୍ ଅଞ୍ଚଳରେ ଦୁଇଟି ବିରାଟ ମୂର୍ତ୍ତି ନିର୍ମାଣ କରାଯାଇଥିଲା । ଏହା ଥିଲା ଦାରୁବିଗ୍ରହ; ଏହାର ଉଚ୍ଚତା ପ୍ରାୟ ୪୦ଫୁଟ୍ ଥିଲା । ଦାରୁ ଉପରେ ହାତୀଦାନ୍ତ ଓ ତା' ଉପରେ ସୁନାର ପ୍ରସ୍ତର ରହିଥିଲା । ହାତୀଦାନ୍ତ ଥିଲା ମାଂସ ଓ ସୁନା ଥିଲା ବସ୍ତ୍ରର ପ୍ରତୀକ [୪୯] । ଶ୍ରୀମନ୍ଦିରର ରତ୍ନବେଦୀରେ ବିରାଜିତ ଦାରୁବିଗ୍ରହଙ୍କର ମଧ୍ୟ ସେହିପରି 'ସପ୍ତାବରଣ' ହୋଇଥାଏ । ତାହା ହେଲା- ଦାରୁ, ଚେହେଲି, ଚଉବନ୍ଧ (ଖଣ୍ଡୁଆ ଓ ଛାଚିପାଟ), ବାସୁଙ୍ଗାପାଟ, ଓଷୁଅ, ରକ୍ତବସ୍ତ୍ର ଓ ଶ୍ରୀମୁଖ ଓଡ଼ା ।

## ଚକାଡ଼ୋଳା

ମହାପ୍ରଭୁ ଜଗନ୍ନାଥଙ୍କର ଏକ ନାମ ହେଲା ଚକାଡ଼ୋଳା । କାରଣ ତାଙ୍କର ଆଖି ଦୁଇଟି ଚକା ପରି, ଅର୍ଥାତ୍ ଗୋଲାକାର । ଲକ୍ଷ ଲକ୍ଷ ଭକ୍ତ ତାଙ୍କୁ ଭକ୍ତି ଓ ଶ୍ରଦ୍ଧାରେ ଚକାଡ଼ୋଳା, ଚକାନୟନ, ଚକାଆଖିଆ ବୋଲି ଡାକିଥାନ୍ତି । ପ୍ରଭୁ ବଳଭଦ୍ର ଓ ଦେବୀ ସୁଭଦ୍ରାଙ୍କ ଆଖି ସମ୍ପୂର୍ଣ୍ଣ ଚକା ବା ଗୋଲାକାର ହୋଇନଥିଲାବେଳେ, କେବଳ ଶ୍ରୀଜଗନ୍ନାଥଙ୍କ ଡ଼ୋଳା ଚକାକାର ହେଲା କାହିଁକି ? ଏହା ଏକ ତାତ୍ତ୍ୱିକ ପ୍ରଶ୍ନ । ଏହାର ଉତ୍ତରରେ ଅନେକ ବ୍ୟାଖ୍ୟା କରାଯାଇଛି ।

ଦଶ ଅବତାର ମଧ୍ୟରୁ ଗୋଟିଏ ଅବତାର ହେଲା ମତ୍ସ୍ୟ ଅବତାର । ବିଷ୍ଣୁଙ୍କ ସହସ୍ରନାମ ମଧ୍ୟରୁ ଦୁଇଟି ନାମ ହେଲା ରୋହିତ ଓ ଅନିମିଷ । 'ରୋହିତ'ମାନେ ରୋହିମାଛ । ଏହା ମତ୍ସ୍ୟାବତାରର ସୂଚକ । 'ଅନିମିଷ'ମାନେ 'ନିମିଷ' (ପଲକପାତ) ଯାହାର ନାହିଁ । ଅର୍ଥାତ୍ ଯେ ନିତ୍ୟ ଜାଗ୍ରତ, ଅଥବା ମତ୍ସ୍ୟାବତାର ରୂପେ ପଲକହୀନ । ମତ୍ସ୍ୟର ଆଖି ଗୋଲାକାର ଓ ପଲକହୀନ । ଜଗନ୍ନାଥଙ୍କ ଆଖି ଗୋଲାକାର ଓ ପଲକବିହୀନ । ପଲକହୀନ ବଡ଼ବଡ଼ ଆଖି ସୂଚନା ଦିଏ ଯେ ପ୍ରଭୁ ସର୍ବଦା କର୍ମଚଞ୍ଚଳ ଓ ସତର୍କ । ତାଙ୍କ ପକ୍ଷରେ ଦିନରାତି ଓ କ୍ଳାନ୍ତିର କିଛି ଅର୍ଥ ନାହିଁ ।

ପୁରାଣରେ କୁହାଯାଇଛି ଯେ, ବିଷ୍ଣୁଙ୍କର ଗୋଟିଏ ଆଖି ସୂର୍ଯ୍ୟ ପରି, ଗୋଟିଏ ଚନ୍ଦ୍ର ପରି । ଗୀତାରେ ଉଲ୍ଲେଖ ଅଛି 'ଶଶି ସୂର୍ଯ୍ୟ ନେତ୍ରମ୍' । ସୁତରାଂ ଦୁଇଟି ଚକ୍ଷୁ ଚନ୍ଦ୍ର ଓ ସୂର୍ଯ୍ୟ ପରି ଦେଖିବାକୁ ଗୋଲାକାର । ଗଙ୍ଗ ରାଜବଂଶର ଏକ ଶିଳାଲେଖରେ ଉଲ୍ଲେଖ ଅଛି :

> "ପାଦୌ ଯସ୍ୟ ଧରାନ୍ତରିକ୍ଷମଖିଳଂ ନାଭିସ୍ତୁ ସର୍ବାଦିଶଃ
> ଶ୍ରୋତ୍ରେନେତ୍ରଯୁଗମ୍ ରବୀନ୍ଦୁଯୁଗଳଂ ମୂର୍ଦ୍ଧାପିଚ ଦ୍ୟୌରସୌ ।" [୫୦]

---

**୪୯. ଭାରତୀୟ ଓ ଗ୍ରୀକ୍ ଦେବଦେବୀ- ମହୀମୋହନ ତ୍ରିପାଠୀ, 'ଶ୍ରୀମନ୍ଦିର', ରଥସଂଖ୍ୟା, ୨୦୦୩**
**୫୦. ଜଗନ୍ନାଥ ତତ୍ତ୍ୱ- ଡକ୍ଟର ଗୋପୀନାଥ ମହାପାତ୍ର**

ଜଗନ୍ନାଥଙ୍କ ଚକାଆଖି ପଛରେ ସେହି 'ରବୀନ୍ଦୁ ଯୁଗଳ' ତତ୍ତ୍ୱ ନିହିତ ।

ଉପନିଷଦରେ ବର୍ଣ୍ଣିତ ବ୍ରହ୍ମଙ୍କ ସ୍ୱରୂପରେ ଗଠିତ ଏ ପ୍ରକାର ମୂର୍ତ୍ତି କେବଳ ଭାରତରେ ନୁହେଁ, ବରଂ ବିଶ୍ୱରେ କୁତ୍ରାପି ନାହିଁ । ସେ ମୂର୍ତ୍ତି ହୋଇ ମଧ୍ୟ ମୂର୍ତ୍ତି ନୁହଁନ୍ତି । ତାଙ୍କର ଯେଉଁ ବଡ଼ ବଡ଼ ଆଖି, ତାକୁ ଦେଖିଲେ ଋଗ୍‌ବେଦର ମନ୍ତ୍ରଟି ମନେ ପଡ଼ିଯାଏ:

''ଦ୍ୱା ସୁପର୍ଣ୍ଣା ସଯୁଜା ସଖାୟା ସମାନଂ ବୃକ୍ଷଂ ପରିଷସ୍ୱଜାତେ
ତୟୋରନ୍ୟଃ ପିପ୍ପଳଂ ସ୍ୱାଦ୍ୱତ୍ତ୍ୟନଶ୍ନନ୍ନନ୍ୟୋ ଅଭିଚାକଶୀତି । (୧:୧୬୪-୨୦)

ମନ୍ତ୍ରଟିର ତାତ୍ପର୍ଯ୍ୟ ହେଲା, ଗୋଟିଏ ବୃକ୍ଷରେ ଦୁଇଟି ସୁନ୍ଦର ପକ୍ଷୀ ସମାନ ଗୁଣ କାରଣରୁ ମିତ୍ର ଭାବରେ ପରସ୍ପରକୁ ଆଲିଙ୍ଗନ କରି ରହିଛନ୍ତି । କିନ୍ତୁ ସେ ଦୁହିଁଙ୍କ ମଧ୍ୟରୁ ଗୋଟିଏ ପକ୍ଷୀ ବୃକ୍ଷର ସ୍ୱାଦୁ ଫଳ ଭୋଗରେ ଲିପ୍ତ ଏବଂ ଅନ୍ୟ ପକ୍ଷୀଟି ଭୋଗରୁ ନିର୍ଲିପ୍ତ ରହି କେବଳ ସାକ୍ଷୀ ରୂପରେ ବିଦ୍ୟମାନ ।

ଯେଉଁ ପକ୍ଷୀଟି ସାକ୍ଷୀ ରୂପେ ଅପଲକ ଦୃଷ୍ଟିରେ କେବଳ ଦେଖୁଛି, ସେ ହେଉଛନ୍ତି ପରଂବ୍ରହ୍ମ । ଏଠି ଜଗନ୍ନାଥଙ୍କ ଆଖି ଗୋଟିଏ ପକ୍ଷୀର ଆଖି ପରି ଗୋଲାକାର ଓ ଅପଲକ । ଜଗନ୍ନାଥଙ୍କୁ ବ୍ରହ୍ମଙ୍କର ସାଙ୍କେତିକ ରୂପରେ ବର୍ଣ୍ଣନା କରାଯାଇଛି [୫୧] ।

ଚକ୍ର ପରି ଗୋଲାକାର ଚକ୍ଷୁ ବୌଦ୍ଧ ନିର୍ବାଣର ପ୍ରତୀକ ବୋଲି ମଧ୍ୟ କୁହାଯାଏ । ଆତ୍ମା ବିଭିନ୍ନ ଜନ୍ମଦେଇ ବୃତ୍ତାକାରରେ ଘୂରିବା ପରେ ମୋକ୍ଷ ବା ନିର୍ବାଣ ପ୍ରାପ୍ତି ହୁଏ । ଗୋଲ ଚକ୍ଷୁ 'ଅନନ୍ତ'ର ପ୍ରତୀକ ।

ମୂର୍ତ୍ତିର ଚକ୍ଷୁସୂଚୀ (eye index) ସମ୍ପର୍କରେ ଏକ ସୁଚିନ୍ତିତ ଆଲୋଚନା ଗବେଷକ ରାଇଚରଣ ଦାସ କରିଛନ୍ତି [୫୨] । ସାଧାରଣତଃ ମଣିଷର ମୁଣ୍ଡର ଉଚ୍ଚତା ତୁଳନାରେ ତାର ଆଖିର ବ୍ୟାସ ପ୍ରାୟ ଏକ ଦଶମାଂଶ । କୌଣସି ଏକ ମୂର୍ତ୍ତିରେ ମୁଣ୍ଡର ମୋଟ ଦୈର୍ଘ୍ୟ ଓ ଆଖିର ଆକାରର ଅନୁପାତକୁ ସେହି ମୂର୍ତ୍ତିର ଚକ୍ଷୁସୂଚୀ କୁହାଯାଏ । ବିଭିନ୍ନ ମୂର୍ତ୍ତିରେ ଏହି ଚକ୍ଷୁସୂଚୀ ସାଧାରଣ ସୂଚୀ (ଶତକଡ଼ା ଦଶଭାଗ)ଠାରୁ ପ୍ରାୟ ଅଧିକ ହୋଇଥାଏ । ମୂର୍ତ୍ତିମାନଙ୍କର ଐତିହାସିକ କ୍ରମବିକାଶ ଓ ଯେଉଁ ସମାଜରେ ଉକ୍ତ ମୂର୍ତ୍ତିର ବିକାଶ ଘଟିଛି ସେହି ସମାଜର ବିବର୍ତ୍ତନ ଧାରା ଓ ଅବସ୍ଥା ସହ ଏହି ଚକ୍ଷୁସୂଚୀ ଆଧିକ୍ୟର ଏକ ସମ୍ପର୍କ ରହିଛି । ସାଧାରଣତଃ ଦେଖାଯାଇଥାଏ ଯେ ପ୍ରାଚୀନ ମୂର୍ତ୍ତି ଗୁଡ଼ିକର ଚକ୍ଷୁସୂଚୀ ଅଧିକ । ଜୁଲିଆନ ଜେନସ୍ ପୃଥିବୀର ବିଭିନ୍ନ ପ୍ରାଚୀନ ସଭ୍ୟତାର ଦେବତା ବା ମୂର୍ତ୍ତି ଗଠନର ସମୀକ୍ଷା କରିଛନ୍ତି । ତହିଁରୁ ନିମ୍ନଲିଖିତ ବିବରଣୀ ମିଳେ ।

---

**୫୧. ଜଗନ୍ନାଥଙ୍କ ବୈଦିକତା ଅଭ୍ରାନ୍ତ କି ? - ଶ୍ରୀ ଉମେଶ ପତ୍ରୀ, ଝଙ୍କାର, ରଥସଂଖ୍ୟା-୨୦୦୩**

**୫୨. ଶ୍ରୀଜଗନ୍ନାଥ - ଓ.ସା.ଏ, ପ୍ରଥମ ସଂସ୍କରଣ, ୧୯୮୨ରେ ଶ୍ରୀ ରାଇଚରଣ ଦାସଙ୍କ 'ସଂକଳନ ସଂପର୍କରେ' ଦ୍ରଷ୍ଟବ୍ୟ**

| | ଦେବତା/ମୂର୍ତ୍ତି | ଚକ୍ଷୁସୂଚୀ | କାଳ |
|---|---|---|---|
| କ) | ଲା-ଭେଣ୍ଟାର ପିରାମିଡ୍ (ମେକ୍ସିକୋ) | ୧୧-୧୯% | ଖ୍ରୀ.ପୂ. ୫୦୦ |
| ଖ) | ଉରୁକ (ମେସୋପଟାମିଆ)ର ଚୂନପଥର ମୂର୍ତ୍ତି | ୨୦%ରୁ ଅଧିକ | ଖ୍ରୀ.ପୂ. ୧୯୦୦ |
| ଗ) | ସିନ୍ଧୁ ସଭ୍ୟତାର ମୂର୍ତ୍ତି | ୨୦%ରୁ ଅଧିକ | ଖ୍ରୀ.ପୂ. ୨୦୦୦ରୁ ଖ୍ରୀ.ପୂ. ୧୭୦୦ |
| ଘ) | ଲଗାସ୍‌ର ଶାସକ 'ଗୁଡ଼ିଆ'ଙ୍କ ମୂର୍ତ୍ତି | ୧୭-୧୮% | ଖ୍ରୀ.ପୂ. ୨୧୦୦ |
| ଙ) | ତେଲ୍‌ର ଆବୁ ମନ୍ଦିରର ୧୨ଟି ମୂର୍ତ୍ତି (ବାଗଦାଦ୍‌ର ଆସମା ନିକଟରେ) | ୧୮% | ଖ୍ରୀ.ପୂ. ୨୬୦୦ |
| ଚ) | ଇଉଫ୍ରେଟିସ୍ ଉପତ୍ୟକାର 'ମାରି' | ୧୮% | ଖ୍ରୀ.ପୂ. ୨୭୦୦ |
| ଛ) | ଇଜିପ୍‌ଟର 'ଫାରୋହ'ର ମନ୍ଦିର | ପ୍ରାୟ ୨୦% | ଖ୍ରୀ.ପୂ. ୩୦୦୦ |

ଗବେଷକ ରାଇଚରଣ ଶ୍ରୀଜଗନ୍ନାଥଙ୍କ ଚକ୍ଷୁସୂଚୀ ବିଷୟରେ ଲେଖିଛନ୍ତି ଯେ, ''ସାଧାରଣତଃ ଶ୍ରୀଜଗନ୍ନାଥଙ୍କ ଚକ୍ଷୁସୂଚୀ ଶତକଡ଼ା ୨୫ରୁ ୩୦ ଭିତରେ ଓ ହାରାହାରି ୨୮ ବୋଲି ଦେଖାଯାଏ । ସେହିପରି ବଡ଼ଠାକୁରଙ୍କ ଚକ୍ଷୁସୂଚୀ ଶତକଡ଼ା ୨୦ରୁ ୨୪ ଭିତରେ ଓ ହାରାହାରି ୨୨ବୋଲି ଦେଖାଯାଏ । ସୁଭଦ୍ରାଙ୍କ ଚକ୍ଷୁସୂଚୀ ଶତକଡ଼ା ୧୮ରୁ ୨୨ ଭିତରେ ଓ ହାରାହାରି ୨୦ ବୋଲି ଦେଖାଯାଇଥାଏ ।''

ଜୁଲିଆନ୍ ଜେନ୍‌ସଙ୍କ ମତବାଦ ଅନୁସାରେ ବୃହତ୍ ଚକ୍ଷୁସୂଚୀବିଶିଷ୍ଟ ଦେବତା ପ୍ରାଚୀନ ସଭ୍ୟତାମାନଙ୍କରେ ସେହି ସଭ୍ୟତାର କ୍ରମବିକାଶ ଧାରା ଅନୁସାରେ ସାଧାରଣତଃ ଖ୍ରୀଷ୍ଟପୂର୍ବ ୨୦୦୦ରୁ ୧୦୦୦ ବା ସ୍ଥଳ ବିଶେଷରେ ଖ୍ରୀଷ୍ଟପୂର୍ବ ୫୦୦ ବର୍ଷ ମଧ୍ୟରେ ଦେଖାଯାଇଥାନ୍ତି । ଜେନ୍‌ସଙ୍କ ଏହି ମତବାଦ ଅନୁସାରେ ଶ୍ରୀଜଗନ୍ନାଥ ଯେ ଅତି ପ୍ରାଚୀନ କାଳରୁ ବିଦ୍ୟମାନ ଅଛନ୍ତି-ଏହିପରି ପ୍ରତୀୟମାନ ହେଉଛି । ଏହି ପ୍ରାଚୀନତାର ଯଥାର୍ଥ କାଳ ନିରୂପଣ କରିବାପାଇଁ ଏ କ୍ଷେତ୍ରରେ ଅଧିକ ଗବେଷଣାର ପ୍ରୟୋଜନ ଅଛି ବୋଲି ଗବେଷକ ରାଇଚରଣ କହିଛନ୍ତି ।

ଉପରେ ପ୍ରଦତ୍ତ ବିବରଣୀରେ ଉଲ୍ଲେଖ ଥିବା ଉରୁକ୍ ସମ୍ପର୍କରେ ଏଠାରେ କିଞ୍ଚିତ ଆଲୋଚନା ଆବଶ୍ୟକ । ପ୍ରାଚୀନ ଉରୁକ୍‌ର ଆଧୁନିକ ନାମ ଓ୍ୱାର୍କା । ପ୍ରତ୍ନତାତ୍ତ୍ୱିକ ଖନନ ପରେ ଉରୁକ୍ ସମ୍ପର୍କରେ ଅନେକ ଚିତ୍ତାକର୍ଷକ ତଥ୍ୟ ମିଳିଛି । ଖ୍ରୀଃପୂଃ ଚତୁର୍ଥ ସହସ୍ରାବ୍ଦୀରେ ମେସୋପଟାମିଆର ଏକ ପ୍ରସିଦ୍ଧ ମନ୍ଦିର ଥିଲା ଉରୁକ୍ । ଖ୍ରୀଃପୂଃ ୪୩୦୦ରୁ ଖ୍ରୀଃପୂଃ ୩୧୦୦ ଯାଏଁ ଉରୁକ୍‌ର ପ୍ରଭାବ ମେସୋପଟାମିଆ ତଥା ସୁମେର ଉପରେ ପଡ଼ିଥିଲା ।

ଉରୁକ୍‌ର ଦୁଇଟି ମୁଖ୍ୟ ଦେବପୀଠରୁ ଗୋଟିଏ ହେଲା ଆକାଶ ଦେବତା ଆନ୍(An ବା Anu) ଓ ଅନ୍ୟଟି ଇଆନାଠାରେ ଦେବୀ ଇନାନା (ପରେ ଇସ୍ତର)ଙ୍କର ପୀଠ । ଏ ଦୁହିଁଙ୍କ ବ୍ୟତୀତ

ଆହୁରି ଅନେକ ମନ୍ଦିର ଥିଲା । ଖ୍ରୀ:ପୂ: ୩୫୦୦ରୁ ଖ୍ରୀ:ପୂ: ୩୦୦୦ ମଧ୍ୟରେ ଉରୁକ୍‌ର ମନ୍ଦିର ଓ ମୂର୍ତ୍ତିସବୁ ଯେପରି ବିକଶିତ ହୋଇଥିଲେ ତାହା ବିସ୍ମୟଜନକ । ଖ୍ରୀ:ପୂ: ୩୦୦୦କୁ ଉରୁକ୍ ମନ୍ଦିର ନିର୍ମାଣର ସ୍ୱର୍ଣ୍ଣଯୁଗ କୁହାଯାଏ । ଏ ସମୟରେ ଅନେକ ଚମତ୍କାର ମନ୍ଦିର ନିର୍ମିତ ହୋଇଥିଲା । ପଥରର ମୂଳଦୁଆ ଉପରେ ମନ୍ଦିର ସବୁ ଗଢ଼ି ଉଠିଥିଲା । ବିଭିନ୍ନ ରଙ୍ଗରେ ମନ୍ଦିରର ଗାତ୍ରକୁ ରଙ୍ଗିନ୍ କରାଯିବା ସହିତ ପଥରରେ ସୂକ୍ଷ୍ମ କଳା ଫୁଟି ଉଠିଥିଲା । ମିଳିଥିବା ଶହ ଶହ ଲିପିବଦ୍ଧ ମାଟି ଟାଇଲରୁ ଏ ସଂପର୍କରେ ଐତିହାସିକ ତଥ୍ୟ ମିଳେ । ଉରୁକ୍‌ରୁ ଆଦ୍ୟଲିପର ସନ୍ଧାନ ମିଳିଥିଲା । ଉରୁକ୍‌ର ପରାକ୍ରମୀ ରାଜା ଗିଲ୍‌ଗାମେଶଙ୍କୁ କେନ୍ଦ୍ରକରି ବିଶ୍ୱର ପ୍ରଥମ ମହାକାବ୍ୟ ରଚିତ । ଆନୁ ମନ୍ଦିରର ଭିତର କାନ୍ଥ ଓ ସ୍ତମ୍ଭକୁ ରଙ୍ଗିନ ଇଟାରେ ଛାଉଣି କରାଯାଇଥିଲା । ଆନୁ ଗୋଟିଏ ମନ୍ଦିର ନୁହେଁ, ଗୋଟିଏ ମନ୍ଦିରମାଳା । ଇନାନାଙ୍କ ମନ୍ଦିର ମାର୍ବଲରେ ନିର୍ମିତ ହୋଇଥିଲା ।

ଆଉ ଏକ ବିସ୍ମୟଜନକ ମନ୍ଦିର ଓ ତାର ପ୍ରତିମା ଥିଲା ‘ଆଖି ମନ୍ଦିର’ । ଗୋଟିଏ ଉଚ୍ଚା ବେଦୀ ଉପରେ ସ୍ଥାପିତ ଆଖି ପରି ପ୍ରତିମାଯୋଗୁଁ ଏହାର ନାମ ଆଖି ମନ୍ଦିର । ଏହାର ଉଚ୍ଚା ବେଦୀ କାନ୍ଥରେ ଧାଡ଼ିଏ ରଙ୍ଗିନ ପଥରକୁ ଲାଗି ଆଉ ଧାଡ଼ିଏ ସୁନାପାତ ଖଞ୍ଜା ହୋଇଥିଲା । ସମୁଦାୟ କାନ୍ଥ ଏହିପରି ସଜ୍ଜା ହୋଇ ସୁନ୍ଦର ଦିଶୁଥିଲା । ଆଖି ମନ୍ଦିର ଉରୁକ୍‌ରେ ଆରମ୍ଭ ହୋଇ ଉର, ଲାଗାସ୍ ପରି ସୁମେରୀୟ ନଗରରେ ବ୍ୟାପିବା ସହିତ ସୁଦୂର ଟେଲ୍‌ବାର୍କରେ ପହଞ୍ଚିଥିଲା । ଉରୁକ୍‌ଠାରୁ ଆଠଶହ ମାଇଲ ଦୂରରେ ଉତ୍ତର ସିରିୟାରେ ୟୁଫ୍ରେଟିସ୍ ନଦୀ କୂଳରେ ଟେଲବାର୍କ ଅବସ୍ଥିତ । ଉରୁକ୍‌ର ‘ଆଖି ମନ୍ଦିର’ର ଚିତ୍ର ନିମ୍ନରେ ପ୍ରଦତ୍ତ ହେଲା ।



ଟେଲବାର୍କର କୁଦ ମନ୍ଦିରରୁ ହଜାର ହଜାର ସଂଖ୍ୟାରେ ଆଖି କଣ୍ଢେଇ ସବୁ ମିଳିଛି । ମନ୍ଦିରକୁ କଣ୍ଢେଇ ଦାନ କଲେ ଶୁଭ ହେବ ମନେକରି ଭକ୍ତମାନେ ଆଖିକଣ୍ଢେଇ ଦାନ କରୁଥିଲେ । କଣ୍ଢେଇଗୁଡ଼ିକ ଧଳା ଆଲ୍‌ବାଷ୍ଟର ବା ମାଟିନିର୍ମିତ । ଖ୍ରୀ:ପୂ: ଚତୁର୍ଥ ସହସ୍ରାବ୍ଦୀରେ ନିର୍ମିତ ଦୁଇରୁ ଏଗାର ସେଣ୍ଟିମିଟର ଉଚ୍ଚତାର ଏପରି ପ୍ରାୟ କୋଡ଼ିଏ ହଜାର କଣ୍ଢେଇ ମିଳିଛି [୫୩] । ଆଖିକଣ୍ଢେଇର ଚିତ୍ର ନିମ୍ନରେ ଦର୍ଶାଗଲା ।



ଆଖି ମନ୍ଦିରର 'ଆଖି ଦେବତା'ଙ୍କ ଚିତ୍ର ଶ୍ରୀଜଗନ୍ନାଥଙ୍କ 'ଚକାଡ଼ୋଳା' ସହିତ ମେଳ ଖାଉଛି । କିନ୍ତୁ 'ଆଖି କଣ୍ଢେଇ'ର ଆଖି ଗୋଲାକୃତି ନୁହେଁ ।

ପ୍ରାଚୀନ ଇଜିପ୍‌ଟ (ମିଶର)ର ପ୍ରାକ୍ ରାଜବଂଶ କାଳର ସୂର୍ଯ୍ୟଦେବତାଙ୍କ ନାମ ଅଟମ (Atum), ଯା'ର ଅର୍ଥ ସ୍ୱୟଂସମ୍ପୂର୍ଣ୍ଣ ସତ୍ତା ବା ସ୍ୱୟଂଭୂ । ତାଙ୍କର ମାତ୍ର ଗୋଟିଏ ଆଖି । ଏହି ଆଖିର ନାମ ଓଡ୍‌ଜାଟ୍ (Udjat),ଯାହାର ମହିମା ଅପାର । ଏହା ରାଜଶକ୍ତିର ରକ୍ଷକ ଓ ପ୍ରତୀକ । ଏହି ଆଖିକୁ ଅଟମ୍ ନିଜ ଲଲାଟରେ ସ୍ଥାନ ଦେଇଥିଲେ [୫୪] ।

ଅନିଷ୍ଟକାରୀ ଶକ୍ତି, ଭୂତପ୍ରେତଙ୍କ ଠାରୁ ରକ୍ଷା ପାଇବାକୁ ମିଶରରେ ବିଭିନ୍ନ ଦେବଦେବୀଙ୍କ କବଚ ଥିଲା । ସବୁଠାରୁ ଅଧିକ ପ୍ରଚଳିତ ଥିଲା ଓଡ଼ଜାଟ ଆଖି । ଏ ଆଖିଟି ଅଟମ୍ ବା ହୋରସ ଦେବତାଙ୍କର ।

---

**୫୩. ପ୍ରାଚୀନ ସଭ୍ୟତାର କାହାଣୀ (ମେସୋପଟାମିଆ) - ଶରତ କୁମାର ମହାନ୍ତି, ମିତା ବୁକ୍ସ, କଟକ, ନଭେମ୍ବର, ୨୦୦୪**

**୫୪. ପ୍ରାଚୀନ ସଭ୍ୟତାର କାହାଣୀ (ମିଶର)- ଶରତ କୁମାର ମହାନ୍ତି**



(Udjat- The sacred eye of Horus, symbol of protection, when used as amulet) [୫୫] ।

ଭାରତ ସମେତ ବିଶ୍ୱର ଅନେକ ପ୍ରାଚୀନ ସଭ୍ୟତାର ଦେଶମାନଙ୍କରେ ସୂର୍ଯ୍ୟ ଉପାସନା ପ୍ରଚଳିତ ଥିଲା । ସୂର୍ଯ୍ୟଙ୍କୁ ଜଗତର ଚକ୍ଷୁ, ଜଗତର ଆତ୍ମା କୁହାଯାଇଛି । ଋଗ୍‌ବେଦରେ ଉଲ୍ଲେଖ ଅଛି :

''ସୂର୍ଯ୍ୟ ଆତ୍ମା ଜଗତଃ ତସ୍ଥୁଷଶ୍ଚ ।'' (୧।୧୧୫।୧)

ପ୍ରସିଦ୍ଧ ଗାୟତ୍ରୀ ମନ୍ତ୍ରରେ ସବିତା ବା ସୂର୍ଯ୍ୟଦେବଙ୍କୁ ଆରାଧନା କରାଯାଇଛି । ସୂର୍ଯ୍ୟଙ୍କୁ ସାରା ବିଶ୍ୱର ମୂଳ ଓ ପ୍ରଚୋଦକ ମନେ କରାଯାଇଛି । ଭଗବାନ ବିଷ୍ଣୁଙ୍କର ଗୋଟିଏ ଚକ୍ଷୁ ସୂର୍ଯ୍ୟ ଓ ଅନ୍ୟଟି ଚନ୍ଦ୍ର ('ଶଶି ସୂର୍ଯ୍ୟ ନେତ୍ରମ୍')। ସେହିପରି ମିଶରୀୟ ହୋରସ୍ ଦେବତାଙ୍କର ମଧ୍ୟ ଗୋଟିଏ ଚକ୍ଷୁ ସୂର୍ଯ୍ୟ ଓ ଅପରଟି ଚନ୍ଦ୍ର କୁହାଯାଇଛି । ଐତରେୟ ଉପନିଷଦର ଏକ ମନ୍ତ୍ରରେ କିପରି ବିଭିନ୍ନ ଦେବତାମାନେ ମାନବ ଶରୀରରେ ପ୍ରବେଶ କଲେ କୁହାଯାଇଛି । ମାନବ ଶରୀର ପବିତ୍ର ଓ ଏହା ଦେବତାଙ୍କ ଆଶ୍ରୟସ୍ଥଳୀ । ଅଗ୍ନି ବାଣୀ ହୋଇ ମୁଖରେ ପ୍ରବେଶ କଲେ; ବାୟୁ ପ୍ରାଣ ହୋଇ ନାସିକାରେ ପ୍ରବେଶ କଲେ; ସୂର୍ଯ୍ୟ ଆଖି ହୋଇ ଦୁଇ ଆଖିରେ ପ୍ରବେଶ କଲେ; ଚନ୍ଦ୍ର ପ୍ରବେଶ କଲେ ମାନସରେ ଇତ୍ୟାଦି ।

ସୁତରାଂ ଚକ୍ଷୁ ସହିତ ସୂର୍ଯ୍ୟଙ୍କର ସମ୍ପର୍କ ରହିଛି । ଆଦିବାସୀ (ଶବର)ମାନେ ସୂର୍ଯ୍ୟଙ୍କୁ ସୌରନାରାୟଣ ଭାବରେ ପୂଜା କରୁଥିଲେ । ସୂର୍ଯ୍ୟ ଉପାସନାରୁ ଜଗନ୍ନାଥ ଉପାସନାର ଉଦ୍ଭବ ଓ ବିକାଶ ହୋଇଥାଇପାରେ । କାଶୀନାଥ ମିଶ୍ର ସଉରା ଭାଷାରୁ ମାଧବ ଶବ୍ଦର ମୂଳ ଖୋଜିଛନ୍ତି । ତାଙ୍କ ମତରେ 'ମାଉଦ୍' ଅର୍ଥ ଆଖି ଓ 'ବୋବ୍' ଅର୍ଥ ମୁଣ୍ଡ । ଆଦିବାସୀମାନେ ଆଖିକୁ ସୂର୍ଯ୍ୟଦେବତା ଓ ମୁଣ୍ଡ ତାଙ୍କର ବାସସ୍ଥାନ ବୋଲି ମନେ କରନ୍ତି । ସେମାନଙ୍କର ପ୍ରଥମ ଦେବତା ମାଉଦ୍‌ବୋବ୍ କାଳକ୍ରମେ ମାଧବରେ ପରିଣତ ହୋଇଛନ୍ତି [୫୬] ।

---

**୫୫.** Cairo : The Egyptian Museum Pharaonic Sites- S. Mohamed, Printed in Egypt, 2001

**୫୬. ପୁରୀ ବୋଲି- ଡକ୍ଟର ସିଦ୍ଧେଶ୍ୱର ମହାପାତ୍ର । ୨ୟ ସଂସ୍କରଣ, ଓ.ସା.ଏ, ୨୦୦୬**

ପୁରୀ ଶ୍ରୀଜଗନ୍ନାଥ ମନ୍ଦିରରେ ପ୍ରତିଦିନ ସକାଳେ ସୂର୍ଯ୍ୟପୂଜା ହୁଏ । ଦ୍ୱାରଫିଟା, ମଙ୍ଗଳ ଆରତି, ମଇଲମ, ଅବକାଶ, ପୁଣି ମଇଲମ, ସାହାଣମେଲା, ବେଶଲାଗି, ରୋଷହୋମ ପରେ ସୂର୍ଯ୍ୟପୂଜା ହୁଏ । ସୂର୍ଯ୍ୟପୂଜା ପରେ ଦ୍ୱାରପାଳ ପୂଜା, ଗୋପାଳବଲ୍ଲଭ ଭୋଗ ଇତ୍ୟାଦି ଅନ୍ୟାନ୍ୟ ନୀତି ହୁଏ । ମୁକ୍ତିମଣ୍ଡପର ପୂର୍ବ ପାର୍ଶ୍ୱରେ ଏକ ଛୋଟିଆ ମନ୍ଦିରରେ ବିରାଜିତ ସୂର୍ଯ୍ୟଙ୍କୁ ପୂଜା କରାଯାଏ । ସୂର୍ଯ୍ୟଙ୍କର ପ୍ରତିମା ଏଠାରେ ନାହିଁ । ତାଙ୍କର ଯନ୍ତ୍ର (ପ୍ରତୀକ)କୁ ହିଁ ପୂଜା କରାଯାଏ । ଚତୁର୍ଦ୍ଧାମୂର୍ତ୍ତି ମଧ୍ୟ ପ୍ରତୀକ ବିଗ୍ରହ ।

ନୃତାତ୍ତ୍ୱିକ ଦୃଷ୍ଟିକୋଣରୁ 'ଚକାଡ଼ୋଳା'କୁ ଆଲୋଚନା କରି ଡକ୍ଟର ଶ୍ରୀଶ ପଟେଲ ଲେଖିଛନ୍ତି- ''ପରନ୍ତୁ ଆଧୁନିକ ଯୁଗରେ ପରସ୍ପର କଳହ ଓ ଅସାମାଜିକ ବୃତ୍ତିର ବୃଦ୍ଧିଲାଭଜନିତ ଘଟଣାରୁ ସମାଜରେ ନିୟନ୍ତ୍ରଣକାରୀ ଶକ୍ତିର ରୂପରେଖ ନିମିତ୍ତ ଜଗନ୍ନାଥଙ୍କ ଚକାଆଖି ଏକ ଉଦ୍‌ଭବ କହିଲେ ଅତ୍ୟୁକ୍ତି ହେବନାହିଁ । ...ଆମର କ୍ରିୟାକଳାପକୁ ଅନ୍ୟ କେହି ନଦେଖୁଥିଲେ ମଧ୍ୟ ସେହି ସର୍ବଶକ୍ତିମାନ ଲକ୍ଷ୍ୟ ରଖିଛନ୍ତି ଅପଲକ ନେତ୍ରରେ [୫୭] ।

ଚକାଡ଼ୋଳା ହେଉଛନ୍ତି A pair of eyes that tells of the supreme 'I' .

ସାଂଖ୍ୟ ଦର୍ଶନରେ 'ପୁରୁଷ' ହେଉଛନ୍ତି ସତ୍,ଚିତ୍ ଓ ଆନନ୍ଦର ସ୍ୱରୂପ । ଜଗନ୍ନାଥ ସଚ୍ଚିଦାନନ୍ଦ ବିଗ୍ରହ । ସାଂଖ୍ୟରେ ପୁରୁଷଙ୍କୁ ପଙ୍ଗୁ ସହିତ ତୁଳନା କରାଯାଇଛି । ଜଗନ୍ନାଥ ମଧ୍ୟ ହସ୍ତପଦହୀନ ପଙ୍ଗୁ । ଏଥିରୁ ସେ ନିଜେ କିଛି ନକରି ଅନ୍ୟଦ୍ୱାରା କରାଉଥିବାର ପ୍ରମାଣ ସିଦ୍ଧ ହେଉଛି । ତାଙ୍କର ଚକା ଚକା ବଡ଼ ବଡ଼ ଆଖିରୁ ବୁଝାଯାଏ, ସତେ ଅବା ସେ ସଂସାରର ସବୁକିଛି ଦେଖୁଛନ୍ତି ଓ ନିଜେ ବାସ୍ତବରେ କିଛି ନକଲେ ମଧ୍ୟ 'ସାକ୍ଷୀ' ହୋଇ ବସିଛନ୍ତି । ସାଂଖ୍ୟରେ ପୁରୁଷଙ୍କୁ ସାକ୍ଷୀ, ନିର୍ବିକାର, ଉଦାସୀନ ଭାବରେ ଚିତ୍ରଣ କରାଯାଇଛି । ଏସବୁ ଦେଖିଲେ ମନେହୁଏ, ଯେପରି ଜଗନ୍ନାଥ ଦର୍ଶନରେ ବହୁ ଭାବରେ ସାଂଖ୍ୟ ଦର୍ଶନ ଜଡ଼ିତ । ପ୍ରାଚୀନ ଭାରତର ଧର୍ମଧାରା, ପୁରାଣ ସାହିତ୍ୟର ପୁଙ୍ଖାନୁପୁଙ୍ଖ ବିଶ୍ଳେଷଣ ଓ ପର୍ଯ୍ୟାଲୋଚନା ଆମକୁ ଯଥାର୍ଥରେ ସୂଚାଇ ଦିଏ ଯେ, ଜଗନ୍ନାଥ ପୂଜା ହେଉଛି ବିଷ୍ଣୁ ଉପାସନାର ଏକ ଚରମ ପରିଣତି [୫୮] ।

ସ୍ୱର୍ଗରେ ବିଷ୍ଣୁଙ୍କ ବସତିସ୍ଥଳ ପରମଧାମ ବୈକୁଣ୍ଠପୁରକୁ ଗୋଲୋକ କୁହାଯାଏ । ''ଶରୀରରୁ ବାହାରି ଜୀବକୁ ଲୋକ ଲୋକାନ୍ତର ଯିବାକୁ ହୁଏ । ଗୋଟିଏ ଗୋଟିଏ ଲୋକ ଗୋଟିଏ ଗୋଟିଏ ଆକାରବିଶିଷ୍ଟ । ଇନ୍ଦ୍ରପୁରୀ ଶଙ୍ଖାକୃତି । ଏହାର ମୁଖ ଦେଇ ପ୍ରବେଶ ପଥ ଓ ପୁଚ୍ଛ ଦେଇ ପ୍ରସ୍ଥାନ ପଥ । ବିଭିନ୍ନ ଲୋକ ରହିଛି- ଚନ୍ଦ୍ରଲୋକ, ଦେବଲୋକ, ସୂର୍ଯ୍ୟଲୋକ, ଇନ୍ଦ୍ରଲୋକ, ଧ୍ରୁବଲୋକ, ଭୀଷ୍ମଲୋକ, ଯମଲୋକ, ପ୍ରେତଲୋକ, ପିତୃଲୋକ ଇତ୍ୟାଦି । ସର୍ବଲୋକ ଉପରେ ଇନ୍ଦ୍ରପୁରୀ । ପ୍ରତ୍ୟେକ ଲୋକର ଜଣେ ଜଣେ ଅଧିଷ୍ଠାତା ଅଛନ୍ତି । ଇନ୍ଦ୍ରପୁରୀର ଅଧିଷ୍ଠାତା ଲକ୍ଷ୍ମୀ-ନାରାୟଣ । ଇନ୍ଦ୍ରପୁରୀର ଅନ୍ୟ ନାମ ଗୋଲୋକ [୫୯] ।

---

**୫୭. ପତିତପାବନ (ସ୍ମରଣିକା), ୧୯୮୫, ଛତ୍ରପୁର**

**୫୮. ଶ୍ରୀଜଗନ୍ନାଥ ତତ୍ତ୍ୱ - ଡକ୍ଟର ଗୋପୀନାଥ ମହାପାତ୍ର**

**୫୯. ଶ୍ରୀଗୁରୁଚରଣ ସରୋଜ ରଜ- ଶ୍ରୀନବକିଶୋର ରାଜ**

ଶ୍ରୀକ୍ଷେତ୍ର ବା ଜଗନ୍ନାଥ ପୁରୀ ମଧ୍ୟ ଶଙ୍ଖାକୃତି । ସ୍କନ୍ଦ ପୁରାଣ ପ୍ରକାରେ ଶ୍ରୀକ୍ଷେତ୍ରର ଆୟତନ ଶଙ୍ଖାକୃତି । ଏହି ଶଙ୍ଖ ଦକ୍ଷିଣାବର୍ତ୍ତ ଓ ଏହାର ନାଭିକେନ୍ଦ୍ରରେ (ଶଙ୍ଖନାଭି ମଣ୍ଡଳରେ) ଶ୍ରୀଜଗନ୍ନାଥ ବିରାଜିତ । ତେଣୁ ପୁରୀକୁ ମର୍ତ୍ତ୍ୟବୈକୁଣ୍ଠ, ମର୍ତ୍ତ୍ୟ ଗୋଲୋକ ବୋଲି କୁହାଯାଏ ।

ଶ୍ରୀମନ୍ଦିର ରତ୍ନବେଦୀରେ ବିରାଜିତ ତ୍ରିମୂର୍ତ୍ତି । ଚତୁର୍ଦ୍ଧାମୂର୍ତ୍ତି ନିମ୍ନ ପ୍ରକାରେ ପ୍ରତିନିଧିତ୍ୱ କରନ୍ତି ବୋଲି କେତେଜଣ ବିଦ୍ୱାନ ବ୍ୟାଖ୍ୟା କରିଛନ୍ତି ।

| | | | |
|---|---|---|---|
| ବଳଭଦ୍ର | ସୁଭଦ୍ରା | ଜଗନ୍ନାଥ | ସୁଦର୍ଶନ |
| ଶିବ (ରୁଦ୍ର) | ବ୍ରହ୍ମା | ବିଷ୍ଣୁ | - |
| ପ୍ରଳୟ | ସୃଷ୍ଟି | ସ୍ଥିତି | - |
| ଶୈବ | ଶାକ୍ତ | ବୈଷ୍ଣବ | ସୌର |
| ଶ୍ଲୀଂ | ହ୍ରୀଂ | କ୍ଲୀଂ | ଓଁ |
| ଦ୍ରାବିଡ଼ | ଅନାର୍ଯ୍ୟ | ଆର୍ଯ୍ୟ | - |
| ଋଗ୍‌ବେଦ | ଯଦୁର୍ବେଦ | ସାମବେଦ | ଅଥର୍ବବେଦ |
| କର୍ଣ୍ଣ | ଓଷ୍ଠ | ଚକ୍ଷୁ | ନାସିକା |
| ଲକ୍ଷ୍ମଣ | ସୀତା | ରାମ | - |
| ଶଙ୍ଖ | ପଦ୍ମ | ଚକ୍ର | ଗଦା |
| ଦିନ | ସନ୍ଧ୍ୟା | ରାତି | - |
| ସତ୍ୟ | ଦ୍ୱାପର | କଳି | ତ୍ରେତୟା |
| ଶଙ୍କର୍ଷଣ | ପ୍ରଦ୍ୟୁମ୍ନ | ବାସୁଦେବ | ଅନିରୁଦ୍ଧ |
| ସ୍ଥୂଳ | ସୂକ୍ଷ୍ମ | କାରଣ | - |
| ଶିଷ୍ୟ | ଗୁରୁ | ଦେବତା | - |
| ହରେ | ରାମ | କୃଷ୍ଣ | ହରେ |
| ସି | ର | ଦ୍ଧି | ସ୍ତୁ |
| ଶୁକ୍ଳ | ହରିତ | ପୀତ | ଲୋହିତ |
| ରତି | ପ୍ରେମ | ସ୍ମୃତି | - |
| ରେ | ହ | କୃ | ଷ୍ଣ |
| ପୁରୁଷ | ପ୍ରକୃତି | ପୁରୁଷୋତ୍ତମ | - |
| ଅ | ଉ | ମ | - |

ଏହିପରି ତ୍ରିମୂର୍ତ୍ତି, କନ୍ଧମାନଙ୍କ ଦେବତା- ଜାକରୀପେନୁ, ତାନାପେନୁ ଓ ମୁରବି ପେନୁଙ୍କ ପ୍ରତୀକ, ବୌଦ୍ଧ ତ୍ରିରତ୍ନ ଓ ଜୈନ ତ୍ରିରତ୍ନର ପ୍ରତୀକ ବୋଲି ମଧ୍ୟ କୁହାଯାଇଛି । ପ୍ରଫେସର ବାସୁଦେବ ସାହୁ କହିଛନ୍ତି- ''ବିଭିନ୍ନ ଧର୍ମର ମତବାଦ ଜଗନ୍ନାଥଙ୍କର ସାର୍ବଜନୀନ ଉଦାର ମହିମା ଦ୍ୱାରା ଗୋଟିଏ ସୂତ୍ରରେ ଗ୍ରଥିତ ହୋଇ ଜଗନ୍ନାଥ ଧର୍ମରେ ପରିଣତ ହୋଇଛି । ଜଗନ୍ନାଥ ଧର୍ମ

ରୂପକ ମହାଦ୍ରୁମର ବିଭିନ୍ନ ଚେର ହେଉଛି- ଶାବର, ଜୈନ, ବୌଦ୍ଧ, ବୈଷ୍ଣବ, ଶାକ୍ତ, ସୌର ଓ ଗାଣପତ୍ୟ ଇତ୍ୟାଦି । କିନ୍ତୁ ଆଜି ବାହ୍ୟତଃ ଯେଉଁ ଶାଖା ପ୍ରଶାଖା ଫୁଲଫଳସମନ୍ୱିତ ମହାଦ୍ରୁମଟି ପରିଦୃଶ୍ୟମାନ ହେଉଅଛି, ତାହା ବୈଷ୍ଣବ ମହାଦ୍ରୁମ ଭାବରେ ପରିଚିତ । ଜଗନ୍ନାଥଙ୍କ ସମ୍ପର୍କରେ କୌଣସି ସିଦ୍ଧାନ୍ତ ସ୍ୱୟଂସମ୍ପୂର୍ଣ୍ଣ ବା ଅପରିବର୍ତ୍ତନୀୟ ନୁହେଁ । ପ୍ରକୃତରେ ଶ୍ରୀଜଗନ୍ନାଥ ଅତୀବ ରହସ୍ୟମୟ ଓ ଏହି ରହସ୍ୟମୟତାରେ ହିଁ ତାଙ୍କର ଅପରିମେୟ ମହତ୍ତ୍ୱ ନିହିତ [୬୦] ।

ଜଗନ୍ନାଥ ମହାପ୍ରଭୁ ଯେ ବିଶ୍ୱର ଏକ ପ୍ରାଚୀନ ଦେବତା, ଏହାର ପ୍ରମାଣ ମିଳେ । ପଣ୍ଡିତ ନୀଳକଣ୍ଠ ବେବିଲୋନ୍ ସଭ୍ୟତାର ପ୍ରାରମ୍ଭରେ ଜଗନ୍ନାଥଙ୍କ ଅସ୍ତିତ୍ୱର ସଙ୍କେତ ସମ୍ପର୍କରେ ଯାହା ସୂଚନା ଦେଇଛନ୍ତି ତାହା ବିଶ୍ୱାସଯୋଗ୍ୟ । ଜଗନ୍ନାଥଙ୍କ ଦାରୁବିଗ୍ରହରେ ଦୁଇଟି ଅତି ପୁରାତନ ପ୍ରତୀକ (symbol)ର ସଂଯୋଗ ଦେଖାଯାଏ । ପ୍ରତୀକ ଦ୍ୱୟ ହେଲା ସ୍ୱସ୍ତିକ ଓ କ୍ରସ୍ ଚିହ୍ନ ।

''The symbols of Cross and Swastika are probably the most ancient symbols of god that the earliest men evolved to worship the creator"[୬୧] । ଯୀଶୁଖ୍ରୀଷ୍ଟଙ୍କ ଜନ୍ମର ହଜାର ହଜାର ବର୍ଷ ପୂର୍ବରୁ କ୍ରସ୍ ଚିହ୍ନ ବିଦ୍ୟମାନ ଥିଲା ''Historians tell us further that the cross is thousands of years older than Christ''[୬୨] ।

ମିଶର, ଗ୍ରୀକ୍ ପ୍ରଭୃତି ପ୍ରାଚୀନ ସଭ୍ୟଦେଶର ଅବଲୁପ୍ତ ଧର୍ମପୀଠମାନଙ୍କର ଓ ଶ୍ରୀମନ୍ଦିରର ଉପାସନା ପଦ୍ଧତି ଓ ଧର୍ମାଚାରର ତୁଳନାତ୍ମକ ଅଧ୍ୟୟନ କଲେ ଅନେକ ଚିତ୍ତାକର୍ଷକ ସାଦୃଶ୍ୟ ପରିଲକ୍ଷିତ ହୁଏ । ଏଥିରୁ ପ୍ରମାଣ ମିଳେ ଯେ, ଶ୍ରୀକ୍ଷେତ୍ର ପୁରୀ ହେଉଛି ପୃଥିବୀର ଏକ ପ୍ରାଚୀନ ଧର୍ମପୀଠ [୬୩] । ଖ୍ରୀଷ୍ଟ ଜନ୍ମ ଓ ବୁଦ୍ଧ ଜନ୍ମର ଅନେକ ଅନେକ ବର୍ଷ ପୂର୍ବେ ଏହି କ୍ଷେତ୍ର ଏକ ପ୍ରସିଦ୍ଧ ଧର୍ମପୀଠ ଥିଲା; ଏହା ନିଃସନ୍ଦେହରେ କୁହାଯାଇପାରେ [୬୪] ।

ମହାବୀର ବର୍ଦ୍ଧମାନ କଳିଙ୍ଗକୁ ଧର୍ମପ୍ରଚାର ପାଇଁ ଆସିଥିଲେ ବୋଲି ଐତିହାସିକ ଯଜ୍ଞକୁମାର ସାହୁ ଲେଖିଛନ୍ତି [୬୫] । ଗୌତମବୁଦ୍ଧ ନିଜେ କଳିଙ୍ଗକୁ ଧର୍ମପ୍ରଚାର ପାଇଁ ଆସିଥିବାର କୌଣସି ସୂଚନା ମିଳେନାହିଁ ବୋଲି ଶ୍ରୀ ସାହୁ ଲେଖିଛନ୍ତି । କିନ୍ତୁ ସ୍ୱୟଂ ବୁଦ୍ଧଦେବ ଶ୍ରୀକ୍ଷେତ୍ର ପୁରୀକୁ ଆସିଥିବେ ବୋଲି ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ ଅନୁମାନ କରିଛନ୍ତି । ଯୀଶୁଖ୍ରୀଷ୍ଟ ମଧ୍ୟ ଏହି ଜଗନ୍ନାଥ ଧାମକୁ ଆସି କିଛିଦିନ ରହିଥିଲେ ଓ ବ୍ରାହ୍ମଣମାନଙ୍କଠାରୁ ବେଦଶିକ୍ଷା କରିଥିଲେ ବୋଲି ଯାହା କିଛି

---

**୬୦. ଓଡ଼ିଆ ସାହିତ୍ୟରେ ଶ୍ରୀଜଗନ୍ନାଥ ଚେତନା- ଡକ୍ଟର ବାସୁଦେବ ସାହୁ**

**୬୧.** TANTRA: The erotic cult - Capt. E.D. Colaabavala Orient paper backs, 1983, Delhi.

**୬୨.** Adventures in religious life - Swami Yatiswarananda.

**୬୩. ଶ୍ରୀମନ୍ଦିରରେ ସୂର୍ଯ୍ୟପୂଜା - ମହୀମୋହନ ତ୍ରିପାଠୀ, 'ଝଙ୍କାର', ଜୁନ୍-୨୦୦୯**

**୬୪. ଶ୍ରୀମନ୍ଦିର ଓ ପ୍ରାଚୀନ ମିଶରୀୟ ମନ୍ଦିରମାନଙ୍କର ନୀତି- ମହୀମୋହନ ତ୍ରିପାଠୀ, 'ଶ୍ରୀମନ୍ଦିର', ଜୁଲାଇ ୨୦୧୦**

**୬୫. ଓଡ଼ିଶାର ସାଂସ୍କୃତିକ ଇତିହାସ - ଡକ୍ଟର ଯଜ୍ଞକୁମାର ସାହୁ (୨ୟ ଖଣ୍ଡ, ଓ.ସା.ଏ, ୨୦୦୧)**

ଲେଖାଯାଇଛି ତାହା ବିଶ୍ୱାସଯୋଗ୍ୟ । ଯୀଶୁଙ୍କ ସମୟରେ କୃଷ୍ଣବାସୁଦେବ ଓ ଶଙ୍କର୍ଷଣ ଉପାସନା ଭାରତର କେତେକ ଅଞ୍ଚଳରେ ପ୍ରଚଳିତ ଥିବାର ପ୍ରମାଣ ମିଳେ । ଶ୍ରୀକ୍ଷେତ୍ର ପୁରୀରେ ମଧ୍ୟ ଏହି ଉପାସନା ପ୍ରସିଦ୍ଧି ଲାଭ କରିଥିବ । ଯୀଶୁ ହିନ୍ଦୁ (ଭାଗବତ) ଧର୍ମ ଓ ବୁଦ୍ଧଧର୍ମ ସମ୍ପର୍କରେ ଶିକ୍ଷାଲାଭ କରିଥିବେ । ଖ୍ରୀଃପୂଃ ତୃତୀୟ ଶତକ ବେଳକୁ ଅର୍ଥାତ୍ ସମ୍ରାଟ ଅଶୋକଙ୍କ କଳିଙ୍ଗ ବିଜୟବେଳେ ଓଡ଼ିଶାରେ ବୌଦ୍ଧଧର୍ମ ସାଙ୍ଗକୁ ବ୍ରାହ୍ମଣ୍ୟ ଧର୍ମ ରହିଥିଲା । ଖାରବେଳଙ୍କ ସମୟ (ଖ୍ରୀଃପୂଃ ପ୍ରଥମ-ଦ୍ୱିତୀୟ ଶତାବ୍ଦୀ)ରେ ଓଡ଼ିଶା ବ୍ରାହ୍ମଣ୍ୟଧର୍ମ, ବୌଦ୍ଧ ଓ ଜୈନଧର୍ମର ଉପାସନା ପୀଠ ଥିଲା ।

ଖ୍ରୀଷ୍ଟଧର୍ମ, ବୌଦ୍ଧଧର୍ମ ଓ ଜୈନଧର୍ମର ଉତ୍ପତ୍ତି ପୂର୍ବରୁ ଏହି କ୍ଷେତ୍ରରେ ଉପାସିତ ଦେବତାଙ୍କ ବିଗ୍ରହ ସ୍ୱରୂପ କ'ଣ ଥିଲା ତାହା ଗବେଷଣାସାପେକ୍ଷ । ସମୟାନୁକ୍ରମେ ବିବର୍ତ୍ତନ ଘଟି ଏହି ଦେବତା 'ଏକ'ରୁ 'ବହୁ'ରେ ପରିଣତ ହୋଇଛନ୍ତି । ଏବେ ଜଗନ୍ନାଥ- କୃଷ୍ଣବାସୁଦେବ ଭାବରେ ଉପାସିତ ହେଉଛନ୍ତି । ତାଙ୍କର ରୀତିନୀତିରେ ବିଭିନ୍ନ ଧର୍ମ ଓ ମତବାଦର ସମନ୍ୱୟ ଦେଖିବାକୁ ମିଳେ ।

ସ୍ୱାମୀ ହରିହରାନନ୍ଦ ଗିରି କହିଛନ୍ତି ଯେ, ଶ୍ରୀଜଗନ୍ନାଥ ଭାରତର ସର୍ବଧର୍ମ ଧାରଣାର ପ୍ରତିନିଧିତ୍ୱ କରୁଥିବା ସର୍ବୋତ୍ତମ ଓ ଆଦର୍ଶ ମୂର୍ତ୍ତି ।

''Surely this is the ideal and best statue of India to all concepts''[୬୬] । ଡକ୍ଟର ହରେକୃଷ୍ଣ ମହତାବଙ୍କ ଭାଷାରେ : It would be unfair to identify this supremely catholic and cosmopolitan cult with any particular school of philosophy[୬୭] । ଏପରି ଉଦାର ସାର୍ବଜନୀନ ଧର୍ମ ପଦ୍ଧତିକୁ କୌଣସି ଏକ ନିର୍ଦ୍ଦିଷ୍ଟ ଦର୍ଶନ ଶୃଙ୍ଖଳା ସହିତ ଚିହ୍ନଟ କରାଯିବା ଯୁକ୍ତିଯୁକ୍ତ ହୋଇନପାରେ ।

ଏନ୍‌ସାଇକ୍ଲୋପେଡ଼ିଆ ଆମେରିକାନାରେ ଉଲ୍ଲେଖ ଅଛି :

The worship of Jagannath, the god of the people, aims at a catholicity with every-form of Indian devotion and at the incorporation therein of every Indian conception of god.[୬୮]

ଶ୍ରୀଜଗନ୍ନାଥ ସଂସ୍କୃତିର ବିଶିଷ୍ଟ ଗବେଷକ ଡକ୍ଟର ବେଣୀମାଧବ ପାଢ଼ୀଙ୍କ ଆଲୋଚନା ପ୍ରକାରେ ମାନବ ସମାଜରେ ତିନିଟି ଦୃଷ୍ଟିଭଙ୍ଗୀ ଧରି 'ଦେବତା' ଦେଖାଯାନ୍ତି- ଆଧ୍ୟାତ୍ମିକ, ଆବତାରିକ ଓ ସାଂସ୍କୃତିକ । ଯେଉଁ ଦେବତାଙ୍କୁ ମୂଳ କରି ଆଧ୍ୟାତ୍ମିକ ଚିନ୍ତା ବା ଦାର୍ଶନିକତା ଉତ୍ପତ୍ତି ଲାଭ କରେ ଏବଂ ବିଭିନ୍ନ ଦର୍ଶନର ସୂତ୍ରପାତ ହୁଏ, ତାହାଙ୍କୁ 'ଆଧ୍ୟାତ୍ମିକ ଦେବତା' କୁହାଯାଏ । 'ଆବତାରିକ ଦେବତା' ହେଲେ, ଯେଉଁମାନେ ମରଶରୀରରେ ରକ୍ତମାଂସଧାରୀ ମାନବ ରୂପେ ଅବତୀର୍ଣ୍ଣ ହୋଇ ବିଶ୍ୱନିୟନ୍ତାଙ୍କ ଆଦେଶକୁ କାର୍ଯ୍ୟକାରୀ କରିବାଦ୍ୱାରା ଜନସମାଜର ଉପାସ୍ୟ ହୋଇଉଠନ୍ତି । ଏମାନେ ସାଧାରଣ ମାନବ ତୁଲ୍ୟ ପ୍ରତୀୟମାନ ହେଲେ ସୁଦ୍ଧା ଐଶ୍ୱରୀୟ ଶକ୍ତିସମ୍ପନ୍ନ । ଅପରଟି ହେଉଛି 'ସାଂସ୍କୃତିକ ଦେବତା' । ପ୍ରଥମୋକ୍ତ ଦେବତାଙ୍କ ତୁଲ୍ୟ ଏହାଙ୍କୁ

---

**୬୬.** The secrets and significance of the idol worship of the Hindus- Swami H.Giri.

**୬୭.** Orissa History- Dr. H.K. Mahatab

**୬୮.** The Encyclopaedia Americana (1829)

କେନ୍ଦ୍ର କରି କୌଣସି ଅଧ୍ୟାତ୍ମବାଦ ପ୍ରତିଷ୍ଠିତ ହୋଇନଥାଏ କିମ୍ବା ଦ୍ୱିତୀୟ ଦେବତା ପରି ଇଏ କୌଣସି ଅବତାର ଗ୍ରହଣ କରିବା କିମ୍ବା ଏହାଙ୍କୁ କେନ୍ଦ୍ରକରି ଧର୍ମ ସଂପ୍ରଦାୟ ସୃଷ୍ଟି ହେବା ବର୍ଣ୍ଣିତ ନଥାଏ । କିନ୍ତୁ ଏହାଙ୍କଠାରେ ମାନବ ସମାଜର ସର୍ବୋତ୍ତମ ସାଂସ୍କୃତିକ ଚିନ୍ତାଧାରା ନିହିତ ଥାଏ । ସର୍ବୋତ୍କୃଷ୍ଟ ମାନବ ରୂପରେ ସଂସାର ମଧ୍ୟରେ ବଞ୍ଚି ରହିବାକୁ ହେଲେ କି ପ୍ରକାର କର୍ତ୍ତବ୍ୟନିଷ୍ଠ ଓ ଆଚାର ବିଚାରଧାରା ଗ୍ରହଣ କରିବା ଉଚିତ, ସେ ସବୁର ଆଦର୍ଶ ଚିନ୍ତା ଏହାଙ୍କଠାରେ ପ୍ରତିଫଳିତ ହୋଇଥାଏ । ଏଣୁ ଏହାଙ୍କୁ 'ସାଂସ୍କୃତିକ ଦେବତା' କୁହାଯାଏ । ଉତ୍କଳର ଜଗନ୍ନାଥ ଏହି ଶ୍ରେଣୀର ଦେବତା, ଯାହାଙ୍କ ସହିତ ଉତ୍କଳୀୟ ସଂସ୍କୃତି ଓତପ୍ରୋତ ଭାବରେ ଜଡ଼ିତ । ଜଗନ୍ନାଥଙ୍କର ଆଉ ଏକ ବୈଶିଷ୍ଟ୍ୟ ହେଉଛି, ଅନ୍ୟତ୍ର ପୂଜିତ ଦେବତାଙ୍କ ନାମ ସହିତ ସେହି ଦେଶର ଧର୍ମ ବା ସଂସ୍କୃତି ଜଡ଼ିତ ଥିବା ଦେଖାଯାଏ ନାହିଁ । କିନ୍ତୁ ଉତ୍କଳର ଧର୍ମ କହିଲେ 'ଜଗନ୍ନାଥ ଧର୍ମ', ସଂସ୍କୃତି କହିଲେ 'ଜଗନ୍ନାଥ ସଂସ୍କୃତି', ଇତିହାସ କହିଲେ 'ଜଗନ୍ନାଥଙ୍କ ଇତିହାସ' । ଜଗନ୍ନାଥ ହିଁ ଉତ୍କଳବାସୀଙ୍କ ଧର୍ମ ଓ ବିଶ୍ୱାସର ପ୍ରାଣକେନ୍ଦ୍ର [୬୯] ।

Since the time of inception of Jagannath worship and over the past many centuries, there have been diverse currents and cross currents moulding the concepts and religious outlook of the people. Attempts have been made by scholars to trace the origin of Jagannath to... Buddhist, Jain, Sabar, Vedic or Brahmanical sources. Visit of great teachers like Sankaracharya, Ramanuja and Chitanya are land -marks in the history of evolution of the religious spirit of people of the land. In course of time the various creed and ideologies merged into a composite religion which absorbed and assimilated the essence of all religions. This religion is Jagannath Dharma or an eternal symbol of a cultural assimilation [୭୦] ।

ସମୟକ୍ରମେ ବିଭିନ୍ନ ଧର୍ମମତ ଓ ବିଚାରଧାରାର ବିଲୟ ନ ଘଟି ଏକ ମିଶ୍ରଧର୍ମରେ ପରିଣତ ହେଲା, ଯାହାକି ସବୁ ଧର୍ମର ସାରତତ୍ତ୍ୱକୁ ବିଶୋଷିତ କରି ସମୀକରଣ ବା ନିଜସ୍ୱୀକରଣ କରିଦେଲା । ଏହି 'ମିଶ୍ରଧର୍ମ' ହିଁ ଜଗନ୍ନାଥ ଧର୍ମ- ଏକ ସାଂସ୍କୃତିକ ସମୀକରଣର ଶାଶ୍ୱତ ପ୍ରତୀକ ।



---

**୬୯. କୃଷ୍ଟି ଓ ଦୃଷ୍ଟି- ଡକ୍ଟର ବେଣୀମାଧବ ପାଢ଼ୀ**

**୭୦.** Report of the Sri Jagannath Temple Administration Improvement Committee (Published in 1980)

**ପୁ**ରୀ ଶ୍ରୀଜଗନ୍ନାଥ ମନ୍ଦିର (ଶ୍ରୀମନ୍ଦିର)ର ସ୍ୱତ୍ୱଲିପି ବା ଅଧିକାର-ଅଭିଲେଖ (Record of Rights) ଅନୁସାରେ ଉକ୍ତ ମନ୍ଦିରରେ ୧୧୯ ପ୍ରକାର ବା ବର୍ଗର ସେବା ବ୍ୟବସ୍ଥା ଅଛି । ଅଧିକାଂଶ ସେବା ବଂଶାନୁକ୍ରମିକ। ସେବକମାନଙ୍କ ମଧ୍ୟରେ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର ଶ୍ରେଣୀର ସେବକ ଅଛନ୍ତି ।

ମାଦଳାପାଞ୍ଜି (ସଂପାଦନା-ପ୍ରଫେସର ଆର୍ତ୍ତବଲ୍ଲଭ ମହାନ୍ତି)ରେ ଉଲ୍ଲେଖ ଅଛି ଯେ ଗଙ୍ଗବଂଶର ରାଜା ଅନଙ୍ଗଭୀମ ଦେବ (ଖ୍ରୀଷ୍ଟାବ୍ଦ ୧୨୧୧-୧୨୩୮) ପ୍ରଥମ କରି 'ଛତିଶା ନିଯୋଗ ଭିଆଇଲେ' । ୨ୟପାଞ୍ଜିମତେ ''ପତି, ମୁଦିରଥ, ପଣ୍ଡା, ପଶୁପାଳକ, ଖୁଣ୍ଟିଆ, ସୁଆରବଡୁ, ପତ୍ରୀବଡୁ, ଗରାବଡୁ, ସୁଆର, ମୁଦୁଲି, ପଢ଼ିଆରୀ ଆଉ ସମସ୍ତ ସେବକ କରି ଛତିଶା ନିଯୋଗ କଲେ । ...ଦ୍ୱାଦଶ ଯାତ୍ରା ପର୍ବପର୍ବାଣିମାନ ଭିଆଣ କଲେ ।'' ଉକ୍ତ ମାଦଳାପାଞ୍ଜିରୁ ଜଣାଯାଏ ଯେ ରାଜା ଅନଙ୍ଗଭୀମଦେବ ଛତିଶା ନିଯୋଗ ଅର୍ଥାତ୍ ୩୬ ବର୍ଗର ସେବା ପ୍ରଚଳନ କରାଇଥିଲେ । 'ନିଯୋଗ' କହିଲେ ବୁଝାଯାଏ ଯେ ଏକ ନିର୍ଦ୍ଦିଷ୍ଟ ସେବାକାର୍ଯ୍ୟ ସଂପାଦନା କରୁଥିବା ସେବକମାନଙ୍କର ଏକ ଗୋଷ୍ଠୀ ବା ସଂଘ । ପୁରୀ ଶ୍ରୀଜଗନ୍ନାଥ ମନ୍ଦିର ଅଧିନିୟମ, ୧୯୫୫ରେ ଉଲ୍ଲେଖ ଅଛି- 'Nijoga means an association of sevaks...'

ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ ଅନ୍ୟ ଏକ ମାଦଳାପାଞ୍ଜି ଉପରେ ନିର୍ଭର କରି ଲେଖିଛନ୍ତି ଯେ, ଶ୍ରୀଶଙ୍କରାଚାର୍ଯ୍ୟଙ୍କ ଆଗମନ ପୂର୍ବରୁ କେବଳ ଦଇତା ଓ ପତିମାନେ ଶ୍ରୀଜଗନ୍ନାଥଙ୍କର ସେବକ ଥିଲେ । ଶଙ୍କରାଚାର୍ଯ୍ୟଙ୍କ ସମୟରେ ଛଅ ଗୋଟି ନିଯୋଗକୁ ବୃଦ୍ଧି ପାଇଲା । ଅନଙ୍ଗଭୀମ ଦେବଙ୍କ ସମୟରେ ନାରଦୀୟ ସେବକ ରୂପେ ବୀଣାକାର ଓ ପୁରାଣପଣ୍ଡା ଶ୍ରୋତ୍ରିୟ ବ୍ରାହ୍ମଣମାନେ ନିଯୁକ୍ତି ପାଇଲେ (ଜଗନ୍ନାଥ ମନ୍ଦିର ଓ ଜଗନ୍ନାଥ ତତ୍ତ୍ୱ) ।

ଖ୍ରୀଷ୍ଟାବ୍ଦ ୧୮୦୩ରେ ଓଡ଼ିଶା ବ୍ରିଟିଶ ଶାସନର ଅଧିକାରଭୁକ୍ତ ହୋଇଥିଲା । ଖ୍ରୀଷ୍ଟାବ୍ଦ ୧୮୦୫ରେ ପୁରୀରେ ଅବସ୍ଥାପିତ ବ୍ରିଟିଶ କଲେକ୍ଟର ଚାର୍ଲସ ଗ୍ରୋମ୍ ପୁରୀ ଶ୍ରୀଜଗନ୍ନାଥ ମନ୍ଦିର ବ୍ୟାପାର ଉପରେ ତଥ୍ୟ ସମ୍ବଳିତ ଏକ ଦୀର୍ଘ ରିପୋର୍ଟ କଟକସ୍ଥ ଓଡ଼ିଶା ପ୍ରଦେଶ କମିସନରଙ୍କ ସେକ୍ରେଟାରୀଙ୍କ ପାଖକୁ ୧୦-୬-୧୮୦୫ ତାରିଖରେ ପଠାଇଥିଲେ । ଏହି ରିପୋର୍ଟରୁ ଶ୍ରୀମନ୍ଦିରର ତତ୍କାଳୀନ ପରିଚାଳନା, ରୀତିନୀତି, ଶ୍ରୀମନ୍ଦିର ପ୍ରତି ଇଂରେଜ ସରକାରଙ୍କ ଆଭିମୁଖ୍ୟ ସଂପର୍କରେ ଅନେକ ମୂଲ୍ୟବାନ ତଥ୍ୟ ମିଳେ । ଏହି ରିପୋର୍ଟ ସହିତ ସଂଲଗ୍ନ ଅର୍ଥାତ୍

ଆନୁଷଙ୍ଗିକ ତାଲିକା (୧୩ ନମ୍ବର)ରେ ଶ୍ରୀମନ୍ଦିରର ବିଭିନ୍ନ ସେବାର ନାମ ଉଲ୍ଲେଖ ଅଛି । ବାହାର ଦେଉଳ ସେବା ବ୍ୟତୀତ କେବଳ ମୁଖ୍ୟ ମନ୍ଦିରରେ ସେତେବେଳେ ୨୫୦ ଶ୍ରେଣୀର ସେବା ପ୍ରଚଳିତ ଥିବା ଜଣାଯାଏ । ମିଷ୍ଟର ଗ୍ରୋମ୍ ଲେଖିଛନ୍ତି- ''In former times the Establishment of the Temple of Jugunnath consisted of thirtysix and these were in consequence called the Chutees Neejoog, but from a period of at least two hundred years others have been added to these thirtysix, and the number now belonging to the Temple amount to 250.''

ଶ୍ରୀଜଗନ୍ନାଥ ମନ୍ଦିର ପରିସରରେ ଥିବା ଅନେକ ପାର୍ଶ୍ୱ ଦେବଦେବୀଙ୍କ ମନ୍ଦିର ବା 'ବାହାର ଦେଉଳ' ମନ୍ଦିରମାନଙ୍କରେ ସେବା କରୁଥିବା ସେବକମାନଙ୍କର ସଂଖ୍ୟା ଏହି ୨୫୦ ସଂଖ୍ୟା ମଧ୍ୟରେ ବୋଧହୁଏ ଅନ୍ତର୍ଭୁକ୍ତ ନାହିଁ । ମିଷ୍ଟର ଗ୍ରୋମ୍ ପୁଣି ଲେଖିଛନ୍ତି -

Besides these Establishments which are denominated the establishments of Jugunnath there are others which are called the bahar Dewul Shewak annexed to the foregoing list. They are so named from their being appropriated to serve the Thakoors which surround the Temple.

ଗ୍ରୋମଙ୍କ ଏହି ରିପୋର୍ଟରେ ପ୍ରତ୍ୟେକ ସେବାର ବିବରଣୀ ନାହିଁ । କେବଳ ସେବାର ନାମତାଲିକା ରହିଅଛି । ଏହି ରିପୋର୍ଟରେ ଯେତେ ସଂଖ୍ୟକ ସେବା / ସେବକମାନଙ୍କ ନାମତାଲିକା ପ୍ରଦାନ କରାଯାଇଛି, ତାହା ଠିକ ବୋଲି ବିଚାରିବା ସନ୍ଦେହଜନକ । କାହିଁକି ନା ଗ୍ରୋମ୍‌ଙ୍କ ସମୟ (ଖ୍ରୀ. ୧୮୦୫) ପୂର୍ବରୁ ଥିବା 'ଶ୍ରୀଶ୍ରୀ ପୁରୁଷୋତ୍ତମ ଜଗନ୍ନାଥ ମନ୍ଦିର ସେବକ ଖଟଣି ନିଯୋଗ କର୍ମାଙ୍ଗୀ (ସଂକ୍ଷେପରେ କର୍ମାଙ୍ଗୀ)ରେ ଏତେ ସଂଖ୍ୟକ ସେବାର ଉଲ୍ଲେଖ ନାହିଁ । ଏହି 'କର୍ମାଙ୍ଗୀ' ଖୁରୁଧା ଭୋଇ ବଂଶର ରାଜା ରାମଚନ୍ଦ୍ର ଦେବ (୨ୟ) (ଖ୍ରୀ. ୧୭୨୭-୧୭୩୬)ଙ୍କ ସମୟରେ ଲିପିବଦ୍ଧ ହୋଇଥିବା ଅନୁମାନ କରାଯାଏ ।

ରାଜ୍ୟ ସରକାର ୧୯୬୦ ମସିହାରେ ଶ୍ରୀଜଗନ୍ନାଥ ମନ୍ଦିରର ପରିଚାଳନା ଦାୟିତ୍ୱ ଗ୍ରହଣ କରିବା ପୂର୍ବରୁ ମନ୍ଦିରର ଅଧିକାର-ଅଭିଲେଖ (ରେକର୍ଡ଼ ଅଫ୍ ରାଇଟ୍‌ସ) ପ୍ରସ୍ତୁତ କରାଇ ଓଡିଶା ଗେଜେଟ୍‌ରେ ପ୍ରକାଶ କରିଥିଲେ । ଏହି ଅଧିକାର-ଅଭିଲେଖ ଅନୁସାରେ ବର୍ତ୍ତମାନ ପୁରୀ ଶ୍ରୀଜଗନ୍ନାଥ ମନ୍ଦିରରେ ୧୧୯ ପ୍ରକାର ସେବାର ବ୍ୟବସ୍ଥା ଅଛି ।

## ୧. ଗଜପତି ମହାରାଜା ସେବା

ପୁରୀର ରାଜା ଶ୍ରୀଜଗନ୍ନାଥ ମନ୍ଦିରର ଆଦ୍ୟ ସେବକ । ତାଙ୍କ ସେବାର ନାମ 'ଗଜପତି ମହାରାଜା ସେବା' । ତାଙ୍କର ପ୍ରଧାନ ଓ ଆକର୍ଷଣୀୟ ସେବା ହେଉଛି ଶ୍ରୀଗୁଣ୍ଡିଚା ଯାତ୍ରା ଓ ବାହୁଡ଼ାଯାତ୍ରା ଦିନ ତିନି ରଥରେ ଛେରାପହଁରା । ଏହା ବ୍ୟତୀତ ଦେବସ୍ନାନ ଯାତ୍ରାରେ ସ୍ନାନବେଦୀ ଉପରେ ଓ ଦୋଳଯାତ୍ରାରେ ଦୋଳବେଦୀ ଉପରେ ସେ ଛେରାପହଁରା କରନ୍ତି ।

ଚନ୍ଦନ ଯାତ୍ରାରେ ମଧ୍ୟ ଚାପ ଉପରେ ପ୍ରଥମ ଦିନ ଓ ଶେଷଦିନ ଛେରାପହଁରା କରିପାରିବେ । ତାଙ୍କର ଅନୁପସ୍ଥିତିରେ ମୁଦିରସ୍ତ ସେବା କରିପାରିବେ । ରାଜବେଶ ଦିନମାନଙ୍କରେ ଶ୍ରୀମନ୍ଦିରକୁ ବିଜେକଲେ 'ରାଜନୀତି' କରିପାରିବେ । ଗଜପତି ମହାରାଜାଙ୍କୁ ଚଳନ୍ତି ବିଷ୍ଣୁ ବୋଲି ବିବେଚନା କରାଯାଇ ସମ୍ମାନ ପ୍ରଦର୍ଶନ କରାଯାଏ । ଯାତ୍ରୀମାନେ ତାଙ୍କୁ ଦର୍ଶନ କରି ଭେଟି ଦେଲେ ସେ ତାହା ବ୍ୟକ୍ତିଗତ ଭାବେ ପାଇବେ । ସେ ଶ୍ରୀମନ୍ଦିରକୁ ପାଲିଙ୍କିରେ ବାଜା ଓ କାହାଳି ସହ ଯାଇପାରିବେ । ସେପରି ଗଲେ ତାଙ୍କର ପାଲିଙ୍କି ସିଂହଦ୍ୱାର ବେଢ଼ାରେ ରହେ । କରଣ, ପରିଛା ଓ ସେବକମାନେ ତାଙ୍କୁ ଭିତରକୁ ପାଛୋଟି ନିଅନ୍ତି । ବାଜା ଓ କାହାଳି ତାଙ୍କ ସହିତ ଭିତରକୁ ଯାଇପାରିବ । ରାଣୀ ଯଦି ରାଜାଙ୍କ ସହିତ ଶ୍ରୀମନ୍ଦିରକୁ ଯାଆନ୍ତି ତେବେ ତାଙ୍କର ସବାରି ଭିତରବେଢ଼ାର ବଟବୃକ୍ଷ ଯାଏ ଯିବ । ତା' ପୂର୍ବରୁ ଭିତର ଓ ବାହାର ବେଢ଼ାରେ ଲୋକମାନଙ୍କୁ ଖାଲି କରାଯିବ । କେବଳ କେତେକ ନିର୍ଦ୍ଦିଷ୍ଟ ସେବକ ଓ କର୍ମଚାରୀ ରହିବେ । କେବଳ ମୁଦିରସ୍ତ ସେବକ ତାଙ୍କ ସହିତ ରହି ଦର୍ଶନ କରାଇବେ । ରାଣୀଙ୍କ ଏ ପ୍ରକାର ଦର୍ଶନ ବ୍ୟବସ୍ଥାକୁ 'ଗହଣ ବିଜେ' କୁହାଯାଏ । ରାଣୀଙ୍କ ସହିତ ତାଙ୍କର ଦାସୀ ରହିପାରିବେ । (ଏଠାରେ ସୂଚନାଯୋଗ୍ୟ ଯେ, ଦୀର୍ଘ ୪୧ ବର୍ଷ ପରେ ଗହଣ ବିଜେ ନୀତି ତା ୮.୪.୨୦୦୭ରେ ଆୟୋଜିତ ହୋଇଥିଲା । ପାରମ୍ପରିକ ରୀତିନୀତି ଅନୁଯାୟୀ ରାଣୀ ଶ୍ରୀମତୀ ଲୀଳାବତୀ ପାଟମହାଦେଈ ରାଜା ଶ୍ରୀ ଦିବ୍ୟସିଂହ ଦେବ ଓଗେରଙ୍କ ସହିତ 'ଗହଣ ବିଜେ' କରିଥିଲେ ।)

ଆଶ୍ୱିନ ମାସରେ ରାଜା ଗୁଆ ନଡ଼ିଆ ଟେକି ଦେଲେ ବିମଳା ଠାକୁରାଣୀ ଓ ଅନ୍ୟାନ୍ୟ କେତୋଟି ଦେବୀପୀଠମାନଙ୍କରେ ବ୍ରାହ୍ମଣମାନେ ବରଣ ହୋଇ କର୍ମ କରନ୍ତି । ନବକଳେବର ସମୟରେ ରାଜାଙ୍କ ଶ୍ରୀହସ୍ତ ଛୁଆଁ ଗୁଆ, ରାଜଗୁରୁ ଦଇତାମାନଙ୍କୁ ଦିଅନ୍ତି ଏବଂ ତା'ପରେ ବିଧି ମୁତାବକ ଦାରୁ ଅନ୍ୱେଷଣ ଅଭିଯାନ ଆରମ୍ଭ ହୁଏ । ବାହୁଡ଼ା ରଥଯାତ୍ରାରେ 'ଲକ୍ଷ୍ମୀ ନାରାୟଣ ଭେଟ' ନୀତିରେ ନଅର ଦୁଆରେ ରାଜା ବନ୍ଦାପନା ଇତ୍ୟାଦି ନୀତି କରନ୍ତି । ରୁକ୍ମିଣୀ ବିବାହ ପରଦିନ 'ଚମ୍ପକ ଦ୍ୱାଦଶୀ'ରେ ନଅର ଦ୍ୱାରରୁ 'ବର କନ୍ୟା'ଙ୍କୁ ପାଛୋଟି ନିଅନ୍ତି ଏବଂ ସେଠାରେ ରାଜାଙ୍କର ଏକ ନୀତି 'ରାଜନୀତି' କରାଯାଏ ।

'ଗଜପତି ମହାରାଜା ସେବା' ପୁରୀ ରାଜବଂଶର ବଂଶାନୁକ୍ରମିକ ସେବା (Law of primogeniture ଅନୁଯାୟୀ) । ତାଙ୍କର ସେବାଜନିତ ପ୍ରାପ୍ୟ ପାଉଣା ଓ ଅନ୍ୟାନ୍ୟ ବିବରଣୀ ବିସ୍ତୃତ ଭାବରେ 'ସ୍ୱତ୍ୱଲିପି'ରେ ଲିପିବଦ୍ଧ ରହିଛି । ସେ ମଧ୍ୟ ପୁରୀ ଶ୍ରୀଜଗନ୍ନାଥ ମନ୍ଦିର ପରିଚାଳନା କମିଟିର ବଂଶାନୁକ୍ରମିକ ସଭାପତି ।

## ୨. ପରିଛା (ପରୀକ୍ଷା) / ରାଜଗୁରୁ

ସ୍ୱତ୍ୱଲିପିରେ ଉଲ୍ଲେଖ ଅଛି ଯେ ଓଡ଼ିଶା ରାଜାମାନଙ୍କ କାଳରେ ଏହି ପରିଛା ହିଁ ଶ୍ରୀମନ୍ଦିରର ପରିଚାଳକ ଥିଲେ, ସବୁ ନୀତି ଓ ସେବକମାନଙ୍କ କାର୍ଯ୍ୟ ତଦାରଖ କରୁଥିଲେ । କୌଣସି ସେବକ କାର୍ଯ୍ୟରେ ତ୍ରୁଟି କଲେ ରାଜାଙ୍କୁ ରିପୋର୍ଟ କରୁଥିଲେ । ଖ୍ରୀଷ୍ଟାବ୍ଦ ୧୮୦୩ରେ ଇଂରେଜମାନଙ୍କ

ପୁରୀ ଅଧିକାର ଓ ଖୋର୍ଦ୍ଧାରାଜା ରାଜ୍ୟ ଓ ଶ୍ରୀମନ୍ଦିର ହରାଇବା ପରଠାରୁ ଏମାନଙ୍କ କାର୍ଯ୍ୟ ସୀମିତ ହୋଇଗଲା । ଏମାନେ କେବଳ ନିମ୍ନଲିଖିତ କାର୍ଯ୍ୟ କରୁଥିଲେ ।

ସକାଳ ଧୂପ ଟେରା ପଡ଼ିଥିବା ବେଳେ ଗରୁଡ଼ଖମ୍ବ ପାଖରେ ମାହାରୀ (ଦେବଦାସୀ) ନାଚୁଥିବାବେଳେ ରାଜଗୁରୁ ସୁନାବେତ ଧରି ପଟୁଆର କରୁଥିଲେ ('ପଟୁଆର' ଅର୍ଥ ସମାବେଶ, ଶୋଭାଯାତ୍ରା) । ମାଦେଳି ମାଦଳ ବଜାଉଥିଲା । ଚନ୍ଦନ ଯାତ୍ରା (୪୨ ଦିନ) କାଳରେ ଚନ୍ଦନଲାଗି ବେଳେ ଜଗମୋହନରେ, ଦିନ ଓ ରାତି ଚାପରେ, ଚାପରୁ ବାହୁଡ଼ା ବିଜେ ବେଳେ ରାସ୍ତାରେ, ଗୁଣ୍ଡିଚା ଘରେ ସକାଳ ଧୂପରେ, ବିମଳାଙ୍କ ମନ୍ଦିରରେ ଷୋଳଦିନ ପୂଜାବେଳେ ସକାଳ ଧୂପରେ ଏବଂ କାର୍ତ୍ତିକ ମାସର ବାଳଧୂପରେ ଅନୁରୂପ ପଟୁଆର ହେଉଥିଲା ।

ବର୍ତ୍ତମାନ ଶ୍ରୀମନ୍ଦିରରେ ମାହାରୀ ନୃତ୍ୟସେବା ଅନେକ ବର୍ଷ ହେଲା ବନ୍ଦ ହୋଇଯିବା ଫଳରେ 'ପଟୁଆର' ଆଉ ହେଉ ନାହିଁ । ସୁତରାଂ ରାଜଗୁରୁଙ୍କ ଉପରୋକ୍ତ କାର୍ଯ୍ୟ ହେଉ ନାହିଁ ।

ପରିଛା ବା 'ପରୀକ୍ଷା'ର ଅର୍ଥ ନିରୀକ୍ଷକ। ମରାଠା ଶାସନ କାଳରେ (ଖ୍ରୀଷ୍ଟାବ୍ଦ ୧୭୫୧-୧୮୦୩) ଶ୍ରୀମନ୍ଦିରରେ ଚାରିଜଣ ପରିଛା ନିଯୁକ୍ତ ହୋଇଥିବା ଜଣାଯାଏ । ଇଂରେଜ ଆଗମନ ବେଳକୁ (୧୮୦୩) ଚାରିଜଣ ପରିଛା ମଧ୍ୟରୁ ଦୁଇଜଣ ମରାଠୀଙ୍କ ସମେତ ତିନିଜଣ ପରିଛା (ମୁରାରିପଣ୍ଡିତ, ଜଗନ୍ନାଥ ରାଜଗୁରୁ ଓ ଶିବାଜୀ ଅଙ୍ଗତେସ୍) ମନ୍ଦିର ପରିଚାଳନା କରୁଥିଲେ । ଚତୁର୍ଥ ପରିଛା ଜଣକ ନାଗପୁର ଚାଲିଯାଇଥିଲେ ।

ଶ୍ରୀମନ୍ଦିର ସ୍ୱତ୍ୱଲିପିରେ ବଡ଼, ମଧ୍ୟମ, ସାନ ଓ ଚତୁର୍ଥ- ଏହିପରି ଚାରିଜଣ ପରିଛାଙ୍କ ନାମ ଉଲ୍ଲେଖ ଅଛି। ଏମାନେ ଧଡ଼ିଥିବା ଲୁଗା ଓ ରୁଦ୍ରାକ୍ଷ ପିନ୍ଧିପାରିବେ । ଭଣ୍ଡାରି, ମଶାଲ ସହ ମନ୍ଦିରକୁ ଯାଇପାରିବେ ଓ ସୁନାବେଣ୍ଟ ଚାମର ସେବା କରିପାରିବେ। ବଡ଼ ପରିଛା ନବକଳେବରରେ 'ଆଚାର୍ଯ୍ୟବରଣ' ହେବେ ।

## ୩. ପାଟଯୋଷୀ ମହାପାତ୍ର (ଛତିଶା ନିଯୋଗ ନାୟକ)

ଏହି ସେବକ ଛତିଶା ନିଯୋଗର ନାଏକ (ନାୟକ) ଭାବରେ ପ୍ରତ୍ୟହ ମଙ୍ଗଳ ଆଳତି ପୂର୍ବରୁ ଶ୍ରୀଜୀଉମାନଙ୍କର ନୀତି ଓ ସେବା ସୁଚାରୁ ରୂପେ ପରିଚାଳନା କରିବେ। ଶ୍ରୀମନ୍ଦିର ନୀତି ଓ ପର୍ବ ପର୍ବାଣି ବିଷୟରେ ମତ ଦେବେ। ନୂତନ ସେବକ ନିଯୁକ୍ତି, କୌଣସି ସେବକ ବା ସେବାରେ ତ୍ରୁଟି ବିଷୟରେ ଦେଉଳକରଣ ସହିତ କର୍ତ୍ତୃପକ୍ଷଙ୍କୁ ରିପୋର୍ଟ ଦେବେ। ଶାଢ଼ିବନ୍ଧା ସେବାକୁ ଯୋଗ୍ୟ କି ନାହିଁ ତଦନ୍ତ କରି କର୍ତ୍ତୃପକ୍ଷଙ୍କୁ ଅଭିମତ ଦେବେ ।

ସେ ଭୋଗ ପରିଛା ହିସାବରେ ଗୋଦାମରୁ କୋଠଭୋଗ ଦ୍ରବ୍ୟ ରୋଷକୁ ଯିବା ତନଖି କରିବେ। ସେ ମଧ୍ୟ ଭଣ୍ଡାର ନାୟକ। ଭିତର ଓ ବାହାର ରତ୍ନ ଭଣ୍ଡାର ମଣତି ନେବେ । ଲାଗି ଦ୍ରବ୍ୟର ତାଲିକା ରଖିବେ । ତଢ଼ାଉ ଓ ଦେଉଳକରଣଙ୍କ ସହିତ ଉପସ୍ଥିତ ରହି ସର୍ବାଙ୍ଗ ନୀତି ପାଇଁ କର୍ପୂର, କେଶର, କସ୍ତୁରୀ ବଟାଇବେ । ଏ ସାବାଳକ ହୋଇ ବ୍ରତ ପରେ ସେବା କରି ପାରିବେ। ଏହି ସେବା ବଂଶାନୁକ୍ରମିକ । ଏ ମହାନାୟକ ଶାଢ଼ିବନ୍ଧା ସେବକ । ଏ ପୁଷ୍ପାଳକ ଗୋଷ୍ଠୀ (ତଳୁଛ) ବଂଶର ସେବକ ।

## ୪. ଭିତରଛ ମହାପାତ୍ର

ପ୍ରତ୍ୟହ ଭୋରରୁ ସିଂହଦ୍ୱାରରେ ଉପସ୍ଥିତ ହୋଇ ସିଂହଦ୍ୱାର କବାଟ ଫିଟାଇବାକୁ ଆଦେଶ ଦିଅନ୍ତି ଓ ପତିତପାବନ ଠାକୁରଙ୍କ ଦ୍ୱାର ଫିଟାନ୍ତି । ପରେ ଜୟବିଜୟ ଦ୍ୱାରକୁ ଯାଇ ସେଠାରେ ପ୍ରତିହାରୀ, ମୁଦୁଲି, ମେଳାପ ଓ ଅଖଣ୍ଡ ମେଳାପଙ୍କ ଉପସ୍ଥିତିରେ ପୂର୍ବରାତ୍ର ପହୁଡ଼ ବେଳେ ତଳିଛ ମହାପାତ୍ର ଦେଇଥିବା ମୁଦ ତଦାରଖ କରିବା ପରେ ମୁଦୁଲିଙ୍କୁ ଦକ୍ଷିଣ ଦ୍ୱାର ମୁଦ ଭାଙ୍ଗି କବାଟ ଖୋଲିବାକୁ କୁହନ୍ତି । ସେହିପରି ବିଧି ମୁତାବକ ଜୟ ବିଜୟ ଦ୍ୱାରର ମୁଦ, କଳାହାଟ ଦ୍ୱାରର ମୁଦ ଖୋଲାନ୍ତି । ସକାଳେ ମଙ୍ଗଳ ଆଳତିରେ ଏହି ସେବକ ମହାପ୍ରଭୁଙ୍କ ବାଡ଼ (ଜଗନ୍ନାଥଙ୍କର)ରେ ଆଳତି କରନ୍ତି ।

ଅମୋଣିଆ ପରିଛା ହିସାବରେ ଭୋଗ ପନ୍ତିରେ ଠିକ୍ ଭାବରେ ଲାଗିଲା କି ନାହିଁ ତଦାରଖ କରନ୍ତି । ଦୈବାତ୍ ଭୋଗ ମାରା ହେଲେ ଭୋଗ ପୂଜା ଛାଡ଼ି ଆସିବାକୁ ପୂଜାପଣ୍ଡାଙ୍କୁ କହନ୍ତି । ଯଦି ସଙ୍କୁଡ଼ି ବା ମାରା ଭୋଗ ଥାଏ, ତାହା ସଂପୃକ୍ତ ସେବକଙ୍କଦ୍ୱାରା ବାହାର କରାଇ ଦିଅନ୍ତି । ପ୍ରତ୍ୟେକ ଗୁରୁବାର 'ମାଜଣା' ନୀତିରେ ବନ୍ଦାପନା ଓ ପ୍ରସାଦ ଲାଗି କରନ୍ତି । 'ଦଣ୍ଡଛତ୍ର ଲାଗି ନୀତି'ରେ ମହାପ୍ରଭୁଙ୍କ ବାଡ଼ରେ ଦଣ୍ଡଛତ୍ର ଧରନ୍ତି । ପୌଷ ପୂର୍ଣ୍ଣିମା ନୀତିରେ ସିଂହାସନରେ ଦଣ୍ଡଛତ୍ର ଧରନ୍ତି । ପ୍ରତ୍ୟେକ ଏକାଦଶୀ ଦିନ ଜୟ ବିଜୟ ଦ୍ୱାରରେ ମଦନ ମୋହନଙ୍କ ବନ୍ଦାପନା କରନ୍ତି । 'ଦୟଣାଚୋରି' ନୀତିରେ ଜଗନ୍ନାଥ ବଲ୍ଲଭ ମଠ ଅଧିକାରୀଙ୍କୁ ଓ ସ୍ନାନପୂର୍ଣ୍ଣିମା ବେଦୀରେ ରାଘବ ଦାସ ମଠ ମହନ୍ତଙ୍କୁ ଶାଢ଼ି ବାନ୍ଧିବା ଏହାଙ୍କ କାର୍ଯ୍ୟ । ରାଜଗୁରୁ, ସଚ୍ଛ ମହନ୍ତ, ରାଜା ମହାରାଜା, ତଡ଼ାଉ ଓ ଦେଉଳକରଣଙ୍କୁ ମହାନାୟକ ଶାଢ଼ି ବାନ୍ଧନ୍ତି ।

ଏହାଙ୍କର ଅନ୍ୟ ଏକ ସେବା ହେଲା ମୁଦୁଲି ମହାଜନ ସେବା । ନନ୍ଦ ଉତ୍ସବ ନୀତିରେ ଦୁଧ ମେଲାଣ ଓ ଦୁଧ ସମର୍ପଣ କରନ୍ତି । ନନ୍ଦ ରାଜା ବେଶ ସାଜି ନନ୍ଦ ଉତ୍ସବ କରାନ୍ତି । ବେଣ୍ଟ ନୀତିରେ ଜଗନ୍ନାଥ ବଲ୍ଲଭ ମଠରେ ତୀର ଛୁଇଁ ଲେଙ୍କା ସେବକଙ୍କୁ ଦିଅନ୍ତି ଓ ବନ୍ଦାପନା ନୀତି କରନ୍ତି । ଦୋଳପୂର୍ଣ୍ଣିମା ବାହୁଡ଼ା ବିଜେରେ, ପଣା ସଂକ୍ରାନ୍ତିରେ, ଅଶୋକାଷ୍ଟମୀରେ, ହଳଦୀପାଣି ଦିନ ନରେନ୍ଦ୍ର ପୋଖରୀ ଚାପରେ, ଭଉଁରୀ ଦିନ ଜଗତି ଉପରେ, ବାହୁଡ଼ାବେଳେ ଜୟବିଜୟ ଦ୍ୱାରରେ, ଶୀତଳ ଷଷ୍ଠୀ ଦିନ, ରୁକ୍ମିଣୀ ବିବାହ ଦିନ ବିମଳା ମନ୍ଦିରରେ (ଲକ୍ଷ୍ମୀଙ୍କ) ବନ୍ଦାପନା କରନ୍ତି । ଲକ୍ଷ୍ମୀଙ୍କୁ ବିମଳା ମନ୍ଦିରରୁ ଆଣି ମଦନମୋହନଙ୍କ ରଥରେ ରୁନ୍ଧିବା, ରୁକ୍ମିଣୀ ବିବାହରେ କନ୍ୟା କର୍ତ୍ତା ହେବା, ଚମ୍ପକ ଦ୍ୱାଦଶୀ ଦିନ ବରକନ୍ୟାଙ୍କୁ ଯମେଶ୍ୱର ମନ୍ଦିରରେ ବନ୍ଦାପନା ଓ ପ୍ରସାଦ ଲାଗି, ହେରାପଞ୍ଚମୀ ଦିନ, ଗୁଣ୍ଡିଚା ମନ୍ଦିରର ନାକଚଣା ଦ୍ୱାରରେ ଲକ୍ଷ୍ମୀଙ୍କୁ ଦହି ପଟୋଇ, ଭୋଗ ଓ ବନ୍ଦାପନା, ଲକ୍ଷ୍ମୀ ନାରାୟଣ ଭେଟ ସମୟରେ ଦହି ପଟୋଇ ଭୋଗ ମଣୋହି, ନୀଳାଦ୍ରି ବିଜେ ଦିନ ଭେଟ ମଣ୍ଡପରେ ବନ୍ଦାପନା, ଗରୁଡ଼ଙ୍କ ବନ୍ଦାପନା, ଜଗନ୍ନାଥ ରଥରୁ ସିଂହାସନ ବିଜେ କାଳରେ ରୁକ୍ମିଣୀଙ୍କ ଗଇଁଠାଳ ଫିଟାରେ ଦହି ପଟୋଇ ଘଷା, ବିଡ଼ିଆ ମଣୋହି ଓ ଭୋଗ କରିବା, ମୁଦିରଥଙ୍କ ସହ ନନ୍ଦୋତ୍ସବରେ ପ୍ରସାଦଲାଗି ଓ ଆଳତି, କାଳୀୟଦଳନ ଏକାଦଶୀରୁ ମହାଭୋଇ ଘରକୁ ଯିବାବେଳେ ବନ୍ଦାପନା, ଲବଣୀଖିଆଠାରେ ବନ୍ଦାପନା, ଋଷି ପଞ୍ଚମୀ, ଅନନ୍ତ ବ୍ରତ ଓ ଲକ୍ଷ୍ମୀ ବ୍ରତରେ ବନ୍ଦାପନା, ଦମନକ ଯାତ୍ରା ଓ ଦମନକ ଚୋରିରେ ପରମେଶ୍ୱରଙ୍କୁ ଦୟଣା ଅର୍ପଣ, ଚମ୍ପକ

ଦ୍ୱାଦଶୀରେ ଶ୍ରୀନଅରରେ ବନ୍ଦାପନା, ଚାପକୁ ଲକ୍ଷ୍ମୀଙ୍କୁ ବିଜେ କରାଇବା, ଚନ୍ଦନ ଯାତ୍ରାରେ ଲକ୍ଷ୍ମୀଙ୍କୁ ଜଳ ବିଜେ କରାଇବା, ଚନ୍ଦନ ବେଶ କରାଇବା, ଇନ୍ଦ୍ର ଗୋବିନ୍ଦ ନୀତିରେ ବନ୍ଦାପନା କରିବା ଇତ୍ୟାଦି କାର୍ଯ୍ୟ କରନ୍ତି। ଏ ହେଉଛନ୍ତି ମହାନାୟକ ଶାଢ଼ିବନ୍ଧା, ଏକାଏକ ସେବକ। ରାଜାଙ୍କଠାରୁ ନଅର ଦ୍ୱାରରେ ଶାଢି ପାଆନ୍ତି । ବ୍ରତ ପରେ ସେବା କରନ୍ତି । ସେବା ବଂଶାନୁକ୍ରମିକ । ତଳିଛଙ୍କ ସମସ୍ତ ସେବା କରିପାରିବେ । ଏ ପୁଷ୍ପାଳକ ସେବା ମଧ୍ୟ କରନ୍ତି ।

## ୫. ତଳିଛ

ପ୍ରତ୍ୟହ ସଂଧ୍ୟା ଆଳତି ସମୟରେ ମହାପ୍ରଭୁଙ୍କ ବାଡ଼ରେ ଆଳତି କରନ୍ତି । ରାତ୍ର ପହୁଡ଼ ପରେ କଳାହାଟ ଦ୍ୱାର, ଜୟବିଜୟ ଦ୍ୱାର ବନ୍ଦ ହୋଇ ମୁଦ୍ରାସେବକ ମାଟି ଲଗାଇଲେ ତଳିଛ ମାଟି ଉପରେ ଛାପା (ସିଲ୍) ଦିଅନ୍ତି ଓ ଭିତର ଠିକ୍ ଭାବରେ ଶୋଧ ହୋଇଛି କି ନାହିଁ ଦେଖନ୍ତି । ଅମୋଣିଆ ପରିଚ୍ଛା ହିସାବରେ ରୋଷ ଘର ଧୋପଖାଳ ପରେ ପରିଷ୍କାର ଥିଲେ ପୂଜା ପଣ୍ଡାଙ୍କୁ ଡାକି ହୋମ କରାଇବାକୁ ରୋଷ ପାଇକ ଓ ମହାସୁଆରଙ୍କୁ କହନ୍ତି । ଅମୋଣିଆ ଦ୍ରବ୍ୟ ରୋଷକୁ ଆସିଲାବେଳେ ତାର ଶୁଦ୍ଧତା ଓ ଶିଷ୍ଟତା ତନଖି କରନ୍ତି । ଭୋଗ ସମୟରେ ଅଣସର ପିଣ୍ଡିରେ ଚାମର ସେବା କରନ୍ତି । ଘଣ୍ଟ ଛତା ଭୋଗ, ବେଢ଼ ଓ ନିର୍ଦ୍ଦିଷ୍ଟ ଦିନ ବିଜେମାନଙ୍କରେ ପ୍ରଧାନୀ ସହିତ କର ପୈଠ ହୋଇ ପଟୁଆର କରନ୍ତି । ରାଜପ୍ରାସାଦ ବିଜେରେ ମଧ୍ୟ ଏହା କରନ୍ତି । ସାତପୁରୀ ଅମାବାସ୍ୟା ପୂର୍ବ ଦିନ ଆଜ୍ଞାମାଳ ନିଜେ ନେଇ ଦକ୍ଷିଣକାଳୀଙ୍କୁ ଦିଅନ୍ତି । ସିଂହାସନରେ ଅସରପା ହେଲେ ତାକୁ ଧରାଇବା ଏହାଙ୍କ କାର୍ଯ୍ୟ । ରଥ ଉପରେ ଅଧର ହେଲେ ମହାପ୍ରଭୁଙ୍କ ବାଡ଼ରେ ଟେରା ଧରି ଠିଆ ହୁଅନ୍ତି । ସେବକମାନେ ଶାଢ଼ି ବନ୍ଧାଇବା ପାଇଁ ଅନୁମତି ବା ସୁପାରିଶ କରନ୍ତି । ପ୍ରତ୍ୟେକ ମହାନାୟକ ଶାଢ଼ି ବନ୍ଧାଇବାପାଇଁ ଅନୁମତି ବା ସୁପାରିଶ କରନ୍ତି । ପ୍ରତ୍ୟେକ ମହାନାୟକ ଶାଢ଼ି ବନ୍ଧାରେ ଶାଢ଼ି ଫିଟାନ୍ତି ।

ଏ ପୁଷ୍ପାଳକ ଗୋଷ୍ଠୀର ମହାନାୟକ ଶାଢ଼ି ବନ୍ଧା ସେବକ । ବ୍ରତ ପରେ ସେବା କରନ୍ତି । ସେବା ବଂଶାନୁକ୍ରମିକ ।

## ୬. ମୁଦ୍ରହସ୍ତ (ମୁଦିରଥ)

ଏହି ସେବକ ଗଜପତି ମହାରାଜାଙ୍କ ପ୍ରତିନିଧି ସ୍ୱରୂପ ସେବା କରନ୍ତି । ମହାରାଜା ବିଜେ ହୋଇ ନ ପାରିଲେ ତାଙ୍କର ଯାହା ଯାହା ସେବା ଅଛି ମୁଦ୍ରହସ୍ତ ସେ ସବୁ ସିଂହାସନ ତଳେ ଠିଆ ହୋଇ କରନ୍ତି । ପ୍ରତ୍ୟେକ ରାଜନୀତିରେ ଏ ତିନି ବାଡ଼ରେ ନୀତି କରନ୍ତି । ସର୍ବାଙ୍ଗ ବନ୍ଦାପନା ଓ ମଙ୍ଗଳାର୍ପଣରେ ବଡ଼ ଠାକୁରଙ୍କ ବାଡ଼ରେ ନୀତି କରନ୍ତି ।

ସ୍ନାନପୂର୍ଣ୍ଣମୀ ଦିନ ସୁନା ଗୋସାଇଁଙ୍କ ସହ ପ୍ରଥମ ଜଳଛେକ ଆଣନ୍ତି । ରଥଯାତ୍ରା, ବାହୁଡ଼ାଯାତ୍ରା ଓ ସ୍ନାନ ବିଜେମାନଙ୍କରେ ଡୋରଲାଗି ଓ ଅଞ୍ଜଳି ତିନିବାଡ଼ରେ କରନ୍ତି । ପୁଷ୍ୟାଭିଷେକ ଦିନ ଦଣ୍ଡଛତ୍ର ସଂସ୍କାର କରି ଭିତରଛଙ୍କୁ ଦିଅନ୍ତି । ଉକ୍ତ ଦିନ ନଅରକୁ ଯାଇ ରାଜାଙ୍କଠାରୁ ଶାଢ଼ି ବନ୍ଧାଇ ଆସନ୍ତି । ଗଜପତିଙ୍କ ଅନୁପସ୍ଥିତିରେ ରଥ ଉପରେ ଛେରା ପହଁରା

କରନ୍ତି । ଗହଣ ବିଜେ ସମୟରେ ଶ୍ରୀମନ୍ଦିର ପୂର୍ଣ୍ଣ ଶୋଧ ହେଲେ କେବଳ ଏ ସେବକ ରାଣୀଙ୍କ ସହିତ ରହି ଦର୍ଶନ କରାନ୍ତି ।

ପ୍ରତ୍ୟେକ ଜନ୍ମ ବିଧିରେ ରାଜ ପ୍ରତିନିଧି ହିସାବରେ ବ୍ରହ୍ମା ଆଚାର୍ଯ୍ୟ ବରଣ କରନ୍ତି । ଚନ୍ଦନ ଯାତ୍ରାର ହଳଦୀପାଣି ଦିନ ଓ ଜଳକ୍ରୀଡ଼ା ଦିନମାନଙ୍କରେ ଫଗୁ ପିଚକାରୀ କରନ୍ତି । ଷଷ୍ଠି-ମାର୍କଣ୍ଡ ପୂଜାରେ ପୂଜାପଣ୍ଡା, ପତି-ମହାପାତ୍ରଙ୍କ ସହିତ ବରଣ ହୁଅନ୍ତି ।

ବ୍ରତ ପରେ ମହାନାୟକ ଶାଢ଼ି ବନ୍ଧା ସେବା କରନ୍ତି । ଏହାଙ୍କର ପୁଷ୍ପାଳକ ସେବା ଅଛି । ବାରବର୍ଷ ବୟସ ହେବାଯାଏଁ ଏ ମୁଦ୍ରହସ୍ତ ସେବା କରି ପାରିବେ ବୋଲି ସ୍ୱତ୍ୱଲିପିରେ ଉଲ୍ଲେଖ ଅଛି । ଏହି ସେବାରେ ସେ 'ଘେରଟୋପି' ପରିଧାନ କରନ୍ତି । ଏହି ସେବା ବଂଶାନୁକ୍ରମିକ ।

## ୭. ଦେଉଳ ପୁରୋହିତ

ଦେଉଳ ପୁରୋହିତ ବର୍ତ୍ତମାନ ମୁଖ୍ୟତଃ ନିମ୍ନଲିଖିତ କାର୍ଯ୍ୟ କରୁଛନ୍ତି:

କ) ଅକ୍ଷୟ ତୃତୀୟା ଦିନ ରଥ ନିର୍ମାଣ ଅନୁକୂଳ ।

ଖ) ଗୁଣ୍ଡିଚା ଯାତ୍ରା ଦିନ ରଥମାନଙ୍କର ପ୍ରତିଷ୍ଠା ।

ଗ) ପୁଷ୍ୟାଭିଷେକପାଇଁ ଅଙ୍କୁରାରୋପଣ, ଜଳ ଅଧିବାସ ଅଭିଷେକ, ଖଇ କୋରା ଭୋଗ ଓ ଛାମୁରେ ଦର୍ପଣାଧିବାସ ।

ଘ) ପୌଷପୂର୍ଣ୍ଣିମା ଦିନ ସକାଳ ଧୂପ ବସିଥିବା ସମୟରେ ପଢ଼ିଆରୀ ନିଯୋଗ ଗୃହ ସାମନାରେ ହୋମ ।

ଙ) ବାମନ ଜନ୍ମ ପୂର୍ବଦିନ ପବିତ୍ରାଧିବାସ ।

ଚ) ଭାଦ୍ରବ ଶୁକ୍ଳ ଏକାଦଶୀ (ପାର୍ଶ୍ୱପରିବର୍ତ୍ତନ) ଦିନ ଅନନ୍ତ ବାସୁଦେବ ମନ୍ଦିରରେ ହୋମ ।

ଛ) ଆଶ୍ୱିନ ଷୋଳପୂଜାରେ ବିମଳାଙ୍କ ପୀଠରେ ପ୍ରଚାରକ କର୍ମ ।

ଜ) ନବକଳେବର ବନଯାଗରେ ଯୋଗଦାନ ।

ଏମାନେ ଶ୍ରୋତ୍ରିୟ ବ୍ରାହ୍ମଣ । ଶାଢ଼ି ବନ୍ଧା ବ୍ୟବସ୍ଥା ନାହିଁ । ସେବା ବଂଶାନୁକ୍ରମିକ ।

## ୮. ପୂଜାପଣ୍ଡା

ଏମାନେ ରୋଷହୋମ, ସୂର୍ଯ୍ୟପୂଜା, ଦ୍ୱାରପାଳ ପୂଜା, ଗୋପାଳ ବଲ୍ଲଭ, ସକାଳ ଧୂପ, ଟେରା ଫିଟିଲେ ବିଡ଼ିଆ ମଣୋହି ଓ ଆଳତି, ଭୋଗମଣ୍ଡପ ଧୂପ, ମଧ୍ୟାହ୍ନ ଧୂପ, ସଂଧ୍ୟାଧୂପ, ଆଳତି, ଜୟମଙ୍ଗଳ ଆଳତି, ବଡ଼ସିଂହାର ଧୂପ, ଜଗମୋହନରେ ଯଜମାନଙ୍କ ଭୋଗ, ସର୍ପା ମଣୋହି ଉପଚାର, ଅଧିକ ଭୋଗ, ଭିତର ବାହାର ପନ୍ତି ଭୋଗ, ପର୍ବଯାତ୍ରା ଭୋଗ କରନ୍ତି । ପର୍ବ ପର୍ବାଣିରେ ମହାପ୍ରଭୁଙ୍କ ବାଡ଼ରେ ମଙ୍ଗଳାରୋପଣ, ବଡ଼ଠାକୁରଙ୍କ ବାଡ଼ରେ ବନ୍ଦାପନା, ମହାପ୍ରଭୁଙ୍କ ବାଡ଼ରେ ସର୍ବାଙ୍ଗ କରନ୍ତି । ଚନ୍ଦନଯାତ୍ରା କାଳରେ (୪୨ଦିନ) ଆଲଟ ଲାଗି କରନ୍ତି । ଜନ୍ମବିଧି ଦିନରେ ଆଚାର୍ଯ୍ୟ ବରଣ ହୋଇ କାର୍ଯ୍ୟ କରନ୍ତି । ଅଧିବାସ ସମୟରେ ସଂସ୍କାର କରନ୍ତି । ନେତ୍ରୋତ୍ସବରେ ନୀତି, ମୁଦିରସ୍ତଙ୍କ ଅନୁପସ୍ଥିତିରେ ପ୍ରସାଦଲାଗି, ଋଷି ପଞ୍ଚମୀ, ଅନନ୍ତବ୍ରତ,

ବିନାୟକ ବ୍ରତ ଆଦିରେ ବ୍ରତ କଥା କହନ୍ତି । ବେଢ଼ା ବୁଲା କାର୍ଯ୍ୟ କରନ୍ତି । ଦୀପାବଳୀରେ ଦୀପଦାନ, ମହାଦୀପ ସଂସ୍କାର, ଦୈନିକ ବାହାର ଦେଉଳି ଭୋଗ, ଦକ୍ଷିଣୀଘର ଭୋଗ, ଲକ୍ଷ୍ମୀଙ୍କ ଭୋଗ, ଦୋଳ ଚତୁର୍ଦ୍ଦଶୀରେ ମେଣ୍ଢାପୋଡ଼ି ହୋମ, ବାମନ ଜନ୍ମ, ଇନ୍ଦ୍ରଧ୍ୱଜପୂଜା, ହୋମ, ଅନଙ୍ଗ ତ୍ରୟୋଦଶୀରେ ହୋମ, ରଥରେ, ଚନ୍ଦନ ଘରେ, ଦୋଳ ବେଦୀରେ ଓ ଗୁଣ୍ଡିଚା ଘରେ ଭୋଗ କରନ୍ତି । ପହଣ୍ଡି ବେଳେ ଡ଼ୋର ଧରନ୍ତି । ସଂକ୍ରାନ୍ତି ଓ ପ୍ରତିଦିନ ରଥରେ ବଳିପୂଜା କରନ୍ତି ।

ଏମାନେ ଶାଢ଼ିବନ୍ଧା ବ୍ରାହ୍ମଣ ସେବକ । ସେବା ବଂଶାନୁକ୍ରମିକ ।

## ୯. ବଡ଼ପଣ୍ଡା

ଏମାନେ ପୂଜାବସିବା ବେଳେ, ତିନିଧୂପ ବେଳେ, ଅଣସର ପିଣ୍ଡିରେ ଚାମର ସେବା କରନ୍ତି । ରାଜେନ୍ଦ୍ରାଭିଷେକରେ ବଚନିକା, ରୁକ୍ମିଣୀ ହରଣ ନୀତିରେ ଚିଟାଉପାଠ ଓ ପୂଜାପଣ୍ଡା ସେବା କରନ୍ତି । ଏମାନେ ମହାନାୟକ ଶାଢ଼ିବନ୍ଧା ସେବକ ।

## ୧୦. ପୁଷ୍ପାଳକ

ମଙ୍ଗଳ ଆଳତିରେ ବଳଭଦ୍ର ଓ ସୁଭଦ୍ରାଙ୍କ ବାଡ଼ରେ ଆଳତି, ଅଳଙ୍କାର ମଣତି, ମାଳଫୁଲ ମଇଲମ, ଅବକାଶ ପୂଜା ଓ ମଇଲମ, ବେଶ, ସାହାଣମେଲା ବେଳେ ତିନିବାଡ଼ରେ ରହିବା, ତା'ପରେ ଖୁଣ୍ଟିଆ ଓ ମେଳାପ ସେବକଙ୍କୁ ଶ୍ରୀଅଙ୍ଗ ମଣାଇ ଦେଇ ଆସିବା, ସକାଳ ଧୂପ ଶେଷରେ, ପର୍ବାଣିଦିନମାନଙ୍କରେ ଭୋଗମଣ୍ଡପ ଧୂପ ଶେଷରେ, ମଧ୍ୟାହ୍ନ ପହୁଡ଼ ପରେ ତଳିଚ୍ଛଙ୍କ ସହିତ ସଂଧ୍ୟା ଆଳତି, ମଇଲମ ବେଶ, ଏକାଦଶୀ ଦିନ କେବଳ ଶାଢ଼ିଲାଗି କରି ଆଳତି କରିବା, ସର୍ବାଙ୍ଗ ବେଶ, ସଂଧ୍ୟାଧୂପ ପରେ ମଇଲମ ଓ ତିନିବାଡ଼ରେ ଚନ୍ଦନଲାଗି, ବଡ଼ସିଂହାର ବେଶ, କର୍ପୂରଲାଗି ବେଶ, ଶୟନଠାକୁରଙ୍କ ବିଜେ, ପହୁଡ଼ ଆଳତି, ପଇଡ଼, ବିଡ଼ିଆ, ମଣୋହି ଓ ଆଳତି, ପୁଣି ରତ୍ନ ପଲଙ୍କରେ ଶୟନ କରାଇ ଚନ୍ଦନ ଓ ମାଳ ମଇଲମ ଓ ଭଣ୍ଡାର ଘରକୁ ଶୟନଠାକୁରଙ୍କୁ ବିଜେ, ବିମଳାଙ୍କୁ ମାଳ ଓ ଚନ୍ଦନ ଦେବା ଏମାନଙ୍କର କାର୍ଯ୍ୟ ।

ରଥ ଉପରେ ଓ ଶ୍ରୀଗୁଣ୍ଡିଚା ଘରେ ଅନୁରୂପ ସେବା କରନ୍ତି । ଅଣସର ବେଳେ ପଟି ଦିଅଁଙ୍କ ଅବକାଶ ଯାଏଁ ସେବା, ସଂଧ୍ୟାରେ ଆଳତି ଓ ଶୟନ ଯାଏଁ ନୀତି, ଓଢ଼ଣ ଷଷ୍ଠିରୁ ଶ୍ରୀପଞ୍ଚମୀ ଯାଏଁ ବଡ଼ସିଂହାର ପରେ ତିନି ବାଡ଼ରେ ଟୋପର ଲାଗି, ପରେ ଶୟନଠାକୁରଙ୍କ ବିଜେ । ଚନ୍ଦନ ୪୨ ଦିନ, ଦିନ ଓ ରାତ୍ର ଆଲଟ କରିବା, ବନଭୋଜି ବେଶରେ ସର ଓ ଛେକ ଆସିଲେ ଲାଗି, ବେଢ଼ାମାନଙ୍କରେ ବେଢ଼ା କରିବା, ଠାକୁରମାନଙ୍କର ମାଳଚୂଳ, ଆଜ୍ଞାମାଳ ଲାଗି, ବିଭିନ୍ନ ବେଶ କରନ୍ତି । ଶାଢ଼ିବନ୍ଧା ବ୍ରାହ୍ମଣ ସେବକ । ୧୮ ବର୍ଷ ବୟସ ପରେ ବ୍ରତ ହେଲା ପରେ ସେବା କରିପାରିବେ ।

## ୧୧. ମହାଜନ

ଏମାନେ ଦକ୍ଷିଣ ଘରରେ ଅବସ୍ଥିତ ସମସ୍ତ ଠାକୁରଙ୍କ ସେବା ଓ ବଲ୍ଲଭ ଭୋଗ କରନ୍ତି । ଏଠାରେ ଥିବା ସକଳ ବିଜେ ପ୍ରତିମାମାନଙ୍କୁ ଆବଶ୍ୟକ ବେଳେ ବିଜେ କରାନ୍ତି । ବିମାନବଡୁମାନେ

ଯେତେବେଳେ ବିଜେ ପ୍ରତିମାମାନଙ୍କୁ ଚନ୍ଦନ ଚାପ, ବେଷ୍ଟ ଆଦି ନୀତିରେ ଯେଉଁସ୍ଥାନକୁ ନିଅନ୍ତି, ମହାଜନମାନେ ସେମାନଙ୍କ ସହିତ ଦିଅଁଙ୍କ 'ପ୍ରଭା' ଧରି ନିଅନ୍ତି । ଦମନକ ଚୋରି ଅଧିବାସ ଗୃହରେ ଥିବା ଲକ୍ଷ୍ମୀ, ସରସ୍ୱତୀ (ଭୂଦେବୀ) ଓ ମଦନମୋହନଙ୍କର ବଲ୍ଲଭ ଭୋଗ କରନ୍ତି । ରାମ ଜନ୍ମ ନୀତିରେ ଦଶରଥ, କୌଶଲ୍ୟା, କୃଷ୍ଣ ଜନ୍ମରେ ବସୁଦେବ, ଦେବକୀ, ନନ୍ଦ ଓ ଯଶୋଦା, ବାମନ ଜନ୍ମରେ ଅଦିତି ଓ କଶ୍ୟପ ହୋଇ ବସନ୍ତି । ଶ୍ରୀଗୁଣ୍ଡିଚା ସମୟରେ ଲକ୍ଷ୍ମୀ(ଶ୍ରୀଦେବୀ), ଭୂଦେବୀ ଖଟ ଶେଯ ଘରେ ଥିବାବେଳେ ବଲ୍ଲଭ ଭୋଗ କରନ୍ତି । ଗୁରୁବାର ମାଜଣା ନୀତି କରନ୍ତି । ଚନ୍ଦନ ଯାତ୍ରା (୨୧) ଦିନ ମଦନମୋହନଙ୍କୁ ପ୍ରତ୍ୟେକ ଦିନ ବେଶ କରନ୍ତି ।

ଏମାନେ ପୁଷ୍ପାଳକ ସେବା କଳାପରେ ମହାଜନ ସେବା କରି ପାରିବେ ।

## ୧୨. ମୁଦ୍ରା ସେବକ

ମହାପ୍ରଭୁ ଜଗନ୍ନାଥଙ୍କ ବାଡ଼ରେ ଚନ୍ଦନଲାଗି ନୀତିପାଇଁ ଘଟୁଆରିଠାରୁ ଚନ୍ଦନ ଆଣି ପୁଷ୍ପାଳକଙ୍କୁ ଦିଅନ୍ତି । ପୁଷ୍ପାଞ୍ଜଳି ଠାକୁରଙ୍କ ବାହୁଡ଼ା ବିଜେ ବେଳେ ଆଗରେ ବଇଠା ଦେଖାନ୍ତି । ପହୁଡ଼ ପରେ କଳାହାଟ ଦ୍ୱାର ବନ୍ଦ ସମୟରେ ପ୍ରତିହାରୀ କଡ଼ା ବନ୍ଦ କରି ମାଟି ମୁଦ ଦେଲେ ମୁଦ୍ରା ସେବକ ମୁଦୁଲିଙ୍କଠାରୁ ନେଇ ମାଟିରେ ମୁଦ୍ରାଦେଇ ମୁଦୁଲିକୁ ଫେରାଇ ଦିଅନ୍ତି । କୁମାରପୂର୍ଣ୍ଣିମୀ ଦିନ ଲକ୍ଷ୍ମୀମନ୍ଦିର ଜଗମୋହନରେ ଲକ୍ଷ୍ମୀ ଓ ମଦନମୋହନଙ୍କ ମଧ୍ୟରେ କଉଡି ଖେଳରେ କଉଡ଼ି, ପଶା ଖେଳାନ୍ତି । ପୁଣି ବଡ଼ସିଂହାର ଭୋଗ ସରିବା ପରେ ସିଂହାସନ ତଳେ ପୁଷ୍ପାଳକ ଓ ପଣ୍ଡାଙ୍କୁ କଉଡ଼ି ଖେଳାନ୍ତି । ଖେଳରେ ହାରି ମାଧବ ଲକ୍ଷ୍ମୀମନ୍ଦିରକୁ ବିଜେ କଲାବେଳେ ଏ ସେବକ ଆଗରେ ବଇଠା ଦେଖାନ୍ତି । ବସନ୍ତପଞ୍ଚମୀ ଦିନ ଦୋଳ ଦଶମୀରୁ ଚତୁର୍ଦ୍ଦଶୀ ଯାଏଁ ବିଭିନ୍ନ ନୀତିପାଇଁ ସଂପୃକ୍ତ ସେବକମାନଙ୍କୁ ଫଗୁ ଓ ଚନ୍ଦନଗୁଣ୍ଡ ଆଦି ଯୋଗାନ୍ତି ।

ଶାଢ଼ିବନ୍ଧା, ବଂଶାନୁକ୍ରମିକ ବ୍ରାହ୍ମଣ ସେବକ । ବ୍ରତପରେ ସେବା କରନ୍ତି ।

## ୧୩. ଖୁଣ୍ଟିଆ

ମଙ୍ଗଳ ଆଳତିପାଇଁ ପୁଷ୍ପାଳକଙ୍କୁ ଡାକନ୍ତି । ଅବକାଶ ବେଳେ ତଡ଼ପ ଉତୁରୀ ନୀତିରେ ଓ ରାତ୍ର ଚନ୍ଦନ ଲାଗି ସମୟରେ ଖଣ୍ଡୁଆ ଧରି ଦିଅଁମାନଙ୍କ ସାମନାରେ ଠିଆ ହୁଅନ୍ତି । ପ୍ରତି ବେଶରେ ବଟା ଉପରୁ ମାଳଚୂଳ ପୁଷ୍ପାଳକଙ୍କୁ, ଷୋଡ଼ଶ ଉପଚାର ଭୋଗରେ ପୂଜାପଣ୍ଡାଙ୍କୁ ମାଳ ଦିଅନ୍ତି । ରତ୍ନ ସିଂହାସନରେ ଶ୍ରୀଅଙ୍ଗ ଲାଗି ଜିନିଷ ପାଇଁ ଏମାନେ ପାଳିଆ ମେଳାପଙ୍କ ସହିତ ଦାୟୀ ରହନ୍ତି । ପୂଜାପଣ୍ଡା ଓ ପୁଷ୍ପାଳକ ସେବାପାଇଁ ଭିତରକୁ ଗଲେ ଏହାଙ୍କୁ କହି କରି ଯାଆନ୍ତି ଓ କହି କରି ଆସନ୍ତି । ପୁଷ୍ପାଳକ ରତ୍ନସିଂହାସନକୁ ଉଠିବା ଓ ଓହ୍ଲେଇବା ବେଳେ ଏମାନେ ଶ୍ରୀଅଙ୍ଗ ମଣତି କରନ୍ତି । ଦଇତାପତି ଗଲେ ମଧ୍ୟ ମଣତି ହୁଏ । ଅଳଙ୍କାର ଲାଗିଲେ ବଡ଼ ସିଂହାର ବେଶ ସରିଲେ ପୁଷ୍ପାଳକ ହାତକୁ କର୍ପୂର ବଢ଼ାନ୍ତି । ପଲଙ୍କ ବିଜେପାଇଁ ଖଟଶେଯ ମେଳାପଙ୍କୁ ଡାକନ୍ତି । ପୁଷ୍ପାଞ୍ଜଳି ଠାକୁରଙ୍କ ସହ 'ମଣିମା' ଡାକଦେଇ ଜୟ ବିଜୟ ଦ୍ୱାରକୁ ଆସନ୍ତି । ଛାମୁଖୁଣ୍ଟିଆ ସେବାରେ 'ମଣିମା'ଡାକ ଦେବାବେଳେ ବେତ ଧରନ୍ତି ।

ପାଳିଆ ଘଟୁଆରି ଘରୁ ଚନ୍ଦନ ବିଜେ ବେଳେ ଆଗରେ ବେତଧରି ଆସନ୍ତି । ପୌଷପୂର୍ଣ୍ଣିମା ଦିନ ତିନି ବାଡ଼ରେ ରାଜନୀତି ସମୟରେ ବେତଧରି ମଣିମା ଡାକନ୍ତି ଓ ପୁଷ୍ପାଞ୍ଜଳି ଦିଅନ୍ତି । ଆଲଟଲାଗି ବେଳେ ମଣିମା ଡାକ ଦିଅନ୍ତି । ମୁଦିରଥ ଶାଢ଼ି ବନ୍ଧାଇବାକୁ ଗଲାବେଳେ ତାଙ୍କ ସହିତ ଯାଆନ୍ତି । ମକର ସଂକ୍ରାନ୍ତି, ଦଶହରା, ଘୋଡ଼ ଓ ଦୟଣା ବେଢ଼ା ମାନଙ୍କରେ ଆଗରେ ବେତଧରି ଯାଆନ୍ତି । ପ୍ରତି ପହଣ୍ଡିରେ ବେତ ଧରି ମଣିମା ଡାକନ୍ତି ଓ ଫୁଲ ପକାନ୍ତି । ଦଇତାପତିଙ୍କୁ ଟାହିଆ ଦିଅନ୍ତି । ଅଣସର ପିଣ୍ଡିରେ, ରଥରେ ମାଳଚୂଳ ନେଇ ମୁଦିରଥଙ୍କ ଆଞ୍ଜୁଳି ନିମନ୍ତେ ଶୁକ୍ଳଫୁଲ ଦିଅନ୍ତି । ସାହାଣମେଲା ସମୟରେ ତିନିବାଡ଼ରେ ଝରି ଜଗନ୍ତି । ଅନ୍ୟ ସମୟରେ ଆମଦାନି ହେଲେ ଜଗନ୍ତି ।

ଖୁଣ୍ଟିଆ ସେବାର କେତେକ ଶ୍ରେଣୀ ଅଛି ଯଥା- ପାଳିଆ ଖୁଣ୍ଟିଆ, ବେହେରା ଖୁଣ୍ଟିଆ, ବିଲେଇ ଜଗା ଖୁଣ୍ଟିଆ, ଘୋଡ଼ା ବାରିକ ଖୁଣ୍ଟିଆ ଓ ରୁକ୍ମିଣୀ ହରଣ ଖୁଣ୍ଟିଆ । ପ୍ରତ୍ୟେକ ବିଭାଗରେ କିଛି କିଛି ସ୍ୱତନ୍ତ୍ର ସେବା ଅଛି । ବ୍ରତ ପରେ ଶାଢ଼ି ବନ୍ଧାନ୍ତି । ସେବା ବଂଶାନୁକ୍ରମିକ ।

## ୧୪. ଭଣ୍ଡାର ମେକାପ

ଶ୍ରୀଜୀଉମାନଙ୍କର ଦୈନିକ ଲାଗି ସୁନା ଜିନିଷ ଏହାଙ୍କ ଜିମାରେ ରହେ । ସୁନାର ଶୟନଠାକୁର ୩ ମୂର୍ତ୍ତି, ସୁନାର ପୁଷ୍ପାଞ୍ଜଳି ଠାକୁର, ରୁପାର ଲୋକନାଥ ଓ ଦୁର୍ଗା ମୂର୍ତ୍ତି ଏହାଙ୍କ ମାର୍ଫତ୍‌ରେ ଥାଏ । ଏ ତାଙ୍କର ସେବା କରନ୍ତି । କିନ୍ତୁ ପୂଜାପଣ୍ଡା ଭୋଗ ଲଗାନ୍ତି । ଚିତା, ରାହୁରେଖା ଆଦି ଲାଗି ନ ହୋଇଥିବାବେଳେ ଏହାଙ୍କ ପାଖରେ ରହେ । ଝୋବା ମଇଲମ ହେଲେ ପାଖରେ ରହେ । ରୁପା ପିଙ୍ଗଣ, ଝରି, ଜୟମଙ୍ଗଳ ସୁନା କର୍ପୂର ଆଳତି, ସୁନାପଦକ ଉପଚାର ତିନି ମୂର୍ତ୍ତି, ସୁନାର ଚାମର, ସୁନା ଖଡ଼ିକା, ସୁନା ଆଲଟ, ସୁନା ବେତ ଆଦି ଏହାଙ୍କ ଜିମାରେ ରହେ । ଭଣ୍ଡାର ଘରେ ବିଜେ ହୋଇଥିବା ସୁନା ଲକ୍ଷ୍ମୀ ମୂର୍ତ୍ତି, ରୁପା ସରସ୍ୱତୀ ମୂର୍ତ୍ତି ଏହାଙ୍କ ଜିମାରେ ରହେ ।

ଛେରା ପହଁରା ସମୟରେ ଫୁଲ ଛିଞ୍ଚନ୍ତି । ଚନ୍ଦନଲାଗି ବେଳେ କର୍ପୂର, କସ୍ତୁରୀ ଯୋଗାନ୍ତି । ଶାଢ଼ି ବନ୍ଧାରେ ଚନ୍ଦନ ଛାପ ଦିଅନ୍ତି । ଏ ଶାଢ଼ିବନ୍ଧା ବ୍ରାହ୍ମଣ ସେବକ । ପାଳିଆ ମେକାପଙ୍କ ମଧ୍ୟରୁ ବିଶ୍ୱାସଯୋଗ୍ୟ ବ୍ୟକ୍ତିଙ୍କୁ ଏ ସେବା ନ୍ୟସ୍ତ କରାଯାଏ । ତେଣୁ ଏ ସେବା ବଂଶାନୁକ୍ରମିକ ନୁହେଁ ।

## ୧୫. ପାଳିଆ ମେକାପ

ପ୍ରତ୍ୟହ ଦ୍ୱାରଫିଟା ସମୟରେ ଉପସ୍ଥିତ ହେବା, ରାତିରେ ଜୟବିଜୟ ଦ୍ୱାର ଜଗି ରହିବା, ଅଖଣ୍ଡ ମେକାପ ସହ ବଇଠା ଧରି ଶ୍ରୀଜୀଉଙ୍କର ଶ୍ରୀଅଙ୍ଗ ଦେଖିବା, ମଙ୍ଗଳ ଆଳତି ସଜାଡ଼ିବା, ଆଳତି ପରେ ପୁଷ୍ପାଳକ ସିଂହାସନ ଉପରକୁ ଉଠିଲା ବେଳେ ଏହାଙ୍କଠାରୁ ଶ୍ରୀଅଙ୍ଗ ମଣତି ନେବା, ଭେଟ ପିଣ୍ଡିକା ସମୟରେ ରହି ଆମଦାନି ଅସୁଲ କର୍ତ୍ତୃପକ୍ଷଙ୍କୁ ଦେଇ ତାଙ୍କର ନିୟମିତ ଅଂଶ ପାଇବା, ସାହାଣମେଲା ପରେ ତିନି ବାଡ଼ରେ ଗଡୁ ଧରି ଠିଆ ହୋଇ ରହିବା, ଧୂପ ପୂଜା ବେଳେ ପୂଜାପଣ୍ଡାଙ୍କୁ ଉପଚାର, ସୁନା ଅଳଙ୍କାର ଦେବା ଓ ଫେରାଇ ଆଣିବା, ଚନ୍ଦନଲାଗିରେ ତିନି ବାଡ଼ରେ ଚନ୍ଦନ ବଢ଼ାଇବା, ପହୁଡ଼ ଆଳତିରେ କର୍ପୂର ଲଗାଇବା, ପହୁଡ଼ ବେଳେ 'ମଣିମା'

ଡାକଦେବା, ଯାତ୍ରାଙ୍ଗୀ, ଏକାଦଶୀ, ସର୍ବାଙ୍ଗରେ ମହାପ୍ରଭୁଙ୍କ ବାଡ଼ରେ ଚନ୍ଦନ ବଢାଇବା, ଯାନିଯାତ୍ରା ବେଶରେ ଭଣ୍ଡାର ମେକାପଙ୍କଠାରୁ ଅଳଙ୍କାର ନେଇ ପୁଷ୍ପାଳକଙ୍କୁ ଦେବା ଓ ଫେରାଇ ନେବା ଏହାଙ୍କ କାର୍ଯ୍ୟ । ଦଶହରା ସମୟରେ ଛଅ ଜଣ ମେକାପ ଆୟୁଧ ବେଢ଼ା କରିବା, ଘୋଡ଼ ଲାଗିଲେ ଘୋଡ଼, ଟୋପର, ଝଲକ ଆଣିଦେବା, ଦଣ୍ଡଛତ୍ର ଲାଗି ଓ ପୁଷ୍ୟାଭିଷେକରେ ହନୁମାନ ଭଳି ଦଣ୍ଡଛତ୍ର ଧରି ବସିବା, ବନକଲାଗିରେ ମଝିବାଡ଼ରେ ବଇଠା ଦେଖାଇବା, ବନକଲାଗି ଓ ମହାସ୍ନାନରେ ସିଂହାସନ ଧୋଇବା ଇତ୍ୟାଦି ଏହାଙ୍କର ସେବାକାର୍ଯ୍ୟ ।

ଶାଢ଼ିବନ୍ଧା ବ୍ରାହ୍ମଣ ସେବକ । ସେବା ବଂଶାନୁକ୍ରମିକ ।

## ୧୬. ଅଖଣ୍ଡ ମେକାପ

ମୁଖ୍ୟ ମନ୍ଦିର ବା ବଡ଼ ଦେଉଳରେ, ଗୁଣ୍ଡିଚା ମନ୍ଦିରରେ ଦିଅଁମାନେ ଥିବାବେଳେ ଅଖଣ୍ଡ ବଇଠା ବା ଦୀପମାନ ଜାଳି ଆଲୋକିତ କରୁଥିବା ସେବକ । ଦଣ୍ଡଛତ୍ର ଓ ରାଜନୀତିରେ ବଇଠା ଧରି ମହାପ୍ରଭୁଙ୍କ ବାଡ଼ରେ ଠିଆ ହୁଅନ୍ତି । ରତ୍ନ ସିଂହାସନ ତଳୁ ତେଲ ପୋଛନ୍ତି ।

ବଂଶାନୁକ୍ରମିକ, ଶାଢ଼ିବନ୍ଧା ବ୍ରାହ୍ମଣ ସେବକ ।

## ୧୭. ଚାଙ୍ଗଡ଼ା ମେକାପ

ଦିଅଁମାନଙ୍କର ବସ୍ତ୍ର ଦାୟିତ୍ୱରେ ରହନ୍ତି । ଦିନ ତମାମ ଦିଅଁଙ୍କର ବେଶପାଇଁ ଆବଶ୍ୟକ ବସ୍ତ୍ର ପୁଷ୍ପାଳକଙ୍କୁ ଦିଅନ୍ତି । ଉଲାଗି ବସ୍ତ୍ର ଲୁଗାଧୁଆ ସେବକଙ୍କୁ ଓ ପାଟପତନି ମହାସେଠୀଙ୍କୁ ଦିଅନ୍ତି । ପ୍ରତି ଧୂପରେ ଆସନପଡ଼ା ଉପଚାର ବସ୍ତ୍ର ଦିଅନ୍ତି । ରାଜାଙ୍କୁ ଗଦିପ୍ରସାଦ ତାଟ ଦିଅନ୍ତି । ଶାଢ଼ି ବନ୍ଧାରେ ସୂତା, ପାଟଶାଢ଼ି ଦିଅନ୍ତି । ରାଜନୀତିପାଇଁ ହାତପୋଛା ଖଦି ଦିଅନ୍ତି । ଏ ମଧ୍ୟ ସୁଆରବଡୁ ହିସାବରେ ଚକା ଅପସର ସେବା କରନ୍ତି ।

ଶାଢ଼ିବନ୍ଧା ବ୍ରାହ୍ମଣ ସେବକ । ସେବା ବଂଶାନୁକ୍ରମିକ ।

## ୧୮. ଖଟଶେଯ ମେକାପ

ଦିଅଁମାନଙ୍କ ରତ୍ନପଲଙ୍କ ଦାୟିତ୍ୱରେ ରହନ୍ତି । ଦ୍ୱାର ଫିଟା ପରେ ରତ୍ନ ପଲଙ୍କ, ଘଷା ବିଡ଼ିଆ ଆଦି 'ଖଟଶେଯ' ଘରକୁ ନେବା, ଦିବା ପହୁଡ଼ ଓ ରାତ୍ର ପହୁଡ଼ରେ ପଲଙ୍କ ପକାଇବା, ଖଟଶେଯ ଘରେ ଥିବା ଦିଅଁଙ୍କୁ ପାଣି ଦେବା, ବାହାର ବିଜେରେ ବିଜେ ପ୍ରତିମାଙ୍କ ଶେଯ ଯଥା ସ୍ଥାନରେ ପକାଇବା ଇତ୍ୟାଦି ଏହାଙ୍କ କାର୍ଯ୍ୟ । ପୁଷ୍ପାଞ୍ଜଳି ନୀତିରେ ଜୟ ବିଜୟ ଦ୍ୱାରରେ ଓ କେତେକ ନୀତିରେ ଡମ୍ବରୁ ରଖିବା, ଶୀତ ଦିନରେ ଦଣ୍ଡାପାହାଡ଼ା ଓ କୋଡ଼ପାହାଡ଼ା ପାରିବା କାମ କରନ୍ତି ।

ଶାଢ଼ିବନ୍ଧା ବ୍ରାହ୍ମଣ ସେବକ । ସେବା ବଂଶାନୁକ୍ରମିକ ।

## ୧୯. ପ୍ରତିହାରୀ

'ପ୍ରତିହାରୀ' ଶବ୍ଦର ଅର୍ଥ ଦ୍ୱାରପାଳ । ସ୍ୱତ୍ୱଲିପି ମୁତାବକ ବିଭିନ୍ନ ଦ୍ୱାରପାଇଁ ପ୍ରତିହାରୀ ସେବା ରହିଛି । ଯଥା- **(କ) ବଡ଼ଦ୍ୱାର ପ୍ରତିହାରୀ:** ମଙ୍ଗଳଆଳତି ବେଳେ ଦ୍ୱାରଫିଟା ନୀତିରେ

ଭିତରଶୋଧ କରି 'ମଣିମା'ଡାକ ଦେଇ ଦ୍ୱାର ଖୋଲିବା । ଭିତରୁ ପଲଙ୍କ ଆସିବା ପରେ ଭିତର କାଠ ଲଗାଇବା, ଜୟ ବିଜୟ ଦ୍ୱାର ଖୋଲିବା, ଦିବା ପହୁଡ଼ରେ ଭିତରକାଠ ବାହାର କରିବା, ଶୟନ ପରେ ମଣିମା ଡାକିବା ଓ କବାଟ ବନ୍ଦ କରିବା, ପହୁଡ଼ ଭଙ୍ଗ ପରେ ସବୁ ଦ୍ୱାର ଖୋଲିବା, ସନ୍ଧ୍ୟା ଧୂପରୁ ଧୁକୁଡ଼ି ଦ୍ୱାରଠାରେ ପହୁଡ଼ ପର୍ଯ୍ୟନ୍ତ ରହି ଧୂପ ଡାକିବା, ଚନ୍ଦନ ବିଜେ ଡାକିବା, ବଡ଼ସିଂହାର ଧୂପ ପରେ ରୁପା ବଟାରେ ତିନି ବାଡ଼ପାଇଁ ପଇଡ଼, ଜୟ ବିଜୟ ଦ୍ୱାରରେ ଶୟନଠାକୁର ପାଇଁ ପୁଷ୍ପାଳକଙ୍କୁ ପଇଡ଼ ଦେବା, ଶୟନ ବେଳେ 'ମଣିମା' ଡାକ ଦେବା ଏହାଙ୍କର କାର୍ଯ୍ୟ । **(ଖ) ଧୁକୁଡ଼ି ଦ୍ୱାର ପ୍ରତିହାରୀ :** ଗୋପାଳ ବଲ୍ଲଭଠାରୁ ମଧ୍ୟାହ୍ନ ଧୂପ ଯାଏଁ ଜଗୁଥିବା ଓ ଟେରା ବାନ୍ଧୁଥିବା ପ୍ରତିହାରୀ । ସେବା ବଂଶାନୁକ୍ରମିକ, କିନ୍ତୁ ଅ-ଶାଢ଼ୀବନ୍ଧା । **(ଗ) ଦକ୍ଷିଣ ଦ୍ୱାର ପ୍ରତିହାରୀ :** ଦକ୍ଷିଣ ଦ୍ୱାର (ଶଙ୍ଖ ଦ୍ୱାର)ଠାରେ ମଙ୍ଗଳ ଆଳତିଠାରୁ ଶୟନ ଯାଏଁ ଜଗି ରହିବା, ସକାଳ ଧୂପ, ମଧ୍ୟାହ୍ନ ଧୂପ, ପହିଲି ଭୋଗ ଓ ବାଳଧୂପ ଡାକିଯିବା, ଅଣସର ସମୟରେ ପଣାଭୋଗ ଡାକିଯିବା, ପୌଷ ପୂର୍ଣ୍ଣିମା ଓ ନୀଳାଦ୍ରି ମହୋଦୟ ଦିନ ଜଳ ବିଜେ ନୀତିରେ ଡାକି ଯିବା, ଭୋଗ ଜଗିବା, ପ୍ରତ୍ୟେକ ବେଢ଼ା ନୀତିରେ ବେତ ଧରି ବେଢ଼ାରେ ଯିବା ଏହାଙ୍କର କାର୍ଯ୍ୟ । **(ଘ) ଦ୍ୱାରୀ ନାୟକ ପ୍ରତିହାରୀ :** ପ୍ରତି ଭୋଗ ପରେ ଓ ପୂଜା ଶେଷରେ ମଣୋହି ନିମନ୍ତେ ଟେରା ପକାନ୍ତି ଓ ଶେଷରେ ଦ୍ୱାର ଫିଟାନ୍ତି । **(ଙ) ଜୟବିଜୟ ଦ୍ୱାର ପ୍ରତିହାରୀ :** ଜୟବିଜୟ ଦ୍ୱାରରେ ସର୍ବଦା ଜଗିଥାନ୍ତି । ପହୁଡ଼ ପର୍ଯ୍ୟନ୍ତ ଓ ନିଷେଧ ସମୟରେ ଲୋକଙ୍କୁ ଅଟକାନ୍ତି । ଏହି ପ୍ରତିହାରୀ ସେବକଙ୍କୁ ଗୋଛିକାର କୁହାଯାଏ । ଏହି ଦ୍ୱାର ପ୍ରତିହାରୀ ସେବା କେବଳ ଗୋଛିକାର ମଧ୍ୟରେ ହେବ । **(ଚ) ଭୋଗମଣ୍ଡପ ପ୍ରତିହାରୀ :** ଭୋଗମଣ୍ଡପଠାରେ ରହି ଶୋଧ, ଦ୍ୱାର ବନ୍ଦ କରିବା, ସୁଆରବଡ଼ୁ ଅମୋଣିଆ ପାଣି ପକାଇବା ପରେ ଜଗି ରହିବା ଓ ଟେରା ବାନ୍ଧିବା ଆଦି ସେବା ଏହି ପ୍ରତିହାରୀମାନେ କରନ୍ତି । **(ଛ)ଦ୍ୱାରଘର ପ୍ରତିହାରୀ :** ଏମାନେ ସାହାଣମେଳା ସମୟରେ ଯାତ୍ରୀମାନଙ୍କୁ ସାହାଯ୍ୟ କରି ଶୃଙ୍ଖଳା ରକ୍ଷା କରନ୍ତି । ପ୍ରତିହାରୀ ନିଯୋଗ ଏମାନଙ୍କୁ ମୁତୟନ କରେ । **(ଜ) ସିଂହଦ୍ୱାର ପ୍ରତିହାରୀ :** ସିଂହଦ୍ୱାରରେ ଓ ଗୁଣ୍ଡିଚା ସମୟରେ ଗୁଣ୍ଡିଚା ଘରେ, ରଥ ଉପରେ, ସ୍ନାନ ବେଦୀରେ ଓ ଦୋଳ ବେଦୀରେ ଜଗୁଥିବା ପ୍ରତିହାରୀ ।

## ୨୦. ଦଇତା

ପ୍ରତିବର୍ଷ ଜ୍ୟେଷ୍ଠ ଶୁକ୍ଳ ତ୍ରୟୋଦଶୀ ଦିନ ବଡ଼ସିଂହାର ଧୂପ ଶେଷ ହେବା ପରେ ବାହୁଟ କଷ୍ଟ କରିବା, ପରବର୍ତ୍ତୀ ଦିନ ପାଗପଟି କାଟିବା, ସେନାପଟା ଲାଗି କରିବା, ସ୍ନାନବେଦୀକୁ ପହଣ୍ଡି ବିଜେ, ପୁଷ୍ପାଳକମାନଙ୍କ ସହ ହାତୀ ବେଶ କରିବା, ବାହୁଡ଼ା ପହଣ୍ଡି, ଅଣସର ତାଟି ଘରେ ନବଯୌବନ ଯାଏଁ ସକଳ ଗୁପ୍ତ ନୀତି, ନେତ୍ରୋତ୍ସବ ଦିନ ସର୍ବାଙ୍ଗ ଓ ବନ୍ଦାପନା, ରାତ୍ରରେ ବାହୁଟ କଷ୍ଟ, ସେନାପଟାଲାଗି, ରଥଯାତ୍ରାଦିନ ପହଣ୍ଡି, ରଥରେ ରୁନ୍ଧା, ବେଶ, ଅଳଙ୍କାର ଓ ସୋଲ ଚିତାଲାଗି; ରଥ ଦାୟିତ୍ୱରେ ରହିବା, ଗୁଣ୍ଡିଚା ଘରେ ରୁନ୍ଧା, ସର୍ବାଙ୍ଗ, ବନ୍ଦାପନା, ବାହୁଡ଼ାରେ ଶ୍ରୀଗୁଣ୍ଡିଚା ଦିନ ପରି ନୀତି, ଚକ୍ରବୁଲା ଏକାଦଶୀରେ ସୁବର୍ଣ୍ଣ ଚକ୍ରକୁ ନଗର ଭ୍ରମଣ, ଚିତାଲାଗି

ଅମାବାସ୍ୟା ଦିନ ଚିତାଲାଗି, ଗହ୍ମାପୂର୍ଣ୍ଣିମାରେ ମାର୍କଣ୍ଡ ପୋଖରୀରେ ବଳଭଦ୍ରଙ୍କ ମୂର୍ତ୍ତି ନିର୍ମାଣ, ରାତ୍ରରେ ସୁଦର୍ଶନ ବିଜେ, ରେଖାପଞ୍ଚମୀରେ ରାହୁରେଖା ଲାଗି, ରାଧାଷ୍ଟମୀ ଓ କୁମାର ପୂର୍ଣ୍ଣିମା ଦିନ ସୁଦର୍ଶନ ବିଜେ, ଖସାପଡ଼ା ଓ ପଇତାଲାଗି ଇତ୍ୟାଦି କାର୍ଯ୍ୟ କରନ୍ତି ।

ଜ୍ୟେଷ୍ଠ ଶୁକ୍ଳ ତ୍ରୟୋଦଶୀଠାରୁ ନୀଳାଦ୍ରିବିଜେ (ଆଷାଢ଼ ଶୁକ୍ଳ ତ୍ରୟୋଦଶୀ) ଯାଏଁ ବିଶେଷ କାର୍ଯ୍ୟରତ ରହନ୍ତି । ନବକଳେବର ସମୟରେ ଦାରୁ ଅନ୍ୱେଷଣ, ମୂର୍ତ୍ତି ନିର୍ମାଣ, ବ୍ରହ୍ମ ପରିବର୍ତ୍ତନ, ବିସର୍ଜିତ ଦାରୁବିଗ୍ରହ ନିମନ୍ତେ ଶୁଦ୍ଧିକ୍ରିୟା ପାଳନ ଇତ୍ୟାଦି ବହୁ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ଓ ଗୁପ୍ତନୀତି ନିର୍ବାହ କରନ୍ତି । ଏମାନଙ୍କର ସେବା ଗୋଷ୍ଠୀଗତ । ଶାଢ଼ି ବନ୍ଧାଇବା ଅନାବଶ୍ୟକ । କେବଳ ଦାରୁ ଅନ୍ୱେଷଣରେ ଗଲେ ଶାଢ଼ି ପାଆନ୍ତି । ଏହି ସେବା ବଂଶାନୁକ୍ରମିକ ।

## ୨୧. ପତି ମହାପାତ୍ର

ଦୈନିକ ନୃସିଂହଙ୍କ ସେବା, ଜଗନ୍ନାଥଙ୍କ ବାଡ଼ରେ ପହୁଡ଼ ଆଳତି, ସବୁ ପର୍ବପର୍ବାଣିରେ ବନ୍ଦାପନା, ଚନ୍ଦନ ସର୍ବାଙ୍ଗ, ମଙ୍ଗଳାରୋପଣରେ ଦେବୀ ସୁଭଦ୍ରାଙ୍କ ବାଡ଼ରେ ସେବା କରନ୍ତି । ସ୍ନାନପୂର୍ଣ୍ଣିମା ଦିନ ବେଦୀରୁ ଦିଅଁମାନେ ଫେରିଲା ବେଳେ, ରଥକୁ ବିଜେ କରିଲା ବେଳେ, ରଥରୁ ଗୁଣ୍ଡିଚା ମନ୍ଦିରକୁ ବିଜେ ସମୟରେ, ଗୁଣ୍ଡିଚା ମନ୍ଦିରରୁ ରଥକୁ ବିଜେ ଓ ରଥରୁ ନୀଳାଦ୍ରି ବିଜେ ବେଳେ ଏ ତିନି ବାଡ଼ରେ ବନ୍ଦାପନା, କର୍ପୂର ଆଳତି, କର୍ପୂରଲାଗି, ଘଷା ଓ ବିଡ଼ିଆ ଲାଗି କରନ୍ତି । ପ୍ରତ୍ୟେକ ଜନ୍ମବିଧି, ହୋମ ଓ ସହସ୍ର କୁମ୍ଭାଭିଷେକ ଇତ୍ୟାଦିରେ ପୂଜାପଣ୍ଡା ଓ ମୁଦିରସ୍ତ ସହିତ ବ୍ରହ୍ମା ବରଣ ହୁଅନ୍ତି । ଅଣସର ପଟି ଘରେ ଭୋଗ କରନ୍ତି । ଦଇତାଙ୍କ ସହିତ ପ୍ରସାଦ ଲାଗି, ପଣାଲାଗି, ଖଡ଼ିଲାଗି, ଖଳି ଲାଗି, ଫୁଲୁରୀ ଲାଗି ଇତ୍ୟାଦି କାର୍ଯ୍ୟ କରନ୍ତି । ଅଣସର ପିଣ୍ଡିରେ ଭିତରଚ୍ଛଙ୍କଠାରୁ ଶାଢ଼ି ପାଇ ଦାରୁ ଅନ୍ୱେଷଣରେ ବାହାରନ୍ତି । ତା'ପୂର୍ବରୁ ତିନି ବାଡ଼ରୁ ଆଜ୍ଞାମାଳ ବାହାର କରି ତିନି ବାଡ଼ର ବାଡ଼ଗ୍ରାହୀ ଦଇତାଙ୍କୁ ଦେଇ ନିଜେ ସୁଦର୍ଶନଙ୍କ ବାଡ଼ର ଆଜ୍ଞାମାଳ ନେଇଥାନ୍ତି । ବନଯାଗରେ ବିଦ୍ୟାପତି ବରଣ ହୁଅନ୍ତି । ଯାଗ ପରେ ପ୍ରଥମେ ସୁନା କୁରାଢ଼ିରେ ଦାରୁବୃକ୍ଷଙ୍କୁ ସ୍ପର୍ଶ କରନ୍ତି । ଦାରୁକୁ ଭୋଗ କରନ୍ତି । ବିଗ୍ରହ ନିର୍ମାଣ ବେଳେ ଦକ୍ଷିଣୀ ଘରୁ ନୃସିଂହ ଠାକୁରଙ୍କୁ ନେଇ ଦାରୁ ଘରେ ବିଜେ କରାଇ ସେଠାରେ ଠାକୁର ରହିବା ଦିନତକ ତାଙ୍କର ପୂଜା କରନ୍ତି । ଘଟ ପରିବର୍ତ୍ତନ ଓ ବିସର୍ଜନ ସେବା କରନ୍ତି ।

ପତି ମହାପାତ୍ରଙ୍କ ସହିତ ଦଇତା ସେବାର ଘନିଷ୍ଠ ସଂପର୍କ ରହିଛି । ତେଣୁ ଦଇତାପତି ନିଯୋଗ କୁହାଯାଏ । ପତି ମହାପାତ୍ର ବ୍ରାହ୍ମଣ ସେବକ, ଦଇତା ବ୍ରାହ୍ମଣ ନୁହଁନ୍ତି । ପତି ମହାପାତ୍ରଙ୍କର ମଧ୍ୟ ମହାଜନ ସେବା ଅଛି । ମହାଜନ ହିସାବରେ ଦକ୍ଷିଣୀ ଘର ସେବା ଓ ମହାଜନ ସେବା ଅଛି । ଏ ସେବା ବଂଶାନୁକ୍ରମିକ ।

## ୨୨. ପତ୍ରିବଡୁ

ସୂର୍ଯ୍ୟପୂଜା ଓ ଦ୍ୱାରପାଳ ପୂଜାପାଇଁ ପୂଜାସ୍ଥଳରେ ପୂଜା ଦ୍ରବ୍ୟ ଯୋଗାଇବା; ବଲ୍ଲଭଠାରୁ ବଡ଼ସିଂହାର ଭୋଗ ପର୍ଯ୍ୟନ୍ତ ପ୍ରତି ଭୋଗରେ ପୂଜା ଠା' କରିବା; ମୁଦୁଲିଠାରୁ ପାତ୍ର ସଜ ନେଇ ଫୁଲ,

ତୁଳସୀ ସହ ପୂଜାରେ ଯୋଗାଇବା; ତିନି ଧୂପରେ ଦର୍ପଣ ଯୋଗାଇବା ଓ ଦର୍ପଣ ଫେରାଇ ଆଣିବା; ମଧୁପର୍କ ସାମଗ୍ରୀ, ରାଶି, ଯବଧାନ, ପଇତା, ବେଣାଚେର, ଅଳେଇଚ, ଲବଙ୍ଗ, ଗୁଗୁଳ, ଚନ୍ଦନ, ଦହି ଇତ୍ୟାଦି ପୂଜା ଉପଚାର ଯୋଗାଇବା; ଦୀପ ଯୋଗାଇବା; ଟେରା ଫିଟିବା ପୂର୍ବରୁ ପ୍ରତିହାରୀଙ୍କୁ ଡାକିବା; ଏକୋଇଶି ବତି ଆଳତି ଯୋଗାଡ଼ି ପୂଜାପଣ୍ଡାଙ୍କୁ ଦେବା; ରଥରେ, ଗୁଣ୍ଡିଚା ଘରେ, ସ୍ନାନବେଦୀରେ ଓ ଭୋଗମଣ୍ଡପରେ ଅନୁରୂପ ସେବା କରିବା; ଠାକୁରଙ୍କୁ ଅନ୍ୟତ୍ର ବିଜେ ବା ପନ୍ତିରେ ତୁଳସୀ ଆଦି ଯୋଗାଇବା ଏହାଙ୍କର କାର୍ଯ୍ୟ । ଶାଢ଼ିବନ୍ଧା ବ୍ରାହ୍ମଣ ସେବକ । ସେବା ବଂଶାନୁକ୍ରମିକ ।

## ୨୩. ଗରାବଡୁ

ମଙ୍ଗଳଆଳତି ଓ ମଇଲମରେ ପୁଷ୍ପାଳକଙ୍କୁ ହାତୁଆଣି (ହାତ ଧୋଇବାପାଇଁ ପାଣି), ଅବକାଶ ପୂଜା ଠା'ରେ ଝରି, ପାଣିଗରା, ଦହିଲାଗି, ଅଁଳା ଲାଗି ସମୟରେ ଜଳ, ପୂଜା ଓ ମଇଲମ ପରେ ହାତୁଆଣି, ସୂର୍ଯ୍ୟ, ଦ୍ୱାରପାଳ ପୂଜା, ବଲ୍ଲଭ, ସକ୍ଳୁଧୂପ ପରେ ଝରି ଲଗାଇବା, ଘଷା ଜଳ ରଖିବା, ଭୋଗମଣ୍ଡପରେ ଝରି ଲଗାଇବା ଏହାଙ୍କର କାର୍ଯ୍ୟ । ପ୍ରତ୍ୟେକ ମଇଲମରେ ପୁଷ୍ପାଳକଙ୍କୁ ହାତୁଆଣି, ଦିନ ପହୁଡ଼ରେ ପଲଙ୍କ ତଳେ ଘଷା ଜଳ, ଆଳତି ବେଳେ, ସର୍ବାଙ୍ଗ, ରାତ୍ର ପହୁଡ଼, ଶୀତଳ ମଣୋହିରେ ହାତୁଆଣି, ପୁଷ୍ପାଞ୍ଜଳି ଠାକୁରଙ୍କୁ ବିଜେ ଓ ଭିତରେ ଶୟନଠାକୁର, ବିମଳା ସେବକଙ୍କୁ ଚନ୍ଦନ ପଇଡ଼ ଦେବା, ନକ୍ଷତ୍ର ବନ୍ଦାପନା, ମଙ୍ଗଳାରୋପଣ, ଦ୍ୱାଦଶ ଯାତ୍ରା ବନ୍ଦାପନାରେ ହାତୁଆଣି ଦେବା, ସାଗର ବିଜେରେ ସମୁଦ୍ରରୁ ଜଳ ଆଣିବା, ପାଦୁକ ଓ ପ୍ରସାଦ ସମୁଦ୍ରରେ ଦେବା, ଯମେଶ୍ୱର ମନ୍ଦିରରେ ମାଜଣା ବେଳେ ଜଳଲାଗି, ପୂଜାବେଳେ ଝରି ଓ ଘଷା ଲଗାଇବା, ପନ୍ତି ସ୍ଥାନରେ ଝରି, ଗୁରୁବାର ମାଜଣାରେ ଝରି ଓ ହାତୁଆଣି, ଚନ୍ଦନ ଚକଡ଼ାରେ ସୁବାସିତ ଜଳ, ତା'ପରେ ବିଡ଼ିଆ ମଣୋହିରେ ଝରି ଲଗାନ୍ତି ଓ ଜଳ ଦିଅନ୍ତି । ସ୍ନାନ ପୂର୍ଣ୍ଣିମା, ନୀଳାଦ୍ରି ମହୋଦୟ, ପୁଷ୍ୟାଭିଷେକ ଦିନ ଜଳ ବିଜେ, ସଂସ୍କାର ପରେ ଜଳ ଲାଗି, ଛେରାପହଁରାରେ ରାଜାଙ୍କୁ ହାତୁଆଣି, ଜନ୍ମ ନୀତି, ମହାସ୍ନାନ, ଯାତ୍ରାର୍ଗୀ ମହାସ୍ନାନ ଇତ୍ୟାଦିରେ ହାତୁଆଣି ଦିଅନ୍ତି । ଶାଢ଼ିବନ୍ଧା ବ୍ରାହ୍ମଣ ସେବକ । ସେବା ବଂଶାନୁକ୍ରମିକ ।

## ୨୪. ସୁଆର ବଡୁ

ଏ ସେବା ତିନି ଶ୍ରେଣୀର । ୧. ସୁଆର ବଡୁ  ୨. ଭୋଗ ସାଇତା ସୁଆର ବଡୁ ୩. ବେହେରା ସୁଆରବଡୁ ।

ଦୈନିକ ପର୍ବପର୍ବାଣି ଓ ଗୁଣ୍ଡିଚା ଘର ନୀତି ଅନୁଯାୟୀ ଯେତେ ଥର ଭିତରେ ଓ ଭୋଗମଣ୍ଡପରେ ଧୋପଖାଳ ହେବ ବା ଅମୁଣିଆ ପାଣି ପଡ଼ିବ, ଆପଟଠାରୁ ଏ ପାଣି ଆଣି ଭିତର ପୋଖରିଆଠାରୁ ଭିତର ଅର୍ଗଳି ଯାଏଁ ପାଣି ପକାଇ ଝାଡୁମାରି ସଫା କରନ୍ତି । ଓଳିରେ ଚୂନାମଣ୍ଡିରୁ ମୂରୁଜ ଆଣି ରଖିଥାନ୍ତି । ପରିମାଣିକ ଦର୍ଶନ ଯୋଗୁଁ ଦରକାର ହେଲେ ପାଣି ପକାନ୍ତି । ବେଶ ସମୟରେ ଓ ମଇଲମ ପରେ କାଠଘୋଡ଼ା (ଉଚ୍ଚରେ କାମ କରିବାକୁ କାଠର ଏକ ପ୍ରକାର ଟେବୁଲ) ସିଂହାସନରେ ସିଂହାରି ବା ପୁଷ୍ପାଳକଙ୍କୁ ଦିଅନ୍ତି । ପ୍ରତ୍ୟେକ ଧୂପ, ସୂର୍ଯ୍ୟପୂଜା ଓ ଦ୍ୱାରପାଳ ପୂଜାରେ ରୋଷଘରୁ ବୈଷ୍ଣବାଗ୍ନି ଯୋଗାନ୍ତି । ଭୋଗ ଡାକିଯିବା ପୂର୍ବରୁ ଥାଳି, ପରଖ, ପାହାଡ଼ା

ପକାଇବା, ବନ୍ଦାପନାରେ ଓ ପୂଜା ବସିବାକୁ ପୀଢ଼ା ବା ଆସନ ଦେବା, ମଠମାନଙ୍କରୁ ଆସିଥିବା ବଲ୍ଲଭ ସାମଗ୍ରୀ ପନ୍ତିରେ ଲଗାଇବାପାଇଁ ମହାସୁଆରଙ୍କୁ ଦେବା, ଏକୋଇଶି ବତି ଓ ପିଠଉ ଆଳତି ଲଗାଇବା ଏହାଙ୍କ କାର୍ଯ୍ୟ ।

ବେହେରା ସୁଆରବଡୁ ରାଜନୀତିରେ ଦହି ପଟୋଇ ଲଗାନ୍ତି । ଭୋଗ ସାଇତା ସୁଆରବଡୁ କୋଠଭୋଗ ମାଲ ସାଇତି ରଖନ୍ତି । ସେବକଙ୍କ ଖେଇ ଓ ପସରା ମାଲ ବାଣ୍ଟି ତାଙ୍କର ଭାଗ ନିଅନ୍ତି । ସୁଆରବଡୁ ଶାଢ଼ିବନ୍ଧା ଓ ବଂଶାନୁକ୍ରମିକ ସେବକ ।

## ୨୫. ଜ୍ୟୋତିଷ ଖୁରି ନାହାକ

ପ୍ରତ୍ୟେକ ଦିନ ଅବକାଶ ପୂଜା ସମୟରେ ପାଞ୍ଜି ନେଇ ପୁଣ୍ୟ ପର୍ବ, ଯାନି ଯାତ୍ରା, ନକ୍ଷତ୍ର ଇତ୍ୟାଦି ତଡ଼ାଉକରଣଙ୍କୁ ଜଣାଇ ଦିଅନ୍ତି । ପ୍ରତିଦିନ ରାଶି ନକ୍ଷତ୍ରମାନ ଦିଅଁଙ୍କ ଛାମୁରେ ଜଣାନ୍ତି । ଦୋଳ ପୂର୍ଣ୍ଣିମା ଦିନ ଅବକାଶ ପରେ ଦିଅଁଙ୍କ ପାଶେ ନୂତନ ବର୍ଷର ପଞ୍ଜିକା ପାଠ କରି ଶୁଣାନ୍ତି । ଶାଢ଼ିବନ୍ଧା ଜ୍ୟୋତିଷ (ଗ୍ରହ ବିପ୍ର) ସେବକ । ସେବା ବଂଶାନୁକ୍ରମିକ ।

## ୨୬. ମୁଖ ପଖାଳ ସେବା

ଦୈନିକ ଅବକାଶ ସମୟରେ ଦାନ୍ତକାଠି ଓ ସୁନା ଜିଭଛେଲା ନେଇ ପୁଷ୍ପାଳକଙ୍କୁ ଦିଅନ୍ତି । ଫୁଲ, ତୁଳସୀ, ଚନ୍ଦନ, ଦହି ପୂଜାକୁ ବଢ଼ାନ୍ତି । ପିଙ୍ଗଣମାନଙ୍କରେ କର୍ପୂର ଜଳ ତୟାର କରି ଯୋଗାନ୍ତି । ଖଟୁଳି ଉପରେ ପାହାଡ଼ା ପକାନ୍ତି । ଦର୍ପଣିଆ ଦେଇଥିବା ଦର୍ପଣମାନ, ଝରି ପିଙ୍ଗଣ ପୂଜାକୁ ଯୋଗାନ୍ତି । ପାଣିଆପଟ ଆଣିଥିବା ପାଣି ନେଇ ଯୋଗାନ୍ତି । ପୂଜା ଠା'କରି ପୁଷ୍ପାଳକଙ୍କୁ ପୂଜା ବସିବାକୁ ଡାକନ୍ତି । ରଥ ଉପରେ ମଧ୍ୟ ଏପରି ପୂଜା ଠା' କରନ୍ତି ।

ଶାଢ଼ିବନ୍ଧା ବ୍ରାହ୍ମଣ ସେବକ । ସେବା ବଂଶାନୁକ୍ରମିକ ।

## ୨୭. ଘଟୁଆରି

ଚନ୍ଦନ, ଅଁଳା ଆଦି ଘୋରି ଯୋଗାଇବା ଶାଢ଼ିବନ୍ଧା ବୈଶ୍ୟ ସେବକ । ଅଁଳା ଖଟୁଆରି- ପ୍ରତ୍ୟେକ ଅବକାଶରେ ଅଁଳା, କର୍ପୂର, ଗୁଆଗୁଣ୍ଡି ଆଦି ଯୋଗାନ୍ତି । ପ୍ରତ୍ୟେକ ଧୂପକୁ ଦଶାଙ୍ଗ ଧୂପ ଯୋଗାନ୍ତି ।

ଚନ୍ଦନ ଘଟୁଆରି- ପ୍ରତ୍ୟେକ ନୀତି ଯଥା; ସୂର୍ଯ୍ୟପୂଜା, ଦ୍ୱାରପାଳ ପୂଜା, ବଲ୍ଲଭ, ତିନିଧୂପ, ଚନ୍ଦନଲାଗି, ବଡ଼ସିଂହାର ଓ ପୁଷ୍ପାଞ୍ଜଳି, ପର୍ବଯାତ୍ରାରେ ମଙ୍ଗଳାର୍ପଣ, ସର୍ବାଙ୍ଗ ବନ୍ଦାପନା ଇତ୍ୟାଦିରେ ଦରକାରମତେ ଚନ୍ଦନ ଘୋରି ଯୋଗାନ୍ତି ।

## ୨୮. ଗୋଛିକାର

ଏମାନେ ଗୌରୀବେତ ଧରି ଜୟ ବିଜୟ ଦ୍ୱାର ଜଗନ୍ତି । ନିଷେଧ ସମୟରେ ଦ୍ୱାରଠାରେ ଭିତରକୁ ଯାତ୍ରୀ ପ୍ରବେଶ ରୋକନ୍ତି । ଏମାନେ ପ୍ରତିହାରୀ ଗୋଷ୍ଠୀର ଅନ୍ତର୍ଭୁକ୍ତ ।

## ୨୯. ସୁନା ଗୋସ୍ୱାମୀ

ଏ ଅନେକ ସେବକଙ୍କ ଦୀକ୍ଷା ଗୁରୁ । ଏହାଙ୍କର ଦର୍ପଣୀ ବା ଦର୍ପନାରାୟଣ ମଠ ଓ ସୁନାଗୋସାଇଁ ମଠ ନାମରେ ଦୁଇଟି ମଠ ରହିଛି ।

ବନକ ଲାଗି ସମୟରେ ରତ୍ନସିଂହାସନ ତଳ ମାର୍ଜନ, ସ୍ନାନପୂର୍ଣ୍ଣିମା ଦିନ ମୁଦିରଥଙ୍କ ସହିତ ସୁନା କୂଅରୁ ୧୦୮ ଗରା ଜଳ ଆଣି ଅଧିବାସ କରିବା, ଅକ୍ଷୟତୃତୀୟାଠାରୁ ସ୍ନାନପୂର୍ଣ୍ଣିମା ଯାଏ ନିଜ ମଠରୁ ଅଳକା ଯୋଗାଇବା, ଚନ୍ଦନ ଲାଗି ବେଳେ ଆଲଟ କରିବା, ପହଣ୍ଡିରେ ଡୋରି ଧରିବା, ବଡ଼ସିଂହାର ବେଶପାଇଁ ମହାପ୍ରଭୁଙ୍କ ବାଡ଼କୁ ଶ୍ରୀପୟର ମାଳ ଯୋଗାଇବା, ଅଣସର ବେଳେ ମଇଲମ ଭୋଗ ଓ ଶୁକ୍ଳ ଫୁଲ ଗଭାମାଳ ଯୋଗାଇବା, ବାମନ ଜନ୍ମରେ କୁଶ ବିଡ଼ାଏ ଦେବା, ମକରସଂକ୍ରାନ୍ତି ଦିନ ଅଁଳା ବେଢ଼ା ରଙ୍ଗ ହେବାପାଇଁ ଗେରୁ ଯୋଗାଇବା, ଦିଅଁ ବିଜେ ପୂର୍ବରୁ ରତ୍ନସିଂହାସନରେ ଚୁଆ, ଚନ୍ଦନ, କର୍ପୂର ଆଦି ଲାଗି କରିବା, ଗୁଣ୍ଡିଚା ଘରକୁ ଠାକୁର ବିଜେ ପୂର୍ବରୁ ସିଂହାସନ ଧୋଇ ଚୁଆ ଚନ୍ଦନ ବୋଳିବା କାର୍ଯ୍ୟ କରନ୍ତି ।

ସେବା ବଂଶାନୁକ୍ରମିକ । ବ୍ରତ ପରେ ରାଜାଙ୍କଠାରୁ ଶାଢ଼ି ପାଇଲେ ସେବା କରନ୍ତି ।

## ୩୦. ମୁଦୁଲି

ପାତ୍ରସଜ, ପୂଜା ଉପକରଣ ଦାୟିତ୍ୱରେ ଥିବା ସେବକ । ଆବଶ୍ୟକତା ଅନୁଯାୟୀ ପୂଜା ଉପକରଣ ସଂପୃକ୍ତ ସେବକଙ୍କୁ ଯୋଗାନ୍ତି ଓ ଫେରାଇ ଆଣନ୍ତି । ସକାଳେ ଭିତରଚ୍ଛ ଓ ଅନ୍ୟାନ୍ୟ ସଂପୃକ୍ତ ସେବକଙ୍କ ଉପସ୍ଥିତିରେ ଦକ୍ଷିଣ, ଜୟ ବିଜୟ, କଳାହାଟ ଆଦି ଦ୍ୱାରର ମୁଦ ଖୋଲି ଭିତର କାଠରୁ ଜୟ ବିଜୟ ଦ୍ୱାର ପର୍ଯ୍ୟନ୍ତ ଚନ୍ଦନ ଛେରା ପକାନ୍ତି । ପହଡ଼ ପରେ ତିନି ଦ୍ୱାର ବନ୍ଦ କରି ଦିଅନ୍ତି । ମୁଦ୍ରା ଛାପ ଦିଅନ୍ତି ଓ ତଳିଚ୍ଛ ମୁଦ ଦିଅନ୍ତି । ଗୁଣ୍ଡିଚାଘରେ ମଧ୍ୟ ଅନୁରୂପ ସେବା କରନ୍ତି । ଚନ୍ଦନ ଯାତ୍ରା ସମୟରେ ଅଳଙ୍କାର ପେଡ଼ି ନେଇ ଚାପକୁ ଯାଆନ୍ତି । ଛେରାପହଁରା ବେଳେ ଛେରାପହଁରା ସାମଗ୍ରୀ ଧରି ଭଣ୍ଡାରମେକାପ ସହ ଉପସ୍ଥିତ ଥାନ୍ତି । ଦର୍ଶନ ବେଳେ ଯାତ୍ରୀଙ୍କ ମୁଣ୍ଡରେ ଯାଉଁଳି ବେତ ଛୁଅଁନ୍ତି ।

## ୩୧. ଆଳତି ବଳିତା ସେବା

ଏ ସେବକ ପ୍ରତିଦିନ ଠାକୁରମାନଙ୍କ ବିଭିନ୍ନ ଆଳତି ପାଇଁ ଆବଶ୍ୟକ ସଳିତା / ବଳିତା ସଂପୃକ୍ତ ସେବକମାନଙ୍କୁ ଯୋଗାନ୍ତି । ଏହା ଶାଢ଼ିବନ୍ଧା ସେବା ନୁହେଁ କିମ୍ବା ବଂଶାନୁକ୍ରମିକ ନୁହେଁ । ଏ ସେବା ସୁଆରବଡୁ ସେବାର ଅନ୍ତର୍ଭୁକ୍ତ ।

## ୩୨. ପୁରାଣ ପଣ୍ଡା

ସଂଧ୍ୟାଧୂପ ପରେ (ପୂର୍ବ ତିନି ଧୂପରେ) ଟେରା ପଡ଼ିବା ପରଠାରୁ ଫିଟିବା ଯାଏଁ କଳାହାଟ ଦ୍ୱାର ନଣ୍ଡାବର୍ତ୍ତରେ ବଇଠାରଖି ପୁରାଣ, ସଂସ୍କୃତ ଭାଗବତ ପଢ଼ନ୍ତି । ଗୁଣ୍ଡିଚା ଘରେ ମଧ୍ୟ ଅନୁରୂପ ସେବା କରନ୍ତି । ଅଣସରରେ ଓ ରଥ ଉପରେ ଏହି ସେବା ବନ୍ଦ ରହେ ।

ଏ ସେବା ଅ-ଶାଢ଼ିବନ୍ଧା । ଏମାନଙ୍କର ପତ୍ରିବଡୁ ଓ ହଡ଼ପ ନାୟକ ସେବା ମଧ୍ୟ ଅଛି ।

## ୩୩. ଦଉ ମହାପାତ୍ର

ପ୍ରତି ରବିବାର ଦିନ ଅବକାଶ ପୂର୍ବରୁ କନା ଓ କର୍ପୂର ଜଳରେ ତିନି ଠାକୁର ଓ ନୀଳମାଧବଙ୍କ ଶ୍ରୀମୁଖ ପୋଛନ୍ତି । ଗୁରୁବାର କିମ୍ବା ବୁଧବାରରେ ଅଧରପୋଛା ଓ ବନକଲାଗି, ଅଣସରରେ ଖଡ଼ି ଲାଗି, ତ୍ରୟୋଦଶୀରୁ ନେତ୍ରୋତ୍ସବ ଯାଏଁ ବନକ ଲାଗି, ନଅରକୁ ଖଡ଼ି ପ୍ରସାଦ ନେବା ଆଦି କାର୍ଯ୍ୟ କରନ୍ତି । ଶାଢ଼ିବନ୍ଧା ସେବା ନୁହେଁ । ସେବା ବଂଶାନୁକ୍ରମିକ ।

## ୩୪. ଲୁଗାଧୁଆ, ପାଣିକୁଣ୍ଡ ସେବା

ଦୈନିକ ମଙ୍ଗଳ ଆଳତି ପୂର୍ବରୁ ଏ ପାଣିକୁଣ୍ଡ ସେବକ ବିମଳା ମନ୍ଦିର ସାମନା କୂପରୁ ପାଣିଆଣି ବଟ ଅବକାଶ ମନ୍ଦିର ପିଣ୍ଡାରେ ଥିବା କୁଣ୍ଡରେ ଭରନ୍ତି (ସେବାକୁ ଆସିବା ପାଳିଆ ସେବକ ଗୋଡ଼ ଧୋଇବାପାଇଁ) । କୁଣ୍ଡ ସବୁବେଳେ ପାଣିରେ ଭରି ରହିବ । ଏହା ଶାଢ଼ି ବନ୍ଧା ସେବା ନୁହେଁ । ବ୍ରାହ୍ମଣ ସେବକ ।

ଦୈନିକ ଅବକାଶ ଶେଷ ପରେ ଚାଙ୍ଗଡ଼ା ମେକାପ ମଇଲମ ହୋଇଥିବା ତଡ଼ପ ଉତ୍ତରିମାନ ଭଣ୍ଡାର ଦ୍ୱାର ପାଖରେ ରଖିଲେ ଲୁଗାଧୁଆ ସେବକ ତାହା ଆଣି ବଟ ଅବକାଶ ଦେଉଳ ମଧ୍ୟରେ ଉକ୍ତ ଲୁଗା ଧୋଇ ଶୁଖାଇ ସେଦିନ ରାତିରେ ଭଣ୍ଡାର ଦ୍ୱାର ଚାଙ୍ଗଡ଼ାରେ ରଖି ଦେଇ ଆସନ୍ତି । ନୂତନ ସୂତାବସ୍ତ୍ର ଲାଗିହେବା ପୂର୍ବରୁ ଏ ସେବକ ସେ ସବୁ ଧୋଇ ଶୁଖାଇ ଦେବେ । ଓଢ଼ଣ ଷଷ୍ଠୀଠାରୁ ବସନ୍ତ ପଞ୍ଚମୀ ଯାଏଁ ଲାଗି ହେଉଥିବା ସୂତା ଫୁଟାମାନ ଧୋଇ ଶୁଖାଇ ଦିଅନ୍ତି ।

ଏ ବ୍ରାହ୍ମଣ ସେବକ, ଶାଢ଼ିବନ୍ଧା ସେବା ନୁହେଁ ।

## ୩୫. ବଲ୍ଲଭ ଯୋଗାଣିଆ

ଗୋପାଳବଲ୍ଲଭ ସାମଗ୍ରୀ ଯୋଗାଉଥିବା ସେବକ । ରୋଷ ହୋମ ପରେ ଧୁକୁଡ଼ି ଦ୍ୱାରଠାରେ ସୁଧ ସୁଆର ମାର୍ଫତ୍ ଏ ଭୋଗ ସାମଗ୍ରୀ ଦିଅନ୍ତି । ଏହା ପରେ ଅନ୍ୟ ମନ୍ଦିରର ପାର୍ଶ୍ୱଦେବତାଙ୍କ ପାଇଁ ଯେଉଁ ବଲ୍ଲଭ ଖଞ୍ଜା ଅଛି, ସେଠାରେ ବଲ୍ଲଭ ପହଞ୍ଚାନ୍ତି । ଅଣସର ସମୟରେ ଜୟ ବିଜୟ ଦ୍ୱାରଠାରେ ଯୋଗାନ୍ତି । ରଥ ଉପରକୁ ଗୁଣ୍ଡିଚା ଘରକୁ ପ୍ରଧାନୀ ସହ ବଲ୍ଲଭ ନିଅନ୍ତି ।

ଏମାନେ ଅ-ଶାଢ଼ିବନ୍ଧା, ବ୍ରାହ୍ମଣ ସେବକ ।

## ୩୬. ବିମାନ ବଡୁ

ପ୍ରତ୍ୟେକ ବିଜେ ପ୍ରତିମାମାନଙ୍କର ବାହାର ଓ ଭିତର ବିଜେରେ ବିମାନ, ପାଲିଙ୍କି, ରଥ ଓ ଚଉଦଳ ଏମାନେ କାନ୍ଧେଇ କରି ବିଜେ କରାଇବେ । ବ୍ରାହ୍ମଣ ସେବକ; ଶାଢ଼ିବନ୍ଧା ନୁହନ୍ତି ।

## ୩୭. ଅଣସର ସୁଧ ସୁଆର ଓ ସୁଧ ସୁଆର

**(କ) ଅଣସର ସୁଧ ସୁଆରः** ସ୍ନାନପୂର୍ଣ୍ଣିମାଠାରୁ ଉଭା ଅମାବାସ୍ୟା ଯାଏ ତାଟି ଭିତରେ ଚକଟା ଭୋଗ ସାରି ଦଇତା ବାହାରି ଆସିବା ପରେ ଏ ସେବକ ପଣାଭୋଗ ପାଇଁ ପୂଜା ଠା'

କରନ୍ତି । ପଣାଛେକ ଆସିଲେ ପୂଜା ବସିବାକୁ ପତି ମହାପାତ୍ରଙ୍କୁ ଡାକନ୍ତି । ଷଷ୍ଠି ଓ ସପ୍ତମୀରେ ଓଷ ଘରେ ଓଷବାଟି ଯୋଗାନ୍ତି । ଏକାଦଶୀ ଦିନ ଏକ ହାଣ୍ଡି ପାଣି ଓଷ ଯୋଗାନ୍ତି । ଦଶମୀ ଦିନ ଖଳି ଚୁଆ ଚନ୍ଦନ ବାଟି ଯୋଗାନ୍ତି । ଏକାଦଶୀ ରାତ୍ର ଖଳି ଯୋଗାନ୍ତି । ତ୍ରୟୋଦଶୀ ଦିନ ଏହାଙ୍କ ଘରୁ ଖଳି ବିଜେ ହୋଇ ଆସେ । ଉକ୍ତ ଦିନ ରାତ୍ର ଚକଟା ଭୋଗ ପରେ ଭିତର ଧୋପଖାଳ କରନ୍ତି । ଅମୋଣିଆ ପାଣି, ଖଳି ଲାଗିଲେ ହାତୁଆଣି ଦିଅନ୍ତି । ଚିତାଲାଗି ଓ ରାହୁ ରେଖା ଲାଗି ବେଳେ ସିଂହାସନ ତଳେ ଓଷୁଅ (ଔଷଧ) ପ୍ରସ୍ତୁତ କରି ତିନିବାଡ଼ରେ ଯୋଗାନ୍ତି । ଖସାପଡ଼ା ଲାଗିଲେ ଖଳି ପ୍ରସ୍ତୁତ କରନ୍ତି । ରେଖା ବିଜେରେ ପାହାଡ଼ା ଓ ବୋଇରାଣୀ ଲୁଗା ପକାନ୍ତି ଓ ପରେ ତାହା ପାଆନ୍ତି ।

ଏମାନେ ଶୂଦ୍ର ସେବକ । ସେବା ବଂଶାନୁକ୍ରମିକ ।

**(ଖ) ସୁଧ ସୁଆର :** ଏମାନେ ବର୍ଷ ସାରା ସେବା କରନ୍ତି । ବଲ୍ଲଭ ଯୋଗାଣିଆ ବଲ୍ଲଭ ଆଣିବା ପୂର୍ବରୁ ଏମାନେ କଳାହାଟ ଦ୍ୱାରରୁ ଜୟ ବିଜୟ ଦ୍ୱାର ଯାଏ ଝାଡୁ କରି, ଅଣସର ପିଣ୍ଡି ଧୋ ପଖାଳ କରି ଥାଳି, ପରଖ ପକାନ୍ତି । ବଲ୍ଲଭ ବାଢ଼ନ୍ତି, ଫଳ କାଟନ୍ତି । ବଲ୍ଲଭ ପରେ ଖୋଇକାରଙ୍କ ବଲ୍ଲଭ ସାଇତି, ବିମଳାଙ୍କ ପାଖକୁ ସମର୍ପଣ ପାଇଁ ନିଅନ୍ତି । ସମର୍ପଣ ପରେ ଖୋଇକାରଙ୍କୁ ବଣ୍ଟନ କରି, କୋଠ ଜିନିଷ ପସରାରେ ଦିଅନ୍ତି । ଭୋଗବେଳେ ଅଣସର ପିଣ୍ଡିରୁ ଜୟ ବିଜୟ ଦ୍ୱାର ମଧ୍ୟରେ ସଙ୍ଖୁଡ଼ି ପଡ଼ିଲେ ବାହାର କରନ୍ତି । ଭୋଗ ମାରା ହେଲେ ବାହାର କରନ୍ତି । ମହାସ୍ନାନରେ ପୂଜା ଠା' କରନ୍ତି । ପୂଜା ପରେ ଭିତର ଧୋ ପଖାଳ କରନ୍ତି । ଯାନିଯାତ୍ରା, ପର୍ବପର୍ବାଣି, ବନ୍ଦାପନା ଓ ବାହାର ବିଜେରେ ଚାଉଳ, ଘିଅ, ବଳିତା ଯୋଗାନ୍ତି । ମଙ୍ଗଳାରୋପଣ ସାମଗ୍ରୀ ଯୋଗାନ୍ତି । ମକରସଂକ୍ରାନ୍ତି ଦିନ ଅଧିବାସ ହୋଇଥିବା ଚାଉଳ ଧୋଇ ତିନୋଟି ରୁପା ଥାଳିରେ ମକର ଚାଉଳ ପ୍ରସ୍ତୁତ କରନ୍ତି । ଚନ୍ଦନ ଯାତ୍ରାରେ ଭିତରେ ପୂଜା ଠା' କରନ୍ତି । ଦୋଳରେ ମୁଦିରଥଙ୍କୁ ଫଗୁ ବଢ଼ାନ୍ତି । ଲକ୍ଷ୍ମୀ ନାରାୟଣ ଭେଟରେ ଦହିପଟୋଳ ବଢ଼ାନ୍ତି । ଦୈନିକ କୋଠଭୋଗକୁ ମୁଗ ଭାଜି ଡାଲି ଯୋଗାନ୍ତି ।

ଏମାନେ ଦଇତା ଗୋଷ୍ଠୀର ସେବକ । ସେବା ବଂଶାନୁକ୍ରମିକ ।

## ୩୮. ହଡ଼ପ ନାଏକ

ଏ ସେବକ ଠାକୁରମାନଙ୍କ ବିଡ଼ିଆ ମଣୋହିପାଇଁ ବିଡ଼ିଆ ଯୋଗାନ୍ତି । ଶାଢ଼ିବନ୍ଧା ବ୍ରାହ୍ମଣ ସେବକ; ସେବା ବଂଶାନୁକ୍ରମିକ ।

## ୩୯. ବିଡ଼ିଆ ଯୋଗାଣିଆ

ଏ ସେବକ ଦୈନିକ ଓ ପର୍ବପର୍ବାଣିରେ ଯେତେ ପ୍ରକାର ବିଡ଼ିଆ ଯେଉଁ ଯେଉଁ ସମୟରେ ଦରକାର, ତାହା ହଡ଼ପ ଘରେ ତିଆରି କରି ହଡ଼ପ ନାଏକଙ୍କ ଜିମା ଦିଅନ୍ତି । ମକରସଂକ୍ରାନ୍ତିରେ ୬ଟି ପାନ ଚୂଳ ତିଆର କରି ଯୋଗାନ୍ତି ।

ବ୍ରାହ୍ମଣ ସେବକ, ସେବା ବଂଶାନୁକ୍ରମିକ । ଶାଢ଼ି ବନ୍ଧା ସେବକ ନୁହନ୍ତି ।

## ୪୦. ଖଟୁଲି ସେବକ

ବିଭିନ୍ନ ନୀତିରେ ଖଟୁଲି ପକାଉ ଥିବା ସେବକ । ଶାଢ଼ି ବନ୍ଧା ବ୍ରାହ୍ମଣ ସେବକ; ସେବା ବଂଶାନୁକ୍ରମିକ ।

## ୪୧. ଆସ୍ଥାନ ପ୍ରତିହାରୀ (ପଢ଼ିଆରୀ)

ମଧ୍ୟାହ୍ନ ଧୂପ ପରେ ଦକ୍ଷିଣୀ ଘରେ ପାଣି ପକାଇ ପୂଜା ଠା' କରି ବାହାର ଦେଉଳି ରୋଷ ଘରକୁ ଭୋଗ ଡାକିବାକୁ ଯାଆନ୍ତି । ପୂଜା ସରିଲେ ଦ୍ୱାର ମୁହଁରେ ଟେରା ପକାନ୍ତି । ଗୁରୁବାର ମାଜଣା ନୀତିରେ ଟେରା ଧରି ଠିଆ ହୁଅନ୍ତି । ଦୀପାବଳୀରେ ଜୟବିଜୟ ଦ୍ୱାରରେ ଚାଉଳରେ ଗଛ କରି ଦୀପ ବସାନ୍ତି । ଫଗୁ ଦଶମୀଠାରୁ ତ୍ରୟୋଦଶୀ ପର୍ଯ୍ୟନ୍ତ ଘଟୁଆରିଠାରୁ ଫଗୁ ନେଇ ନୀତିରେ ଲଗାନ୍ତି । ଦୋଳ ବେଦୀରେ ବନ୍ଦାପନା ପାଇଁ ସାମଗ୍ରୀ ଯୋଗାନ୍ତି । ପୂର୍ଣ୍ଣିମା ଦିନ ନାଭିକଟା ମଣ୍ଡପରେ ଭୋଗ ଡାକନ୍ତି । ଚନ୍ଦନ (୨୧ ଦିନ) ଯାତ୍ରାରେ ମଦନ ମୋହନଙ୍କ ଚାପରେ ମଣିମା ଡାକ ଦିଅନ୍ତି; ମାଣ୍ଡୁଅ ଭୋଗ ଡାକି ଯାଆନ୍ତି ଓ ଟେରା ପକାନ୍ତି । ପ୍ରତ୍ୟେକ ବାହାର ବିଜେରେ ଭୋଗ ଡାକିଯିବା ଓ ଟେରା ପକାଇବା ଏହାଙ୍କର କାର୍ଯ୍ୟ ।

ଶାଢ଼ିବନ୍ଧା, ବଂଶାନୁକ୍ରମିକ ସେବକ ।

## ୪୨. କୋଠଭୋଗ ଯୋଗାଣିଆ

ଏମାନେ ପ୍ରତ୍ୟେକ ଦିନ କୋଠ ଗୋଦାମରୁ ଗୁଡ଼, ଘିଅ, ଭୋଗ ଜିନିଷ, କାଠ ରୋଷଘରକୁ ନେଇ ରୋଷ ପାଇକ ଜିମାରେ ଦେବେ । ଗୋଦାମରୁ ଚାଉଳ ନେଇ ଚାଉଳ ବଛା କରଣକୁ ଦେବେ । ରଥ ଯାତ୍ରାରେ ସବୁ କୋଠଭୋଗ ଦ୍ରବ୍ୟ ଶ୍ରୀମନ୍ଦିର ଗୋଦାମରୁ ଗୁଣ୍ଡିଚା ଘର ରୋଷଘରେ ଦେବେ । ଚନ୍ଦନ ଯାତ୍ରାରେ କୋଠଭୋଗ ଜିନିଷ ଗୋଦାମରୁ ନେଇ ଯୋଗାନ୍ତି । ନବାଙ୍କ ଦିନ ଚାଉଳ ମେଲାଣ କରନ୍ତି ।

ଶାଢ଼ିବନ୍ଧା ଶୂଦ୍ର ସେବକ । ସେବା ବଂଶାନୁକ୍ରମିକ ।

## ୪୩. ପ୍ରଧାନି

ଅବକାଶ ଶେଷ ପରେ ରୋଷଆଡ଼ ସଫା ହୋଇଛି କି ନାହିଁ ଦେଖିବେ, ରୋଷ ପାଇକ ହୋମକାଠ ଲଗାଇବା ପରେ ପୂଜାପଣ୍ଡାଙ୍କୁ ହୋମ କରିବାକୁ ଡାକି ନେବେ । ବଲ୍ଲଭ ପୂଜା ଠା' ହେଲେ ପୂଜାପଣ୍ଡାଙ୍କୁ ଡାକିବେ, ସକାଳ ଧୂପରେ ପ୍ରତିହାରୀ ଟେରା ବାନ୍ଧିବା ପରେ ମୁରୁଜ ପକାଇବାକୁ ପୂଜାପଣ୍ଡାଙ୍କୁ ଡାକିବେ । ମୁରୁଜ ପଡ଼ି ସାରିଲେ ପ୍ରତିହାରୀ ସାଙ୍ଗରେ ଭୋଗ ଡାକିବାକୁ ରୋଷକୁ ଯିବେ । ଭୋଗ ଆସିଲାବେଳେ ଆଗରେ ରହି ଲୋକ ଆଡ଼େଇବେ । ମହାପ୍ରଭୁଙ୍କ ଆଡ଼ ଥାଳି ବେହେରା ପନ୍ତିବଡୁ ସଙ୍ଗେ ନେଇ ବିମଳା ମନ୍ଦିରକୁ ଯିବେ, ଖେଇ ଦେଇ ମୁକ୍ତିମଣ୍ଡପକୁ ନେଇ ରାଜାଙ୍କୁ ଆଶୀର୍ବାଦ କରାଇବେ । ଏ ସେବକ ସମସ୍ତ ଧୂପ ପୂଜାରେ ପୂଜାପଣ୍ଡାଙ୍କୁ ଭୋଗ ଲଗାଇବାକୁ ଡାକିବେ । ବାହାର ଦେଉଳି ଭୋଗପାଇଁ ମଧ୍ୟ ପୂଜାପଣ୍ଡାଙ୍କୁ ଡାକିବେ । 'ଘଣ୍ଟ,

ଛତା, ଭୋଗ' ମାନଙ୍କରେ ତଳିଛ ସହ ହାତ ପଇଠ ହୋଇ ଆଗରେ ଆସିବେ । ବଳି ସମୟରେ ସିନ୍ଦୂର, ମନ୍ଦାରମାଳ ନେଇ କଟାଏତ ଗଳାରେ ଦେବେ ଓ ପୂଜା କରିଥିବା ଖଡ଼ଗ ଆଣି କଟାଏତ ହାତରେ ଦେବେ । ମହାସ୍ନାନରେ ଗନ୍ଧଣ ମେକାପଠାରୁ ଜିନିଷ ଆଣି ସୁଧସୁଆରଙ୍କୁ ଦେବେ ।

ଶାଢ଼ିବନ୍ଧା ବ୍ରାହ୍ମଣ ସେବକ ।

## ୪୪. ପାଇକ

ଡକାହକା କରୁଥିବା ଚର୍ଚ୍ଚା ସେବକ । ଦଳେଇ ଦଳବେହେରାଙ୍କ ନିର୍ଦ୍ଦେଶରେ କାମ କରିବେ । ଯେତେବେଳେ ଯେଉଁ ସେବାପାଇଁ ସେବକ ଆବଶ୍ୟକ ତାଙ୍କୁ (ପୂଜାପଣ୍ଡାଙ୍କ ଛଡ଼ା) ସାହିକୁ ଯାଇ ଡାକିଆଣି ସେବାରେ ହାଜର କରାଇବେ । ମଧ୍ୟାହ୍ନ ଧୂପ ପରେ ଦକ୍ଷିଣୀ ଘର ନୃସିଂହ ଓ ଲକ୍ଷ୍ମୀଙ୍କ ଦେଉଳରେ ବାହାର ଦେଉଳି ଭୋଗ ଉଠାଇ ପୂଜାପଣ୍ଡାଙ୍କୁ ଡାକି ପୂଜା କରାଇବେ । ଚନ୍ଦନ ମଣ୍ଡପ ଓ ଗୁଣ୍ଡିଚା ଘରେ ଅନୁରୂପ କାର୍ଯ୍ୟ କରିବେ । ଭୋଗମଣ୍ଡପରେ ଯେତେ ଅଧିବାସ ହେବ ତାକୁ ଜଗି ରଖିବେ । ବିମଳାଙ୍କ ଷୋଳପୂଜା ସଙ୍କୁଡ଼ି ଭୋଗ ପଶ୍ଚିମଦ୍ୱାର ବାଟେ ବାହାର କରିବେ ।

ଶାଢ଼ିବନ୍ଧା ସେବା ନୁହେଁ । ସେବା ବଂଶାନୁକ୍ରମିକ ।

## ୪୫. ଲେଙ୍କା

ପ୍ରତିଦିନ ଭୋର ସମୟରେ ପାଳିଆ ପତ୍ରି, ଗରାବଡ଼ୁଙ୍କୁ ଡାକିଆଣନ୍ତି । ବେହରଣ ସ୍ଥାନରେ ଲାଗିହେବା ଜିନିଷ ଆସିଲେ ଦେଉଳକରଣଙ୍କୁ କହି ମନ୍ଦିର ଅଫିସରେ ଦାଖଲ କରାନ୍ତି । ସ୍ନାନପୂର୍ଣ୍ଣିମାରେ ହାତୀ ବେଶ ସାମଗ୍ରୀ ଆଣିବାକୁ ରାଘବ ଦାସ ଓ ଗୋପାଳତୀର୍ଥ ମଠକୁ ଯାଆନ୍ତି । ସେହି ରାତିରେ ଚିତ୍ରକାର ଘରୁ ଘଣ୍ଟ ଛତା ସହ ଚିତ୍ର ପଟି ବିଜେ କରି ଆଣନ୍ତି । ଅଣସରରେ ଦଇତାମାନଙ୍କୁ ଡାକନ୍ତି । ଶ୍ରୀଗୁଣ୍ଡିଚା ଯାତ୍ରା ଦିନରେ ଦିଅଁଙ୍କ ସହିତ ଯାଆନ୍ତି । ଭଣ୍ଡାର ଘରୁ ଚକ୍ର ନେଇ ମଦନମୋହନଙ୍କ ଚାପରେ ଠିଆ ହୁଅନ୍ତି । ନବକଳେବରରେ ଦାରୁ ଅନ୍ୱେଷଣରେ ଚକ୍ର ଧରି ଯାଆନ୍ତି । ଧ୍ୱଜାବନ୍ଧାରେ ଉପସ୍ଥିତ ରହନ୍ତି ଇତ୍ୟାଦି ।

ଲେଙ୍କା ସେବା ୪ ପ୍ରକାର- ବରଗଣିଆ ଲେଙ୍କା, ତାଟ ଲେଙ୍କା, ଛାମୁଲେଙ୍କା ଓ ପାଳିଆ ଲେଙ୍କା । ଶାଢ଼ିବନ୍ଧା ଶୂଦ୍ର ସେବକ । ସେବା ବଂଶାନୁକ୍ରମିକ ।

## ୪୬. ସୁଆର ମହାସୁଆର ନିଯୋଗ

ସୁଆର-ମହାସୁଆର ସମସ୍ତ ସେବକ; ଯଥା- ବଡୁ ସୁଆର, ମହାସୁଆର, ପନ୍ତିବଡୁ, ତୋଳା ବଡୁ ଇତ୍ୟାଦି ସୂପକାର ଶ୍ରେଣୀର ସେବକମାନେ ଏହି ନିଯୋଗର ଅନ୍ତର୍ଭୁକ୍ତ । କୋଇଲି ବୈକୁଣ୍ଠ ନିଯୋଗ ଗୃହରେ ଆଟିକା ଆମଦାନୀ କରି ପାଉଣା ପାଆନ୍ତି । ଜଳ ତୁଳସୀ ଯୋଗାଇ ଓ ସଂକଳ୍ପରେ ପାଉଣା ପାଆନ୍ତି । ମନ୍ଦିରରୁ ଯେ ତୁଣିଆ ମାହାଲ ନିଲାମ ନିଏ ସେ ନିଯୋଗକୁ ପାଉଣା ଦିଏ । ମଠବାଡ଼ିରୁ ଓ ଯଜମାନି ବେଶରୁ ପାଉଣା ମିଳେ ।

ପୂର୍ବରେ ସୁଆର ନିଯୋଗ ନାୟକମାନେ କୋଠଭୋଗ ସୁଆର ନିଯୁକ୍ତି, ନିଯୋଗ ପରିଚାଳନା, କୋଇଲି ବୈକୁଣ୍ଠରେ ଆୟ ଆମଦାନୀ ଓ ଦାରୁ ଘର ଦାୟିତ୍ୱ ତୁଲାଉଥିଲେ । ବର୍ତ୍ତମାନ ଏ ସବୁ କାର୍ଯ୍ୟ ନିଯୋଗ ନିୟମାନୁଯାୟୀ ଗଠିତ କମିଟି ଦ୍ୱାରା କରାଯାଉଛି । କମିଟିରେ ସଭାପତି, ସଂପାଦକ ଆଦି ନିର୍ବାଚିତ କର୍ମକର୍ତ୍ତା ଅଛନ୍ତି ।

## ୪୭. ମହାସୁଆର

ପ୍ରତିଦିନ ରୋଷନାୟକ ସହ ବୁଲି ରୋଷ ପରିଷ୍କୃତି ଦେଖି ରୋଷ ହୋମପାଇଁ ଅନୁମତି ଦେବା, ରନ୍ଧନ କାର୍ଯ୍ୟ ତନଖିବା, ହରିବଲ୍ଲଭ ତାଟ ପିଠା ନିଜେ ରାନ୍ଧିବା, ଅବାଞ୍ଛିତ ବ୍ୟକ୍ତି ଯେପରି ରୋଷଘରେ ପ୍ରବେଶ ନକରନ୍ତି ତାହା ଦେଖିବା, ବଲ୍ଲଭରେ ସୁଧସୁଆରଠାରୁ ଭୋଗ ସାମଗ୍ରୀ ନେଇ ପନ୍ତିରେ ବାଢ଼ିବା, ମଠବାଡ଼ିର ବଲ୍ଲଭ ଭୋଗ ସୁଆର ବଡୁଠାରୁ ନେଇ ଭୋଗରେ ବାଢ଼ିବା, ଗରାବଡୁଠାରୁ ଘଷାଦଳ ନେଇ ପନ୍ତିରେ ଲଗାଇବା, ଭୋଗ ପୂଜା ବସିବା ଆଗରୁ ସମସ୍ତ ନୈବେଦ୍ୟ ଠିକ୍ ଭାବରେ ପ୍ରସ୍ତୁତ ହୋଇଛି କି ନାହିଁ ଦେଖିବା, ପ୍ରତିହାରୀଙ୍କୁ ଭୋଗ ଡାକିବା ସକାଶେ ଖବର ଦେବା, ପ୍ରତି ଧୂପରେ ପ୍ରଥମ ଛେକ ପନ୍ତିରେ ବାଢ଼ିବା, ସେଠାରେ ଉପସ୍ଥିତ ହୋଇ ଯାହା ପରେ ଯାହା ମଣୋହି ଯୋଗ୍ୟ ସେହି ପ୍ରକାରେ ବାଢ଼ିବା, ଟେରା ପଡ଼ିବା ପୂର୍ବରୁ 'ଭୋଗ ମଣୋହି କରିବା ହେଉ' ବୋଲି ପୂଜାପଣ୍ଡାଙ୍କୁ କହିବା, ମଣୋହି ସମୟରେ ଖଦି ଧରି ବିଞ୍ଚିବା, ହରିବଲ୍ଲଭ ତାଟରେ ଉଲାଖିମାନ ବାନ୍ଧି ଗଣେଶ ଚିହ୍ନ ମୋହର ଦେଇ ପ୍ରସାଦ ବଡୁ ନିକଟରେ ମଣାଇବା, ଅମାବାସ୍ୟା ବିଜେ, ଚନ୍ଦନ ଯାତ୍ରା ଇତ୍ୟାଦି ବାହାର ବିଜେରେ ଛାମୁରେ ପନ୍ତି ବାଢ଼ିବା ଓ ଘଷା ଜଳ ଲଗାଇବା, ରାମ, କୃଷ୍ଣ ଓ ବାମନ ଜନ୍ମରେ ଗଣ୍ଡୂଷ ମସଲା ଓ ସରଲବଣୀ ବାଢ଼ିବା, ରୁକ୍ମିଣୀ ବିଭାବେଦୀରେ, ଶୀତଳ ଷଷ୍ଠୀ ପଞ୍ଚମହାଦେବଙ୍କ ନିକଟରେ ପନ୍ତି ବାଢ଼ିବା, କୁମାର ପୂର୍ଣ୍ଣିମା ଦିନ ଗୋଟା ଫଳଗୁଡ଼ିକ ଛାମୁରେ ବାଢ଼ିବା, ବାଳ ଧୂପ ପନ୍ତିରେ ବାଢ଼ିବା ଇତ୍ୟାଦି କାର୍ଯ୍ୟ କରନ୍ତି । ବ୍ରାହ୍ମଣ ସେବକ, ସେବା ବଂଶାନୁକ୍ରମିକ । ଶାଢ଼ିବନ୍ଧା ସେବକ ନୁହନ୍ତି । ବ୍ରତ ପରେ ସ୍ନାନପୂର୍ଣ୍ଣିମା ଦିନ ଛେକ ନେଇ ନିଯୋଗର ଅଂଶୀଦାର ହୁଅନ୍ତି ।

## ୪୮. ଜଗିଆ ମହାସୁଆର ବା ରୋଷ ଅମିନ

ବଡୁସୁଆରଙ୍କୁ ଭୋଗ ନିମନ୍ତେ କୋଠଭୋଗ ଜିନିଷ ଦିଅନ୍ତି । ପିଠାପଣାରେ କେତେ ଘିଅ ବ୍ୟବହୃତ ହେଲା ତନଖି କରନ୍ତି । ମଧ୍ୟାହ୍ନ ଧୂପରେ ଘିଅ ଓ ପଣା ପଠାନ୍ତି । ଥାଳିରେ ଘିଅ ପଡ଼ିଲାବେଳେ, ପଣାରେ ଛାଟ ବା ଚିନି ପଡ଼ିଲା ବେଳେ ଦେଖନ୍ତି । ଚୁଲି ଓ ପନ୍ତି ଗୋଳମାଳ ସବୁ ଦେଖନ୍ତି ଓ ଦେଉଳକରଣଙ୍କୁ ରିପୋର୍ଟ କରନ୍ତି । ପର୍ବ ଯାତ୍ରାରେ ଭୋଗ ପ୍ରସ୍ତୁତିପାଇଁ ଦେଉଳକରଣଙ୍କଠାରୁ ଭୋଗ ଉଠିଆ ତାଲିକା ନେଇ ବଡୁସୁଆରଙ୍କୁ ବରାଦ କରି ପ୍ରସ୍ତୁତ କରାନ୍ତି । ଲକ୍ଷ୍ମୀଙ୍କ ରୋଷ ଘରେ ଭୋଗ ପ୍ରସ୍ତୁତି ସମୟରେ ଜଗନ୍ତି ଓ ତତ୍ତ୍ୱ ନିଅନ୍ତି ।

## ୪୯. ବଢ଼ୁସୁଆର

ଅମାଲୁ ସୁଆର, ତୁଣ ସୁଆର, ଥାଳି ସୁଆର, ତୋଳାବଢ଼ୁ, ପାଗୁଆ, ଚଣାପୁଆ, ବିଣ୍ଡୁଆ, ପିଠା ସୁଆର ଏହି ବଢ଼ୁସୁଆର ଗୋଷ୍ଠୀର ସେବକ ।

**ଅମାଲୁ ସୁଆର** : ଦୈନିକ କୋଠ ଭୋଗପାଇଁ ଅମାଲୁ ଓ ପର୍ବପର୍ବାଣିରେ ମୋଡ଼ିଆ ସରୁଚକୁଳି ଓ ଅମାଲୁ ପ୍ରସ୍ତୁତ କରନ୍ତି ।

**ଚଣାପୁଆ** : ଲଡୁ, ପାରିଜାତକ, ଲୁଣ ଖୁରୁମା, ଛୋଟ ପିଠା କରନ୍ତି । ଅଟା, ଚୂନା କାମ ଆଦି କରି ରଖନ୍ତି । ଭଜା ଭାଜନ୍ତି ।

**ତୁଣ ସୁଆର** : ଦୈନିକ ଓ ପର୍ବପର୍ବାଣି ନିମନ୍ତେ ସମସ୍ତ ତିଉଣ, ଖିରି, କଡ଼ମ୍ବା, ପଖାଳ, କାନିକା ରାନ୍ଧନ୍ତି ।

**ତୋଳାବଢ଼ୁ** : ବିଣ୍ଡୁଆ ଓ ପାଗୁଆ ରଖିଥିବା ଜିନିଷମାନ ଗଣତି କରି ତାଡ଼ମାନଙ୍କରେ ରଖି ବାଘମୁହାଁ ବାନ୍ଧି ଛେକ ନେଇ ବାଡ଼ ଅନୁଯାୟୀ ଲଗାନ୍ତି । ଭୋଗ ସରିଲେ ଭୋଗ ସାଇତା ସୁଆରବଢ଼ୁଙ୍କୁ ମଣାଇବେ ।

**ଥାଳି ସୁଆର** : ଥାଳି ଅନ୍ନ, ଥାଳି ଖେଚୁଡ଼ି, ସାଦା ଓରିଆ, ସଂଧ୍ୟାଧୂପ ପଖାଳ ରାନ୍ଧନ୍ତି ।

**ପାଗୁଆ** : ଚଣା ପାଗ କରନ୍ତି । ଏଣ୍ଡୁରି, ମଣ୍ଡା, ଗଇଁଠା ଆଦି କରନ୍ତି ।

**ପିଠା ସୁଆର** : କୋଠ ଭୋଗ ଓ ପର୍ବପର୍ବାଣି ପିଠା କରନ୍ତି ।

**ବିଣ୍ଡୁଆ** : ପିଠାର ବିଣ୍ଡ କରି ତହିଁରେ ମସଲା ମିଶାନ୍ତି । ଅଟା, ବିରି, ଚୂନା ଆଦି ଚକଟି ସମସ୍ତ ଜିନିଷ ପ୍ରସ୍ତୁତ କରି ସୁଆରଙ୍କୁ ଯୋଗାନ୍ତି । ବଢ଼ୁସୁଆରମାନେ ବଂଶାନୁକ୍ରମିକ ସେବକ ।

## ୫୦. ପନ୍ତିବଢ଼ୁ, ବିଡ଼ୁଆ ପନ୍ତିବଢ଼ୁ

ସକାଳ ଧୂପରେ ଥାଳି ସୁଆର ରାନ୍ଧି ବିଡ଼ୁଆ ପନ୍ତିବଢ଼ୁକୁ ମଣାଇଲେ ସେମାନେ ମୂର୍ତ୍ତିମୂଳ କରନ୍ତି । ପାଳିଆ ପନ୍ତିବଢ଼ୁ ବିଡ଼ୁଆଠାରୁ ନେଇ ମହାସୁଆର ସହ ଛେକ ନେଇ ଛାମୁରେ ଥାଳିରେ ବାଢ଼ନ୍ତି । ପାଳିଆ ପନ୍ତିବଢ଼ୁ ୬ କୁଡ଼ୁଆ, ବିଡ଼ୁଆ ପତ୍ରିବଢ଼ୁ ୪ ଓ ବେହେରା ପନ୍ତିବଢ଼ୁ ୪ କୁଡ଼ୁଆ ଖେଚେଡ଼ି ଯଥାକ୍ରମେ ବଳଭଦ୍ର, ସୁଭଦ୍ରା, ସୁଦର୍ଶନ ଓ ଜଗନ୍ନାଥଙ୍କ ବାଡ଼ରେ ବାଢ଼ନ୍ତି । ପାଳିଆ ଅନ୍ୟ କୋଠଭୋଗ ଜିନିଷ ଥାଳି ସୁଆର ଓ ତୁଣ ସୁଆରଠାରୁ ନେଇ ଛାମୁରେ ଲଗାନ୍ତି । ଭୋଗ ପରେ ବାହାରକୁ ଆଣନ୍ତି । ବିମଳାଙ୍କୁ ସମର୍ପଣ ପାଇଁ ପାଳିଆ ବଡ଼ ବାଡ଼ ଥାଳି ନିଅନ୍ତି । ଭୋଗ ପରେ ପାଳିଆ ପନ୍ତିବଢ଼ୁ ବଡ଼ବାଡ଼ର ଥାଳି ବିମଳାଙ୍କୁ ସମର୍ପଣ ପାଇଁ ନିଅନ୍ତି । ସମର୍ପଣ ପରେ ଫେରାଇ ଆଣି ମୁକ୍ତିମଣ୍ଡପରେ ବ୍ରାହ୍ମଣମାନଙ୍କୁ ବଣ୍ଟନ କରିବାପାଇଁ ପ୍ରଧାନୀଙ୍କୁ ଦିଅନ୍ତି । ମଧ୍ୟାହ୍ନ ଧୂପରେ ମଧ୍ୟ ସେହିପରି ବେହେରା, ପାଳିଆ ଓ ବିଡ଼ୁଆ ପନ୍ତିବଢ଼ୁ କାର୍ଯ୍ୟ କରନ୍ତି । ବିଡ଼ିଆ ପନ୍ତିବଢ଼ୁ ଥାଳିମାନଙ୍କରେ (୪ବାଡ଼ରେ) ଘିଅ ପରଷେ । ଭୋଗ ମଣ୍ଡପରେ ଏମାନଙ୍କର କିଛି କାର୍ଯ୍ୟ ନାହିଁ । ସଂଧ୍ୟାଧୂପରେ ପନ୍ତିବଢ଼ୁ ପଖାଳ ଓ ଶାକରା ପନ୍ତିରେ ଲଗାନ୍ତି । ବଡ଼ସିଂହାର ଭୋଗରେ ଏମାନଙ୍କର କିଛି କାର୍ଯ୍ୟ ନାହିଁ । ବଲ୍ଲଭ-ବଡ଼ସିଂହାର ଭୋଗରେ ପାଳିଆ ପନ୍ତିବଢ଼ୁ ମହାସୁଆର ସହ ଛେକ ନେବେ । ରଥ ଉପରେ କିଛି

କାମ ନାହିଁ । ପର୍ବଯାତ୍ରା ସଙ୍ଖୁଡ଼ି ଭୋଗ, ଚନ୍ଦନ ଯାତ୍ରା, ଚାଚେରୀରେ ପାଳିଆ ପନ୍ତିବଡୁ ଖେଚେଡ଼ି ଭୋଗ, ପଖାଳ ଇତ୍ୟାଦି ତୋଳନ୍ତି । ବିଡୁଆ ପନ୍ତିବଡୁ ମକରରେ ଅନ୍ୟ ପନ୍ତିବଡୁଙ୍କ ସହ ମକର ଥାଳି ଧରି ବଡ଼ଦେଉଳକୁ ତିନିଥର ବେଢ଼ା ବୁଲନ୍ତି ।

ଏମାନେ ସୂପକାର ଶ୍ରେଣୀ ସେବକ; ସେବା ବଂଶାନୁକ୍ରମିକ ।

## ୫୧. ଅମାଲୁ ତୋଳି ଓ ପୁର ଖରଡ଼ା

ଏମାନେ ସାତପୁରୀ ଅମାବାସ୍ୟାରେ ସବୁ ପୁର ଖରଡ଼ନ୍ତି ଓ ପ୍ରତ୍ୟହ ସଂଧ୍ୟାଧୂପ ପରେ ଅମାଲୁ କୋଠଭୋଗ ରୋଷରୁ ଛାମୁକୁ ନିଅନ୍ତି । ଏମାନେ ସୂପକାର ଶ୍ରେଣୀର ସେବକ ।

## ୫୨. ତୋଳାବଡୁ

ମୁହଁରେ ବାଘମୁହାଁ (ତୁଣ୍ଡି) ବାନ୍ଧି ଅମୋଣିଆ ତୋଳି ଛେକରେ ନେଉଥିବା ସେବକ ।

## ୫୩. ରୋଷ ପାଇକ

ରୋଷ ଧୋପଖାଳ ଓ ଶୁଦ୍ଧ ହେବା ପରେ ଅମୋଣିଆ ପରିଛା ଓ ମହାସୁଆରଙ୍କୁ କହନ୍ତି । ହୋମ ବିଷୟରେ ଠିକ୍ ଠାକ୍ କହିଲେ ଭୋଗ ହୁଏ । କୋଠଭୋଗ ଯୋଗାଣିଆ କୋଠଭୋଗ ଜିନିଷ ଦେଲେ ଏମାନେ ଜଗିଆ ମହାସୁଆର ଜିମାଦେଇ ରୋଷଦ୍ୱାର ଜଗନ୍ତି । ପତ୍ରୀବଡୁ ଏହାଙ୍କ ପାଖରୁ ମଧୁପର୍କ ଗୁଡ଼ ନିଅନ୍ତି । ଦାଢ଼ି ନିଶ ରଖିଥିବା, ସିନ୍ଦୂର ଲଗାଇଥିବା, ମହାପ୍ରସାଦ ଧରିଥିବା, ଅଶୁଦ୍ଧ ବ୍ୟକ୍ତିଙ୍କୁ ରୋଷକୁ ଛାଡନ୍ତି ନାହିଁ । ଏ ସେବକ କୁଆକୁ ଅଡ଼ାଇବା ପାଇଁ ଛେକ ଆଗରେ କାଠଖଣ୍ଡ ଧରି ଧୁକୁଡ଼ି ଦ୍ୱାର ଯାଏଁ ଯାଆନ୍ତି । ଏମାନେ ବୈଷ୍ଣବାଗ୍ନି ଦିଅନ୍ତି । ଏମାନେ ସୂପକାର ଗୋଷ୍ଠୀର ସେବକ ।

## ୫୪. ବାହାର ଦେଉଳି ସୁଆର

ଦୈନିକ ଗୋଦାମରୁ ଯୋଗାଣିଆଠାରୁ କୋଠଭୋଗ ଜିନିଷ ନେଇ ଲକ୍ଷ୍ମୀଙ୍କ ରୋଷରେ (ବାହାର ଦେଉଳି ରୋଷ) ପିଠା ତିଆର କରନ୍ତି ଓ ବିଣ୍ଡ ଭୋଗ ଛେକ ଲକ୍ଷ୍ମୀଙ୍କ ଦେଉଳକୁ ନିଅନ୍ତି । ଏମାନେ ସୁଆର ଗୋଷ୍ଠୀର ସେବକ ।

## ୫୫. ବାହାର ଦେଉଳି ଯୋଗାଣିଆ

ଏମାନେ ପ୍ରତିଦିନ ସକାଳ ଧୂପ ପରେ ଗୋଦାମରୁ ବାହାର ଦେଉଳି ଭୋଗର ଅମୁଣିଆ ଜିନିଷ ନେଇ ଲକ୍ଷ୍ମୀଙ୍କ ରୋଷଘରେ ବାହାର ଦେଉଳି ସୁଆର ଜିମା ଦିଅନ୍ତି । ଲକ୍ଷ୍ମୀଙ୍କ ରୋଷ ଧୋପଖାଳ କରନ୍ତି । ରୋଷକୁ ବିମଳାଙ୍କ କୂଅରୁ ପାଣି ଯୋଗାନ୍ତି । ବାହାର ଦେଉଳି ଭୋଗ ଦକ୍ଷିଣ ଘରକୁ ନେବାବେଳେ ରୋଷ ଆଡୁ କାଠ ଖଣ୍ଡେ ଧରି ଜଗି ଛେକ ସହ ଆସନ୍ତି । ପତି ମହାପାତ୍ରଙ୍କ ନୃସିଂହ ନିକଟକୁ ଭୋଗ ନେଲେ ଜଗି ତାଙ୍କ ସହ ଯାଆନ୍ତି । ପାର୍ଶ୍ୱ ଦେବତାଙ୍କ ସେବକମାନେ ଏହାଙ୍କ ମାର୍ଫତ୍‌ରୁ ଯେଝା ଠାକୁରଙ୍କ ପାଇଁ ଭୋଗ ନିଅନ୍ତି ।

ବ୍ରାହ୍ମଣ ସେବକ, ସେବା ବଂଶାନୁକ୍ରମିକ । ଶାଢ଼ିବନ୍ଧା ନୁହଁନ୍ତି ।

## ୫୬. ରୋଷ ଧୋପଖାଳିଆ, ଅଙ୍ଗାରୁଆ, ଗୋବରପାଣିଆ

**ରୋଷ ଧୋପଖାଳିଆଃ** ଦୈନିକ ବଡ଼ସିଂହାର ଧୂପ ଶେଷ ପରେ ରୋଷ ଘରମାନ ଓଳାଇ ସଫାକରି ସର୍ଙ୍ଗୁଡ଼ିସବୁ ବାହାର କରି ରୋଷ ମୁହଁ ଅଗଣାରେ ପକାଇଦେବେ । କାର୍ତ୍ତିକ ମାସ ଓ ପହିଲି ଧୂପରେ କୋଠଭୋଗ ରୋଷ କେବଳ ବଡ଼ସିଂହାର ଧୂପ ପରେ ଧୋପଖାଳ ହୁଏ । ଅନ୍ୟ ସବୁ ରୋଷ ଦ୍ୱିପ୍ରହର ଧୂପ ପରେ ହୁଏ ।

**ଅଙ୍ଗାରୁଆଃ** ଏମାନେ ଚୁଲିମାନଙ୍କରୁ ଅଙ୍ଗାର ଓ ପାଉଁଶ କାଢ଼ି ବାହାରେ ପକାଇବେ । ନଳା ସଫା କରିବେ ।

**ଗୋବର ପାଣିଆଃ** ରନ୍ଧା ଚୁଲି ଓ ତଳ ସବୁଠାରେ ଗୋବରପାଣି ଛେରା ପକାନ୍ତି । ଜମାଇଥିବା ଅଳିଆ ବାହାରେ ପକାନ୍ତି ଓ ରୋଷ ଅଗଣା ଧୋପଖାଳ କରନ୍ତି ।

ଧୋପଖାଳିଆ ରୋଷ ଧୁଅନ୍ତି ଓ ହୋମ ସକାଶେ କୋଠଭୋଗ ଚୁଲିରୁ ନିଆଁ ଆଣି ଯୋଗାନ୍ତି । ଏମାନେ ଶାଢ଼ିବନ୍ଧା ବ୍ରାହ୍ମଣ ସେବକ । ସେବା ବଂଶାନୁକ୍ରମିକ ।

## ୫୭. ହାଣ୍ଡି ଯୋଗାଣିଆ ଓ ତୋଳାବତୀ ସେବା

କୁମ୍ଭାର କୋଠଭୋଗ ନିମନ୍ତେ ଆବଶ୍ୟକ ମାଟି ପାତ୍ର ଓ ମୁଦପାଇଁ ମାଟି ଏହି ସେବକଙ୍କ ମାର୍ଫତ୍‌ରେ ଦିଅନ୍ତି । ଏ ମଧ୍ୟ ତୋଳାବତୀ ସେବା କରନ୍ତି । ରାତିରେ ହେଉଥିବା ଭୋଗମାନଙ୍କ ଛେକ ଆଗରେ ଦୀପ ଦେଖାଇ ଯାଆନ୍ତି । ସୂପକାର ଶ୍ରେଣୀର ସେବକ ।

## ୫୮. ବିରିବଟା ସମର୍ଥା ସେବା

ରୋଷର ବିରିମୁଣ୍ଡି ଘରେ ଏ ସେବକ କୋଠଭୋଗ ପାଇଁ ଯେତେ ବିରି ଓ ଚାଉଳ ବଟା ଦରକାର ହୁଏ, ତାହା ନିଜେ ଓ ଲୋକ ଲଗାଇ ବାଟନ୍ତି ।

ଏ ସେବା କେବଳ ପାଣିଛୁଆଁ ଜାତିର ଲୋକେ କରିପାରିବେ ।

## ୫୯. କୋଠଭୋଗ ପାଣିଆ

କୋଠଭୋଗ ନିମନ୍ତେ ପାଣି ଯୋଗାନ୍ତି । ରୋଷକୂଅରୁ ପାଣି ଆଣି ରୋଷକୁ ଯୋଗାନ୍ତି । ନୀଳାଦ୍ରି ମହୋଦୟ, ସହସ୍ର କୁମ୍ଭାଭିଷେକ ଓ ପୁଷ୍ୟାଭିଷେକରେ ମଧ୍ୟ ଜଳ ଯୋଗାନ୍ତି ।

ବଂଶାନୁକ୍ରମିକ ବ୍ରାହ୍ମଣ ସେବକ । ଶାଢ଼ିବନ୍ଧା ନୁହଁନ୍ତି ।

## ୬୦. ପନିକି ପଟା

ରୋଷରେ ପରିବାକଟା ସେବକ । ବର୍ତ୍ତମାନ ଏ ସେବା ଚାଲୁନାହିଁ ।

## ୬୧. ନିକାପ ବା ଗନ୍ଧଣ ନିକାପ

ପ୍ରତି ଧୂପ ପାଇଁ ଗନ୍ଧଣ ନିକାପ ଗନ୍ଧଣ ଥାଳି ପ୍ରସ୍ତୁତ କରନ୍ତି । ଅଦା, ହେଙ୍ଗୁ, ଜିରା, ଗୋଲମରିଚ, ଘିଅ ଆଦି ସୁଗନ୍ଧ ମସଲା ଦ୍ରବ୍ୟ ହେଉଛି ଗନ୍ଧଣ । ଚନ୍ଦନ ଯାତ୍ରାରେ ଷୋଳଟିଆ

ପଣା ଓ ଆଲଟ ଲାଗିପାଇଁ ପଣା ଏହାଙ୍କର ସରଘରେ ପ୍ରସ୍ତୁତ ହୁଏ । ବାଳଧୂପ, କାଳୀୟଦଳନ, ଏକାଦଶୀରେ ବନଭୋଜି ସର ଜଗିବା, ଜଳକ୍ରୀଡ଼ାରେ ପଣାଭୋଗ ଓ ଗ୍ରହଣ ବେଳେ ଖଇକୋରା ଭୋଗ ଜଗିବା, ମକର ସଂକ୍ରାନ୍ତିରେ ଗୁଡ଼ିଆ ଓ ମହାଭୋଇ ଦେଉଥିବା ଜିନିଷକୁ ଜଗିବା । ଅଣସର ପଣାପାଇଁ ସାଚି ଯୋଗାଇବା, ପହିଲି ଭୋଗ ମାସରେ ଦୈନିକ ମସଲା, ଅଦା ଛେଚା, ଖୁଦି ନଡ଼ିଆ ରୋଷକୁ ଯୋଗାଇବା, ଗୁଣ୍ଡିଚା, ମକର ଓ ସାତପୁରୀ ନୀତିରେ ଘିଅ ବାଣ୍ଟିବା ଇତ୍ୟାଦି କାର୍ଯ୍ୟ କରନ୍ତି ।

ଏମାନେ ବଂଶାନୁକ୍ରମିକ, ଶାଢ଼ିବନ୍ଧା କରଣ ସେବକ ।

## ୬୨. ବିରିବୁହା ସେବକ

ପ୍ରତ୍ୟେକ ଦିନ କୋଠଭୋଗ ପାଇଁ ବିରିବଟାଠାରୁ ବଟା ବିରି ବୋହିନେଇ କୋଠଭୋଗ ସୁଆରଙ୍କ ଜିମା ଦିଅନ୍ତି । କୋଠଭୋଗ ରୋଷରେ ସୁଆରକୁ ଯୋଗାନ୍ତି । ବଂଶାନୁକ୍ରମିକ, ସୂପକାର ଶ୍ରେଣୀର ସେବକ ।

## ୬୩. ଦଉଡ଼ି ବଳା

ଶ୍ରୀଜୀଉଙ୍କ ନିତ୍ୟ ବ୍ୟବହାରପାଇଁ ବିମଳାଙ୍କ କୂଅରୁ ପାଣି ଟାଣିବା ସକାଶେ ଏ ସେବକ ଦଉଡ଼ି ଯୋଗାନ୍ତି ।

ସେବା ବଂଶାନୁକ୍ରମିକ । ଶାଢ଼ିବନ୍ଧା ବ୍ରାହ୍ମଣ ସେବକ । ସଂପ୍ରତି ଏ ସେବା ବନ୍ଦ ।

## ୬୪. ଚୂନରା ଗରୁଡ଼ ସେବକ

ଗରୁଡ଼ଙ୍କ ସେବା, ଏକାଦଶୀରେ ଦେଉଳ ଶିଖରକୁ ମହାଦୀପ ଉଠାଇବା, ନୀଳଚକ୍ରରେ ଧ୍ୱଜା ବାନ୍ଧିବା, ମକର ସଂକ୍ରାନ୍ତିରେ ଚୂନ ଓ ଗେରୁ ଲଗାଇବା, ଶ୍ରୀମନ୍ଦିରରୁ ଧୂପ ଶିକୁଳାନେଇ ଗୁଣ୍ଡିଚାଘରେ ବାନ୍ଧିବା, କନକ ମୁଣ୍ଡି ଉପରେ, ସିଂହାସନ ଉପରେ, ଅଣସର ସମୟରେ ପନ୍ତି ଉପରେ, ଅଣସର ପିଣ୍ଡି ଉପରେ, ଦକ୍ଷିଣୀ ଘରେ, ସ୍ନାନବେଦୀ ଓ ଗୁଣ୍ଡିଚା ଘରେ ଚାନ୍ଦୁଆ ବାନ୍ଧିବା, ଦେବ ଦୀପାବଳୀ ତିନିଦିନ ଦେଉଳରେ ଦୀପ ଜାଳିବା ଏହାଙ୍କ କାର୍ଯ୍ୟ ।

ଶାଢ଼ୀ ବନ୍ଧା ଶୂଦ୍ର ସେବକ । ସେବା ବଂଶାନୁକ୍ରମିକ ।

## ୬୫. ସାବତ ନିଯୋଗ

ଏମାନେ ପଞ୍ଚତୀର୍ଥ (ସ୍ୱର୍ଗଦ୍ୱାର, ଶ୍ୱେତଗଙ୍ଗା, ମାର୍କଣ୍ଡ, ଇନ୍ଦ୍ରଦ୍ୟୁମ୍ନ ଓ ଚକ୍ରତୀର୍ଥ)ରେ ଯାତ୍ରୀ ସଂକଳ୍ପ, ଶ୍ରାଦ୍ଧ ଓ ଦାନ କରାନ୍ତି । ପ୍ରତ୍ୟେକ ଅମାବାସ୍ୟା ଦିନ ଠାକୁର ସାଗର ବିଜେ କଲେ ସ୍ୱର୍ଗଦ୍ୱାରରେ ପାଛୋଟି ନେଇ ଏକ ହାଣ୍ଡି ପଣା ଭୋଗ କରାଇବା, ସ୍ନାନପୂର୍ଣ୍ଣିମାରେ, ରଥ ଉପରେ, ଆଡ଼ପ ଘରେ, କୁମାରପୂର୍ଣ୍ଣିମାରେ, ଧନୁ ମାସରେ, ନୃସିଂହ ଜନ୍ମରେ, କାଳୀୟ ଦଳନ ଏକାଦଶୀରେ ଠାକୁରମାନଙ୍କୁ ଭୋଗ କରନ୍ତି ।

## ୬୬. ପାଣିଆପଟ

ଠାକୁରଙ୍କ ଥାଳି, ପରଖି, ବଟ, ଗରା, ଝରି ଇତ୍ୟାଦି ଭୋରରୁ ଦର୍ପଣିଆ ସେବକ ମାଜିଲା ପରେ, ବାକି ଦିନ ତମାମ ପାଣିଆପଟ ସେବକ ସେସବୁ ମାଜି ସଫା କରିବେ । ଭିତରେ ଧୋପଖାଳପାଇଁ, ଅବକାଶ ପାଇଁ, ପୂଜା ପାଇଁ ଯେତେ ପାଣି ଲାଗିବ ସେତେ ପାଣି ବିମଳାଙ୍କ କୂଅରୁ ଆଣି ଯୋଗାଇବେ । ରାତ୍ର ଚନ୍ଦନ ଲାଗି ପରେ ପିଙ୍ଗଣ ମାଜି ଦେବେ । ଦୈନନ୍ଦିନ ବ୍ୟବହାର ଜିନିଷ ମାଜି ସଫା କରିବେ । ଗୁଣ୍ଡିଚା ଘରେ ମଧ୍ୟ ଏହିପରି କାର୍ଯ୍ୟ କରିବେ ।

ଶାଢ଼ିବନ୍ଧା, ପାଣିସ୍ପର୍ଶ ଜାତିର ସେବକ ।

## ୬୭. ମଣ୍ଡଣି ସେବା

ମନ୍ଦିର ଭିତରେ ପର୍ବପର୍ବାଣିରେ ଯେତେ ବିଜେ ହୁଏ ଏ ସେବକ ଚାନ୍ଦୁଆ ବାନ୍ଧନ୍ତି । ଗୁରୁବାର ଦିନ ମାଜଣା ମଣ୍ଡପରେ, ଜଳକ୍ରୀଡ଼ା ମଣ୍ଡପ ଓ ଅଧିବାସ ବେଳେ ଭୋଗ ମଣ୍ଡପରେ ଚାନ୍ଦୁଆ ବାନ୍ଧନ୍ତି । ଆଶ୍ୱିନ ଗୁଣ୍ଡିଚା ଓ ଦଶହରାରେ ଦୁର୍ଗାମାଧବଙ୍କ ରଥ, ରାଜେନ୍ଦ୍ରାଭିଷେକ ଓ ରୁକ୍ମିଣୀ ବିବାହରେ ରଥ ମଣ୍ଡଣି କରନ୍ତି । ଅଣସର ଘରୁ ଚିତ୍ରପଟି ବାହାରିଲେ ତାହା ଆଣି ମଣ୍ଡଣି ଘରେ ରଖନ୍ତି । ଚନ୍ଦନ ଯାତ ୨୧ ଦିନରେ ଚନ୍ଦନ ଚକଡ଼ାରେ ୩ ପାଣି କୁଣ୍ଡରେ ପାଣି ଭରନ୍ତି । ମଣ୍ଡଣି ଘର ଓ ତହିଁରେ ଥିବା ଜିନିଷ ଏହାଙ୍କ ଜିମାରେ ଥାଏ । ପ୍ରତ୍ୟେକ ରଥ ମଣ୍ଡଣି କରିବା ଏହାଙ୍କର କାର୍ଯ୍ୟ ଓ ସେଥିରେ କୋଠ ସୁଆଁସିଆଙ୍କ ସାହାଯ୍ୟ ନିଅନ୍ତି ।

ବ୍ରାହ୍ମଣ ସେବକ, ଶାଢ଼ିବନ୍ଧା ସେବା ନୁହେଁ ।

## ୬୮. ଚକା ଅପସର ସେବକ

ଚକା ଅପସର ଆଦି ମାଣ୍ଡି ମୁଚୁଳା ନିଆଅଣା କରୁଥିବା ସେବକ । ସ୍ନାନମଣ୍ଡପରେ, ଅଣସର ପିଣ୍ଡିରେ, ଗୁଣ୍ଡିଚା ଘରେ, ଚକା ଅପସର ପହଞ୍ଚାନ୍ତି ।

ଏମାନେ ବଂଶାନୁକ୍ରମିକ, ଶାଢ଼ି ବନ୍ଧା ବ୍ରାହ୍ମଣ ସେବକ । ଏ ମଧ୍ୟ ଚାଙ୍ଗଡ଼ା ମେକାପ ସେବା କରନ୍ତି ।

## ୬୯. ମୂଳିଆ ସୁଆଁସିଆ

କର୍ମକର୍ମାଣିକୁ କାଠ ଜିନିଷ ଯଥା- ପିଢ଼ା, ରୁଖା, ଭଦ୍ରାସନ ଇତ୍ୟାଦି ଯୋଗାନ୍ତି (ବଢ଼େଇ ଏହାକୁ ଦିଅନ୍ତି) । ବିଭିନ୍ନ ନୀତିରେ ପ୍ରଦତ୍ତ ବଳି ପୋତନ୍ତି ଭଉଁରୀ ଦିନ ରଥର ପ୍ରତ୍ୟେକ ଚକ ଧୁଅନ୍ତି । ହଳଦୀପାଣି ଓ ଜଳକ୍ରୀଡ଼ାରେ ବାଉଁଶ ପିଚକାରୀ ଦିଅନ୍ତି । ଆଶ୍ୱିନ ଷୋଳପୂଜା, ସଙ୍କୁଡ଼ି ଭୋଗ ତିନିଦିନ, ଖଟୁଆଠାରୁ ଆମିଷ (ମାଛ) ଆଣି ଯୋଗାନ୍ତି । ମାଛ କଟା ହେବା ପରେ ଧୁଅନ୍ତି । ଅଣସର ଦଶମୀ ଦିନ ଚକା ବିଜେକୁ ନଡ଼ିଆଗଡ଼ (୮୦ ଖଣ୍ଡ) ଯୋଗାନ୍ତି, ଯାହାକି ବଢ଼େଇ ଦେଇଥାଏ । ସ୍ନାନବେଦୀ, ରଥ, ଗୁଣ୍ଡିଚା ଘରକୁ ପିଢ଼ା,ପୂଜା ଉପକରଣ ନିଆଅଣା କରନ୍ତି । ଘୋଡ଼ା, ଚୌକି, ଗରା, ଢ଼ାଳ ଆଦି ଗୁଣ୍ଡିଚା ଘରକୁ ବୁହନ୍ତି ।

ରଥକୁ ଆଣନ୍ତି । କାଳୀୟଦଳନ ବେଶର ଫଣା, ଦଶହରା ନୀତିକୁ ଲାଖପଟା ଯୋଗାନ୍ତି ।

ଶାଢ଼ିବନ୍ଧା ପଧାନ ସେବକ, ସେବା ବଂଶାନୁକ୍ରମିକ ।

## ୭୦. ବୀଣାକାର ସେବା

ଚନ୍ଦନ ଲାଗି ସମୟରେ କଳାହାଟ ଦ୍ୱାର ଲଣ୍ଡାବର୍ତ୍ତ ତଳେ ଓ ପହୁଡ଼ ବେଳେ ପୁଷ୍ପାଞ୍ଜଳି ଠାକୁର ସହ ଜୟ ବିଜୟ ଦ୍ୱାରଠାରୁ ଭିତର ପଲଙ୍କ ଯାଏଁ ବୀଣା ବଜାଇବେ ।

ଶାଢ଼ିବନ୍ଧା ବ୍ରାହ୍ମଣ ସେବକ । ସେବା ବଂଶାନୁକ୍ରମିକ । ବର୍ତ୍ତମାନ ଏ ସେବା ହେଉ ନାହିଁ ।

## ୭୧. ଦର୍ପଣିଆ ଓ ବଇରଖିଆ

ନୀତି ସମୟରେ ଦର୍ପଣ ଯୋଗାନ୍ତି । ଶାଢ଼ି ବନ୍ଧାଇ ଥିଲେ ଅବକାଶ ପୂଜାରେ ଦର୍ପଣ ଲଗାନ୍ତି । ଏମାନଙ୍କର ଅନ୍ୟ ସେବା ହେଲା ବଇରଖିଆ ସେବା । ପ୍ରତିଦିନ ମଙ୍ଗଳଆଳତି ପରେ ଠାକୁରଙ୍କ ବ୍ୟବହୃତ ବାସନ ଯଥାଃ ଗରା, ପରଖ, ଥାଳି, ବଟା, ପିଙ୍ଗଣ ଆଦି ସଫା କରନ୍ତି । ଆବଶ୍ୟକ ସମୟରେ ପୂର୍ଣ୍ଣକୁମ୍ଭ ବସାନ୍ତି । ସ୍ନାନ, ଗୁଣ୍ଡିଚା ବିଜେ ଓ ବାହୁଡ଼ାରେ ମୁଣ୍ଡରେ ପୂର୍ଣ୍ଣକୁମ୍ଭ ବସାଇ ଚାଲନ୍ତି । ସ୍ନାନ ଓ ରଥଯାତ୍ରା ବେଳେ ଡୋରି ଛିଣ୍ଡିଗଲେ ଦେବାପାଇଁ ପ୍ରସ୍ତୁତ ଥାଆନ୍ତି । ରୁନ୍ଧା ବନ୍ଧାରେ ସାହାଯ୍ୟ କରନ୍ତି । ବଂଶାନୁକ୍ରମିକ, ଶାଢ଼ିବନ୍ଧା ନାପିତ ସେବକ ।

## ୭୨. କୋଠ ସୁଆଁସିଆ

ପର୍ବପର୍ବାଣିରେ ଘର ତିଆରି, ଚାନ୍ଦୁଆ ବନ୍ଧା, ଚାରମାଳ ବନ୍ଧା, ସ୍ନାନବେଦୀ ଧୋପଖାଳ, ରଥ ଉପରକୁ ଚାଙ୍ଗଡ଼ା, ଭଣ୍ଡାର ବାକ୍ସ ନେବା ଏମାନଙ୍କ କାର୍ଯ୍ୟ । ଦୋଳବେଦୀ ଚାନ୍ଦୁଆ ବାନ୍ଧନ୍ତି । ହୋମଘର ତିଆରି କରନ୍ତି । ଜଳକ୍ରୀଡ଼ା ପାଇଁ ଛାମୁଣ୍ଡିଆ ତିଆରି କରନ୍ତି । କନକ ମୁଣ୍ଡି ତିଆରି କରନ୍ତି । ରଥ ମଣ୍ଡଣିରେ କାମ କରନ୍ତି । ଗୁଣ୍ଡିଚା ଘରୁ ମନ୍ଦିରକୁ ପଲଙ୍କ ନିଅନ୍ତି । ଚକ୍ରବୁଲା ଏକାଦଶୀରେ ଚାରି ଆଶ୍ରମରେ ଚାନ୍ଦୁଆ ବାନ୍ଧନ୍ତି । କୃଷ୍ଣ ଜନ୍ମରେ ଦୋଳି ବାନ୍ଧନ୍ତି, ନବକଳେବରରେ ସମାଧି ଖୋଳନ୍ତି, ମାରା ଭୋଗ ପୋତିବା ଆଦି ସେବା କରନ୍ତି । ବଂଶାନୁକ୍ରମିକ ଶୂଦ୍ର (ଚଷା) ସେବକ । ଶାଢ଼ିବନ୍ଧା ନୁହନ୍ତି ।

## ୭୩. ମହାଭୋଇ

ଦିନ ତମାମ ଓ ସବୁ ପର୍ବ, ଯାତ୍ରା ନିମନ୍ତେ ଦରକାର ଦୁଧ, ଦହି, ମାଖନ, ସର ଇତ୍ୟାଦି ଯୋଗାନ୍ତି । ଠାକୁରଙ୍କ ଦୁଧ ମେଲଣ ଯାତ୍ରାରେ ଜଗନ୍ନାଥ ବଲ୍ଲଭ ମଠଠାରେ ଗାଈ ଦୁହିଁ ଅର୍ଦ୍ଧେକ ଦୁଧ ଠାକୁରଙ୍କୁ ଭୋଗ ଲାଗି ଦିଅନ୍ତି ଓ ଅବଶିଷ୍ଟ ଅର୍ଦ୍ଧେକ ଦୁଧ ମେଲଣ କରି ସରଘରଠାରେ ଦହି ବସାନ୍ତି । ନନ୍ଦୋତ୍ସବ ଦିନ ମହାଭୋଇ ଭରତିଆ ଗଉଡ଼ ବେଶରେ ସ୍ନାନ ବେଦୀରେ ନନ୍ଦବେଶୀ ଭିତରଛଙ୍କୁ ପୁତ୍ର ଜନ୍ମର ସମାଚାର ଦିଅନ୍ତି । କାଳୀୟଦଳନ ଏକାଦଶୀ ଦିନ ମଦନମୋହନ ଓ ରାମକୃଷ୍ଣ ଠାକୁରଙ୍କୁ ମହାଭୋଇ ଲବଣୀଖିଆ ମଣ୍ଡପରେ ବିଜେ କରାନ୍ତି । ମଣ୍ଡପରେ ଲବଣୀ

ପନ୍ତି ବଢ଼ିବା ପରେ ମହାଭୋଇ ଘରର ବୋହୂମାନେ ପାରମ୍ପରିକ ବେଶରେ ବନ୍ଦାପନା ଓ ଆରତି କରନ୍ତି । ତା'ପରେ ଠାକୁରମାନେ କାଳୀୟଦଳନ ନୀତିପାଇଁ ବିଜେ ହୁଅନ୍ତି । ଭାଦ୍ରବ ଶୁକ୍ଳ ଦଶମୀ ଦିନ କୁଣ୍ଢେଇ ବେଣ୍ଟ ସାହି ଲବଣୀଖିଆ ମଠଠାରେ ରାମକୃଷ୍ଣ ବିଜେ କରନ୍ତି ଓ ସର ଲବଣୀ ଭୋଗ ପରେ ମହାଭୋଇ ଘରର ସ୍ତ୍ରୀ ଲୋକମାନେ ଅନୁରୂପ ବନ୍ଦାପନା କରନ୍ତି । ଶାଢ଼ିବନ୍ଧା, ପୁରୁଷାନୁକ୍ରମିକ, ଗୌଡ଼ ସେବକ ।

## ୭୪. ଗୀତଗୋବିନ୍ଦ ସେବା

ଏ ସେବକ ରାଘବ ଦାସ ମଠ ଓ ଜଗନ୍ନାଥ ବଲ୍ଲଭ ମଠରୁ ପାଉଣା ପାଇ ପ୍ରତ୍ୟହ ଚନ୍ଦନ ଲାଗି ସମୟରେ ଭିତରକାଠ ପାଖରେ ଗୀତଗୋବିନ୍ଦ ବୋଲୁଥିଲେ । ସଂପ୍ରତି ଏହି ସେବା ହେଉ ନାହିଁ ।

## ୭୫. ଭିତର ଗାଆଣୀ ଦେବଦାସୀ

ସକାଳ ଧୂପ ପଟୁଆର ବେଳେ ଜଗମୋହନଠାରେ ନୃତ୍ୟ କରନ୍ତି । ବଡ଼ସିଂହାର ଭୋଗ ପରେ ଶୟନ ଠାକୁର ଭିତରକୁ ଗଲେ କଳାହାଟ ଦ୍ୱାରଠାରେ ଗୀତଗୋବିନ୍ଦ ଗାଆନ୍ତି । ଶୟନ ଠାକୁର ବିଜେ ହୋଇ ଆସିବା ପରେ ଆଗେ ଆଗେ ଗୀତ ବୋଲନ୍ତି । ଠାକୁର ଭିତରକୁ ଗଲାଯାଏଁ ଜୟ ବିଜୟ ଦ୍ୱାରଠାରେ ଗୀତ ଗାଆନ୍ତି ।

କାର୍ତ୍ତିକ ମାସରେ ବାଳଧୂପ ବେଳେ, ଚନ୍ଦନ ଲାଗି (୪୨ ଦିନ)ଆଲଟ ଲାଗିଲେ ଭିତରକୁ ଯାଇ ଅଣସର ପିଣ୍ଡିରେ ଠିଆହୋଇ ଗୀତ ବୋଲନ୍ତି । ରାତ୍ର ଆଲଟ ଲାଗିଲେ ଏହିପରି ସେବା କରନ୍ତି । ଚନ୍ଦନ ଲାଗି (୪୨ ଦିନ)ରେ ଜଗମୋହନରେ ନୃତ୍ୟ କରନ୍ତି । ଚାପ (୨୧ ଦିନ)-ମଦନ ମୋହନଙ୍କ ଚାପରେ ନୃତ୍ୟ କରନ୍ତି । ରୁକ୍ମିଣୀ ବିବାହରେ ଲକ୍ଷ୍ମୀଙ୍କ ମନ୍ଦିରରେ ଓ ରାତ୍ରରେ ବିବାହ ବେଦୀରେ ମଙ୍ଗଳଗାନ କରନ୍ତି । ଲକ୍ଷ୍ମୀ ବିମଳାଙ୍କ ପାଶକୁ ଆସିଲାବେଳେ ଖଦି ଚାମର ପକାଇ ମଙ୍ଗଳଗାନ କରି ଆଣନ୍ତି । ଚମ୍ପକ ଦ୍ୱାଦଶୀ ଦିନ ବରକନ୍ୟା ସହ ନଅରକୁ ଯାଆନ୍ତି । ନୀଳାଦ୍ରି ବିଜେ ଦିନ ଭେଟ ମଣ୍ଡପକୁ ଲକ୍ଷ୍ମୀଙ୍କ ସହିତ ଯାଆନ୍ତି । ଗୁଣ୍ଡିଚା ମଣ୍ଡପରେ ପ୍ରଥମ ଦିନ ନୃତ୍ୟ କରନ୍ତି । ଆଶ୍ୱିନ ମାସ (୧୬ ପୂଜା)ରେ ବିମଳାଙ୍କ ସକାଳ ଧୂପ ସମୟରେ ପଟୁଆର କରନ୍ତି । ବିମଳାଙ୍କ ପହୁଡ଼ ମାଜଣା ସମୟରେ ମାଳଶ୍ରୀ ବୋଲନ୍ତି । ନଅରଠାରେ କନକ ଦୁର୍ଗା ପୂଜାରେ ପଟୁଆର କରନ୍ତି । ପୁଷ୍ୟାଭିଷେକ ଦିନ ମୁଦିରସ୍ତ ସହ ତାଙ୍କ ଘରକୁ ଯାଇ ବନ୍ଦାପନା କରନ୍ତି । ଫଗୁଣ ମାସରେ ଫଗୁ ଦଶମୀଠାରୁ ଭୋଗବେଳେ ଦୋଳବେଦୀରେ ସେବା କରନ୍ତି । ଚତୁର୍ଦ୍ଦଶୀ ଦିନ ମୁଦିରସ୍ତଙ୍କ ସହିତ ଫଗୁଖେଳ କରନ୍ତି । ନବପତ୍ରିକାରେ ନଅରରେ ଦୁର୍ଗାଙ୍କ ସେବା କରନ୍ତି । ସ୍ନାନବେଦୀଠାରେ ନୃତ୍ୟ କରନ୍ତି । ନବକଳେବରରେ ଦାରୁ ସହ ହୁଳହୁଳି ଦେଇ ଆସନ୍ତି ।

ଶାଢ଼ିବନ୍ଧା, ପାଣିସ୍ପର୍ଶ ଜାତିର ଦେବଦାସୀ ସେବିକା । ନିୟମାନୁଯାୟୀ ବିବାହିତା କିମ୍ବା ବ୍ୟଭିଚାରିଣୀ ହୋଇ ପାରିବେ ନାହିଁ । ପାଣି ସ୍ପର୍ଶ ଜାତିର ଝିଅକୁ ପାଳି ପାରିବେ । ଗୀତନାଚ

ଜାଣିଲେ ଶାଢ଼ିବନ୍ଧାଇ ସେବା କରିପାରିବେ । ଏମାନଙ୍କର ଅସୁବିଧା ହେଲେ ନାଚକାମ ସମ୍ପ୍ରଦା ନିଯୋଗ କରିପାରିବେ ।

## ୭୬. ସମ୍ପ୍ରଦା ନିଯୋଗ

ସକାଳ ଧୂପ ବେଳେ ନୃତ୍ୟ, ଚନ୍ଦନ ଯାତ୍ରା ସମୟରେ ଚନ୍ଦନଲାଗି ବେଳେ ଜଗମୋହନରେ ପଟୁଆର କରିବା, ଚାପ ଉପରେ ଓ ଚାପ ବାହୁଡ଼ା ବିଜେରେ ନୃତ୍ୟ, ରୁକ୍ମିଣୀ ବିବାହରେ ଚିଟାଉଲେଖା ବେଳେ ଗୀତ ଓ ହୁଳହୁଳି, ବିମଳା ମନ୍ଦିରରେ ଲକ୍ଷ୍ମୀ ବିଜେ କାଳରେ ଖଦି ଚାମର ପକାଇବା, ସ୍ନାନପୂର୍ଣ୍ଣିମା ଦିନ ସ୍ନାନ ବେଦୀ ତଳେ ପଟୁଆର, ଚାହାଣି ମଣ୍ଡପରେ ଲକ୍ଷ୍ମୀଙ୍କ ଭେଟ ସମୟରେ ସାଥିରେ ଯିବା, ଗୁଣ୍ଡିଚା ମନ୍ଦିରରେ ଦ୍ୱିତୀୟ ଦିନଠାରୁ ପଟୁଆର, ହେରା ପଞ୍ଚମୀରେ ଦଣ୍ଡମଣ୍ଡ ସେବା ଓ ରଥରୁ ଖଣ୍ଡେ କାଠ ଭାଙ୍ଗିବା, ଝୁଲଣ ମଣ୍ଡପ ତଳେ ପଟୁଆର, କୃଷ୍ଣ ଜନ୍ମରେ ଯଶୋଦା ଓ ରୋହିଣୀ ସେବା, ଷୋଳ ପୂଜାରେ ବିମଳାଙ୍କ ମନ୍ଦିରରେ ପଟୁଆର କରିବା ଇତ୍ୟାଦି ଏହାଙ୍କର କାର୍ଯ୍ୟ ।

ରୁକ୍ମିଣୀ ହରଣ ଦିନ ଲକ୍ଷ୍ମୀଙ୍କ ଦାସୀ ଭାବରେ ବିପ୍ର ବ୍ରାହ୍ମଣଙ୍କ ସଙ୍ଗେ ଯିବା, ହେରା ପଞ୍ଚମୀ ଦିନ ଦଣ୍ଡମଣ୍ଡ ଓ ରଥକାଠ ଭାଙ୍ଗିବା, ରୋହିଣୀ ଯଶୋଦା ସେବା- ଏହି ତିନିଟି ସଂପ୍ରଦା ନିଯୋଗର ଏକା ଏକ ସେବା ।

ଭିତର ଗାଆଣୀ ଦେବଦାସୀ ଓ ସଂପ୍ରଦା ନିଯୋଗ ଦେବଦାସୀ ନିଜର ଏକା ଏକ କାମ ଛଡ଼ା ଅନ୍ୟ ସବୁ କାମ ପରସ୍ପର କରିପାରିବେ ।

ଶାଢ଼ିବନ୍ଧା ଦେବଦାସୀ ସେବିକା । ଅନ୍ୟ ବିବରଣୀ ଭିତର ଗାଆଣୀ ପରି ।

୧୯୯୩ ମସିହାରେ କୋକିଳ ପ୍ରଭା ଦେବଦାସୀଙ୍କ ଦେହାନ୍ତ ପରେ ଭିତର ଗାଆଣୀ ସେବା ବର୍ତ୍ତମାନ ହେଉ ନାହିଁ । ସଂପ୍ରଦା ନିଯୋଗର ଶଶିମଣି ଦେବଦାସୀ କେବଳ ଯଶୋଦା ସେବା କରୁଛନ୍ତି ।

## ୭୭. ଦୟଣାମାଳୀ

ଦୈନିକ ଓ ପର୍ବପର୍ବାଣି ନୀତିମାନଙ୍କରେ ଫୁଲ, ତୁଳସୀ, ବେଲପତ୍ର, ଦୂବ, ମାଳଚୂଳ, ଧଣ୍ଡି ପ୍ରସାଦ ଲାଗିରେ ଧଣ୍ଡି, ସୋଲ ପ୍ରଭା, ସୋଲର ମୁକୁଟ ଆଦି ଦିଅନ୍ତି । ଦମନକ ଚତୁର୍ଦ୍ଦଶୀ ଦିନ ଜଗନ୍ନାଥ ବଲ୍ଲଭ ମଠରୁ ଦୟଣାଗଛ ଉପାଡ଼ନ୍ତି । ସ୍ନାନପୂର୍ଣ୍ଣିମା ଆଗରୁ ସୁନାକୂଅ (ଶୀତଳାଙ୍କ କୂଅ) ଉଝାଳି ପରିଷ୍କାର କରନ୍ତି । ଶାଢ଼ିବନ୍ଧା, ବଂଶାନୁକ୍ରମିକ ସେବକ ।

## ୭୮. ମାଦେଳି

ଦୈନିକ ସକାଳ ଧୂପ ପଟୁଆର ଓ କେତେକ ପର୍ବପର୍ବାଣି ପଟୁଆରରେ ମାଦଳ ବଜାନ୍ତି । ପ୍ରତ୍ୟେକ ରଥଯାତ୍ରାରେ କଂସାରି ଓ ଘଣ୍ଟୁଆ ମଝିରେ ରହି ମାଦଳ ବଜାନ୍ତି । ବର୍ତ୍ତମାନ ଏହି ସେବା ହେଉନାହିଁ । ଏହା ଶାଢ଼ିବନ୍ଧା, ବଂଶାନୁକ୍ରମିକ ସେବା ।

## ୭୯. ପ୍ରସାଦ ବଡ୍ଡୁ

ଶ୍ରୀମନ୍ଦିରରୁ ଠାକୁରଙ୍କର ପ୍ରସାଦାଦି ଦ୍ରବ୍ୟକୁ ନଅରକୁ ନେଉଥିବା ସେବକ । ତାଟୁଆ ଦ୍ୱାରା ଦୈନିକ ଓ ପର୍ବପର୍ବାଣି ତାଟମାନ ଯାହା ମନ୍ଦିରରୁ ନଅରକୁ ଯାଏ, ସେସବୁ ପ୍ରସାଦବଡ୍ଡୁ ମହାସୁଆରଙ୍କଠାରୁ ବୁଝି ନେଇ ନିଜର ସିଲ୍ ଦେଇ ପଠାନ୍ତି । ନଅରକୁ ଯେଉଁ ପ୍ରସାଦ ଚନ୍ଦନ ଇତ୍ୟାଦି ଘଣ୍ଟଛତା କାହାଳି ଦେଇ ଯିବା କଥା ସେସବୁ ନିଜେ ପ୍ରସାଦବଡ୍ଡୁ ନିଅନ୍ତି ।

ଶାଢ଼ିବନ୍ଧା ବ୍ରାହ୍ମଣ ସେବକ; ସେବା ବଂଶାନୁକ୍ରମିକ ।

## ୮୦. ତାଟୁଆ

ପ୍ରସାଦବଡ୍ଡୁଠାରୁ ଯେଉଁ ତାଟ, ଘଣ୍ଟ, ଛତା କାହାଳୀ ନବାଜି ନଅରକୁ ଯିବ ସେ ସବୁ ଜିନିଷ ତାଟୁଆ ନିଅନ୍ତି । ଏହି ସେବା ଶାଢ଼ିବନ୍ଧା କିମ୍ବା ବଂଶାନୁକ୍ରମିକ ନୁହେଁ । ବ୍ରାହ୍ମଣ କିମ୍ବା ଛୁଆଁ ଜାତିର ଲୋକ ସେବା କରିପାରିବେ ।

## ୮୧. ପତର ବନ୍ଧା

ଶ୍ରୀମନ୍ଦିରରୁ ନଅରକୁ ଯେତେ ତାଟ ଯାଏ, ଏ ସେବକ ପତରରେ ବାନ୍ଧି ତାଟୁଆକୁ ଦିଅନ୍ତି । ଏହି ସେବକ ଚଷା ଜାତିର, ଶାଢ଼ିବନ୍ଧା ନୁହେଁ । ବର୍ତ୍ତମାନ ଏହି ସେବା ହେଉନାହିଁ ।

## ୮୨. ବଜୟନ୍ତ୍ରୀ (ବାଦ୍ୟକାର)

ଦୈନିକ ସକାଳ ଧୂପ ଓ ସଂଧ୍ୟାଧୂପ ପରେ ବାଜା ବଜାନ୍ତି । ବର୍ଷ ତମାମ ପ୍ରତ୍ୟେକ ଯାନିଯାତ୍ରା, ପର୍ବପର୍ବାଣି, ବେଢ଼ା ଭିତର ଓ ବାହାର ବିଜେ, ରଥ, ଚାପ ଓ ଚନ୍ଦନ ଯାତ୍ରା ଆଦିରେ ବାଜା ବଜାଇବେ । ଦୈନିକ ଧୂପ ବେଳେ ନାଭିକଟା ମଣ୍ଡପରେ ବସି ବାଜା ବଜାଇବେ । ସ୍ନାନପୂର୍ଣ୍ଣିମା ପରଠାରୁ ଘଣାଲାଗି ଦଶମୀ ଯାଏଁ ବାଜା ବନ୍ଦ ରହେ ।

ବଂଶାନୁକ୍ରମିକ ଖଣ୍ଡାଏତ ସେବକ, ଶାଢ଼ିବନ୍ଧା ନୁହନ୍ତି ।

## ୮୩. ଛତାର ସେବକ

ପ୍ରତିଦିନ ବଡ଼ସିଂହାର ପହୁଡ଼ ଆଳତି ବେଳେ ଶୟନଠାକୁରଙ୍କ ପାଖରେ ଛତି ଧରି କଳାହାଟ ଦ୍ୱାରରେ ଠିଆ ହୁଅନ୍ତି । ପହୁଡ଼ ଆଳତି ପରେ ଶୟନଠାକୁରଙ୍କ ସହ ତମ୍ବୁରୁଠାକୁ ଆସନ୍ତି । ଆଳତି ସରିଲେ ଭିତରକୁ ବିଜେକରି ଛତି ଭଣ୍ଡାର ଦ୍ୱାରରେ ରଖନ୍ତି । ପ୍ରତି ବାହାର ଓ ଭିତର ବିଜେ, ବେଢ଼ା, ସର୍ବାଙ୍ଗ, ଚନ୍ଦନ ବିଜେ, ସ୍ନାନପୂର୍ଣ୍ଣିମା ନିମନ୍ତେ ଜଳ ଘେନାଣ ଘରକୁ ଜଳ ବିଜେ ସମୟରେ ଓ ଅନ୍ୟ ଯେଉଁ ସମୟରେ କାହାଳୀ ବାଜେ ସେ ସମୟରେ ଛତି ଧରନ୍ତି । ଏମାନେ ଛତି, ଓଲାର, ତରାସ ଓ କଳାକନାଟି ଏପରି ଚାରିପ୍ରକାର ଛତ୍ର ସେବା କରନ୍ତି ।

ଶାଢ଼ିବନ୍ଧା ବ୍ରାହ୍ମଣ ସେବକ; ସେବା ବଂଶାନୁକ୍ରମିକ ।

## ୮୪. କାହାଳିଆ

ପ୍ରତିଦିନ ବଡ଼ସିଂହାର ପୁଷ୍ପାଞ୍ଜଳି ପହୁଡ଼ ସମୟରେ କାହାଳୀ ବଜାନ୍ତି । ବର୍ଷ ତମାମ ଯେତେ ଘଣ୍ଟ ଛତା, କାହାଳୀ ସହ ଭୋଗ ଆସେ ସେହି ସମୟରେ କାହାଳୀ ବଜାନ୍ତି । ସ୍ନାନଯାତ୍ରା, ରଥଯାତ୍ରା, ଝୁଲଣ ଯାତ୍ରା ପ୍ରତ୍ୟେକ ଭିତର ଓ ବାହାର ବିଜେ ବେଳେ କାହାଳୀ ବଜାନ୍ତି । ବିମଳାଙ୍କ ଷୋଳପୂଜାରେ ସକାଳ ଧୂପ ଓ ସଂଧ୍ୟାଧୂପ ଆଳତିରେ କାହାଳୀ ବଜାନ୍ତି । ପାର୍ଶ୍ୱ ଦେବଦେବୀଙ୍କ କେତେକ ଉତ୍ସବରେ, ବେଣ୍ଟ ନୀତିରେ, ବେଢ଼, ପ୍ରତ୍ୟେକ ମଙ୍ଗଳାର୍ପଣ ଜନ୍ମ ଓ ବନ୍ଦାପନାରେ, ମକର ଓ ସାତପୁରୀ ତାଡ଼ ଆଣିବା ବେଳେ, ଅଣସର ପଟି ଆଣିବା ବେଳେ, ମଠରୁ ହାତୀ ବେଶ ସାମଗ୍ରୀ ଆସିବା ବେଳେ, ସୋଲ ଚିତା ଆଣିବା ବେଳେ, ଗୁରୁବାର ବନ୍ଦାପନା ଓ ଏକାନ୍ତରେ, ପ୍ରତ୍ୟେକ ଆଜ୍ଞାମାଳ ଦେଲାବେଳେ, ନବକଳେବରରେ ଦାରୁ ଆସିଲାବେଳେ, କାହାଳୀ ବଜାନ୍ତି ।

ଶାଢ଼ିବନ୍ଧା ଶୂଦ୍ର ସେବକ । ସେବା ବଂଶାନୁକ୍ରମିକ ।

## ୮୫. ଶଙ୍ଖୁଆ

ଏ ସେବକ ଦୈନିକ ସକାଳ ଧୂପ ପଟୁଆର ବେଳେ ଜଗମୋହନରେ ଓ ସମସ୍ତ ବିଜେ, ଯାନିଯାତ୍ରା ଓ ବିବାହ ନୀତିରେ ଶଙ୍ଖ ବଜାନ୍ତି । ସଂପ୍ରତି ଏ ସେବା ହେଉନାହିଁ ।

## ୮୬. ପର୍ବଯାତ୍ରା ଯୋଗାଣିଆ

ଏମାନେ ଦୈନିକ କୋଠଭୋଗ ଛଡ଼ା ସବୁ ପର୍ବପର୍ବାଣିରେ (କୋଠଭୋଗ ଯୋଗାଣିଆର ଥିବା କାମ ବାଦ ଯାଇ) କୋଠଭୋଗ ଜିନିଷମାନ ଗୋଦାମରୁ ଆଣି ରୋଷଆଡ଼େ ମହାସୁଆରଙ୍କୁ ଜିମା ଦିଅନ୍ତି । ଦୂବ, ବରକୋଳି ପତ୍ର, ସିନ୍ଦୂର, କଦଳୀପତ୍ର, ବାଲି, ରାଶି, ପଇତା, ଆମ୍ବଡାଳ, ଗଙ୍ଗାଜଳ ଇତ୍ୟାଦି ପୂଜାପାଇଁ ଯୋଗାନ୍ତି ।

ଏ ସେବକଙ୍କର ନିର୍ଦ୍ଦିଷ୍ଟ ଫୁଲ ସିଞ୍ଚା ସେବା ଅଛି । ବଳଭଦ୍ରଙ୍କ ରଥ ଉପରେ ଓ ବଡ଼ ଚାପରେ ରାମକୃଷ୍ଣଙ୍କ ଉପରେ ଶୁକ୍ଳ ସୁବାସ ଫୁଲ ନିଜେ ଆଣି ଠାକୁରଙ୍କ ଉପରେ ବିଞ୍ଚନ୍ତି । ବଂଶାନୁକ୍ରମିକ ବ୍ରାହ୍ମଣ ସେବକ । ଶାଢ଼ିବନ୍ଧା ନୁହେଁ ।

## ୮୭. ଚିତ୍ରକାର

ରୁକ୍ମିଣୀ ହରଣପାଇଁ ମାଜଣା ମଣ୍ଡପ, ସ୍ନାନପୂର୍ଣ୍ଣିମାପାଇଁ ସ୍ନାନ ମଣ୍ଡପ, ଝୁଲଣପାଇଁ ଝୁଲଣ ମଣ୍ଡପ, ଷୋଳପୂଜାପାଇଁ ବିମଳାଙ୍କ ମନ୍ଦିର, ଚନ୍ଦନଯାତ୍ରାପାଇଁ ଚନ୍ଦନ ମଣ୍ଡପ ଆଦିରେ ଚିତ୍ର କରନ୍ତି । ଅଣସର ପଟି, ପତିତପାବନ ପଟି ଏମାନଙ୍କ ଘରୁ ଘଣ୍ଟ ଛତା, କାହାଳୀ ପଟୁଆରରେ ଆସେ । ଜନ୍ମାଷ୍ଟମୀ, କୃଷ୍ଣପଟି, କଂସ ପାହାରି, ବାମନପଟି, କନ୍ଦର୍ପ ପଟି ଆଦି ଲେଖନ୍ତି ।

ଶାଢ଼ିବନ୍ଧା ଶୂଦ୍ର ସେବକ, ସେବା ବଂଶାନୁକ୍ରମିକ ।

## ୮୮. ରୂପକାର

ରଥ ନିମନ୍ତେ ଓ ଦେଉଳର ବିଭିନ୍ନ ନୀତି, ବେଶ ନିମନ୍ତେ ରୂପ (କାଠର ମୂର୍ତ୍ତି) ତିଆରି କରୁଥିବା ସେବକ । ନବକଳେବରରେ ରଥର ସାରଥି, ସଖୀ, ପାର୍ଶ୍ୱଦେବତା, ଘୋଡ଼ା, ଓଲଟ ଶୁଆ, ଦଧିନଉତିର ଅଁଳାଶ୍ରୀ ଆଦି ନୂଆକରି ଗଢ଼ନ୍ତି । ପିତ୍ତଳ, ଅଷ୍ଟଧାତୁ, ସୁନାମୂର୍ତ୍ତି ଢାଳିବା କାର୍ଯ୍ୟ ମଧ୍ୟ କରନ୍ତି ।

ଶାଢ଼ିବନ୍ଧା, ବଂଶାନୁକ୍ରମିକ ସେବକ ।

## ୮୯. ବଣିଆ

ଅଣସର ସମୟରେ ଭଣ୍ଡାର ମେକାପଠାରୁ ସୋଲଚିତା ନେଇ ସେଥିରେ ସୁନା ଓ ରତ୍ନ ପଥର ଲଗାଇ ନୂତନ ଚିତା ତିଆରି କରନ୍ତି । ଶ୍ରୀଗୁଣ୍ଡିଚା ଦିନ ଦିଅଁମାନେ ରଥମାନଙ୍କ ଉପରେ ବିଜେ ହେଲେ ଘଣ୍ଟ ଛତା କାହାଳୀ ବଜାଇ ବଣିଆଙ୍କ ଘରୁ ବଣିଆ ନୂଆ ଲୁଗା ପିନ୍ଧି, ନୂଆ ଚାଙ୍ଗୁଡ଼ିରେ ଚିତାମାନ ନେଇ ରଥ ଉପରେ ଦଇତାଙ୍କୁ ଦିଅନ୍ତି । ଦଇତାମାନେ ଦିଅଁଙ୍କୁ ଚିତାଲାଗି କରନ୍ତି । ଜନ୍ମାଷ୍ଟମୀ ଦିନ ସୁନାରେ କୃଷ୍ଣମୂର୍ତ୍ତି, ରୁପାରେ ଶତଦଳ ପଦ୍ମ, ଗିନା, ଶାମୁକା, ଖୁର ଇତ୍ୟାଦି କରି ଦେଉଳକରଣଙ୍କ ଜିମା ଦିଅନ୍ତି । ସୁନିଆଁ ଦିନ ସୁନାରେ ବାମନ ମୂର୍ତ୍ତି ତିଆରି କରନ୍ତି । କୁମାରପୂର୍ଣ୍ଣିମା ପାଇଁ ରୁପା କଉଡ଼ି ତିଆରି କରି ଯୋଗାନ୍ତି ।

ଶାଢ଼ି ବନ୍ଧା ଶୂଦ୍ର ସେବକ; ସେବା ବଂଶାନୁକ୍ରମିକ ।

## ୯୦. ତାମରା ବିଶୋଇ

ତମ୍ବାକାମ କରୁଥିବା ସେବକ । ସ୍ନାନପୂର୍ଣ୍ଣିମା ପୂର୍ବ ତ୍ରୟୋଦଶୀ ଦିନ, ରଥଯାତ୍ରା ଓ ବାହୁଡ଼ା ଯାତ୍ରାରେ ବିଧି ଅନୁସାରେ ତାମ୍ରପଟା ଇତ୍ୟାଦି ତିଆରି କରି ବାହୁଟ ଓ ସେନାପଟାରେ ତାମ୍ର ଦିଅନ୍ତି । ଶାଢ଼ି ବନ୍ଧା, ବଂଶାନୁକ୍ରମିକ ସେବକ ।

## ୯୧. କରତିଆ

ପଣାସଂକ୍ରାନ୍ତିଠାରୁ ରଥର କାଠକଟା ଆରମ୍ଭ କରନ୍ତି । ଏହା ଶାଢ଼ିବନ୍ଧା ସେବା ନୁହେଁ ।

## ୯୨. ବେଣ୍ଟବିନ୍ଧା ପାଇକ

ବେଣ୍ଟ ନୀତିରେ ଶର ବିନ୍ଧୁଥିବା ସେବକ । ଦଳ ବେହେରା ବା ଏହାଙ୍କ ଅସୁବିଧା ହେଲେ ଲେଙ୍କା ଏ କାର୍ଯ୍ୟ କରନ୍ତି । ବେଣ୍ଟ ବିନ୍ଧା ପାଇକ ମଧ୍ୟ ଦଳବେହେରା ଭାବରେ ପ୍ରତିଦିନ ପାଇକଙ୍କ ସଙ୍ଗେ ପାଳିଆ ସେବକଙ୍କୁ ସେବାନୀତି ଖଟିବାକୁ ଡାକନ୍ତି । ଏହା ଶାଢ଼ିବନ୍ଧା ସେବା ।

## ୯୩. ପାଟରା ବିଶୋଇ

ପାଟ ତିଆରି ବ୍ୟତୀତ ପାଗ, କୁସୁମୀ, ଲୁଗା ରଙ୍ଗ କରିବା, ରାକ୍ଷୀ ଡୋର, ଚନ୍ଦନ ଯାତ୍ରାପାଇଁ ମଦନମୋହନଙ୍କ ପାଟ ଡୋରି, ପୁଷ୍ୟାଭିଷେକ ପାଇଁ ପାଟ ଫୁଲି, ମାଘ ସପ୍ତମୀ

ଦିନ ସୂର୍ଯ୍ୟଙ୍କ ରୁନ୍ଧା ଡୋରି, ରେଖା ପଞ୍ଚମୀରେ ରାହୁ ରେଖା, ବନଭୋଜି ବେଶରେ ପାଟ ଶିକା, ପାଟ ବନମାଳା ଆଦି, ବାମନ ଜନ୍ମପାଇଁ ପଇତା, ଷୋଳ ପୂଜାରେ ବିମଳାଙ୍କ ଝୋବା, କୃଷ୍ଣ ବେଶର ରୁନ୍ଧା ଜିନିଷ ପ୍ରସ୍ତୁତ କରନ୍ତି । ବିଜେ ଓ ଆଲଟ ଲାଗିପାଇଁ ଲୁଗା ରଙ୍ଗ କରିବା, ଝୋବା ଶ୍ରୀପଟ, ପଇତା, ଗୁଆମାଳ, ଗହ୍ଣାଫୁଲି, ଅଣସର ଓ ମହାଅଣସର ପାଇଁ ଘଣା, ଚଉଠା, ପଇତା, ବାଇଶି ହାତିଆ ତିଆରି କରନ୍ତି ।

## ୯୪. କଳାବେଠିଆ

ଏମାନେ ହେରା ପଞ୍ଚମୀ ବାସି ଦିନ ତିନି ରଥର ଦକ୍ଷିଣ ମୋଡ଼ କରନ୍ତି । ଶ୍ରୀଗୁଣ୍ଡିଚା ଓ ବାହୁଡ଼ାରେ ରଥଟଣାରେ ଲୋକ ଅଭାବ ହେଲେ ବା ଅଧିକା ଲୋକ ଦରକାର ପଡ଼ିଲେ ଏମାନେ ଆସି କାମ କରନ୍ତି । ଏମାନେ ବାଟ ଗାଁ, ସମଗରା (ପୁରୀ ସଦର) ଓ କପିଳେଶ୍ୱରପୁର ମଙ୍ଗରାଜପୁର ପ୍ରଜା ।

## ୯୫. ଦରଜି ସେବା

ଶ୍ରୀମନ୍ଦିରର ଯାବତୀୟ ସିଲାଇ କାମ ଏ ନିଯୋଗ କରନ୍ତି । ଏମାନଙ୍କର ସର୍ଦ୍ଦାର କେବଳ ଶାଢ଼ିବାନ୍ଧନ୍ତି । ତାଙ୍କ ନିର୍ଦ୍ଦେଶରେ ଅନ୍ୟ ଦରଜି କାମ କରନ୍ତି ।

## ୯୬. କୁମ୍ଭାର ବିଶୋଇ

କୁମ୍ଭାର ସେବକ । ଏମାନେ ତିନି ଶ୍ରେଣୀର (କ) ପର୍ବଯାତ୍ରା ସେବା କୁମ୍ଭାର ବିଶୋଇ, (ଖ) ବଲ୍ଲଭ ଓ ବାହାର ଦେଉଳି ସେବା କରୁଥିବା କୁମ୍ଭାର ବିଶୋଇ, (ଗ) ଦୈନିକ ସେବା କରୁଥିବା କୁମ୍ଭାର ବିଶୋଇ । ଏମାନେ ଶାଢ଼ିବନ୍ଧା ସେବକ ନୁହଁନ୍ତି ।

ଏମାନଙ୍କ ସେବାରେ ତ୍ରୁଟିଯୋଗୁଁ ଶ୍ରୀମନ୍ଦିର ପରିଚାଳନା କମିଟି କେତେବର୍ଷ ତଳେ ଏମାନଙ୍କୁ ସେବାରୁ ବାସନ୍ଦ କରିଛନ୍ତି । ସଂପ୍ରତି ଏହି ସେବା ହେଉ ନାହିଁ ।

## ୯୭. ରଥ ଭୋଇ

ଏମାନଙ୍କ ମଧ୍ୟରେ ଜଣେ ସର୍ଦ୍ଦାର ଅଛନ୍ତି । ଏ ସର୍ଦ୍ଦାର ଭୋଇ ନିଜେ କାମ କରନ୍ତି ଓ ଅନ୍ୟ ମୂଲିଆ ଲଗାଇ ରଥ କାମ କରନ୍ତି । ବାହାରେ ଯେତେ ଛାମୁଣ୍ଡିଆ ହୁଏ, ସବୁ ଏମାନେ କରନ୍ତି । ଚାନ୍ଦୁଆ ଉପରକୁ ଉଠାନ୍ତି । ଚନ୍ଦନ ଯାତ୍ରାପାଇଁ ନରେନ୍ଦ୍ର ପୋଖରୀରେ ବୁଡ଼ି ରହିଥିବା ଡଙ୍ଗା (ଚାପ) ଉଠାନ୍ତି ଓ ଯାତ୍ରା ପରେ ପୁଣି ବୁଡ଼ାଇ ଦିଅନ୍ତି । ରଥଯାତ୍ରା ପରେ ରଥ ଭଙ୍ଗାରେ କାମ କରନ୍ତି । କାଳୀୟଦଳନ ନୀତିରେ ମାର୍କଣ୍ଡ ପୋଖରୀରେ ଭାଡ଼ି ତିଆରି କରନ୍ତି । ସ୍ନାନବେଦୀରେ ଓ ରଥରେ କାଠ କାମ କରନ୍ତି ।

ଏମାନେ ଶାଢ଼ିବନ୍ଧା ସେବକ ନୁହଁନ୍ତି ।

## ୯୮. ମାଳଚୂଳ ସେବା

ମକର ପୂର୍ବଦିନ ଶ୍ରୀଜଗନ୍ନାଥଙ୍କ ବାଡ଼ପାଇଁ ଫୁଲ, ତୁଳସୀର ଚୂଳ ଜଳାକବରୀ ବେଣୀ ତିଆରି କରି ଦିଅନ୍ତି । ସ୍ନାନ ବେଦୀରେ, ରଥରେ, ଗୁଣ୍ଡିଚା ଘରେ ବାହୁଡ଼ା ଏକାଦଶୀରେ ମାଳଚୂଳ ଯୋଗାନ୍ତି । ଚନ୍ଦନଯାତ୍ରା (୪୨ ଦିନ) ସୁଦର୍ଶନଙ୍କ ବାଡ଼ ନିମନ୍ତେ ଅଳକା ଯୋଗାନ୍ତି ।

ଏବେ ଏହି ସେବା ହେଉନାହିଁ ।

## ୯୯. ବାଣୁଆ

ଠାକୁରଙ୍କ ମହାଦୀପ ଜାଳିବା ବେଳେ, ଚନ୍ଦନ ଯାତ୍ରାରେ, ବିବାହ ଉତ୍ସବ ଦିନମାନଙ୍କରେ ଯାହା ବାଣ ଫୁଟାଯାଏ ତାହା ଏହି ସେବକ କର୍ତ୍ତୃପକ୍ଷଙ୍କଠାରୁ ତତ୍‌କାଳୀନ ମୂଲ୍ୟନେଇ ଯୋଗାଏ ।

ଏବେ ଏହି ସେବା ହେଉ ନାହିଁ ।

## ୧୦୦. ଚକ୍ର ଦିହୁଡ଼ିଆ

ଚକ୍ରାକୃତିର ଦିହୁଡ଼ି ଧରୁଥିବା ସେବକ । ମଧ୍ୟାହ୍ନ ଧୂପରେ ଦିଅଁଙ୍କର ଯେତେବେଳେ ବିଜେ ହେବ ଏ ସେବକ ଚକ୍ର ଦିହୁଡ଼ି ଧରି ଚାଲିବେ । ସ୍ନାନ ଯାତ୍ରା, ରଥ ପହଣ୍ଡି, ନୀଳାଦ୍ରି ବିଜେ ପହଣ୍ଡି, ଦୟଣାଚୋରି, ଚାପ, ଦୋଳ, ରୁକ୍ମିଣୀ ହରଣ, ବିବାହ ବେଦୀ ଇତ୍ୟାଦିରେ ଦିହୁଡ଼ି ଜାଳିବେ ।

ଏହାଙ୍କର ଆଉ ଏକ ସେବା- 'ଅଣସର ଚୂନା ସେବା' ଅଛି । ଅଣସର ଖଳିଲାଗି ପାଇଁ ଆବଶ୍ୟକ ଗହମ ଲକ୍ଷ୍ମୀଙ୍କ ଜଗମୋହନରେ ହବିଷ ପାଳନ କରି ଚୂରି ଦିଅନ୍ତି ।

ଶୂଦ୍ର ସେବକ, ସେବା ବଂଶାନୁକ୍ରମିକ । ଶାଢ଼ିବନ୍ଧା ନୁହଁନ୍ତି ।

## ୧୦୧. ଓଝା ମହାରଣା

କମାର ସେବକ । ମନ୍ଦିରର ସବୁ ଲୁହା କାମ ନିଜେ ଓ ଅନ୍ୟର ସାହାଯ୍ୟ ନେଇ କରନ୍ତି । ବିମଳା ମନ୍ଦିର ସାମନାରେ ବଳି ଦିଅନ୍ତି । ବଂଶାନୁକ୍ରମିକ ଶାଢ଼ିବନ୍ଧା ସେବକ ।

## ୧୦୨. ଘଣ୍ଟ ସେବା

ଶ୍ରୀମନ୍ଦିରର ପ୍ରତ୍ୟେକ ୩ ଧୂପ (ସକାଳ, ମଧ୍ୟାହ୍ନ ଓ ସଂଧ୍ୟା)ରେ ଘଣ୍ଟ ବଜାନ୍ତି । ରଥ ଓ ସ୍ନାନଯାତ୍ରା ଛାଡ଼ି ବାକି ସବୁ ପର୍ବପର୍ବାଣି, ଯାନିଯାତ୍ରାରେ ବେଢ଼ାରେ ଘଣ୍ଟ ବଜାଇବେ । ବିମଳାଙ୍କ ଷୋଳପୂଜା, ଗୁରୁବାର ମାଜଣା ଓ ଏକାନ୍ତ, ପ୍ରତ୍ୟେକ ଆଜ୍ଞାମାଳ ବିଜେ, ସ୍ନାନ ପୂର୍ଣ୍ଣିମାରେ ଜଳ ଛେକ ବିଜେ, ହାତୀ ବେଶ, ସୋଲ ଚିତା ଆଣିବା ବେଳେ, ମକର ଓ ସାତପୁରି ତାଡ଼ ଆଣିବା ଆଦି ସମୟରେ ଘଣ୍ଟ ବଜାଇବେ । ଶାଢ଼ିବନ୍ଧା ଶୂଦ୍ର ସେବକ, ସେବା ବଂଶାନୁକ୍ରମିକ ।

## ୧୦୩. ଘଣ୍ଟୁଆ

ଏମାନେ ସ୍ନାନପୂର୍ଣ୍ଣିମା ଦିନ ଠାକୁରମାନେ ରତ୍ନ ସିଂହାସନରୁ ସ୍ନାନ ବେଦୀକୁ ଓ ବେଦୀଠାରୁ ଅଣସର ପିଣ୍ଡିକୁ ବିଜେ କରିବା ସମୟରେ ଘଣ୍ଟ ବଜାନ୍ତି । ଶ୍ରୀଗୁଣ୍ଡିଚା ଓ ବାହୁଡ଼ା ବିଜେ, ଗୁଣ୍ଡିଚା

ଘରକୁ ବିଜେ, ରଥମାନଙ୍କର ଦକ୍ଷିଣମୋଡ଼, ରଥଟଣା ଓ ନୀଳାଦ୍ରି ବିଜେ ସମୟରେ ଘଣ୍ଟ ବଜାନ୍ତି । ଏମାନେ ଦୁଇ ଗୋଷ୍ଠୀର- ପୁରୀ ଘଣ୍ଟୁଆ ଓ ଭଟିମୁଣ୍ଡା ଅଞ୍ଚଳର କଂସାରି ସେବକ ।

ଏହା ଶାଢ଼ିବନ୍ଧା ସେବା ନୁହେଁ । ସେବା ବଂଶାନୁକ୍ରମିକ ।

## ୧୦୪. ରଥ ଡାହୁକ

ଶ୍ରୀଗୁଣ୍ଡିଚା ଯାତ୍ରା ପୂର୍ବଦିନ ରଥ ଖଳାରୁ ସିଂହଦ୍ୱାର ନିକଟକୁ ତିନି ରଥ ଟାଣି ରଖାଇବା ବେଳେ, ଶ୍ରୀଗୁଣ୍ଡିଚା ଓ ବାହୁଡ଼ା ଦିନ ରଥ ଟଣାରେ ଓ ରଥମାନଙ୍କର ଦକ୍ଷିଣମୋଡ଼ରେ ଏମାନେ ପ୍ରତ୍ୟେକ ରଥ ଉପରେ ରହି ଖୁବ୍ ଚିତ୍ତାକର୍ଷକ ଗୀତ ଗାଆନ୍ତି । ଅଶ୍ଳୀଳ ଗୀତ ଗାଇବା ଅବିଧି ।

ଏମାନେ ଶାଢ଼ିବନ୍ଧା ସେବକ ନୁହନ୍ତି । ସେବା ବଂଶାନୁକ୍ରମିକ ।

## ୧୦୫. ବଢ଼େଇ ସେବକ

ଏମାନେ ରଥ ନିର୍ମାଣ କରନ୍ତି । ନବକଳେବର ସମୟରେ ଦାରୁ ଅନ୍ୱେଷଣରେ ଯାଆନ୍ତି ଓ ଦଇତାଙ୍କ ନିର୍ଦ୍ଦେଶରେ ମୂର୍ତ୍ତି ନିର୍ମାଣ କରନ୍ତି । ଚନ୍ଦନଯାତ୍ରାରେ ଚାପ ତିଆରି ଓ ଝୁଲଣ ବିମାନ ତିଆରି କରନ୍ତି । ବର୍ଷ ତମାମ ଯାନିଯାତ୍ରାରେ ପିଢ଼ା, ରୁଖା, ସ୍ରୁବ, ସ୍ରୁଚ, ଭଦ୍ରାସନ, ବେଶ ଉପକରଣ ଇତ୍ୟାଦି ଯେତେ କାଠ କାମ ଲାଗେ କରନ୍ତି । କାଠ ମନ୍ଦିର କର୍ତ୍ତୃପକ୍ଷ ଯୋଗାନ୍ତି ।

ଶାଢ଼ିବନ୍ଧା ସେବକ । ରଥ କାମପାଇଁ ପ୍ରତ୍ୟେକ ଅକ୍ଷୟତୃତୀୟା ଦିନ ଶ୍ରୀମନ୍ଦିର ମୁଖ୍ୟ କାର୍ଯ୍ୟାଳୟରେ ଶାଢ଼ି ପାଆନ୍ତି । ସେବା ବଂଶାନୁକ୍ରମିକ ।

## ୧୦୬. ବୈଦ୍ୟ

ପ୍ରତିବର୍ଷ ଅଣସର ଦଶମୀ ଦିନ ସଂଧ୍ୟାରେ ପ୍ରଭୁଙ୍କ ପାଇଁ ଦଶମୂଳ ମୋଦକ ଆଣି ଶ୍ରୀମନ୍ଦିର ଗାରଦରେ ଦିଅନ୍ତି । ତାହା ଏକାଦଶୀ ଦିନ ଭୋଗ ସହିତ ଭୋଗ ହୁଏ ।

ବଂଶାନୁକ୍ରମିକ ବ୍ରାହ୍ମଣ ବୈଦ୍ୟ ସେବକ । ଶାଢ଼ିବନ୍ଧା ନୁହନ୍ତି ।

## ୧୦୭. ଅମୋଣିହା ଛତାର

ଯେତେ ଘଣ୍ଟ, ଛତା, କାହାଳୀ ଭୋଗ ହୁଏ, ଏ ସେବକ ଛତା ଧରି ଭୋଗବାଟଠାରୁ ଜୟ ବିଜୟ ଦ୍ୱାର ଯାଏଁ ଭୋଗ ଆଗରେ ଚାଲନ୍ତି । ସ୍ନାନ ପୂର୍ଣ୍ଣିମା, ପୁଷ୍ୟାଭିଷେକ ଓ ନୀଳାଦ୍ରି ମହୋଦୟରେ ଜଳ ଛେକ ଆସିଲା ବେଳେ ଛତା ଧରି ଆଗରେ ଚାଲନ୍ତି। ଯେଉଁ ଯେଉଁ ବେଢ଼ରେ ଛତି ଯାଏ (ଯଥା- ମକର), ସେ ବେଢ଼ରେ ଛତି ଧରନ୍ତି । ଏ ସେବକ ଅଖଣ୍ଡମେକାପ ଶ୍ରେଣୀର । ସେବା ବଂଶାନୁକ୍ରମିକ ।

## ୧୦୮. ଛାମୁ ଦିହୁଡ଼ି

ମଧ୍ୟାହ୍ନ ଧୂପ ପରେ ପ୍ରତ୍ୟେକ ଭିତର ଓ ବାହାର ବିଜେରେ ଏମାନେ ଦିହୁଡ଼ି ଲଗାଇ ଆଗରେ ଚାଲନ୍ତି, ରଥରେ ସଂଧ୍ୟାଠାରୁ ବଡ଼ସିଂହାର ପର୍ଯ୍ୟନ୍ତ ଦିହୁଡ଼ି ଜାଳନ୍ତି । ସ୍ନାନଯାତ୍ରା ବିଜେ ଓ ବାହୁଡ଼ା ପହଣ୍ଡିରେ ଜାଳନ୍ତି ।

ଏମାନେ ବିଡୁଆ ସୂପକାର ଗୋଷ୍ଠୀ ସେବକ । ଶାଢ଼ିବନ୍ଧା ନୁହଁନ୍ତି । ସେବା ବଂଶାନୁକ୍ରମିକ ।

## ୧୦୯. ଚାପ ବେହେରା ଓ ଚାପ ଦଳାଇ

ଚନ୍ଦନ ଯାତ୍ରା (୨୧ ଦିନ)ରେ ଏ ସେବକ ବଜନ୍ତୀ ଡଙ୍ଗା ବାହାନ୍ତି । ଶ୍ରୀଜୀଉଙ୍କ ଚନ୍ଦନ ଚାପ ୪ ନାହା ଓ ବଜନ୍ତୀ ଡଙ୍ଗା ମରାମତି କରନ୍ତି । କାଳୀୟଦଳନ ଯାତ୍ରା ସକାଶେ ଡଙ୍ଗା ବାହାନ୍ତି ।

ସେବା ବଂଶାନୁକ୍ରମିକ । ଶାଢ଼ିବନ୍ଧା ନୁହଁନ୍ତି । ସଂଜ୍ଞା- ବେହେରା ।

## ୧୧୦. ଚାପ ଦଳାଇ

ମଦନମୋହନ ଓ ରାମକୃଷ୍ଣଙ୍କ ଚାପରେ ନାହା ବାହାନ୍ତି । ଜାଗିରିଭୋଗୀ ପ୍ରଧାନ ସେବକ । ସଂଜ୍ଞା- ଦଳେଇ ।

## ୧୧୧. ମାପ ସାଇତା କରଣ / ମହା ପ୍ରଶସ୍ତ ସେବା

ଦୈନିକ ଓ ପର୍ବପର୍ବାଣି ଭୋଗ ସରିବା ପରେ ଭୋଗ ବାହାରକୁ ଆସିଲେ ଏ ସେବକ ଅନ୍ୟ ସେବକମାନଙ୍କ ମଧ୍ୟରେ ତାଲିକା ଅନୁଯାୟୀ ଖେଇ ବାଣ୍ଟନ୍ତି ଓ ପସରାମାନଙ୍କୁ ଜିନିଷ ପଠାନ୍ତି । ଏବେ ଏ ସେବା ହେଉ ନାହିଁ । ଶାଢ଼ିବନ୍ଧା କରଣ ସେବକ । ସେବା ବଂଶାନୁକ୍ରମିକ ଥିଲା ।

## ୧୧୨. ତଡ଼ଉ କରଣ

ପ୍ରତିଦିନ ଦ୍ୱାରଫିଟା ପୂର୍ବରୁ ରହି ନୀତି ସଂପର୍କରେ ଦେଉଳକରଣ ଓ ଚର୍ଚ୍ଚା କର୍ମଚାରୀଙ୍କୁ ଜଣାଇବା, ଯେଉଁଦିନ ନୀତିପାଇଁ ଯେଉଁ ବସ୍ତ୍ର ଆବଶ୍ୟକ ଚାଙ୍ଗଡ଼ା ମେକାପଙ୍କୁ କହିବା, ବିଜେ ଦିନ ଆଜ୍ଞାମାଳ ଲାଗିପାଇଁ ଖୁଣ୍ଟିଆଙ୍କୁ କହିବା, ସାହାଣମେଳାରେ ସିଂହାସନ ତଳେ ପାଳିଆ ମେକାପଙ୍କ ପଛରେ ରହି ଭେଟ ପିଣ୍ଡିକା, ଶ୍ରୀଅଙ୍ଗ ଲଗା ଆମଦାନୀ କରାଇବା, ସଂପୃକ୍ତ ସେବକଙ୍କ ପ୍ରାପ୍ୟ ଦେଇ ବଳକା ଆୟ ଆମଦାନୀ ମନ୍ଦିର ଅଫିସ୍‌କୁ ଦେଉଳକରଣଙ୍କ ଦସ୍ତଖତରେ ଚାଲଣ ଲେଖି ପଠାଇବା, ଯଜମାନି ଲୁଗା ଅଳଙ୍କାର ଲାଗିଲେ ସେବକଙ୍କୁ ସେମାନଙ୍କର ପ୍ରାପ୍ୟ ଦେଇ ବଳକା ଚାଲାଣ କରିବା, ଯେଉଁଦିନ ଯେଉଁ ଯାତ୍ରା ହେବ, ଯେଉଁ ଯାତ୍ରାରେ ଯେଉଁ ପ୍ରସାଦ ଲାଗି ହେବ ତାର ବ୍ୟବସ୍ଥା କରାଇବା, ରୁକ୍ମିଣୀ ହରଣ ଦିନ ଚିଟାଉ ଲେଖି 'ବିପ୍ର ବ୍ରାହ୍ମଣ' ହସ୍ତେ ପରମେଶ୍ୱରଙ୍କ ନିକଟକୁ ପଠାଇବା, ଯେଉଁଦିନ ଯେଉଁ ବେଶ ହେବ ସିଂହାସନ ତଳେ ରହି ଲାଗି ଜିନିଷର ତାଲିକା ରଖିବା, ଯାନିଯାତ୍ରା ପର୍ବପର୍ବାଣିରେ ଅଧିବାସ ଘର ମୁଦ ଦେବା ଓ ଖୋଲିବା, ଅଣସର ଓ ମହା ଅଣସରରେ ତାଟିଘର ଓ ଦକ୍ଷିଣ ଦ୍ୱାର ମୁଦଦେବା ଓ ଖୋଲିବା, ହରିବଲ୍ଲଭ ତାଟ ମୁଦ ଦେଇ ନଅରକୁ ପଠାଇବା, ନୀତି, ସେବା ଓ ସେବକଙ୍କ ଦୋଷ ଗୁଣ, ଶାଢ଼ିବନ୍ଧା ସମ୍ବନ୍ଧରେ ତଲବ ହେଲେ ରିପୋର୍ଟ ଦେବା ଇତ୍ୟାଦି କାମ କରନ୍ତି ।

ସେ ମଧ୍ୟ ଭଣ୍ଡାରକରଣ, ଚାଙ୍ଗଡ଼ାକରଣ, ଶିଠକରଣ କାର୍ଯ୍ୟ କରନ୍ତି । ଭଣ୍ଡାରକରଣ ରୂପେ ଅନୁମତି ପ୍ରାପ୍ତ ସବୁ ମହନ୍ତାଦିଙ୍କୁ ଉପଚାର, ଚାମର, ଆଲଟ ସେବାପାଇଁ ଭଣ୍ଡାରରୁ ଚାମର ଆଲଟ

ଦେଇ ସେବାରେ ମୁତୟନ କରାନ୍ତି, ଚାଙ୍ଗଡ଼ାକରଣ ରୂପେ ଯାନିଯାତ୍ରାରେ ସାହି ଓ ସେବକଙ୍କ ପ୍ରାପ୍ୟ ଶାଢ଼ି ପ୍ରଦାନ କରାଇ ପରମାଣିକ ଆଦାୟ କରନ୍ତି, ଧୋବାଘରେ ପ୍ରଦାନ କରାଯାଉଥିବା ଦିଅଁଙ୍କ ବସ୍ତ୍ରର ହିସାବ ରଖନ୍ତି, ଭଣ୍ଡାର ଘର ଓ ଚାଙ୍ଗଡ଼ା ଘରର ଦୈନିକ ଜମାଖର୍ଚ୍ଚ ଲେଖିବା, ଶାଢ଼ି ବନ୍ଧାରେ ଦେଉଳକରଣଙ୍କ ମୁକାବିଲାରେ ଚାଙ୍ଗଡ଼ାଘରୁ ଶାଢ଼ିଦେବା କାମ କରନ୍ତି । ଧ୍ୱଜାବନ୍ଧାରେ ମାହାସୁଲ ରଖି ଦେଉଳର ପ୍ରାପ୍ୟ ଦେଉଳକରଣଙ୍କ ଦସ୍ତଖତରେ ଚାଲାଣ କରି ସେବକଙ୍କ  ମଧ୍ୟରେ ଯଥାବିଧି ବାଣ୍ଟି ଚୂନରା ଦ୍ୱାରା ଧ୍ୱଜା ବନ୍ଧାନ୍ତି । ନବକଳେବରରେ ଦଇତାପତିଙ୍କ ସହିତ ଦାରୁ ଅନ୍ୱେଷଣରେ ଯାଆନ୍ତି ।

ନିଜେ ଶାଢ଼ି ବନ୍ଧାଇଲେ ରୁକ୍ମିଣୀ ହରଣ ଚିଟାଉଲେଖା, ଚାମର ଖଦି ଚାମର, ଛୁରୀ ଖଣ୍ଡା ସେବା, ଚାପ ଓ ରଥ ଉପରେ ସେବା କରିପାରନ୍ତି । ମହାନାୟକ ଶାଢ଼ିବନ୍ଧା କରଣ ସେବକ । ସେବା ବଂଶାନୁକ୍ରମିକ ।

## ୧୧୩. ଦେଉଳକରଣ

ସକାଳ ଦ୍ୱାରଫିଟାଠାରୁ ପହୁଡ଼ ପର୍ଯ୍ୟନ୍ତ ନୀତି ସବୁ ଠିକ୍ ସମୟରେ ହେଉଛି କି ନାହିଁ, ତଦନ୍ତ କରନ୍ତି । ନିୟମିତ ରୂପେ ପ୍ରସ୍ତୁତ ହୋଇ ଭୋଗ ହେଉଛି କି ନାହିଁ ତଦନ୍ତ କରିବା, ପର୍ବପର୍ବାଣି ଯାତ୍ରାରେ ଉପାଧି ଭୋଗ ଜିନିଷ ଆଦି ଆଣି ଭୋଗର ତାଲିକା କରି ମହାସୁଆରଙ୍କୁ ଦେବା, ସେବକ ଖେଇ ପାଇବା ନପାଇବା ଦେଖିବା, ଯଜମାନି ବସ୍ତ୍ର  ଅଳଙ୍କାର ଲାଗିଲେ ସିହା କରି ରେଜିଷ୍ଟରରେ ଲେଖିବା, ବେଶ ପରେ ଲାଗି ଜିନିଷ ଫେରସ୍ତ ହେବା ତତ୍ତ୍ୱ ନେବା, ଭଣ୍ଡାର ଓ ଚାଙ୍ଗଡ଼ା ଘର ଲୁଗାର ଆୟ ବ୍ୟୟ ହିସାବ ରଖିବା, ଭଣ୍ଡାରର ଅଳଙ୍କାର ମରାମତି ଓ ସଫାସଫି ତଡ଼ାଉକରଣଙ୍କ ଉପସ୍ଥିତିରେ କରାଇବା, ଚିତା ଓ ରାହୁରେଖା ଲାଗି ଦିନ ଦଇତାଙ୍କୁ ପ୍ରଦାନ କରିବା, ଶାଢ଼ିବନ୍ଧା, ଚାମର, ମଶାଲ ସେବା ପାଉଣା ବାଣ୍ଟିବା, ସେବକଙ୍କ ବିବାଦ ସମାଧାନ କରିବା, ଧ୍ୱଜା ପିଣ୍ଡିକା, ଚାଲାନରେ ହିସାବ ବୁଝି ଦସ୍ତଖତ କରିବା, ସେବା ଓ ଚୁଲି ନିଲାମ, କୋରଖ ଓ ହସ୍ତାନ୍ତର ହେଲେ ରେକର୍ଡ଼ରେ ଦରଜ ଓ ଦାଖଲ ଖାରଜ କରିବା, ବଡ଼ ମହାସ୍ନାନ, ମହା ଅଣସର, ଶ୍ରୀଅଙ୍ଗ ଫିଟା ଓ ପର୍ବପର୍ବାଣିମାନଙ୍କରେ ଖର୍ଚ୍ଚର ତାଲିକା କରିବା, ଧୂପବେଳେ ଭିତରକାଠର ଟେରା ତଦାରଖ କରିବା, ଶାଢ଼ିବନ୍ଧା ପାଇଁ ଆବେଦନକାରୀ ଉପଯୁକ୍ତ କି ନାହିଁ ରିପୋର୍ଟ ଦେବା, ନବକଳେବରରେ ଦାରୁ ଅନ୍ୱେଷଣରେ ଯିବା ଓ ଶେଷ ପର୍ଯ୍ୟନ୍ତ ରହି କାର୍ଯ୍ୟ କରିବା, କଳେବର ଦଶାହରେ ଦଇତାଙ୍କ ଦଶାହ କର୍ମରେ ଯୋଗ ଦେବା ଇତ୍ୟାଦି ଏହାଙ୍କର କାର୍ଯ୍ୟ ।

ଏମାନେ ମଧ୍ୟ ଶ୍ରୀଜୀଉଙ୍କର ଅଙ୍ଗରକ୍ଷୀ ରୂପେ ଛୁରୀ ଖଣ୍ଡା ସେବା କରନ୍ତି । ସୁନାବେଣ୍ଟ ଚାମର, ଖଦି ଚାମର ଏବଂ ଅଣସର ପିଣ୍ଡିଠାରେ ଉପଚାର ସେବା କରନ୍ତି । ଗଣେଶ ଚତୁର୍ଥୀ ଓ ଶ୍ରୀପଞ୍ଚମୀ ଦିନ ଏହାଙ୍କ ଓ ତଡ଼ଉଙ୍କ ଘରୁ ମାଦଳାପାଞ୍ଜି ଆସି ସରସ୍ୱତୀଙ୍କ ମନ୍ଦିରରେ ପୂଜା ବସେ । ମହାନାୟକ ଶାଢ଼ିବନ୍ଧା କରଣ ସେବକ । ସେବା ବଂଶାନୁକ୍ରମିକ ।

## ୧୧୪. ବଇଠି କରଣ

ଏ ବେହରଣରେ ଉପସ୍ଥିତ ରହି ଧ୍ୱଜା, ପିଣ୍ଡିକା ଇତ୍ୟାଦି ଆମଦାନୀ ଯେତେ ଚାଲାଣ ହେବ ତାର ସିରସ୍ତା ରଖି ସିହା କରିବେ । ରୋଷ ଆଡ଼େ ଭୋଗ ତନଖି କରିବେ ।

ବଂଶାନୁକ୍ରମିକ କରଣ ସେବକ । ଶାଢ଼ିବନ୍ଧା ନୁହନ୍ତି ।

## ୧୧୫. କୋଠ କରଣ

ଏ ବେହରଣରେ ସିରସ୍ତା ଲେଖନ୍ତି ଓ ଧ୍ୱଜା, ପିଣ୍ଡିକା, ଲାଗି, ବାଗି ସମସ୍ତର ସିହା ରଖନ୍ତି । ପର୍ବପର୍ବାଣି ଭୋଗ ତାଲିକା ଦେଉଳକରଣଙ୍କଠାରୁ ନେଇ ରୋଷ ଆଡ଼େ ଦିଅନ୍ତି । ଚାପ ଉପରେ ଛୁରୀ ଖଣ୍ଡା ସେବା କରନ୍ତି । ସେବା ପୂଜାରେ ଖିଲାପ ହେଲେ ରିପୋର୍ଟ କରନ୍ତି । ରାଜା ବିଜେ କଲେ ଅନ୍ୟ କରଣଙ୍କ ସହ ଉପସ୍ଥିତ ରହନ୍ତି ।

ଶାଢ଼ିବନ୍ଧା କରଣ ସେବକ । ସେବା ବଂଶାନୁକ୍ରମିକ ।

## ୧୧୬. ଚର୍ଚ୍ଚାଇତ କରଣ

ସେବକମାନଙ୍କୁ ଡାକହାକ କରାଇ ନିୟମିତ ରୂପେ ନୀତି ଚାଲୁ କରାନ୍ତି । ସେବକମାନେ ଶାଢ଼ି ବନ୍ଧାଇବାବେଳେ ଚାଙ୍ଗଡ଼ା ମେକାପଠାରୁ ଶାଢ଼ି ନେଇ ପାଟଯୋଷୀ, ଭିତରଛ ମହାପାତ୍ରଙ୍କୁ ଦିଅନ୍ତି । ଶୂଦ୍ର ସେବକ ଶାଢ଼ିବନ୍ଧାରେ ପଡ଼ିଆକରଣଙ୍କୁ ଦିଅନ୍ତି । ପହିଲି ଭୋଗ ମାସରେ ସେବକଙ୍କୁ ବଡ଼ି କଣ୍ଟେଇ ବାଣ୍ଟନ୍ତି । ଲେଙ୍କା, ପାଇକ, ପ୍ରଧାନୀ ଏହାଙ୍କ ନିର୍ଦ୍ଦେଶରେ କାମ କରନ୍ତି ।

ଶାଢ଼ିବନ୍ଧା କରଣ ସେବକ । ଏବେ ଏହି ସେବା ହେଉନାହିଁ ।

## ୧୧୭. ଦୟଣାପତ୍ରୀ

ଦମନକ ଉତ୍ସବ ସହିତ ସଂପୃକ୍ତ ପତ୍ରୀ ସେବକ । ଏ ମଧ୍ୟ ଓଢ଼ଣ ଷଷ୍ଠୀ ଅଧିବାସ ଦିନ ଚାଙ୍ଗୁଡ଼ିରେ ନୂଆ ଲୁଗା ଘୋଡ଼ମାନ ରଖି ଭୋଗମଣ୍ଡପ ଘରେ ଅଧିବାସ କରାନ୍ତି । ପରବର୍ତ୍ତୀ ଦିନ ବେଢ଼ା ସରିବା ପରେ ପୁଷ୍ପାଳକଙ୍କୁ ବଢ଼ାଇ ଦିଅନ୍ତି । ପବିତ୍ରା ଅଧିବାସୀ ଦିନ ୩ ଚାଙ୍ଗୁଡ଼ିରେ ପବିତ୍ରା ରଖି ଖଟଶେଯ ଘରେ ଅଧିବାସ କରାନ୍ତି । ତା' ଆରଦିନ ବେଢ଼ା ପରେ ପୁଷ୍ପାଳକଙ୍କୁ ଦିଅନ୍ତି ।

ଶାଢ଼ିବନ୍ଧା ବ୍ରାହ୍ମଣ ସେବକ । ସେବା ବଂଶାନୁକ୍ରମିକ ।

## ୧୧୮. ଚାଉଳବଛା କରଣ

ସକାଳ ଓ ମଧ୍ୟାହ୍ନ ଧୂପ ନିମନ୍ତେ ଚାଉଳ ଓ ମୁଗ ଏ ନିଜେ ବା ଲୋକ ଲଗାଇ ବାଛି ସଫା କରନ୍ତି । ମୁଗ ଭାଙ୍ଗି ଚୋପା କାଢ଼ି ସଫା କରନ୍ତି । ନଡ଼ପ ଘିଅ ଗୋଦାମରୁ ପୂର୍ବ ରାତିରୁ ସିଲ୍ ହୋଇ ଆସି ଏହାଙ୍କ ପାଖରେ ରହେ ।

ଶାଢ଼ିବନ୍ଧା କରଣ ସେବକ । ସେବା ବଂଶାନୁକ୍ରମିକ ।

## ୧୧୯. ବ୍ୟକ୍ତିଗତ ବା ଆନୁଷ୍ଠାନିକ ସେବା

ଶ୍ରୀମନ୍ଦିର ସ୍ୱତ୍ୱଲିପିରେ ଉଲ୍ଲେଖ ପ୍ରକାରେ କେତେଜଣ ବ୍ୟକ୍ତି ବିଶେଷଙ୍କୁ ଉପସ୍ୱତ୍ୱ ମିଳିଅଛି । ସେମାନେ ଉପଚାର ଚାମର ସେବା, ଚାମର ସେବା ଓ ମଶାଲ, ଝାଡୁ ସେବା, ଆଲଟ ସେବା କରିପାରିବେ । କେତୋଟି ମଠ ଅନୁଷ୍ଠାନ ଶ୍ରୀମନ୍ଦିରର ନୀତି ସହିତ ସଂପୃକ୍ତ । ସେମାନେ ଦ୍ରବ୍ୟ ଯୋଗାନ୍ତି ଓ କେତେକ ମଠର ମହନ୍ତମାନେ ଉପଚାର ଚାମର ସେବା କରନ୍ତି । କେତେକ ମନ୍ଦିରର ଦେବଦେବୀ ଶ୍ରୀମନ୍ଦିରରୁ ଦୈନିକ ଓ ପର୍ବଯାତ୍ରା ଖେଇ ପାଆନ୍ତି । (ଶ୍ରୀମନ୍ଦିରର ନୀତି ସହିତ ସଂପୃକ୍ତ ମଠ ସଂପର୍କରେ 'ମଠ ଅଧ୍ୟାୟ' ଦ୍ରଷ୍ଟବ୍ୟ ।)

## ୧୨୦. ବେହେରାକରଣ

ଶ୍ରୀମନ୍ଦିରର ସ୍ୱତ୍ୱଲିପି ସଂଶୋଧନ କରାଯାଇ ୧୯୮୮ ମସିହାରେ ବେହେରାକରଣ ସେବାକୁ ପୁନଃ ପ୍ରଚଳନ କରାଯାଇଛି । ଶ୍ରୀ ଶ୍ୟାମସୁନ୍ଦର ଚ୍ୟାଉ ପଟ୍ଟନାୟକ ସଂପ୍ରତି ଏହି ସେବା କରୁଛନ୍ତି ।

ସେବାର ବିବରଣୀ- ଏହି ସେବକ ଦୈନିକ ନୀତି କିପରି ହେଲା ଷ୍ଟେଟ୍‌ଙ୍କୁ ଅର୍ଥାତ୍ ପ୍ରଶାସକଙ୍କୁ ଜଣାନ୍ତି । ୪୨ ଦିନ ଚନ୍ଦନ ଲାଗି ସମୟରେ ଦକ୍ଷିଣଦ୍ୱାର (ବେହରଣ ଦ୍ୱାର) ଉପରେ ପାଳିଆ ପ୍ରତିହାରୀଙ୍କ ସହିତ ଉପସ୍ଥିତ ରହି ଭିତର ଗାଆଣୀକୁ ତନଖି କରନ୍ତି । ଚନ୍ଦନ ଅର୍ଗଳିଠାରେ, ରାମକୃଷ୍ଣଙ୍କ ଚାପ ଉପରେ ଓ ରଥ ଉପରେ ଚାମର ସେବା ଖଟନ୍ତି । ରାମକୃଷ୍ଣଙ୍କ ଚାପରେ ସେବକମାନଙ୍କର ସେବା ତନଖି କରନ୍ତି ।

ଏମାନେ ଶ୍ରୀନଅର ଓ ଶ୍ରୀମନ୍ଦିର ସହ ସଂପୃକ୍ତ କରଣ ସେବକ । ଶାଢ଼ିବନ୍ଧା ସେବକ । ସେବା ବଂଶାନୁକ୍ରମିକ ।

**ମନ୍ତବ୍ୟ :** ସଂପ୍ରତି ନିମ୍ନଲିଖିତ ସେବା ଶ୍ରୀମନ୍ଦିରରେ ବିଭିନ୍ନ କାରଣରୁ ହେଉ ନଥିବା ଜଣାଯାଏ ।

ପନିକିପଟା, ଦଉଡ଼ିବଳା, ବୀଣାକାର, ଗୀତଗୋବିନ୍ଦ, ଭିତର ଗାଆଣୀ, ସଂପ୍ରଦା ନିଯୋଗ, ମାଦେଳି, ପତର ବିନ୍ଧା, ଶଙ୍ଖୁଆ, କଳାବେଠିଆ, କୁମ୍ଭାର ବିଶୋଇ, ମାଳଚୂଳ, ବାଣୁଆ, ମାପସାଇତାକରଣ, ଚର୍ଚ୍ଚାକରଣ ।

(ଦ୍ରଷ୍ଟବ୍ୟ: 'ଶ୍ରୀଜଗନ୍ନାଥ ମନ୍ଦିର ସେବାୟତଙ୍କ ସାମାଜିକ ଓ ଅର୍ଥନୈତିକ ଜନଗଣନା, ୨୦୦୫' ରିପୋର୍ଟ- ଶ୍ରୀଜଗନ୍ନାଥ ମନ୍ଦିର ପ୍ରଶାସନ, ପୁରୀ)

ଉକ୍ତ ରିପୋର୍ଟରେ ଉଲ୍ଲେଖ ଅଛି- ''ଶ୍ରୀଜଗନ୍ନାଥ ମନ୍ଦିରରେ ଦୈନନ୍ଦିନ ନୀତିରେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ପାଖରେ ବର୍ତ୍ତମାନ ସେବା କରୁଥିବା ବିଭିନ୍ନ ଶ୍ରେଣୀର ସେବାୟତଙ୍କ ମୋଟ ସଂଖ୍ୟା ୨୦୪୦ । ସଂପୃକ୍ତ ସେବାୟତମାନଙ୍କର ପ୍ରତିଦିନ ସେବାପାଳି ନଥାଏ । ସେମାନେ ସେମାନଙ୍କ ନିର୍ଦ୍ଦିଷ୍ଟ ପାଳି ଦିବସରେ ତଥା ବେଢ଼ାପତ୍ର ଅନୁସାରେ ସେବା କରିଥାନ୍ତି । ...ବ୍ୟାବସାୟିକ ଭିତ୍ତିରେ ପ୍ରସାଦ ରନ୍ଧନ ଓ ବିକ୍ରୀ କରୁଥିବା ସୂପକାରମାନଙ୍କୁ ଶ୍ରୀଜୀଉଙ୍କ ଦୈନନ୍ଦିନ ନୀତିରେ ପାଳି ଥିବା ସେବକଙ୍କ ସଂଖ୍ୟାରେ ଅନ୍ତର୍ଭୁକ୍ତ କରାଯାଇ ନାହିଁ । ଉପରୋକ୍ତ

ଶ୍ରୀଜୀଉଙ୍କ ସେବା କରୁଥିବା ୨୦୪୦ ଜଣ ସେବକଙ୍କ ମଧ୍ୟରୁ ଏକାଧିକ ସେବା କରୁଥିବା ସେବକଙ୍କ ସଂଖ୍ୟା ୪୫୮ ଏବଂ ଶ୍ରୀଜୀଉଙ୍କ ସେବା କରୁଥିବା ସେବକଙ୍କ ମଧ୍ୟରୁ ୧୪୦ ଜଣଙ୍କର ପାର୍ଶ୍ୱଦେବଦେବୀଙ୍କ ମନ୍ଦିରରେ ସେବା ଅଛି । ଏହାଛଡ଼ା ୪୫ ଜଣଙ୍କର କେବଳ ମାତ୍ର ପାର୍ଶ୍ୱଦେବଦେବୀଙ୍କ ନିକଟରେ ସେବା ଅଛି ।''

ଅଧିକାର-ଅଭିଲେଖ (ସ୍ୱତ୍ୱଲିପି)ରେ ପ୍ରତ୍ୟେକ ସେବାର ବିସ୍ତୃତ ବିବରଣୀ ଉଲ୍ଲେଖ ହୋଇଅଛି । କିନ୍ତୁ ଏଥିରେ କେତୋଟି ସେବାର ଯେଉଁ ବର୍ଗୀକରଣ କରାଯାଇଛି, ତାହା ଠିକ୍ ନୁହେଁ । ଉଦାହରଣ ସ୍ୱରୂପ- '୩୭-ଅଣସର ସୁଧ ସୁଆର ଓ ସୁଧ ସୁଆର ସେବା' । ଏହି ସେବା ପ୍ରକୃତରେ ଦୁଇଟି ପୃଥକ ସେବା, ଗୋଟିଏ ନୁହେଁ । 'ଅଣସର ସୁଧ ସୁଆର' ମାନେ ବର୍ଷକ ମଧ୍ୟରେ ନିର୍ଦ୍ଦିଷ୍ଟ କେତୋଟି ଦିନ ସେବା କରିଥାନ୍ତି କିନ୍ତୁ 'ସୁଧ ସୁଆର'ମାନେ ଦୈନନ୍ଦିନ ସେବା କରନ୍ତି । ସୁଧସୁଆରମାନେ ଦଇତାଗୋଷ୍ଠୀର ସେବକ ଓ 'ଦଇତା ପତି' ନିଯୋଗର ସଭ୍ୟ । ଯଦିଓ ସୁଧ ସୁଆରମାନଙ୍କର ଏକ ସ୍ୱତନ୍ତ୍ର ନିଯୋଗ ଅଛି ।

'୭୬-ସମ୍ପ୍ରଦା ନିଯୋଗ' ଏକ ସେବା । ଗୋଷ୍ଠୀଗତ ସେବା ଯୋଗୁଁ ହୁଏତ 'ନିଯୋଗ' ଶବ୍ଦ ଉଲ୍ଲେଖ ଅଛି । 'ଦଇତା' ମଧ୍ୟ ଏକ ଗୋଷ୍ଠୀଗତ ସେବା । କିନ୍ତୁ ତାଲିକାରେ ନିଯୋଗ ଶବ୍ଦ ସଂଯୋଜିତ ହୋଇନାହିଁ । ସମ୍ପ୍ରଦା ନିଯୋଗ ସେବାର ଏବେ ପ୍ରଚଳନ ନାହିଁ । ଉକ୍ତ ଗୋଷ୍ଠୀର ଜନୈକ ସେବିକା କେବଳ ବର୍ଷକୁ ଥରେ ଏକ ନିର୍ଦ୍ଦିଷ୍ଟ ତିଥିରେ 'ଯଶୋଦା ସେବା' କରୁଛନ୍ତି । ଅଧିକାର-ଅଭିଲେଖରେ ଉଲ୍ଲେଖ ନଥାଇ ମଧ୍ୟ କେତେକ ପ୍ରାପ୍ୟ ପାଉଣା ସେବକମାନଙ୍କୁ ପ୍ରଦାନ କରାଯାଉଛି । ଯଥା- ଦୈନିକ ଓ ପର୍ବପର୍ବାଣି ପାଳିଆ ପୁରସ୍କାର । ଶ୍ରୀମନ୍ଦିର ପରିଚାଳନା କମିଟିର ନିର୍ଦ୍ଧାରଣ ପ୍ରକ୍ରିୟାରେ ଅଧିକାଂଶ ପାଳିଆ ସେବକଙ୍କୁ ପାଳିଆ ପୁରସ୍କାର ବା ଆର୍ଥିକ ପୁରସ୍କାର (ପ୍ରୋତ୍ସାହନ) ପ୍ରଦାନ କରାଯାଉଛି । ଅଧିକାଂଶ ସେବା ବଂଶାନୁକ୍ରମିକ । କେତେକ ସେବା ଶାଢ଼ିବନ୍ଧା ଓ କେତେକ ଅ-ଶାଢ଼ିବନ୍ଧା ।

ପାରମ୍ପରିକ ଭାବରେ ଯାତ୍ରୀ ପରିଚର୍ଯ୍ୟା, ଯାତ୍ରୀମାନଙ୍କଠାରୁ ଅନ୍ନଦାନ ଓ ଆଟିକା ନେବାର ଅଧିକାର କେତେକ ସେବାୟତ ନିଯୋଗଙ୍କର ରହିଅଛି । ଶ୍ରୀଜଗନ୍ନାଥ ଧାମକୁ ଆସୁଥିବା ବିଭିନ୍ନ ଭାଷାଭାଷୀ ତୀର୍ଥଯାତ୍ରୀମାନଙ୍କୁ ଆତିଥେୟତା ପ୍ରଦାନ, ଦେବ ଦର୍ଶନାଦି ସହାୟତା, ରହଣି ବ୍ୟବସ୍ଥା, ମହାପ୍ରସାଦ ସେବନରେ ଆପ୍ୟାୟିତ କରିବା କାର୍ଯ୍ୟ ଶ୍ରୀଜଗନ୍ନାଥ ସେବକ ସମାଜର ପୈତୃକ ଯାତ୍ରୀ ପଣ୍ଡାମାନଙ୍କ ଉପରେ ନ୍ୟସ୍ତ ଥାଏ । ଏହି ପ୍ରାଚୀନ ପରମ୍ପରା ସ୍ମରଣାତୀତ କାଳରୁ ପ୍ରଚଳିତ ରହିଆସିଛି ।




ସିଂହଦ୍ୱାର ଗୁମୁଟରେ ବିରାଜିତ ଶ୍ରୀପତିତପାବନ

# ଶ୍ରୀମନ୍ଦିରର ନୀତି

**ଜ**ଗତର ନାଥ ଜଗନ୍ନାଥ ହେଉଛନ୍ତି ପୁରୁଷୋତ୍ତମ । ସେ ଦେବାଧିଦେବ ଓ ରାଜାଧିରାଜ । ତାଙ୍କର ପାରମ୍ପରିକ, ଦୈନନ୍ଦିନ ଯାତ୍ରା ବା ପର୍ବପର୍ବାଣିର ରୀତିନୀତି ଓ ସେବା ପୂଜାରେ ରାଜକୀୟ ଠାଣି ପରିଲକ୍ଷିତ ହୁଏ ।

# ଦୈନନ୍ଦିନ ନୀତି

ଶ୍ରୀଜଗନ୍ନାଥ ମନ୍ଦିର ବା ଶ୍ରୀମନ୍ଦିରରେ ପ୍ରଚଳିତ ଦୈନନ୍ଦିନ ନୀତି ସମ୍ପର୍କରେ ଏଠାରେ ସୂଚନା ଦିଆଯାଉଛି ।

## ଦ୍ୱାରଫିଟା ଓ ମଙ୍ଗଳ ଆରତି

ଦ୍ୱାରଫିଟା ନୀତି ପ୍ରତିଦିନ ଭୋର ପାଞ୍ଚଟା ବା ତା' ପୂର୍ବରୁ ହେବା ନିୟମ ବୋଲି ଶ୍ରୀମନ୍ଦିରର ସ୍ୱତ୍ୱଲିପି (Record of Rights)ରେ ଉଲ୍ଲେଖ ଅଛି । କେତେକ ବିଶିଷ୍ଟ ପର୍ବଦିନମାନଙ୍କରେ ଯଥା- ଦଶହରା ପର ଏକାଦଶୀଠାରୁ କାର୍ତ୍ତିକ ପୂର୍ଣ୍ଣିମା ପର୍ଯ୍ୟନ୍ତ, ଧନୁ ସଂକ୍ରାନ୍ତିଠାରୁ ମକର ସଂକ୍ରାନ୍ତି ପର୍ଯ୍ୟନ୍ତ (ପହିଲି ଭୋଗ ମାସରେ) ଦ୍ୱାରଫିଟା ରାତି ୨ଟାରୁ ୩ଟା ଭିତରେ କରାଯାଇଥାଏ । ଦ୍ୱାରଫିଟା ନୀତିପାଇଁ ପାଞ୍ଚଜଣ ସେବକଙ୍କର ଉପସ୍ଥିତି ନିତାନ୍ତ ଦରକାର । ସେମାନେ ହେଲେ- ଭିତରଚ୍ଛ ମହାପାତ୍ର, ପ୍ରତିହାରୀ, ମୁଦୁଲି, ଅଖଣ୍ଡ ମେକାପ ଓ ପାଳିଆ ମେକାପ । ପୂର୍ବରାତ୍ର ଯଦି ପହୁଡ଼ ହୋଇଥାଏ, ତେବେ ମନ୍ଦିରର ଭିତର ଓ ବାହାର ବେଢ଼ା ଶୋଧ ହୋଇ (ଅର୍ଥାତ୍ ଲୋକ ଖାଲି କରାଇ) ବଡ଼ ଦେଉଳର ଛାମୁ ଦୁଆର ଓ ଜୟବିଜୟ ଦୁଆର ବନ୍ଦ ହୋଇ ତାଲା ପଡ଼ିଥାଏ ଏବଂ ତାଲା ଉପରେ ମାଟିର ମୁଦ ଦିଆଯାଇଥାଏ । ଏହି ମୁଦ ତଳିଚ୍ଛ ମହାପାତ୍ର ଦେଇଥାନ୍ତି । ଉପରୋକ୍ତ ପାଞ୍ଚଜଣ ସେବକ ଜୟବିଜୟ ଦ୍ୱାର ନିକଟକୁ ଯାଇ ତାଲା ଉପରେ ପଡ଼ିଥିବା ମୁଦ ଯାଞ୍ଚ କରନ୍ତି । ତା'ପରେ ଏହି ଦ୍ୱାରର ତାଲା ମୁଦୁଲି ଖୋଲେ । ଏମାନେ ଜୟବିଜୟ ଦ୍ୱାର ଦେଇ ଭିତରକୁ ଯାଇ ଛାମୁ ଦ୍ୱାର ବା କଳାହାଟ ଦ୍ୱାରକୁ ଯାଆନ୍ତି । ସେହି ଦ୍ୱାରରେ ପୂର୍ବରାତ୍ରରେ ପଡ଼ିଥିବା ତାଲା ଓ ମୁଦ ଯାଞ୍ଚ କରନ୍ତି । ଏହା ପରେ ଉକ୍ତ ଦ୍ୱାର ଖୋଲାଯାଏ ଓ ପରେ ପରେ ଶ୍ରୀମନ୍ଦିରର ଅନ୍ୟାନ୍ୟ ଦ୍ୱାର ସମ୍ପୂର୍ଣ୍ଣ ଖୋଲାଯାଏ । କୌଣସି ଅସୁବିଧାଯୋଗୁଁ ପୂର୍ବରାତ୍ର ଠାକୁରମାନଙ୍କର ପହୁଡ଼ ହୋଇ ପାରିନଥିଲେ ଦ୍ୱାରଫିଟା ନୀତିର ପ୍ରଶ୍ନ ଉଠେ ନାହିଁ । ଉକ୍ତଦିନ କେବଳ 'ମଙ୍ଗଳ ଆରତି' ଠାରୁ ନୀତି ଆରମ୍ଭ ହୋଇଥାଏ । ଭିତରଚ୍ଛ ମହାପାତ୍ର ଶ୍ରୀଜଗନ୍ନାଥଙ୍କର

ଓ ଅନ୍ୟ ଦୁଇଜଣ ପୁଷ୍ପାଳକ ସେବକ ବଳଭଦ୍ର ଓ ସୁଭଦ୍ରାଙ୍କର ମଙ୍ଗଳ ଆରତି, ସିଂହାସନ ତଳେ ଠିଆହୋଇ କରିଥାନ୍ତି । ମଙ୍ଗଳ ଆରତି ବେଳେ ସର୍ବସାଧାରଣ ଭିତର କାଠ ଅର୍ଗଳି ପାଖରେ ରହି ଦର୍ଶନ କରନ୍ତି । ରତ୍ନବେଦୀ କିମ୍ବା 'ପୋଖରିଆ' ନିକଟକୁ ଯାଇ ଦର୍ଶନ କଲେ ମନ୍ଦିର କର୍ତ୍ତୃପକ୍ଷଙ୍କୁ ପରିମାଣିକ ଫି ଦେବାକୁ ପଡ଼େ ।

## ମଇଲମ

ନିର୍ଦ୍ଧାରିତ ସମୟ ସକାଳ ଛଅ । କିନ୍ତୁ ମଙ୍ଗଳ ଆରତି ଶେଷ ହେବା ପରେ ଏହି ନୀତି ହୁଏ । ଏହି ନୀତିରେ ଜଡ଼ିତ ସେବକମାନେ ହେଲେ- ପୁଷ୍ପାଳକ (୩ଜଣ), ଖୁଣ୍ଟିଆ, ଚାଙ୍ଗଡ଼ା ମେକାପ ଓ ଧୋବା । ତିନି ଜଣ ପୁଷ୍ପାଳକ ରତ୍ନସିଂହାସନ ଉପରକୁ ଉଠି ପୂର୍ବରାତ୍ରରେ ଠାକୁରମାନଙ୍କ ଶ୍ରୀଅଙ୍ଗରେ ଥିବା ବେଶ ଫୁଲ, ତୁଳସୀ ଓ ବସ୍ତ୍ରମାନ ମଇଲମ (ବାହାର) କରନ୍ତି । ଠାକୁରମାନଙ୍କ ଅବକାଶ ନୀତିପାଇଁ ତଡ଼ପ ଓ ଉତ୍ତରୀୟ ନାମକ ସୂତା ଗାମୁଛା ପରି ବସ୍ତ୍ର ପୁଷ୍ପାଳକମାନେ ପିନ୍ଧାନ୍ତି । ଏହି ବସ୍ତ୍ର ପ୍ରତିଦିନ ଧୋବା- ସେବକ ଧୋଇବା ବିଧି ଅଛି । ଏହି ସେବକ ପ୍ରକୃତରେ ଜାତିରେ ଧୋବା ନୁହେଁ; ସେ ବ୍ରାହ୍ମଣ ।

## ଅବକାଶ

ସକାଳ ୬ରୁ ୬ଟା୩୦ ମଧ୍ୟରେ ହେବା କଥା । ଠାକୁରମାନଙ୍କ ଦନ୍ତ ମାର୍ଜନ ଓ ସ୍ନାନକୁ ଅବକାଶ କୁହାଯାଏ । ଏହି ନୀତିରେ ନିମ୍ନଲିଖିତ ସେବକ ସଂପୃକ୍ତ ରହନ୍ତି- ପୁଷ୍ପାଳକ, ସୁଆର ବଡ଼ୁ, ପାଣିଆପଟ, ଖଟୁଳି ସେବକ, ଦର୍ପଣିଆ, ମୁଖ ପଖାଳ ପଢ଼ିଆରୀ, ଅଁଳା ଘଟୁଆରୀ, ମୁଖ ପଖାଳ ପୁଷ୍ପାଳକ, ଭଣ୍ଡାର ମେକାପ, ମହାଭୋଇ ଓ ମନ୍ଦିର ଜ୍ୟୋତିଷ ।

ସିଂହାସନ ତଳେ ଅବକାଶ ପୂଜା ଠା' ହୁଏ । ୩ଜଣ ପୁଷ୍ପାଳକ ଏହି ପୂଜାରେ ବସନ୍ତି । ସେମାନେ ତିନି ଠାକୁରଙ୍କୁ ଦାନ୍ତକାଠି ଓ ଜିଭଛେଲା ଦୂରରୁ ଦେଖାଇ ଦାନ୍ତ ଘଷିବା ଓ ଜିଭ ଛେଲିବା ପରି କରନ୍ତି । ତା'ପରେ କର୍ପୂର, ଦହି, ଅଁଳା ଓ ଚନ୍ଦନ ମିଶ୍ରିତ ଜଳ ତିନିଟି ପିତ୍ତଳ ଦର୍ପଣ ଉପରେ ଢ଼ାଳନ୍ତି । ଏହା ହେଲେ ଠାକୁରମାନଙ୍କ ସ୍ନାନ ହୋଇଗଲା ବୋଲି ଧରାଯାଏ । ଏହି ନୀତି ହେବା ସମୟରେ ଜ୍ୟୋତିଷ ବା ଖୁରି ନାୟକ ଠିଆହୋଇ ଦିଅଁମାନଙ୍କର ସେହିଦିନର ନକ୍ଷତ୍ର ବିଚାର ଶୁଣାନ୍ତି । ଯଦି କୌଣସି ଦିଅଁଙ୍କର ସେହିଦିନ ଜନ୍ମ ନକ୍ଷତ୍ର ପଡ଼େ, ତେବେ ଉକ୍ତ ଦିନ ମଧ୍ୟାହ୍ନ ଧୂପ ପରେ 'ନକ୍ଷତ୍ର ବନ୍ଦାପନା' ହୁଏ ।

## ମଇଲମ

ଅବକାଶ ପରେ ପୁଣି ଥରେ ମଇଲମ ହୁଏ । ନିର୍ଦ୍ଧାରିତ ସମୟ ସକାଳ ୬ଟା୪୫ । ଚାଙ୍ଗଡ଼ା ମେକାପ ଠାକୁରମାନଙ୍କପାଇଁ ଯୋଗାଇଥିବା 'ବାରଲାଗି ଖଣ୍ଡୁଆ' ପାଟ ତିନି ଠାକୁର ଏବଂ ଶ୍ରୀଦେବୀ, ଭୂଦେବୀ ଓ ନୀଳମାଧବଙ୍କୁ ପୁଷ୍ପାଳକମାନେ ପିନ୍ଧାନ୍ତି । ଏହି ସମୟରେ ଅଖଣ୍ଡ ମେକାପ 'ଅଖଣ୍ଡ ବଇଠା' ଜଳାନ୍ତି । ଏହା ରାତ୍ର ପହୁଡ଼ଯାଏ ଜଳିବା ବିଧି ଅଛି ।

## ସାହାଣମେଲା

ନିର୍ଦ୍ଧାରିତ ସମୟ ସକାଳ ୭ । ଏହା ଠାକୁରମାନଙ୍କର ନୀତି ଭିତରେ ଗଣ୍ୟ ନୁହେଁ । ସାହାଣମେଲା ସମୟରେ ଜନସାଧାରଣ ବା ଯାତ୍ରୀମାନେ ପରିମାଣିକ ଫି ନଦେଇ ସିଂହାସନ ପର୍ଯ୍ୟନ୍ତ ଯାଇ ଦର୍ଶନ କରିବାର ସୁଯୋଗ ପାଆନ୍ତି । ଶ୍ରୀମନ୍ଦିର ସ୍ୱତ୍ୱଲିପି ପ୍ରକାରେ ଦିନକୁ ଦୁଇଥର ସାହାଣମେଲା ହେବା କଥା । କିନ୍ତୁ ସାଧାରଣତଃ ଦିନକୁ ଥରେ ହୁଏ । ଏହା ପ୍ରାୟ ଏକ ଘଣ୍ଟା ହୁଏ । ଦଶହରା ପର ଏକାଦଶୀଠାରୁ କାର୍ତ୍ତିକ ପୂର୍ଣ୍ଣିମା ପର୍ଯ୍ୟନ୍ତ ସକାଳେ ସାହାଣମେଲା ନହୋଇ ସନ୍ଧ୍ୟାରେ ଦ୍ୱି-ପ୍ରହର ଧୂପ ପରେ ହୁଏ । ବେଳେବେଳେ ପର୍ବଦିନମାନଙ୍କରେ (ଯଥା- ଗଜ ଉଦ୍ଧାରଣ ବେଶ ଦିନ) ସନ୍ଧ୍ୟା ଧୂପ ପରେ ସାହାଣମେଲା ହୁଏ । କେତେକ ବିଶିଷ୍ଟ ଦିନରେ ସାହାଣ ମେଲା କରାଯାଏ ନାହିଁ । କେତେକ ଦିନମାନଙ୍କରେ ସକାଳ ଧୂପ ପରେ ସାହାଣମେଲା ହୁଏ । ପୁଷ୍ପାଳକ, ଖୁଣ୍ଟିଆ, ମେକାପ, ତଡ଼ାଉକରଣ, ଗୋଛିକାର, ପ୍ରତିହାରୀ, ସୁଆରବଡୁ ଆଦି ସେବକମାନଙ୍କ ଦ୍ୱାରା ଏହି ସମୟରେ ନୀତି ହୁଏ ।

## ବେଶଲାଗି

ସକାଳ ୮ରୁ ୮ଟା୩୦ ମଧ୍ୟରେ ହେବା ନିୟମ । ଠାକୁରମାନଙ୍କୁ ଭିନ୍ନ ଭିନ୍ନ ଋତୁରେ ଓ ପର୍ବଦିନମାନଙ୍କରେ ଭିନ୍ନ ଭିନ୍ନ ବସ୍ତ୍ର ଓ ଅଳଙ୍କାରରେ ବେଶ କରାଯାଏ । ପୁଷ୍ପାଳକମାନେ ସବୁ ବେଶ କରନ୍ତି ।

## ରୋଷହୋମ

ନିର୍ଦ୍ଧାରିତ ସମୟ ସକାଳ ୮ଟା୩୦ ମଧ୍ୟରେ । ପ୍ରତିଦିନ ଠାକୁରଙ୍କ ରୋଷଘରେ କୋଠଚୁଲି ପାଖରେ ହୋମ ହୁଏ । ଏହି ହୋମ ପୂର୍ବେ ଦେଉଳ ପୁରୋହିତ କରୁଥିଲେ । ଏବେ ପୂଜାପଣ୍ଡା କରୁଛନ୍ତି । ବେଶଲାଗି ଓ ରୋଷହୋମ ଏକ ସମୟରେ କରାଯାଇଥାଏ ।

## ସୂର୍ଯ୍ୟପୂଜା

ନିର୍ଦ୍ଧାରିତ ସମୟ ସକାଳ ୮ଟା୩୦ରୁ ୮ଟା୪୫ ମଧ୍ୟରେ । ମୁକ୍ତିମଣ୍ଡପ ପାର୍ଶ୍ୱରେ ଥିବା ସୂର୍ଯ୍ୟ ମନ୍ଦିରରେ ଜଣେ ପୂଜାପଣ୍ଡା ସୂର୍ଯ୍ୟପୂଜା କରନ୍ତି ।

## ଦ୍ୱାରପାଳ ପୂଜା

ଜୟବିଜୟ ଦ୍ୱାରରେ ଜୟ ଓ ବିଜୟ ଦ୍ୱାରପାଳଙ୍କୁ ପୂଜାପଣ୍ଡା ପୂଜା କରନ୍ତି ।

## ଗୋପାଳବଲ୍ଲଭ ଭୋଗ

ନିର୍ଦ୍ଧାରିତ ସମୟ ସକାଳ ନଅ । ଏହି ଭୋଗ ଠାକୁରଙ୍କ ପ୍ରାତଃଭୋଜନ ବା ଜଳଖିଆ । ଅଣସର ପିଣ୍ଡିରେ ଏହି ଭୋଗ ବଢ଼ାଯାଏ । ୩ଜଣ ପୂଜାପଣ୍ଡା 'ପଞ୍ଚ ଉପଚାର'ରେ ଏହି ଭୋଗ

ପୂଜା କରନ୍ତି । ଏହି ଭୋଗରେ ପାଗ ଖଇ, ନଡ଼ିଆକୋରା, ଦହି, ପାତି ବା ଖୁଦି ନଡ଼ିଆ, ପାଚିଲା କଦଳୀ ଇତ୍ୟାଦି ବଢ଼ାଯାଏ । ଏବେ କେତେବର୍ଷ ହେଲା ନିୟମିତ ଖୁଆମଣ୍ଡା ମଧ୍ୟ ଭୋଗ କରାଯାଉଛି ।

ଏହି ନୀତିରେ ସଂପୃକ୍ତ ସେବକମାନେ ହେଲେ- ପୂଜାପଣ୍ଡା, ସୁଧ ସୁଆର, ବଲ୍ଲଭ ଯୋଗାଣିଆ, ସୁଆରବଡୁ, ପତ୍ରିବଡୁ, ଗରାବଡୁ, ପାଳିଆ ମହାସୁଆର, ପ୍ରଧାନୀ ଇତ୍ୟାଦି ।

ଧନୁ ମାସରେ ପହିଲିଭୋଗ ସହିତ ବଲ୍ଲଭ ଭୋଗ ହୁଏ । ଦୋଳପୂର୍ଣ୍ଣମୀ ଓ ସ୍ନାନପୂର୍ଣ୍ଣମୀ ଦିନ ବଲ୍ଲଭ ଓ ସକାଳ ଧୂପ ଏକତ୍ର ହୁଏ ।

## ସକାଳ ଧୂପ

ନିର୍ଦ୍ଧାରିତ ସମୟ ସକାଳ ୧୦ଟା । ସକାଳ ଧୂପରେ ହେଉଥିବା କୋଠଭୋଗ ବା ରାଜଭୋଗ ପ୍ରସ୍ତୁତି ପାଇଁ ଆବଶ୍ୟକ ହେଉଥିବା ଦ୍ରବ୍ୟ ଯଥା- ଚାଉଳ, ଗହମ, ଘିଅ, ଚିନି, କାଠ, ପନିପରିବା, କୁଡୁଆ ଇତ୍ୟାଦି ମନ୍ଦିର ପ୍ରଶାସନ କର୍ତ୍ତୃପକ୍ଷ ଯୋଗାଇ ଦିଅନ୍ତି । କୋଠଭୋଗ ସୂପକାରମାନେ ପ୍ରସ୍ତୁତ କରନ୍ତି । ସିଂହାସନ ତଳେ ପୋଖରିଆରେ ଏହି ଭୋଗ ବଢ଼ାଯାଏ । ତିନିଜଣ ପୂଜାପଣ୍ଡା ଭୋଗ ପୂଜା କରନ୍ତି । ବଳଭଦ୍ରଙ୍କୁ ଜଣେ ପୂଜାପଣ୍ଡା ଓ ସୁଭଦ୍ରାଙ୍କୁ ଜଣେ ପୂଜାପଣ୍ଡା ପୂଜା କରନ୍ତି । ଜଗନ୍ନାଥଙ୍କୁ ପୂଜା କରୁଥିବା ପୂଜାପଣ୍ଡା ସୁଦର୍ଶନ, ଶ୍ରୀଦେବୀ ଓ ଭୂଦେବୀଙ୍କର ପୂଜା କରନ୍ତି । ନୀଳମାଧବଙ୍କର ସ୍ୱତନ୍ତ୍ର ପୂଜା ନାହିଁ । ପୂଜାପଣ୍ଡାମାନେ ସିଂହାସନ ଉପରେ ବସି ପୂଜା କରନ୍ତି । ଦିଅଁମାନଙ୍କ 'ଘୋଡ଼ଲାଗି' ଦିନମାନଙ୍କରେ ଅର୍ଥାତ୍ ଓଡ଼ଣ ଷଷ୍ଠୀଠାରୁ ବସନ୍ତ ପଞ୍ଚମୀଯାଏ ପୂଜାପଣ୍ଡାମାନେ ସିଂହାସନ ତଳେ ବସି ପୂଜା କରନ୍ତି । ସକାଳ ଧୂପ ପୂଜା 'ଷୋଡ଼ଶ ଉପଚାର'ରେ ହୋଇଥାଏ । ଧୂପ ପରେ ଠାକୁମାନଙ୍କର ଆରତି ପୂଜାପଣ୍ଡାମାନେ କରନ୍ତି ।

ସକାଳ ଧୂପରେ ଲାଗୁଥିବା ଭୋଗମାନ ହେଲା- ଖେଚୁଡ଼ି, କାନିକା, ଶାଗ, କାଞ୍ଜି, ଏଣ୍ଡୁରି, ମାଠପୁଳି, ଝିଲି, ପିଠାପୁଳି, ହଂସକେଳି, ଆଳୁ, କଦଳୀଭଜା, ଅଦା ପାଚେଡ଼ି, ବୁନ୍ଦିଆ ଇତ୍ୟାଦି ।

ସକାଳଧୂପ ନୀତି ସହିତ ସଂପୃକ୍ତ ସେବକମାନେ ହେଲେ- ପୂଜାପଣ୍ଡା, ସୁଆରବଡୁ, ପ୍ରତିହାରୀ, ପାଣିଆପଟ, ପ୍ରଧାନୀ, ପାଳିଆ ମହାସୁଆର, ପନ୍ତିବଡୁ, ପତ୍ରୀବଡୁ, ଗରାବଡୁ, ମୁଦୁଲି, ରୋଷପାଇକ, ଚାଙ୍ଗଡ଼ା ମେକାପ, ଚନ୍ଦନ ଘଟୁଆରୀ, ପାଳିଆ ମେକାପ, ପାଳିଆ ଖୁଣ୍ଟିଆ, ହଡ଼ପ ନାଏକ, ବିଡ଼ିଆ ଯୋଗାଣିଆ, ଗୋଛିକାର, ଘଣ୍ଟୁଆ, ବଜନ୍ତ୍ରୀ ଇତ୍ୟାଦି ।

## ମଇଲମ ଓ ଭୋଗ ମଣ୍ଡପ

ନିର୍ଦ୍ଧାରିତ ସମୟ ସକାଳ ୧୧ଟା । ସକାଳ ଧୂପ ପରେ ଠାକୁରମାନଙ୍କର ପୁଣି ଥରେ ମଇଲମ ହୁଏ ଓ ବସ୍ତ୍ର ବଦଳାଯାଏ । ଏହା ପରେ ଗରୁଡ଼ସ୍ତମ୍ଭ ପଛପଟେ ଥିବା ଭୋଗମଣ୍ଡପ ଘରେ ଭୋଗମଣ୍ଡପ ଭୋଗ ପୂଜା ହୁଏ । ଏହି ଭୋଗ ପ୍ରସ୍ତୁତି ପାଇଁ ଯାହା ଦ୍ରବ୍ୟ ଲାଗେ ବା ଖର୍ଚ୍ଚ ହୁଏ, ତାହା ମନ୍ଦିର କର୍ତ୍ତୃପକ୍ଷ ବହନ କରନ୍ତି ନାହିଁ । ମଠବାଡ଼ିମାନଙ୍କର ଭୋଗ ଦେବା ସକାଶେ, ଭୋଗ ବିକ୍ରୀ କରିବା ଲୋକମାନେ ଭୋଗ ତିଆରି କରି ମହାପ୍ରସାଦ କରିବା ସକାଶେ ଏବଂ

ସର୍ବସାଧାରଣଙ୍କର ବରାଦ ଅନୁଯାୟୀ ଭୋଗ ପ୍ରସ୍ତୁତି ଓ ବିକ୍ରୀ କରିବା ସକାଶେ ଭୋଗମଣ୍ଡପ ଭୋଗ ହୁଏ । ତିନିଜଣ ପୂଜାପଣ୍ଡା ପଞ୍ଚ ଉପଚାରରେ ଏହା ପୂଜା କରନ୍ତି । ଏହି ଧୂପରେ ନିର୍ଦ୍ଦିଷ୍ଟ ଭୋଗ ନାହିଁ । ଯାତ୍ରୀ ସଂଖ୍ୟା ଓ ବରାଦକୁ ଚାହିଁ ସୂପକାରମାନେ ଭୋଗ ପ୍ରସ୍ତୁତ କରନ୍ତି । ଅନ୍ନ, ଡାଲି, ବିଭିନ୍ନ ପ୍ରକାର ତରକାରି ଓ ଶାଗ ଏବଂ ପିଠା ଭୋଗ ଲାଗେ ।

ସେବକମାନେ ହେଲେ ଏହି ନୀତିରେ ସଂପୃକ୍ତ ପାଳିଆ ପୁଷ୍ପାଳକ, ଚାଙ୍ଗଡ଼ା ମେକାପ, ପାଳିଆ ମେକାପ, ଭୋଗମଣ୍ଡପ ପ୍ରତିହାରୀ, ସୁଆରବଡୁ, ସୁଆର, ମହାସୁଆର, ଖୁଣ୍ଟିଆ, ପତ୍ରୀବଡୁ, ଗରାବଡୁ ଓ ପୂଜାପଣ୍ଡା ଇତ୍ୟାଦି ।

କେତେକ ପର୍ବଦିନମାନଙ୍କରେ ଭୋଗମଣ୍ଡପ ପୂଜା ସକାଳ ଧୂପ ପରେ ନହୋଇ ଦ୍ୱିପ୍ରହର ଧୂପ ପରେ ହୁଏ । ବେଳେବେଳେ ସକାଳ ଧୂପ ପରେ ଓ ଦ୍ୱିପ୍ରହର ଧୂପ ପରେ ଏହିପରି ଦୁଇଥର ଭୋଗମଣ୍ଡପ ପୂଜା ହୁଏ । ଥରେ ଥରେ ସନ୍ଧ୍ୟା ଧୂପ ପରେ ଅର୍ଥାତ୍ ଉକ୍ତ ଦିନ ତିନିଥର ଭୋଗମଣ୍ଡପ ପୂଜା ହୁଏ ।

## ମଧ୍ୟାହ୍ନ ଧୂପ

ନିର୍ଦ୍ଧାରିତ ସମୟ ମଧ୍ୟାହ୍ନ ୧୨ଟା୩୦ରୁ ୧ଟା ଯାଏ । ଏହି ଧୂପର ଭୋଗ ସିଂହାସନ ତଳେ ଅର୍ଥାତ୍ ପୋଖରିଆରେ ହୁଏ । ସକାଳ ଧୂପ ପରି ଏହା ପୂଜାପଣ୍ଡାମାନେ ଷୋଡ଼ଶ ଉପଚାରରେ ପୂଜା କରନ୍ତି । ସକାଳ ଧୂପ ନୀତିରେ ଯେଉଁ ଯେଉଁ ଶ୍ରେଣୀର ସେବକ ନିଯୁକ୍ତ ରହନ୍ତି, ମଧ୍ୟାହ୍ନ ଧୂପରେ ମଧ୍ୟ ସେମାନେ ରହିଥାନ୍ତି । ଭୋଗଦ୍ରବ୍ୟମାନ ହେଲା- ପିଠାପୁଳି, ତିପୁରି, ଆରିସା, କାକରା, ମାଠପୁଳି, ଝଡ଼େଇଲଦା, ତାଟ ମନୋହର, ଖଇର ଚୂଳ, ମରିଚ ଲଡୁ, ଫେଣି, ଟାକୁଆ, ଗଜା, ବିରିବଡ଼ି, ଅନ୍ନ, ମୁଗଡାଲି, ପିତିଅନ୍ନ, ଓରିଆ, ମରିଚପାଣି, ପଣା, ଖିରି, ସୁବାସ ପଖାଳ, ସାକରା ଇତ୍ୟାଦି ।

ଭୋଗ ଶେଷ ହେବା ପରେ ଦିଅଁମାନଙ୍କର ଆରତି ହୁଏ ।

## ମଧ୍ୟାହ୍ନ ପହୁଡ

ଏହି ନୀତି ହେବା ନିୟମ ଥିଲେ ମଧ୍ୟ ପ୍ରାୟ ହୁଏ ନାହିଁ । ବର୍ଷ ଭିତରେ କେବଳ କାର୍ତ୍ତିକମାସ ଓ ଧନୁ (ପହିଲି ଭୋଗ) ମାସରେ ଅଳ୍ପ କେତେଦିନ ହେବା ସମ୍ଭବ ହୁଏ । ଯଥା ସମୟରେ ନୀତି ସମ୍ପନ୍ନ ହୋଇ ନପାରିଲେ ଏବଂ ପର୍ବପର୍ବାଣି ଦିନରେ ଅଧିକା ନୀତି ହେବା ଫଳରେ ଦିବା ପହୁଡ଼ ହୋଇପାରେ ନାହିଁ ।

ଦିବା ପହୁଡ ହେଲେ ଜୟବିଜୟ ଦ୍ୱାର, କଳାହାଟ ଦ୍ୱାର ଓ ବେହରଣ ଦ୍ୱାର ବନ୍ଦ କରାଯାଏ । ଦିବା ପହୁଡର ନିର୍ଦ୍ଧାରିତ ସମୟ ଅପରାହ୍ଣ ୧ରୁ ୧ଟା୩୦ ମଧ୍ୟରେ ।

## ସନ୍ଧ୍ୟା ଆରତି

ଦିବା ପହୁଡ଼ ଫିଟିବା ସମୟ ସନ୍ଧ୍ୟା ୬ଘଣ୍ଟା । ଦ୍ୱାରଫିଟା ପରେ ଦିଅଁମାନଙ୍କର ସନ୍ଧ୍ୟା ଆରତି ହୁଏ । ଜଗନ୍ନାଥଙ୍କର ତଳିଛ ମହାପାତ୍ର ଓ ବଳଭଦ୍ର ଏବଂ ସୁଭଦ୍ରାଙ୍କର ଆରତି ଅନ୍ୟ

ଦୁଇଜଣ ପୁଷ୍ପାଳକ ସିଂହାସନ ତଳେ ଠିଆହୋଇ କରିଥାନ୍ତି । ଆରତି ପରେ ସେମାନେ ଠାକୁରମାନଙ୍କର ପାଟପତନି ବେଶ କରନ୍ତି । ଖୁଣ୍ଟିଆ ଫୁଲମାଳ ବଢ଼ାଇ ଦିଅନ୍ତି । ଯଦି ଦିବା ପହୁଡ଼ ହୁଏନାହିଁ, ତେବେ ଦ୍ୱିପ୍ରହର ଧୂପ ପରେ ମଇଲମ କରାଯାଇ ବେଶ କାର୍ଯ୍ୟ ଶେଷ ପରେ ସନ୍ଧ୍ୟା ଆରତି ହୁଏ । କିନ୍ତୁ ପହୁଡ଼ ହେଲେ, ସନ୍ଧ୍ୟା ଆରତି ପରେ ବେଶ ହୁଏ । ଏକାଦଶୀ ପଡ଼ିଲେ ଆରତି ପରେ ମଇଲମ ଓ ବେଶ ହୁଏ ।

## ସନ୍ଧ୍ୟା ଧୂପ

ସନ୍ଧ୍ୟାଧୂପର ସମୟ ରାତ୍ର ୭ଟାରୁ ୮ଟା ମଧ୍ୟରେ । ପୂଜା ଉପଚାର ଓ ନୀତି, ସକାଳ ଓ ଦ୍ୱିପ୍ରହର ଧୂପ ପରି ହୁଏ । ଧୂପ ପରେ ପୂଜାପଣ୍ଡାମାନେ ଆରତି କରନ୍ତି । ଏହି ଆରତିକୁ 'ଜୟମଙ୍ଗଳ ଆରତି' କୁହାଯାଏ ।

ସନ୍ଧ୍ୟାଧୂପରେ ଚୁପୁଡ଼ା ପଖାଳ, ପାଣି ପଖାଳ, ସାକରା, କଅଁଳ ପୁଳି, ମାଠପୁଳି ଓ ବିଭିନ୍ନ ପ୍ରକାର ଅମାଲୁ ଭୋଗ ହୁଏ ।

## ମଇଲମ ଓ ଚନ୍ଦନଲାଗି

ସନ୍ଧ୍ୟାଧୂପ ପରେ ସାହାଣମେଲା ହେବା କଥା, ନହୋଇ ପାରିଲେ ଠାକୁରମାନଙ୍କର ମଇଲମ ଓ ଚନ୍ଦନଲାଗି ହୁଏ ।

ଠାକୁରମାନଙ୍କର ବେଶ ମଇଲମ ହୋଇ ଶାଢ଼ି, ଖଣ୍ଡୁଆ ପିନ୍ଧାଯାଏ । ପୁଷ୍ପାଳକମାନେ ଠାକୁରମାନଙ୍କୁ ଚନ୍ଦନ ଲାଗି କରନ୍ତି । ଚନ୍ଦନ ସହିତ କର୍ପୂର, କେଶର, କସ୍ତୁରୀ ଘୋରା ହୋଇଥାଏ । ଏହି ନୀତି ସହିତ ଜଡ଼ିତ ସେବକମାନେ ହେଲେ- ପୁଷ୍ପାଳକ, ସୁଆର ବଡ଼ୁ, ଘଟୁଆରୀ, ପାଳିଆ ମେକାପ, ପଢ଼ିଆରୀ, ଗରାବଡ଼ୁ, ହଡ଼ପ ନାୟକ, ପାଳିଆ ଖୁଣ୍ଟିଆ ଇତ୍ୟାଦି ।

## ବଡ଼ସିଂହାର ବେଶ

ରାତି ୧୦ଟା୩୦ ମଧ୍ୟରେ ହେବା ନିୟମ । ପୁଷ୍ପାଳକମାନେ ଦିଅଁଙ୍କୁ ବାରଲାଗି ପାଟ ପିନ୍ଧାନ୍ତି ଏବଂ ବିଭିନ୍ନ ପ୍ରକାର ମାଳ, ଫୁଲରେ ବେଶ କରନ୍ତି । ଏହି ବେଶ ମୁଖ୍ୟତଃ ଫୁଲ ବେଶ । 'ଗୀତଗୋବିନ୍ଦ' ଶ୍ଳୋକ ବୁଣାଯାଇଥିବା ଖଣ୍ଡୁଆ ପାଟ ଦିଅଁମାନେ ପରିଧାନ କରନ୍ତି ।

## ବଡ଼ସିଂହାର ଭୋଗ

ନିର୍ଦ୍ଧାରିତ ସମୟ ରାତ୍ର ୧୧ଟା ୧୫ମିନିଟ୍ । ଏହି ଭୋଗ ଠାକୁରଙ୍କ ଶେଷ ଭୋଗ । ପୂଜାପଣ୍ଡାମାନେ ପଞ୍ଚ ଉପଚାରରେ ସିଂହାସନ ତଳେ ପୂଜା କରନ୍ତି । ଏହି ଭୋଗ ଶେଷରେ ଆରତି ହୁଏ ନାହିଁ । ସରପୁଳି ପିଠା, ସୁଆର ପିଠା, ବିରିବୁହା ପିଠା, କଦଳୀ ବଡ଼ା, ମିଠା ପଖାଳ, ଖିରି, କାଞ୍ଜି ଇତ୍ୟାଦି ଭୋଗ ହୁଏ ।

## ଖଟଶେଯ ଲାଗି ଓ ରାତ୍ରପହୁଡ

ନିର୍ଦ୍ଧାରିତ ସମୟ ରାତି ୧୧ଟା/୪୫ରୁ ୧୨ଟା । ଏଠାରେ ଠାକୁରମାନଙ୍କର ଶୟନର ବ୍ୟବସ୍ଥା କରାଯାଏ । ପାଳିଆ ପୁଷ୍ପାଳକ ଭଣ୍ଡାରଘରୁ ଭଣ୍ଡାର ମେକାପଙ୍କଠାରୁ ଶୟନ ଠାକୁରଙ୍କୁ ନେଇ ଜଗନ୍ନାଥଙ୍କଠାରେ ବିଜେ କରାନ୍ତି । ଏହି ଶୟନ ଠାକୁର ସୁନାରେ ତିଆରି ନାରାୟଣ ଓ ଲକ୍ଷ୍ମୀଙ୍କର ମିଳିତ ମୂର୍ତ୍ତି । ଏହା ଅଷ୍ଟଭୁଜବିଶିଷ୍ଟ । ଏହା ପରେ ଦିଅଁମାନଙ୍କର ପଇଡ଼ ଓ ବିଡ଼ିଆ ମଣୋହି ହୁଏ । ପୁଷ୍ପାଳକମାନେ ସିଂହାସନ ତଳେ ଠିଆହୋଇ କର୍ପୂର ଆରତି କରନ୍ତି । ଆରତି ସମୟରେ ଦେବଦାସୀ (ଭିତର ଗାଆଣୀ) କଳାହାଟ ଦ୍ୱାରରେ ରହି ଭଜନ ଗାନ କରନ୍ତି । ଭିତରେ ଗାଆଣୀ ଦେବଦାସୀ ସେବା ଏବେ ବନ୍ଦ ଅଛି । ଏଥି ପୂର୍ବରୁ ୩ଟି ରତ୍ନପଲଙ୍କ ସିଂହାସନ ତଳେ ତିନିଠାକୁରଙ୍କ ସାମନାରେ ପଡ଼ି ସାରିଥାଏ । ଶୟନ ଠାକୁରଙ୍କୁ ପୁଷ୍ପାଳକ ଓ ଗରାବଡୁ ହାତରେ ବିଜେ କରାଇ ଜୟବିଜୟ ଦ୍ୱାରକୁ ଆଣନ୍ତି ଏବଂ ସେଠାରେ ଏକ ବଡ଼ ଡମ୍ବରୁ ଉପରେ ଏହି ଠାକୁର ବିଜେ କରନ୍ତି । ସେହି ଅବସ୍ଥାରେ ଠାକୁରଙ୍କର ବିଡ଼ିଆ ମଣୋହି ଓ ପଇଡ଼ ମଣୋହି ହୁଏ । ପାଳିଆ ଖୁଣ୍ଟିଆ ଠାକୁରଙ୍କ ଉପରେ ପୁଷ୍ପାଞ୍ଜଳି ପକାନ୍ତି । ଏହା ପରେ ଶୟନ ଠାକୁରଙ୍କୁ ଜୟବିଜୟ ଦ୍ୱାରରୁ ବିଜେ କରାଇ ନେଇ ଜଗନ୍ନାଥଙ୍କ ପଲଙ୍କରେ ଶୟନ କରାଯାଏ ଓ ପରେ ପରେ ଭଣ୍ଡାର ଘରକୁ ନିଆଯାଏ । କଳାହାଟ ଦ୍ୱାର ବନ୍ଦ କରି ମୁଦୁଲି ତାଲା ପକାନ୍ତି ଏବଂ ତାଲାରେ ମାଟିର ମୁଦ ଦିଅନ୍ତି । ତଳିଛ ମହାପାତ୍ର ସିଲ୍ ପକାନ୍ତି । ତା'ପରେ ଜୟବିଜୟ ଦ୍ୱାର ସେହିପରି ତାଲା ପଡ଼େ ଓ ସିଲ୍ ହୁଏ । ପୂର୍ବରୁ ଭିତର ଦକ୍ଷିଣ ଦ୍ୱାର ବନ୍ଦ କରାଯାଇଥାଏ । ଜୟବିଜୟ ଦ୍ୱାର ସିଲ୍ ହେବା ପରେ ଦକ୍ଷିଣ ଦ୍ୱାର (ବାହାରପଟ)ରେ ତାଲା ପଡ଼େ ଓ ସିଲ୍ ହୁଏ । ମନ୍ଦିରର ଭିତର ଓ ବାହାର ବେଢ଼ା ଶୋଧ ହୁଏ ଅର୍ଥାତ୍ ମନ୍ଦିର ଭିତରେ କୌଣସି ଲୋକଙ୍କୁ ରଖାଯାଏ ନାହିଁ । ମନ୍ଦିର ପୋଲିସ୍ ଏହି କାର୍ଯ୍ୟ କରନ୍ତି । ବାହାର ବେଢ଼ାର ଚାରି ଦ୍ୱାରରେ ପୋଲିସ୍ ପହରା ଦିଅନ୍ତି ।

ଏହା ହେଉଛି ସଂକ୍ଷେପରେ ଶ୍ରୀମନ୍ଦିରର ଦୈନନ୍ଦିନ ସାଧାରଣ ଦିନର ନୀତି । ପର୍ବପର୍ବାଣି ଓ ବିଶିଷ୍ଟ ଦିନମାନଙ୍କରେ ଦୈନନ୍ଦିନ ନୀତି ନିର୍ଘଣ୍ଟର ସାମାନ୍ୟ ବ୍ୟତିକ୍ରମ ହୁଏ ଏବଂ କେତେକ ଅଧିକ ନୀତି ହୋଇଥାଏ ।

# ବିଶେଷ ବା ସାମୟିକ ନୀତି

ଶ୍ରୀ ମନ୍ଦିରରେ ଦୈନନ୍ଦିନ ନୀତି ବ୍ୟତୀତ ପରମ୍ପରାନୁସାରେ ବାର, ତିଥି ଓ ଅଶୌଚଜନିତ ବିଶେଷ ନୀତି ପାଳନ କରାଯାଏ । ସ୍ୱତ୍ୱଲିପିର ଦ୍ୱିତୀୟ ଭାଗରେ ଏହି ସବୁ ନୀତିର ତାଲିକା ତଥା ପାଳନବିଧି ଲିପିବଦ୍ଧ ହୋଇଅଛି । ଏହି ନୀତିମାନ ହେଲା:

## ୧. ଗୁରୁବାର ନୀତି (ମାଜଣା ଓ ଏକାନ୍ତ)

ସାଧାରଣତଃ ପ୍ରତ୍ୟେକ ଗୁରୁବାର ଦିନ ସକାଳ ଧୂପ ପରେ ମାଜଣା ନୀତି ହେବାର ନିୟମ । ମାଜଣା ମଣ୍ଡପ ଧୂଆଯାଇ ସେଠି ମଣ୍ଡଣି ଚାନ୍ଦୁଆ ବନ୍ଧାଯାଏ । ସକାଳ ଧୂପ ପରେ ମହାଜନମାନେ ରତ୍ନ ସିଂହାସନରୁ ଶ୍ରୀଦେବୀ ଓ ଭୂଦେବୀଙ୍କୁ ଏବଂ ଦକ୍ଷିଣ ଘରୁ ମଦନମୋହନଙ୍କୁ ଆଣି ମାଜଣା ମଣ୍ଡପରେ ବିଜେ କରାନ୍ତି । ସୁଧସୁଆର ମାଜଣା ଜିନିଷ ଦିଅନ୍ତି । ମହାଜନମାନେ ଦେବଦେବୀଙ୍କୁ ସେଠାରେ ମାଜଣା କରନ୍ତି ଓ ଖଟ ଉପରେ ବସାନ୍ତି । ଭିତରଛ ମହାପାତ୍ର ଚନ୍ଦନ ଲାଗି କରାନ୍ତି । ଆସ୍ଥାନ ପଢ଼ିଆରୀ ଓ ସୁଧ ସୁଆର ପୂଜା ଠା’ କରନ୍ତି । ପୂଜାପଣ୍ଡା ଜଣେ ଆସି ଦହି ଓ କୋରା ଭୋଗ କରନ୍ତି । ପୂଜା ଶେଷ ପରେ ଭିତରଛ ମହାପାତ୍ର ଆଳତି କରନ୍ତି ଓ ଅରୁଆ ଚାଉଳ ଅକ୍ଷତ ଦ୍ୱାରା ବନ୍ଦାପନା କରନ୍ତି । ଦ୍ୱିପ୍ରହର ଧୂପ ଛେକ ଆସିଲେ ଦେବଦେବୀମାନେ ସେମାନଙ୍କର ସ୍ୱସ୍ଥାନକୁ ବାହୁଡ଼ା ବିଜେ କରନ୍ତି ।

**ଏକାନ୍ତ :** ସେହିଦିନ ଅର୍ଥାତ୍ ଗୁରୁବାର ରାତିରେ ଏହା ହେବା ନିୟମ । ସଂଧ୍ୟାଧୂପ ପରେ ମହାଜନମାନେ ମଦନମୋହନଙ୍କୁ ଦକ୍ଷିଣ ଘରୁ ନେଇ ରତ୍ନସିଂହାସନରେ ବିଜେ କରାନ୍ତି । ସେଠାରେ ଶ୍ରୀଜଗନ୍ନାଥଙ୍କ ଆଜ୍ଞାମାଳ ଖଣ୍ଡିଏ (ତୁଳସୀମିଶା) ମଦନମୋହନଙ୍କୁ ଓ ଆଉ ଖଣ୍ଡିଏ (ସାଦା) ଶ୍ରୀଦେବୀ (ଲକ୍ଷ୍ମୀ)ଙ୍କୁ ପୂଜାପଣ୍ଡା  ଲାଗି କରାନ୍ତି । ଏହା ପରେ ମଦନମୋହନ ଓ ଲକ୍ଷ୍ମୀଙ୍କୁ ଝୁଲଣମଣ୍ଡପ ତଳେ ରହିଥିବା ପାଲିଙ୍କିରେ ବିଜେ କରାଯାଏ । ବିମାନବଡୁମାନେ ପାଲିଙ୍କି ବୋହିନେଇ ସରସ୍ୱତୀ-ଭୁବନେଶ୍ୱରୀ ମନ୍ଦିର ସାମନାରେ ଓହ୍ଲାନ୍ତି । ମହାଜନମାନେ ଘଣ୍ଟ, ଛତା ଦିହୁଡ଼ି ସହ ଦେବଦେବୀଙ୍କୁ ହାତରେ ବିଜେ କରାଇ ନେଇ ସରସ୍ୱତୀଙ୍କ ମନ୍ଦିର ଭିତରେ ପଶି ଲକ୍ଷ୍ମୀ ମନ୍ଦିର ଜଗମୋହନକୁ ଯାଇ ସେଠାରେ ପଡ଼ିଥିବା ପଲଙ୍କରେ ବିଜେ କରାନ୍ତି । ଭିତରଛ ପ୍ରସାଦଲାଗି କରନ୍ତି । ସୁଧ ସୁଆର କିମ୍ବା ଆସ୍ଥାନ ପଢ଼ିଆରୀ ପୂଜା ଠା’ କରନ୍ତି । ପୂଜାପଣ୍ଡା କୋରାଭୋଗ କରନ୍ତି । ପୂଜା ପରେ ଆଳତି ହୁଏ ଓ ଅକ୍ଷତ ବନ୍ଦାପନା ହୁଏ । ଏହାପରେ ଦୁଇ ଦେବଦେବୀ ପାଲିଙ୍କିରେ ବାହୁଡ଼ା ବିଜେ ହୋଇ ସାତପାହାଚ ଦେଇ ଗରୁଡ଼ ସାମନାରେ ଜଗମୋହନରେ ଓହ୍ଲାନ୍ତି । ଦେବଦେବୀ ସ୍ୱସ୍ଥାନକୁ ବିଜେ କରନ୍ତି ।

ଗୁରୁବାର ଦିନ ଏକାଦଶୀ ପଡ଼ିଲେ, ଏହିପରି କେତୋଟି ଦିନମାନଙ୍କରେ (ସ୍ୱତ୍ୱଲିପିରେ ସୂଚିତ) ଏକାନ୍ତ କିମ୍ବା ମାଜଣା ହୁଏ ନାହିଁ । ନିମ୍ନଲିଖିତ ସେବକଙ୍କ ଦ୍ୱାରା ମାଜଣା, ଏକାନ୍ତ ନୀତି ହୁଏ-

୧. ମହାଜନ ୬ ଜଣ, ୨. ସୁଧ ସୁଆର, ୩. ପର୍ବଯାତ୍ରା ଯୋଗାଣିଆ, ୪. ଆସ୍ଥାନ ପଢିଆରୀ, ୫. ଚନ୍ଦନ ଘଟୁଆରୀ, ୬. ପୂଜାପଣ୍ଡା, ୭. ଭିତରଛ, ୮. ପାଳିଆ ପୁଷ୍ପାଳକ, ୯. ବିମାନବଡୁ, ୧୦. ଛତାର, ୧୧. ଘଣ୍ଟୁଆ, ୧୨. ଖଟଶେଯ ମେକାପ ।

## ୨. ନକ୍ଷତ୍ର ବନ୍ଦାପନା

ଅବକାଶ ସମୟରେ ଜ୍ୟୋତିଷ ସେବକ ପ୍ରତିଦିନ ନକ୍ଷତ୍ର, ତିଥି ଇତ୍ୟାଦି ପଢ଼ି ଶୁଣାନ୍ତି । ଯେଉଁଦିନ ଠାକୁରଙ୍କର ଜନ୍ମ ନକ୍ଷତ୍ର ପଡ଼େ, ନକ୍ଷତ୍ର ବନ୍ଦାପନା ନୀତି ଦ୍ୱିପ୍ରହର ଧୂପ ପରେ ହୁଏ । ତିନି ଦିଅଙ୍କ ନକ୍ଷତ୍ର ଓ ରାଶି ହେଲା:

ଶ୍ରୀ ବଳଭଦ୍ର- ଶ୍ରବଣା, ମକର

ଶ୍ରୀଜଗନ୍ନାଥ- ରୋହିଣୀ , ବୃଷ

ମା' ସୁଭଦ୍ରା- ଜ୍ୟେଷ୍ଠା, ବିଛା

ବଡ଼ ଠାକୁର ବଳଭଦ୍ରଙ୍କ ଜନ୍ମନକ୍ଷତ୍ର ଦିନ ତାଙ୍କର ଗୋଟିଏ ଅଧିକ ବନ୍ଦାପନା ହୁଏ । ସେହିପରି ମହାପ୍ରଭୁ ଜଗନ୍ନାଥଙ୍କ ଜନ୍ମ ନକ୍ଷତ୍ରରେ ତାଙ୍କ ଆଡ଼େ ଗୋଟିଏ ଅଧିକ ବନ୍ଦାପନା ହୁଏ । ଦେବୀ ସୁଭଦ୍ରାଙ୍କ ଜନ୍ମ ନକ୍ଷତ୍ରରେ ତିନିଠାକୁରଙ୍କ ଆଡ଼ରେ ସମାନ ବନ୍ଦାପନା ହୁଏ । ମଧ୍ୟାହ୍ନ ଧୂପ ଉଠିଲେ ମଦନମୋହନଙ୍କୁ ଦକ୍ଷିଣୀଘରୁ ମହାଜନେ ନେଇ ଭିତରକୁ ବିଜେ କରାନ୍ତି । ଧୂପ ସମାପ୍ତ ପରେ ପୂଜାପଣ୍ଡା ଶ୍ରୀଜଗନ୍ନାଥଙ୍କୁ, ପତି ମହାପାତ୍ର ଦେବୀ ସୁଭଦ୍ରାଙ୍କୁ ଓ ମୁଦିରସ୍ତ ଶ୍ରୀବଳଭଦ୍ରଙ୍କୁ କର୍ପୂର ଆଳତି ଓ ବନ୍ଦାପନା କରନ୍ତି ।

ମଦନମୋହନ ଠାକୁରଙ୍କୁ ମହାପ୍ରଭୁଙ୍କ ଆଜ୍ଞାମାଳ ପୂଜାପଣ୍ଡା ଦେବାପରେ, ତାଙ୍କୁ ମହାଜନମାନେ ମୁକ୍ତିମଣ୍ଡପ ତଳେ ଥିବା ପାଲିଙ୍କିରେ ବିଜେ କରାନ୍ତି । ବିମାନବଡୁମାନେ ତାହା ଧରି ବେଢ଼ା ବୁଲାନ୍ତି । ଏ ସମୟରେ ଛତାର ଛତା ଧରନ୍ତି ଓ ଘଣ୍ଟୁଆ ଘଣ୍ଟ ବଜାନ୍ତି । ବେଢ଼ା ପରେ ମହାଜନମାନେ ମଦନମୋହନଙ୍କୁ ଜୟବିଜୟ ଦ୍ୱାରକୁ ବିଜେ କରାନ୍ତି । ପ୍ରତିହାରୀ ଜୟବିଜୟ ଦ୍ୱାର ଭିତରପଟୁ ବନ୍ଦ କରନ୍ତି । ଦ୍ୱାର ବାହାରେ ପଡ଼ିଥିବା ଆସନରେ ଦିଅଁ ବିଜେ କରନ୍ତି । ପୂଜାପଣ୍ଡା ଦିଅଁଙ୍କୁ କୋରାଭୋଗ ସର୍ପାମଣୋହି କରି ପୂଜା କରନ୍ତି । ବନ୍ଦାପନା, କର୍ପୂର ଆଳତି, ବତି ଆଳତି ପରେ ଜୟବିଜୟ ଦ୍ୱାର ଫିଟେ । ମଦନମୋହନ ଦକ୍ଷିଣୀ ଘରକୁ ଫେରିଯା'ନ୍ତି ।

ଯଦି ନକ୍ଷତ୍ର ବନ୍ଦାପନା ଦିନ ଏକାଦଶୀ କିମ୍ବା ଅନ୍ୟ ବାହାର ବିଜେ ଥାଏ, ତେବେ ଏହି ବେଢ଼ାବୁଲା ହୁଏ ନାହିଁ । କେବଳ ଦିଅଁ ଜୟ ବିଜୟ ଦ୍ୱାରରେ ବନ୍ଦାପନା ହୋଇ ଦକ୍ଷିଣୀ ଘରକୁ ବିଜେ ହୁଅନ୍ତି । ନକ୍ଷତ୍ର, ଅଣସର ଓ ରଥ ଉପରେ ପଡ଼ିଲେ ଏହି ନୀତି ହୁଏ ନାହିଁ । ଗୁଣ୍ଡିଚା ଘରେ ମଧ୍ୟ ଏହି ନୀତି ହୁଏ ନାହିଁ ।

ନିମ୍ନ ଲିଖିତ ସେବକମାନଙ୍କଦ୍ୱାରା ନକ୍ଷତ୍ର ବନ୍ଦାପନା ନୀତି ହୁଏ-

୧. ଜ୍ୟୋତିଷ, ୨. ମୁଦିରସ୍ତ, ୩. ପତି ମହାପାତ୍ର, ୪. ପୂଜାପଣ୍ଡା, ୫. କାହାଳିଆ, ୬. ଆସ୍ଥାନ ପଢ଼ିଆରୀ, ୭. ଛତାର, ୮. ଘଣ୍ଟୁଆ, ୯. ଖଟଶେଯ ମେକାପ, ୧୦. ମହାଜନ, ୧୧. ବିମାନବଡୁ ।

## ୩. ଏକାଦଶୀ ନୀତି

ପ୍ରତ୍ୟେକ ଏକାଦଶୀରେ ମଧ୍ୟାହ୍ନ ଧୂପ, ମଇଲମ ଓ ସନ୍ଧ୍ୟା ଆଳତି ହେବା ପରେ ଦିଅଁମାନଙ୍କର ସର୍ବାଙ୍ଗ ଚନ୍ଦନଲାଗି ହୁଏ । ସର୍ବାଙ୍ଗ ପୂର୍ବରୁ ମଦନମୋହନ ଠାକୁର ଭିତରେ ବିଜେ କରିଥାନ୍ତି । ସେ ଆଜ୍ଞାମାଳ ପାଇବା ପରେ ପାଲିଙ୍କିରେ ବିଜେ ହୋଇ ବେଢ଼ା ପରିକ୍ରମା କରିଥାନ୍ତି । ତା'ପରେ ଜୟ ବିଜୟ ଦ୍ୱାରଠାରେ ତାଙ୍କର ଆଳତି, ବନ୍ଦାପନା ଓ ଭୋଗ ପୂର୍ବ ବର୍ଣ୍ଣିତ ନକ୍ଷତ୍ର ବନ୍ଦାପନା ନୀତି ଅନୁସାରେ ହୁଏ ।

ପ୍ରତ୍ୟେକ ଏକାଦଶୀ ରାତିରେ ମହାଦୀପ ଆଳତି ହୁଏ । ସଂଧ୍ୟାଧୂପ ପରେ ସିଂହାସନରେ ପୂଜାପଣ୍ଡାମାନେ ମହାଦୀପ ଆଳତି କଲା ପରେ ସିଂହାସନ ଚାରିପଟେ ବେଢ଼ା ବୁଲି ଜୟବିଜୟ ଦ୍ୱାର ଦେଇ ମହାଦୀପ କଳସରେ ଧରି ବିମଳା ମନ୍ଦିର ସାମନାକୁ ଯାଆନ୍ତି । ସେଠାରେ ସେମାନେ ଚୂନରା ସେବକଙ୍କୁ ତିନିଟି କଳସ, ତୁଳସୀ ଦେଇ ଚାଲିଯା'ନ୍ତି । ଘଟୁଆରୀ ୧୨ଟି ଚନ୍ଦ୍ର ଉଦିଆ ଦିଅନ୍ତି । କଳସ ରଖି ଦେଇ ମହାଦୀପ ଓ ଚନ୍ଦ୍ର ଉଦିଆ ଧରି ତିନି ଜଣ ଚୂନରା ସେବକ ମନ୍ଦିର ଉପରକୁ ଉଠନ୍ତି । ଦଧି ନଉତି ତଳେ ଠିଆହୋଇ ତୁଳସୀ ଚନ୍ଦନ ନୀଳଚକ୍ରଙ୍କୁ ଲାଗିକରି ଚାରିପଟେ ତିନିଘେରା ବୁଲନ୍ତି ଏବଂ ପ୍ରତ୍ୟେକ ଦିଗରେ ୩ଟି ଲେଖାଏଁ ଚନ୍ଦ୍ର ଉଦିଆ ଜାଳନ୍ତି । ଘେରା ବୁଲିଲା ବେଳେ ମହାପ୍ରଭୁ ପୁରୀ ରାଜାଙ୍କୁ (ନାମ ଧରି) ''ଶଙ୍ଖେ ପୂରାଇ ଚକ୍ର ଆଡୁଆଳ କରନ୍ତୁ'' ବୋଲି ଡାକ ଦିଅନ୍ତି ଓ ହରିବୋଲ ଡାକ ଦିଅନ୍ତି ।

**ବାର ଅନୁସାରେ ଏକାଦଶୀ ନୀତି :** ଏକାଦଶୀ ଗୁରୁବାର ପଡ଼ିଲେ ସଂଧ୍ୟାଧୂପ ପରେ ଶ୍ରୀଜଗନ୍ନାଥଙ୍କ ବାଡ଼ରେ ମହାସ୍ନାନ ହୁଏ । ବଡ଼ସିଂହାର ବେଶରେ ୬ ମୂର୍ତ୍ତି ଅଳଙ୍କାର (କୁଣ୍ଡଳ ୪ ଓ ତଡ଼ଗି ୨) ଦିଅଁଙ୍କୁ ଲାଗି କରାଯାଏ । ବଡ଼ସିଂହାର ଭୋଗ ପରେ ସିଂହାସନ ଉପରେ 'ଦଣ୍ଡଛତ୍ର ନୀତି' ହୁଏ । ଏହା ପରେ ମୁଦିରସ୍ତ 'ରାଜନୀତି' ନାମରେ ଏକ ନୀତି କରନ୍ତି । ପରେ ଅନ୍ୟାନ୍ୟ ଦୈନନ୍ଦିନ ନୀତି ହୁଏ ।

ସୋମବାର ଦିନ ଏକାଦଶୀ ପଡ଼ିଲେ ଏହାକୁ 'ଶମ୍ଭୁ ଏକାଦଶୀ' କୁହାଯାଏ । ସେଦିନ ଶ୍ରୀଲୋକନାଥ ମନ୍ଦିରର କାନ୍ଧିଆ ତାଙ୍କର ପାଲିଙ୍କି ଆଣି ଶ୍ରୀମନ୍ଦିର ଭଣ୍ଡାର ଲୋକନାଥଙ୍କ କୋରାଭୋଗ ହେବା ପରେ ତାଙ୍କୁ ଘଣ୍ଟ ଛତା ସହ ଶ୍ରୀଲୋକନାଥଙ୍କ ମନ୍ଦିରକୁ ନେଇ ଯାଆନ୍ତି । ଦ୍ୱିପ୍ରହର ଧୂପ ପରେ ମଦନମୋହନ ଶ୍ରୀଲୋକନାଥ ମନ୍ଦିରକୁ ବିଜେ କରନ୍ତି । ସେଠାରେ ଦୁଇ ଦିଅଁ ବାନାମ୍ବରଙ୍କ ଗମ୍ଭୀରାରେ ରହନ୍ତି । ସେଠାରେ ପନ୍ତି ଭୋଗ ହୁଏ । ଶ୍ରୀମନ୍ଦିରରୁ ସୁଧ ସୁଆର ବା ଆସ୍ଥାନ ପଢ଼ିଆରୀ ସେଠାକୁ ଯାଇ ପୂଜା ଠା' କରନ୍ତି ଓ ପୂଜାପଣ୍ଡା ସେଠାକୁ ଯାଇ ଭୋଗ କରନ୍ତି । ପରେ ପରେ ଆରତି ବନ୍ଦାପନା ହୁଏ । ପୂଜା ପରେ ଦୁଇ ଦିଅଁ ମଦନମୋହନ ଯାଇଥିବା ପାଲିଙ୍କିରେ ଏକତ୍ର ବିଜେ କରନ୍ତି ଓ ତା'ପରେ ଶ୍ରୀମନ୍ଦିରକୁ ବାହୁଡ଼ନ୍ତି । ଜୟ ବିଜୟ ଦ୍ୱାରଠାରେ ଏକାଦଶୀ ଭୋଗ (ଦୁଇ ସରା କୋରା) ହୁଏ । ଠିକ୍ ନକ୍ଷତ୍ର ବନ୍ଦାପନା ପରି ପୂଜା ଓ ଆରତି ହୁଏ । ଜୟ ବିଜୟ ଦ୍ୱାର ଖୋଲା ହେଲେ ଠାକୁରମାନେ ଯେଝା ଆସ୍ଥାନକୁ ବିଜେ କରନ୍ତି ।

ଆଷାଢ଼ ମାସ ଶୟନ ଏକାଦଶୀଠାରୁ କାର୍ତ୍ତିକ ଶୁକ୍ଳ ଏକାଦଶୀ ଯାଏଁ ଦିଅଁମାନେ ଏପରି ଶ୍ରୀଲୋକନାଥ ମନ୍ଦିରକୁ ଯାଆନ୍ତି ନାହିଁ । ଉକ୍ତ ଚତୁର୍ମାସ୍ୟାରେ ଲୋକନାଥଙ୍କ ସେବକ ଆସି ଭଣ୍ଡାର ଲୋକନାଥ ଓ ମଦନମୋହନଙ୍କୁ ଜୟ ବିଜୟ ଦ୍ୱାରକୁ ଅଣାଇ ଭୋଗ, ବନ୍ଦାପନା ନୀତି କରନ୍ତି । ଚନ୍ଦନ ଯାତ୍ରାରେ ଓ ରୁକ୍ମିଣୀ ହରଣରେ ଶମ୍ଭୁ ଏକାଦଶୀ ପଡ଼ିଲେ ଦିଅଁମାନେ ଶ୍ରୀଲୋକନାଥଙ୍କ ମନ୍ଦିରକୁ ଯାଆନ୍ତି ନାହିଁ ।

ନିମ୍ନଲିଖିତ ସେବକମାନଙ୍କ ଦ୍ୱାରା ଏକାଦଶୀ ନୀତି ସମ୍ପନ୍ନ ହୁଏ-

ଘଟୁଆରୀ, ପୂଜାପଣ୍ଡା, ପତି ମହାପାତ୍ର, ମୁଦିରସ୍ତ, ପାଳିଆ ପୁଷ୍ପାଳକ, ବିମାନବଡ଼ୁ, ପାଳିଆ ପ୍ରତିହାରୀ, ଖଟଶେଯ ମେକାପ, ଆସ୍ଥାନ ପଢ଼ିଆରୀ, ସୁଧସୁଆର, ଚୂନରା, ପର୍ବଯାତ୍ରା ଯୋଗାଣିଆ, ଛତାର, ଘଣ୍ଟୁଆ, କାହାଳିଆ, ଦିହୁଡ଼ିଆ, ଭିତରଛ ମହାପାତ୍ର, ପାଳିଆ ମେକାପ, ଅମୁଣିଆ ଛତାର, ପାଳିଆ ଖୁଣ୍ଟିଆ ଓ ଅଖଣ୍ଡ ମେକାପ ।

## ୪. ଅମାବାସ୍ୟା ନୀତି ବା ସାଗର ବିଜେ

ଅମାବାସ୍ୟା ପ୍ରତିପଦ ସ୍ପର୍ଶ ହେଲେ ସକାଳ ଧୂପ ପରେ ଏହି ନୀତି ହେବା ନିୟମ । ସକାଳ ଧୂପ ଶେଷ ହେବା ପରେ ଧୋପଖାଳ ହେବା ପରେ ମହାଜନମାନେ ଦକ୍ଷିଣୀ ଘରୁ ଶ୍ରୀନାରାୟଣ ବିଗ୍ରହଙ୍କୁ ଆଣି ସିଂହାସନରେ ବିଜେ କରାନ୍ତି । ଉକ୍ତ ବିଗ୍ରହଙ୍କୁ ଶ୍ରୀଜଗନ୍ନାଥଙ୍କର ଲାଗି ହେଇଥିବା ତୁଳସୀ ମିଶା ଆଜ୍ଞାମାଳ ପୂଜାପଣ୍ଡା ଦିଅନ୍ତି । ଏହା ପରେ ତାଙ୍କୁ ମହାଜନ ନେଇ ଝୁଲଣମଣ୍ଡପ ତଳେ ଥିବା ପାଲିଙ୍କିରେ ବିଜେ କରାନ୍ତି । ପାଲିଙ୍କି ବିମାନବଡ଼ୁମାନେ ବୋହି ସମୁଦ୍ରକୂଳ ସ୍ୱର୍ଗଦ୍ୱାରକୁ ବିଜେ କରନ୍ତି । ସାଥିରେ ହୋମ ପାଳିଆ ପୂଜାପଣ୍ଡା, ଆସ୍ଥାନ ପଢ଼ିଆରୀ, ଗରାବଡ଼ୁ, ଘଣ୍ଟୁଆ, ଛତାର, କାହାଳିଆ ଯାଆନ୍ତି । ସେଠାରେ ଗରାବଡ଼ୁ ରୁପା ପିଙ୍ଗଣରେ ସମୁଦ୍ରରୁ ଜଳ ଆଣି ପୂଜାପଣ୍ଡାଙ୍କୁ ଦେଲେ ପୂଜାପଣ୍ଡା ତାହା ସଂସ୍କାର କରି ଠାକୁରଙ୍କୁ ଲାଗି କରାନ୍ତି । ସେଠାରେ ସାବତ ନିଯୋଗ ତରଫରୁ ପଣାଭୋଗ ହୁଏ । ଆଳତି, ବନ୍ଦାପନା ପରେ ଠାକୁରଙ୍କୁ ନେଇ ଯମେଶ୍ୱର ମହାଦେବଙ୍କ ମନ୍ଦିର ଭିତର ଗମ୍ଭୀରାରେ ବିଜେ କରାଯାଏ । ସେଠାରେ ଠାକୁରଙ୍କୁ ପଞ୍ଚାମୃତରେ ମହାସ୍ନାନ କରାଯାଏ । ପଞ୍ଚୋପଚାର ପୂଜା ହୁଏ । ଶୀତଳ ଭୋଗ ଓ ବନ୍ଦାପନା ହୁଏ । ଏହାପରେ ଠାକୁରଙ୍କର ବାହୁଡ଼ା ବିଜେ ହୁଏ । ଠାକୁର ଦକ୍ଷିଣୀ ଘରକୁ ବିଜେ କରନ୍ତି । ଆଷାଢ଼ ଅମାବାସ୍ୟାରେ ପ୍ରତିପଦ ସ୍ପର୍ଶ ହେଲେ ମଧ୍ୟ ଏହି ନୀତି ହୁଏ ନାହିଁ।

ନିମ୍ନଲିଖିତ ସେବକମାନେ ଏହି ନୀତି ସହ ସଂପୃକ୍ତ -

ମହାଜନ, ପୂଜାପଣ୍ଡା, ବିମାନବଡ଼ୁ, ହୋମ ପାଳିଆ ପୂଜାପଣ୍ଡା, ଆସ୍ଥାନ ପଢ଼ିଆରୀ, ବାସି ପାଳିଆ ଗରାବଡ଼ୁ, ଘଣ୍ଟୁଆ, ଛତାର ଓ କାହାଳିଆ ।

## ୫. ବାର ଅନୁସାରେ ବିଭିନ୍ନ ରଙ୍ଗର ଘୋଡ଼ (ଶୀତ ବସ୍ତ୍ର)

ଓଢ଼ଣ ଷଷ୍ଠୀ ଅର୍ଥାତ୍ ମାର୍ଗଶିର ଶୁକ୍ଳ ଷଷ୍ଠୀଠାରୁ ବସନ୍ତ ପଞ୍ଚମୀ, ଅର୍ଥାତ୍ ମାଘ ଶୁକ୍ଳ ପଞ୍ଚମୀ ଯାଏଁ ଦିଅଁମାନେ ନିମ୍ନମତେ ଘୋଡ଼ ପରିଧାନ କରନ୍ତି-

**ରବିବାର-** ଲାଲ ରଂଗର ଘୋଡ଼

**ସୋମବାର-** କଳାଛିଟମିଶା ଶୁକ୍ଳ ଘୋଡ଼

**ମଙ୍ଗଳବାର-** ବାର ପଟିଆ (ପାଞ୍ଚ ରଂଗ) ମିଶା ଘୋଡ଼

**ବୁଧବାର-** ନୀଳରଂଗର ଘୋଡ଼

**ଗୁରୁବାର-** ବସନ୍ତ ରଙ୍ଗର ଘୋଡ଼

**ଶୁକ୍ରବାର-** ଶୁକ୍ଳ ରଙ୍ଗର ଘୋଡ଼

**ଶନିବାର-** କଳାରଙ୍ଗର ଘୋଡ଼

ବସନ୍ତ ପଞ୍ଚମୀଠାରୁ ଫଗୁ ଦଶମୀ ଯାଏଁ ଠାକୁରମାନେ ଜାମା ବା ଠିଆଘୋଡ଼ ଲାଗି ହୁଅନ୍ତି । ଏହି ଘୋଡ଼ରେ ଠାକୁରମାନଙ୍କ ଶ୍ରୀଅଙ୍ଗ ସଂପୂର୍ଣ୍ଣ ଘୋଡ଼ାଇ ହୁଏ ନାହିଁ । ଘୋଡ଼ ବସ୍ତ୍ରମାନ ସାଧାରଣତଃ ମଖମଲ ଓ ସୂତା କପଡ଼ାରେ ତିଆରି ହୋଇଥାଏ । ଓଢ଼ଣ ଷଷ୍ଠୀଠାରୁ ବସନ୍ତ ପଞ୍ଚମୀ ଯାଏଁ ଘୋଡ଼ଲାଗିରେ ପୂଜାପଣ୍ଡାମାନେ ମଧ୍ୟାହ୍ନ ଧୂପ ଛଡ଼ା ଅନ୍ୟ ଧୂପମାନଙ୍କରେ ସିଂହାସନରେ ନବସି ତଳେ ବସି ପୂଜା କରନ୍ତି ।

## ୬. ବନକଲାଗି ବା ଶ୍ରୀମୁଖ ସିଂହାର

ଏହି କାର୍ଯ୍ୟ ପ୍ରତ୍ୟେକ ବୁଧବାର କିମ୍ବା ଗୁରୁବାର ହେବା ନିୟମ । ଦ୍ୱିପ୍ରହର ଧୂପ ଶେଷ ହୋଇ ଭିତର ଧୋପଖାଳ ହେବା ପରେ ମଇଲମ ଓ ତଡ଼ପ ଲାଗି ହୁଏ । ତିନି ବାଡ଼ରେ ଆଳତି ହୁଏ । ଏହାକୁ ମଧ୍ୟାହ୍ନ ପହୁଡ଼ ଆଳତି କୁହାଯାଏ । ଏହା ପରେ ଜୟ ବିଜୟ ଦ୍ୱାର ବନ୍ଦ କରାଯାଏ । ତିନି ଜଣ ଦତ୍ତ ମହାପାତ୍ର ସେବକ ବନକ ବାଟି ସାରି ପେଡ଼ାରେ ବନକ ଧରି ବେହରଣ ଦ୍ୱାର ଦେଇ ସିଂହାସନ ଉପରକୁ ଉଠନ୍ତି । ଗରାବଡୁଠାରୁ ହାତୁଆଣି ନେଇ ବନକଲାଗି ଆରମ୍ଭ କରନ୍ତି । ସେମାନେ ମୁଦୁଲିଠାରୁ କର୍ପୂର, ଜଳ ଓ ଚାଙ୍ଗଡ଼ା ମେକାପଠାରୁ ଶ୍ରୀକପଡ଼ା ନେଇଥାନ୍ତି । ମଝି ବାଡ଼ରେ ବନକଲାଗି ସମୟରେ ପାଳିଆ ମେକାପ ଅଖଣ୍ଡଠାରୁ ବଇଠା ନେଇ ଦେଖାନ୍ତି । ବନକଲାଗି ଶେଷ ହେବା ପରେ ଦତ୍ତ ମହାପାତ୍ରମାନେ ସିଂହାସନରୁ ଓହ୍ଲାଇ ଆସନ୍ତି । ତା'ପରେ ପାଳିଆ ମେକାପ ସିଂହାସନ ଧୁଏ । ତିନିଜଣ ପୂଜାପଣ୍ଡା ସିଂହାସନ ତଳେ ବସି ଠାକୁରମାନଙ୍କୁ ପଞ୍ଚାମୃତରେ ମହାସ୍ନାନ କରାନ୍ତି ।

ବନକଲାଗି ପାଇଁ ହିଙ୍ଗୁଳ, ହରିତାଳ, ଶଙ୍ଖ, କେଶର, କର୍ପୂର, କଇଥ ଅଠା, କସ୍ତୁରୀ, କଳାତେଲ ଇତ୍ୟାଦି ଦରକାର ହୁଏ ।

ନିମ୍ନଲିଖିତ ସେବକମାନଙ୍କଦ୍ୱାରା ଏହି ନୀତି ସମ୍ପନ୍ନ ହୁଏ-

ପାଳିଆ ଖୁଣ୍ଟିଆ, ଗରାବଡୁ, ପାଳିଆ ପୁଷ୍ପାଳକ, ଚାଙ୍ଗଡ଼ା ମେକାପ, ଦତ୍ତ ମହାପାତ୍ର, ମୁଦୁଲି ଓ ପୂଜାପଣ୍ଡା ।

## ୭. ବେଣ୍ଟ ବା ଶିକାର

ବସନ୍ତ ପଞ୍ଚମୀ ଦିନ ମଧ୍ୟାହ୍ନ ଧୂପ ଶେଷ ହୋଇ ଚାଚେରୀ ବେଶ ହେଲା ପରେ ଓ ଫାଲଗୁନ ଶୁକ୍ଲପକ୍ଷ ପ୍ରତିପଦ, ଚତୁର୍ଥୀ, ଅଷ୍ଟମୀ ଓ ଦ୍ୱାଦଶୀ ତିଥିରେ ମଙ୍ଗଳ ଆଳତି ସରିବା ପରେ ଠାକୁର ବେଣ୍ଟ ବା ଶିକାରକୁ ବିଜେ କରିବା ନିୟମ ।

ଉକ୍ତ ଦିନମାନଙ୍କରେ ଦକ୍ଷିଣୀ ଘରୁ ଦୋଳଗୋବିନ୍ଦ ଠାକୁରଙ୍କୁ ମହାଜନ ନେଇ ସିଂହାସନରେ ବିଜେ କରାନ୍ତି । ପୂଜାପଣ୍ଡା ଶ୍ରୀଜଗନ୍ନାଥଙ୍କ ଶ୍ରୀଅଙ୍ଗରୁ ଲାଗି ହୋଇଥିବା ଗୋଟିଏ ଆଜ୍ଞାମାଳ ଦୋଳଗୋବିନ୍ଦଙ୍କୁ ଦିଅନ୍ତି । ତା'ପରେ ମହାଜନ ତାଙ୍କୁ ନେଇ ବଟଦ୍ୱାର ପାଖରେ ରଖାଯାଇଥିବା ପାଲିଙ୍କିରେ ବିଜେ କରାନ୍ତି । ଘଣ୍ଟ, ଛତା, କାହାଳୀ ସହ ବିମାନବଡୁମାନେ ପାଲିଙ୍କି ବୋହି ଜଗନ୍ନାଥ ବଲ୍ଲଭ ମଠକୁ ଯାଆନ୍ତି । ସେଠାରେ ଠାକୁରଙ୍କୁ ଶୀତଳ ଭୋଗ ହୁଏ । ଭୋଗ ପରେ ଭିତରଛ ମହାପାତ୍ର ବନ୍ଦାପନା, ଆଳତି କରନ୍ତି । ତା'ପରେ ମହାଜନ ଠାକୁରଙ୍କୁ ମଠ ହତାରେ ଥିବା ବେଣ୍ଟ ପୋଖରୀ ନିକଟକୁ ନିଅନ୍ତି । ସେଠାରେ ଭିତରଛ ମହାପାତ୍ର କାଣ୍ଡ ହେଙ୍ଗୁଡ଼ (ପାଞ୍ଚଟି ଲୁହାର ଶର) ମହାପ୍ରଭୁଙ୍କ ପ୍ରତିନିଧି ସ୍ୱରୂପ ଠାକୁରଙ୍କ ଶ୍ରୀହସ୍ତରେ ଛୁଆଁଇ ଲେଙ୍କା ସେବକଙ୍କୁ ଦିଅନ୍ତି । ସେଠାରେ ପାଞ୍ଚଟି ପଇଡ଼ ମୃଗଜ୍ଞାନରେ ରଖାଯାଇଥାଏ । ଲେଙ୍କା ଏହି ଶର ନେଇ ପଇଡ଼କୁ ଲାଖ କରେ । ଏହା ପରେ ଦୋଳ ଗୋବିନ୍ଦ ଠାକୁର ବିମାନବଡୁଙ୍କ ଦ୍ୱାରା ପାଲିଙ୍କିରେ ବାହୁଡ଼ା ବିଜେ ହୋଇ ଶ୍ରୀମନ୍ଦିରର ଦକ୍ଷିଣୀ ଘରକୁ ବିଜେ କରନ୍ତି ।

ନିମ୍ନଲିଖିତ ସେବକମାନେ ଏହି ନୀତି ସହ ସଂପୃକ୍ତ-

ମହାଜନ, ହୋମ ପାଳିଆ ପୂଜାପଣ୍ଡା, ଗରାବଡୁ, ବିମାନବଡୁ, ଘଣ୍ଟୁଆ, ଛତାର, କାହାଳିଆ, ଭିତରଛ ମହାପାତ୍ର ଓ ଲେଙ୍କା ।

## ୮. ଚନ୍ଦ୍ରଗ୍ରହଣ ଓ ସୂର୍ଯ୍ୟୋପରାଗ ନୀତି

ଚନ୍ଦ୍ରଗ୍ରହଣ ଓ ସୂର୍ଯ୍ୟୋପରାଗରେ ପାକ ତ୍ୟାଗ ସମୟଠାରୁ ଠାକୁରମାନଙ୍କର କୌଣସି ନୀତି ହୁଏ ନାହିଁ । ପାକତ୍ୟାଗ ପୂର୍ବରୁ ଠାକୁରମାନେ ତଡ଼ପ ଉତ୍ତରୀ ବସ୍ତ୍ରଲାଗି ହୋଇ ବସନ୍ତି । ରୋଷଘର ଧୋପଖାଳ ହୋଇଥାଏ । ଗ୍ରହଣ ବା ପରାଗ ସ୍ପର୍ଶ ହେଲେ ପୂଜାପଣ୍ଡାମାନେ ଠାକୁରମାନଙ୍କର ଗ୍ରହଣ ମହାସ୍ନାନ କରାନ୍ତି । ରୋଷରେ ହୋମ ହୁଏ । ସୂର୍ଯ୍ୟପୂଜା ଓ ଦ୍ୱାରପାଳ ପୂଜା ହୁଏ । ଏହା ପରେ ପୁଷ୍ପାଳକମାନେ ତିନି ବାଡ଼ରେ ଗ୍ରହଣବେଶ କରନ୍ତି । ଏହି ବେଶ, ଲୁଗା ଫୁଲ ଓ ତୁଳସୀଦ୍ୱାରା ହୁଏ । ଏ ସମୟରେ ଜୟ ବିଜୟ ଦ୍ୱାର ବନ୍ଦ ରହେ । ବେଶ ଶେଷ ପରେ ଭିତରେ ଟେରା ବନ୍ଧା ହୁଏ । ପାଳିଆ ପ୍ରତିହାରୀ ଗ୍ରହଣ ଭୋଗ ଡାକି ଯାଏ । ପାଳିଆ ମହାସୁଆର ଭୋଗ ଛେକ ଆଣେ (ଖଇ, କୋରା ଆଦି ଶୀତଳ ଭୋଗ) । ଚାରିବାଡ଼ରେ ପଣ୍ଡି ହୁଏ । ପୂଜାପଣ୍ଡା ଭୋଗ କରନ୍ତି । ଗ୍ରହଣ ସମୟ ଦେଖି ଅନ୍ୟାନ୍ୟ ଦୈନନ୍ଦିନ ନୀତି ହୋଇଥାଏ ।

# ୯. ଅଶୌଚ ବା ଦୁର୍ଘଟଣାଜନିତ ନୀତି

୧. କୁକୁର ମନ୍ଦିରରେ ପ୍ରବେଶ କଲେ କିମ୍ବା ମନ୍ଦିର ହତାରେ ଶବ ଓ ଅସ୍ଥି ପଡ଼ିଥିବା ଦେଖାଗଲେ ଦେବନୀତି ବନ୍ଦ କରାଯିବ ଏବଂ ନୀତିର ଉପକରଣମାନ ବାହାରକୁ ବାହାର କରାଯିବ । ଦିଅଁମାନଙ୍କ ମହାସ୍ନାନ ବ୍ୟବସ୍ଥା କରାଯିବ । ଜୟବିଜୟ ଦ୍ୱାରଠାରୁ ଭିତର ପୋଖରିଆ ପର୍ଯ୍ୟନ୍ତ ଭଲ ଭାବେ ଧୁଆହୋଇ ଚୂନପାଣି ପଡ଼ିବ । ପାଳିଆ ମେକାପ ରତ୍ନସିଂହାସନରେ ପୋଛା ମାରିବ । ତା'ପରେ ସିଂହାସନ ତଳେ ପୂଜା ଠା' ହୋଇ ମହାସ୍ନାନ ହେବ । ମହାସ୍ନାନ ପୂର୍ବରୁ ରୋଷରେ ଧୋପଖାଳ ହେବ । ରୋଷ ଆଡ଼ର ସମସ୍ତ ଭୋଗ, ପାଣି ପଶିଥିବା ସମସ୍ତ ଜିନିଷ, କଟାବଟା ଦ୍ରବ୍ୟମାନ, ପାଣି ହାଣ୍ଡି, ଶିକା ବାଉଁଶ ଇତ୍ୟାଦି ବାହାର କରାଯିବ । ପୁନର୍ବାର ରୋଷରେ ହୋମ , ସୂର୍ଯ୍ୟପୂଜା ଓ ଦ୍ୱାରପାଳ ପୂଜା ହେବ । ଏହା ପରେ ଯେଉଁ ନୀତିଠାରୁ ବନ୍ଦ ହୋଇଥିବ ତାହା ଆରମ୍ଭ ହୋଇ କ୍ରମାନ୍ୱୟରେ ଅନ୍ୟାନ୍ୟ ନୀତି ହେବ ।

ଭୋଗ ପୂଜା ଚାଲିଥିବା ବେଳେ ଉପରୋକ୍ତ ଦୁର୍ଘଟଣା ଘଟିଲେ, ଅମୁଣିଆ ପରିଚ୍ଛା ଭିତରଚ୍ଛ ମହାପାତ୍ର କହିଲେ ପୂଜାପଣ୍ଡାମାନେ ପୂଜାରୁ ଉଠି ଆସିବେ । ସୁଧ ସୁଆର ମାରା ହୋଇଥିବା ଭୋଗମାନ ଭିତରୁ ବାହାର କରି ଆଣି ବେହରଣ ଜାଗାରେ ଜମା କରିବେ । ପରେ ଧୋପଖାଳ ହୋଇ ମହାସ୍ନାନ ନୀତି ହେବ । ମାରା ହୋଇଥିବା ଭୋଗ ମନ୍ଦିର କର୍ତ୍ତୃପକ୍ଷ ନେଇ ମନ୍ଦିର ବାହାରେ ପୋତାଇ କରନ୍ତି । ପାର୍ଶ୍ୱଦେବଦେବୀମାନଙ୍କର ମଧ୍ୟ ମହାସ୍ନାନ ହୁଏ । ଏ ମହାସ୍ନାନର ସମସ୍ତ ଖର୍ଚ୍ଚ ମନ୍ଦିର କର୍ତ୍ତୃପକ୍ଷ ବହନ କରନ୍ତି ।

୨- ଭିତର କାଠ ପାଖରୁ ସିଂହାସନ ପର୍ଯ୍ୟନ୍ତ ସ୍ଥାନରେ ଯଦି କେହି ମଳତ୍ୟାଗ କରେ କିମ୍ବା ପରିସ୍ରା କରେ କିମ୍ବା ଛେପ ପକାଏ ,ତା'ହେଲେ ଭିତର ଓ ବାହାର ଉତ୍ତମ ରୂପେ ଧୋପଖାଳ ହୋଇ ଚୂନପାଣି ପଡ଼େ । ତତ୍‌ପରେ ପୁଷ୍ପାଳକମାନେ ଯାଇ ମଇଲମ କରନ୍ତି । ମଇଲମ ପରେ ସୁଧସୁଆର  ମହାସ୍ନାନର ପୂଜା ଠା' କରନ୍ତି । ମହାସ୍ନାନ ପରେ ଅନ୍ୟାନ୍ୟ ନୀତି ହୁଏ ।

୩- ଦର୍ଶନ ସମୟରେ ଯଦି କେହି ଶ୍ରୀଜୀଉମାନଙ୍କୁ ହାତବଢ଼ାଇ ଛୁଇଁଦିଏ ତା'ହେଲେ ତା'ଠାରୁ ନିର୍ଦ୍ଧାରିତ ପରିମାଣର ମହାସ୍ନାନ ଖର୍ଚ୍ଚ ଆଦାୟ କରାଯାଏ । ମହାସ୍ନାନ ପରେ ଅନ୍ୟାନ୍ୟ ନୀତି ହୁଏ ।

୪- ମନ୍ଦିର ଭିତରକୁ ପରମ୍ପରାନୁସାରେ ବିଧର୍ମୀ ଲୋକମାନଙ୍କୁ ପ୍ରବେଶ କରିବାର ନିଷେଧ ଅଛି । ପଙ୍ଗୁ (କୁଷ୍ଠରୋଗୀ)ମାନଙ୍କର ମଧ୍ୟ ପ୍ରବେଶ ନିଷେଧ । କେହି ଜୋତା, ମୋଜା ଗୋଡ଼ରେ ଥାଇ ମନ୍ଦିର ଭିତରେ ପ୍ରବେଶ କରିପାରିବେ ନାହିଁ । କ୍ୟାମେରା, ମୋବାଇଲ୍, ଚମଡ଼ା ଜିନିଷ ଆଦି ମଧ୍ୟ ମନ୍ଦିର ଭିତରକୁ ନେଇ ପାରିବେ ନାହିଁ ।



**ଶ୍ରୀ**ମନ୍ଦିରରେ ବର୍ଷତମାମ ଅନେକ ଯାନିଯାତ୍ରା, ପର୍ବପର୍ବାଣି ପାଳିତ ହୁଏ । ମୁଖ୍ୟତଃ ବାରଟି ଯାତ୍ରାର ପ୍ରାଧାନ୍ୟ ସଂପର୍କରେ ଏକ ପ୍ରସିଦ୍ଧ ଶ୍ଳୋକ ଅଛି :

''ମଞ୍ଚ ସ୍ନାନଂ ରଥବରଗତିଃ ଶାୟନଂ ଚାୟନେ ଦ୍ୱେ
ପାର୍ଶ୍ୱ ବୃତ୍ତିଃ ଶୟନ ନିବୃତ୍ତିଃ ପାବୃତ୍ତୈଃ ପୁଷ୍ୟ ପୂଜା
ଦୋଳଯାତ୍ରା ଦମନକମହୋତାକ୍ଷପୂଜା ତୃତୀୟା
ଚୈକଂ ଯାତ୍ରା ବିଧିନିଗଦିତା ଦ୍ୱାଦଶୈତା ନରେନ୍ଦ୍ର।''

ଉଲ୍ଲିଖିତ ଶ୍ଳୋକବର୍ଣ୍ଣିତ ଦ୍ୱାଦଶ ଯାତ୍ରା ହେଲା- ୧. ସ୍ନାନଯାତ୍ରା, ୨. ରଥଯାତ୍ରା, ୩.ଶୟନ, ୪. ଦକ୍ଷିଣାୟନ, ୫. ପାର୍ଶ୍ୱପରିବର୍ତ୍ତନ, ୬. ଉତ୍ଥାପନ, ୭. ପ୍ରାବରଣ ଷଷ୍ଠୀ, ୮.ପୁଷ୍ୟପୂଜା, ୯. ଉତ୍ତରାୟଣ,୧୦. ଦୋଳ, ୧୧.ଦମନକ ଚତୁର୍ଦ୍ଦଶୀ, ୧୨. ଅକ୍ଷୟତୃତୀୟା ।

କଥାରେ ଅଛି 'ବାରମାସରେ ତେରଯାତ୍ରା' । ପ୍ରକୃତରେ ବାର ନୁହେଁ କି ତେର ନୁହେଁ, ଆହୁରି ଅଧିକ ଯାତ୍ରା ଓ ପର୍ବ ଏଠାରେ ପାଳନ କରାଯାଉଛି । ପ୍ରକୃତରେ କହିବାକୁ ଗଲେ ବାହାର ଯାତ୍ରୀ ସମାଗମ ଓ ଗୁରୁତ୍ୱ ଦୃଷ୍ଟିରୁ ସ୍ନାନଯାତ୍ରା, ରଥଯାତ୍ରା, ଦୋଳଯାତ୍ରା ଓ ଅକ୍ଷୟ ତୃତୀୟା ତଥା ଚନ୍ଦନ ଯାତ୍ରାର ପ୍ରାଧାନ୍ୟ ବେଶି ।

## ଦେବସ୍ନାନ ପୂର୍ଣ୍ଣିମା

ପ୍ରତିବର୍ଷ ଜ୍ୟେଷ୍ଠମାସ ପୂର୍ଣ୍ଣିମା ଦିନ ଶ୍ରୀଜଗନ୍ନାଥଙ୍କ ସମେତ ଚତୁର୍ଦ୍ଧାମୂର୍ତ୍ତିଙ୍କର ସ୍ନାନ ଉତ୍ସବ ପାଳନ କରାଯାଏ । ଏହି ନୀତିପାଇଁ ଶ୍ରୀମନ୍ଦିର ପ୍ରଶାସନ ତରଫରୁ ସ୍ୱତନ୍ତ୍ର ନୀତି ନିର୍ଘଣ୍ଟ ପ୍ରସ୍ତୁତ କରାଯାଇ ସମସ୍ତ ସଂପୃକ୍ତ ପକ୍ଷଙ୍କୁ ବଣ୍ଟନ କରାଯାଇଥାଏ । ଏହି ଦିନର ନୀତି ହେଲା- ମଙ୍ଗଳାର୍ପଣ, ତୋରଲାଗି, ପୁଷ୍ପାଞ୍ଜଳି, ପହଣ୍ଡି ଆରମ୍ଭ ଓ ଶେଷ, ସ୍ନାନବେଦୀରେ ମଙ୍ଗଳ ଆରତି, ମଇଲମ, ତଡ଼ପଲାଗି, ଅଧରପୋଛା, ଅବକାଶ, ବେଶଶେଷ, ରୋଷ ହୋମ, ସୂର୍ଯ୍ୟପୂଜା, ଦ୍ୱାରପାଳପୂଜା, ଜଳବିଜେ, ପୂଜା ଓ ସ୍ନାନ, ମଇଲମ, ଛେରାପହଁରା, ହାତୀବେଶ, ମହନ୍ତ ଶାଢ଼ିବନ୍ଧା, ସକାଳ ଧୂପ, ସାହାଣମେଲା, ପୁଷ୍ପାଞ୍ଜଳି, ତୋରଲାଗି, ବାହୁଡ଼ା ବିଜେ, ସୁନାଚିତା ଓ ରାହୁରେଖା ମଇଲମ (ତା'ପରେ ସମୟକୁ ଚାହିଁ ଅନ୍ୟାନ୍ୟ ନୀତି ହୁଏ) । ଭୋର ୪ଟା ସୁଦ୍ଧା ପହଣ୍ଡି ଆରମ୍ଭପାଇଁ ସାଧାରଣତଃ ସମୟ ନିର୍ଘଣ୍ଟ ସ୍ଥିର କରାଯାଇଥାଏ । ଅନ୍ୟାନ୍ୟ ନୀତିପାଇଁ ମଧ୍ୟ ସମୟ ଧାର୍ଯ୍ୟ କରାଯାଇଥାଏ ।

ଚତୁର୍ଦ୍ଧାମୂର୍ତ୍ତି ଦାରୁବିଗ୍ରହ ସ୍ୱୟଂ ପହଣ୍ଡି ହୋଇ ଆନନ୍ଦବଜାରସ୍ଥ ସ୍ନାନବେଦୀକୁ ବିଜେ କରନ୍ତି । ରଥ ବାହୁଡ଼ା ଯାତ୍ରା ଶେଷ ହୋଇ ନୀଳାଦ୍ରିବିଜେ ପର୍ଯ୍ୟନ୍ତ ଚତୁର୍ଦ୍ଧାମୂର୍ତ୍ତି ରତ୍ନ ସିଂହାସନରେ ଉପବେଶନ କରନ୍ତି ନାହିଁ । ଅନ୍ୟାନ୍ୟ କେତେକ ନୀତିରେ ବିଜେ ପ୍ରତିମାମାନେ ଏପରିକି ସୁଦର୍ଶନ ବିଜେ କରୁଥିବା ସ୍ଥଳେ ସ୍ନାନ ଓ ଶ୍ରୀଗୁଣ୍ଡିଚା ଯାତ୍ରାରେ ଚତୁର୍ଦ୍ଧାମୂର୍ତ୍ତି ନିଜେ ଅଂଶଗ୍ରହଣ କରି ବିଜେ କରନ୍ତି । କବିସମ୍ରାଟ ଉପେନ୍ଦ୍ର ଭଂଜ ତେଣୁ ଲେଖିଛନ୍ତି;

''ସ୍ନାନ ଗୁଣ୍ଡିଚା ଏ ବେନି ସ୍ୱୟଂ ଲୀଳା ଯା'ର,
ପତିତ ପାବନ ଅର୍ଥେ ପ୍ରାସାଦୁଁ ବାହାର ।''

(କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ)

ସ୍ନାନ ପୂର୍ଣ୍ଣିମା ପୂର୍ବରୁ ଅର୍ଥାତ୍ ଜ୍ୟେଷ୍ଠ ଶୁକ୍ଳ ତ୍ରୟୋଦଶୀ ଦିନ ଦଇତା ସେବକମାନେ ଶ୍ରୀମନ୍ଦିରରେ ଦୀର୍ଘ ଏକମାସ କାଳ ବିଶେଷ ନୀତି ଗୋଷ୍ଠୀଗତ ଭାବରେ ସମ୍ପନ୍ନ କରନ୍ତି । ତ୍ରୟୋଦଶୀ ରାତ୍ରରେ ବଡ଼ସିଂହାର ଭୋଗ ପରେ ପହୁଡ଼ ଆଳତି ହୋଇ ଶ୍ରୀମୁଖ ଖଣ୍ଡୁଆ (ଶ୍ରୀଜୀଉମାନଙ୍କ ମୁଖ ବସ୍ତ୍ରାଚ୍ଛାଦିତ) ହେବା ପରେ ଦଇତାମାନେ ଭିତରକୁ ଯାଇ ବାହୁଟ କଷ୍ଟ କରନ୍ତି । ତତ୍‌ପରେ କୋଠ ସୁଆଁସିଆମାନେ ଚାରମାଳ ବନ୍ଧା କାର୍ଯ୍ୟ ଆରମ୍ଭ କରନ୍ତି । ଚାରମାଳ ବନ୍ଧା କାର୍ଯ୍ୟ ସମାପନ ପରେ ଚତୁର୍ଦ୍ଦଶୀ ଦିନ ଦଇତାପତିମାନେ ଦିଅଁଙ୍କୁ ସେନାପଟା ଲାଗି କରାନ୍ତି । ସେଦିନର ଦୈନନ୍ଦିନ ଅବକାଶ ନୀତି, ସକାଳ ଧୂପ ଠାରୁ ବଡ଼ ସିଂହାର ଧୂପ ଯାଏଁ ଧୂପ ଅଣସର ପିଣ୍ଡିରେ ବଢ଼ାହୁଏ ଓ ପୂଜା ହୁଏ । ଅବଶିଷ୍ଟ ନୀତି ହୋଇ ପହୁଡ଼ ଆଳତି ହୁଏ । ପହୁଡ଼ ଆଳତି ପରେ ମଦନମୋହନ ଓ ଲକ୍ଷ୍ମୀ ଦକ୍ଷିଣୀ ଘରକୁ, ଭୂଦେବୀ ଓ ମାଧବ ଖଟଶେଯ ଘରକୁ ବିଜେ କରନ୍ତି ।

ଏହି ଯାତ୍ରାର ବିଧି ହେଉଛି, ପୂର୍ଣ୍ଣମୀ ଦିନ ଭୋର୍‌ରେ ପୂଜାପଣ୍ଡା, ମୁଦିରସ୍ତ ଓ ପତି ମହାପାତ୍ର ତିନିବାଡ଼ରେ ମଙ୍ଗଳାର୍ପଣ କରିବେ । ତା'ପରେ ଦିଅଁଙ୍କର ଡୋରଲାଗି ହେବ । ଘଣ୍ଟ କାହାଳୀ ବାଜିବ ଓ ଛତାର ଛତା ଧରିଥିବେ । ପ୍ରଥମେ ସୁଦର୍ଶନ, ତାଙ୍କ ପରେ ବଳଭଦ୍ର ଠାକୁର, ତାଙ୍କ ପରେ ମା' ସୁଭଦ୍ରା ଓ ଶେଷରେ ଶ୍ରୀଜଗନ୍ନାଥ ସ୍ନାନମଣ୍ଡପକୁ ବିଜେ କରିବେ । ଏହାଙ୍କ ପରେ ମଦନମୋହନ ବିଜେ ହେବେ ମହାଜନମାନଙ୍କଦ୍ୱାରା । ଚତୁର୍ଦ୍ଧାମୂର୍ତ୍ତିଙ୍କୁ ଦଇତାପତିମାନେ ବିଜେ କରାଇବେ । ମଦନମୋହନଙ୍କ ବ୍ୟତୀତ ଅନ୍ୟ ଚତୁର୍ଦ୍ଧାମୂର୍ତ୍ତିଙ୍କ ବିଜେକୁ 'ପହଣ୍ଡି ବିଜେ' କୁହାଯାଏ । ଏହା 'ଧାଡ଼ି ପହଣ୍ଡି' । (ଠାକୁର ମାନେ ଜଣକ ପରେ ଜଣେ ଏକକାଳୀନ ବିଜେ କଲେ ଧାଡ଼ି ପହଣ୍ଡି କୁହାଯାଏ । ଯେଉଁ ପହଣ୍ଡିରେ ଏକ ମୂର୍ତ୍ତି ଠାକୁର ବିଜେ ହୋଇ ନିର୍ଦ୍ଦିଷ୍ଟ ସ୍ଥାନରେ ପହଞ୍ଚିଲା ପରେ ଅନ୍ୟ ମୂର୍ତ୍ତି ଠାକୁର ତାଙ୍କ ଆସନ ଛାଡ଼ି ବିଜେ ହୁଅନ୍ତି, ତାକୁ 'ଗୋଟି ପହଣ୍ଡି' କୁହାଯାଏ) । ବିଜେ କରିବା ସମୟରେ ସାତ ପାହାଚଠାରେ ଠାକୁରମାନଙ୍କୁ ଟାହିଆ ଓ ଚୂଳ ଲାଗି କରାଯାଏ । ଏହି ଦ୍ରବ୍ୟ ରାଘବ ଦାସ ମଠ ଯୋଗାଏ । ଦିଅଁମାନେ ସ୍ନାନ ବେଦୀରେ ବିଜେ ହେବା ପରେ ଘଣ୍ଟାର, ଛତାର, କାହାଳିଆ, ସୁନାଗୋସାଇଁଙ୍କ ନିକଟକୁ ଯାଆନ୍ତି । ସୁନା ଗୋସାଇଁ ଓ ମୁଦିରସ୍ତ ସୁନାକୂଅ (ଶୀତଳାଙ୍କ କୂଅ)ରୁ ୧୦୮ ଗରା ଜଳ ଆଣି ଜଳ ଅଧିବାସ ଗୃହରେ ରଖନ୍ତି । ଏହି

କୂପର ପବିତ୍ର ଜଳ କେବଳ ଦେବସ୍ନାନପାଇଁ ଉଦ୍ଦିଷ୍ଟ, ତେଣୁ ଏ କୂପର ମାହାତ୍ମ୍ୟ ରହିଛି । ଏହି ୧୦୮ ଜଳ କୁମ୍ଭ ମଧ୍ୟରୁ ଶ୍ରୀଜଗନ୍ନାଥଙ୍କ ନିମନ୍ତେ ୩୫ କୁମ୍ଭ, ଶ୍ରୀବଳଭଦ୍ରଙ୍କ ନିମନ୍ତେ ୩୩କୁମ୍ଭ, ଦେବୀ ସୁଭଦ୍ରାଙ୍କ ନିମନ୍ତେ ୨୨ କୁମ୍ଭ ଓ ସୁଦର୍ଶନଙ୍କ ନିମନ୍ତେ ୧୮ କୁମ୍ଭ ଜଳ ରଖାଯାଏ । ପୃଥକ ଭାବରେ ଚନ୍ଦନ, କର୍ପୂର ଓ କେଶର ଆଦି ଉପରୋକ୍ତ କୁମ୍ଭ ପାଣିରେ ସମାନ ଭାଗ ହୋଇ ମିଶାଯାଏ । ଗରାବଡୁମାନେ ୧୦୮ ଜଳକୁମ୍ଭ ଉପରେ ଗୋଟିଏ ଗୋଟିଏ ନଡ଼ିଆ ଓ ଖଣ୍ଡେ ଖଣ୍ଡେ କରିଆ ରଖନ୍ତି । ଏହିପରି ଭାବରେ ଜଳ ଅଧିବାସ ହେଉଥିବା ସମୟରେ ସ୍ନାନ ମଣ୍ଡପରେ ଦିଅଁମାନଙ୍କର ରୁନ୍ଧା ବଢ଼େ । ତା'ପରେ ଦୈନନ୍ଦିନ ନୀତି ଓ ମଙ୍ଗଳ ଆଳତି ହୁଏ । ମଇଲମ ହୋଇ ତଡ଼ପଲାଗି ହୁଏ । ଏହା ପରେ ଅବକାଶ ପୂଜା ଠା' ହୁଏ । ଦତ୍ତ ମହାପାତ୍ର ରୁପା ପିଙ୍ଗଣରେ କର୍ପୂର ଜଳ ନେଇ ତିନି ବାଡ଼ରେ ଶ୍ରୀମୁଖ ଧୋପଖାଳ କରନ୍ତି । ପରେ ଅବକାଶ ନୀତି ହୁଏ । ଦିଅଁମାନଙ୍କର ଅବକାଶ ଓ ବେଶ ହେବା ସମୟରେ ରୋଷ ଧୋପଖାଳ, ସୂର୍ଯ୍ୟପୂଜା, ଦ୍ୱାରପାଳ ପୂଜା ହୁଏ । ବେଶ ଶେଷ ହେବା ପରେ ପାଳିଆ ପ୍ରତିହାରୀ ସ୍ନାନମଣ୍ଡପର ଚାରିପଟେ ଥିବା ଖମ୍ବମାନଙ୍କରେ ଟେରା ବାନ୍ଧନ୍ତି । ଏହା ପରେ ସୁଆରବଡୁ ପାଣି ପକାଇ ଧୋପଖାଳ କଲା ପରେ ପତ୍ରିବଡୁ ଜଳ ଛେକ ସକାଶେ ପୂଜା ଠା' କରନ୍ତି । ତା' ପରେ ପାଳିଆ ପଢ଼ିଆରୀ ଜଳ ଛେକ ଆସିବା ସକାଶେ ଡାକି ଯାଆନ୍ତି ।

ଏହାର ପର ପର୍ଯ୍ୟାୟ ହେଉଛି, ଗରାବଡୁ ସେବକମାନେ ମୁହଁରେ ମୁହାଁବାନ୍ଧି ଜଳକୁମ୍ଭ ହାତରେ ଧରି ଚାଲିବେ । ସେମାନଙ୍କ ଆଗରେ ତଳିଛ ଓ ପ୍ରଧାନୀ ହାତ ପୈଠ ହୋଇ ଚାଲୁଥିବେ । ଘଣ୍ଟ କାହାଳୀ ବାଜୁଥିବ ଓ ଛତାର ଛତ୍ର ଧରିଥିବେ । ଚାରିବାଡ଼ରେ ଜଳ ଛେକ ବିଜେ ହୋଇ ଆସି ସଜ୍ଜିତ ରହେ । ତିନିଜଣ ପୂଜାପଣ୍ଡା ପୂଜାରେ ବସନ୍ତି । ଷୋଡ଼ଶ ଉପଚାରରେ ପୂଜା ହୋଇସାରିଲା ପରେ ଗରାବଡୁମାନେ ଜଳକୁମ୍ଭମାନ ହାତରେ ଧରି ତିନିଜଣ ମେକାପ ଧରିଥିବା ରୁପା ପିଙ୍ଗଣରେ ଜଳ ଦିଅନ୍ତି । ପୂଜାପଣ୍ଡାମାନେ ମେକାପମାନଙ୍କଠାରୁ ଉକ୍ତ ପିଙ୍ଗଣମାନ ନେଇ ତିନି ବାଡ଼ରେ ଜଳଲାଗି କରନ୍ତି । ଏହିପରି ରୀତିରେ ସମସ୍ତ କୁମ୍ଭର ଜଳ ଲାଗି କରାଯାଏ । ଜଳଲାଗି ସମୟରେ ଘଣ୍ଟ କାହାଳୀ ଓ ବାଜା ବାଜୁଥାଏ । ଜଳଲାଗି ଶେଷ ପରେ ହାତୀ ବେଶର ଉପକରଣମାନ ଗୋପାଳତୀର୍ଥ ମଠ ଓ ରାଘବ ଦାସ ମଠରୁ ଆଣିବାକୁ ସଂପୃକ୍ତ ସେବକମାନେ ଯାଆନ୍ତି । ଇତି ମଧ୍ୟରେ ମୁଦିରସ୍ତ 'ରାଜନୀତି' କରନ୍ତି । ଗଜପତି ମହାରାଜା ସ୍ନାନ ବେଦୀରେ ଛେରାପହଁରା କରନ୍ତି । ତାଙ୍କର ଅନୁପସ୍ଥିତିରେ ମୁଦିରସ୍ତ ଏ କାର୍ଯ୍ୟ କରନ୍ତି । ଛେରାପହଁରା ସମାପନ ପରେ ସୁଆରବଡୁ ବେଦୀରେ ପାଣି ପକାନ୍ତି । ତା'ପରେ ପୁଷ୍ପାଳକ ଓ ଦଇତାପତିମାନେ ତିନିଦିଅଁଙ୍କୁ ହାତୀବେଶ କରନ୍ତି । ବେଶ ଶେଷ ପରେ ପୁଷ୍ପାଳକ କର୍ପୂର ଲାଗି କରନ୍ତି । ଏହାପରେ ରାଘବଦାସ ମଠ ମହନ୍ତଙ୍କୁ ଭିତରଛ ମହାପାତ୍ର ଶାଢ଼ିବାନ୍ଧନ୍ତି । ସ୍ନାନମଣ୍ଡପ ଧୋପଖାଳ, ଟେରାବନ୍ଧା ପରେ ସକାଳ ଧୂପ ଡାକିବାକୁ ତଳିଛ ମହାପାତ୍ର, ପ୍ରଧାନୀ, ଅମୁଣିଆ, ଛତାର, ଘଣ୍ଟୁଆ ଓ କାହାଳିଆ ସହ ଯାଆନ୍ତି । ରୋଷରୁ ଛେକ ଆସିବା ବେଳେ ଘଣ୍ଟ, କାହାଳୀ ବାଜୁଥାଏ ଓ ଛତ୍ର ଧରାଯାଇଥାଏ । ତଳିଛ ଓ ପ୍ରଧାନୀ ହାତ ପୈଠ ହୋଇ ଆଗରେ ଚାଲନ୍ତି । ଛେକ ଆସିବା ରାସ୍ତାରେ ଚୂନପାଣି

ପଡ଼େ । ଛେକ ଘୋଡ଼ଦ୍ୱାର ଓ ଆନନ୍ଦ ବଜାର ଦେଇ ସ୍ନାନ ବେଦୀକୁ ଆସେ । ତିନିଜଣ ପୂଜାପଣ୍ଡା ଧୂପ ପୂଜା କରନ୍ତି । ସକାଳ ଧୂପ ଶେଷ ହୋଇ ପାଣି ପଡ଼ିଲେ ତିନିବାଡ଼ରେ ପୂଜାପଣ୍ଡା, ପତି ମହାପାତ୍ର ଓ ମୁଦିରସ୍ତ ବନ୍ଦାପନା କରନ୍ତି । ବନ୍ଦାପନା ପରେ ସାହାଣମେଲା ବା ସର୍ବସାଧାରଣ ଦର୍ଶନ ହୁଏ ।

ସାହାଣମେଲା ଶେଷ ହେବା ପରେ ହାତୀବେଶ ମଇଲମ ହୁଏ ଓ ତିନି ବାଡ଼ରେ ପୁଷ୍ପାଞ୍ଜଳି ଓ ଡୋରଲାଗି ହୁଏ । ଏହାପରେ ପହଣ୍ଡିବିଜେ ପାଇଁ କାହାଳୀ ବାଜେ । ଗୋଟି ପହଣ୍ଡି ହୁଏ । ପହଣ୍ଡି ବିଜେ ବେଳେ ସ୍ନାନ ବେଦୀ ପାହାଚଠାରେ ଦିଅଁମାନେ ରାଘବ ଦାସ ମଠ ଯୋଗାଇଥିବା ଟାହିଆ ଓ ଚୂଳ ଲାଗି ହୁଅନ୍ତି । ପତି ମହାପାତ୍ର ତିନିବାଡ଼ରେ ବନ୍ଦାପନା ଓ ବିଡ଼ିଆ ଲାଗି କରନ୍ତି । ଶୁଆ ଶାରୀ ମନ୍ଦିର ଓ ଗରୁଡ଼ସ୍ତମ୍ଭ ନିକଟରେ ମଧ୍ୟ ବନ୍ଦାପନା ହୁଏ । ଅଣସର ପିଣ୍ଡିରେ ଠାକୁରମାନେ ବିଜେ କଲାପରେ ସ୍ନାନଯାତ୍ରା ବିଧି ସମାପ୍ତ ହୁଏ । ମହାଜନମାନେ ମଦନମୋହନଙ୍କୁ ସ୍ନାନମଣ୍ଡପରୁ ଦକ୍ଷିଣୀ ଘରକୁ ବିଜେ କରାନ୍ତି । ତିନିବାଡ଼ରୁ ଦଇତାମାନେ ରତ୍ନଚିତା ଓ ସୁବର୍ଣ୍ଣ ରାହୁରେଖାମାନ ବାହାର କରି ଭଣ୍ଡାର ମେକାପ, ତଡ଼ଉ ଓ ଦେଉଳକରଣଙ୍କ ମାର୍ଫତରେ ଦିଅନ୍ତି । ଶ୍ରୀମନ୍ଦିରର ଜନୈକ ଅଧିକାରୀ ସେ ସମୟରେ ଉପସ୍ଥିତ ଥାଆନ୍ତି । ଏହି ଅଳଙ୍କାରମାନ ସିଲ୍ କରାଯାଇ ଭଣ୍ଡାର ମେକାପଙ୍କ ଜିମାରେ ଭଣ୍ଡାରରେ ରଖାଯାଏ ।

## ଅଣସର (ଅନବସର)

ଅଣସର ପିଣ୍ଡିର ଚାରିପଟେ ବାଉଁଶ ତାଟି କୋଠ ସୁଆଁସିଆମାନେ ଭିଡ଼ି ଦିଅନ୍ତି । ତାଟି ବାହାରେ ଏକ ଖଟ ପକାଯାଇ ପଟି ଦିଅଁ (ବାସୁଦେବ, ଭୁବନେଶ୍ୱରୀ ଓ ନାରାୟଣ) ଚିତ୍ରକାରମାନଙ୍କ ଘରଠାରୁ ବିଧି ଅନୁସାରେ ଅଣାଯାଇ ରଖାଯାଏ । ଦକ୍ଷିଣୀ ଘରୁ ମହାଜନମାନେ ସାତ ମୂର୍ତ୍ତି ଦେବଦେବୀ (ଦୋଳଗୋବିନ୍ଦ, ରାମ, ନୃସିଂହଙ୍କୁ ବଡ଼ ବାଡ଼ରେ, ଶ୍ରୀଦେବୀ ଓ ଭୂଦେବୀଙ୍କୁ ମଝିବାଡ଼ରେ, ମଦନମୋହନ ଓ କୃଷ୍ଣଙ୍କୁ ଶ୍ରୀଜଗନ୍ନାଥଙ୍କ ବାଡ଼ରେ) ଖଟ ଉପରେ ବିଜେ କରାନ୍ତି । ଏହି ମୋଟ ଦଶ ଦେବଦେବୀ 'ଦଶ ଅବତାର ଠାକୁର' ନାମରେ ପରିଚିତ । ତିନି ପଟି ଦିଅଁଙ୍କୁ ତାଟି ଦେହରେ ରୁନ୍ଧା ଯାଏ । ସ୍ନାନପୂର୍ଣ୍ଣିମା ରାତିଠାରୁ ଅମାବାସ୍ୟା ଯାଏଁ ଠାକୁରମାନେ ଅଣସରରେ ରହିବା ନିୟମ । ଦଶାବତାର ଦିଅଁ ଆଗରେ ଏ ସମୟରେ ସମସ୍ତ ଦୈନିକ ନୀତି ଓ ଭୋଗରାଗ ହୁଏ । ଦଶାବତାର ଦିଅଁଙ୍କର ଦ୍ୱିପ୍ରହର ଧୂପ ପରେ ଜୟ ବିଜୟ ଦ୍ୱାର ବନ୍ଦ ହୁଏ ଓ ପତି ମହାପାତ୍ରଙ୍କ ନିର୍ଦ୍ଦେଶରେ ଦକ୍ଷିଣ ଦ୍ୱାର ଖୋଲାଯାଏ । ତାଟି ଭିତରେ ଦିଅଁମାନଙ୍କର ମଇଲମ ହୁଏ । ତା'ପୂର୍ବରୁ ଦଇତାମାନେ ବଇଠା ବସାନ୍ତି । ଅନ୍ୟ ସମୟରେ ଅନ୍ଧକାର ଥାଏ । ଅଣସର ଘର ଭିତରକୁ ଦଇତା ଓ ପତିଙ୍କ ଛଡ଼ା ଅନ୍ୟ କେହି ଯାଇ ପାରିବେ ନାହିଁ । ଅଣସର ସମୟରେ ତିନି ଦିଅଁ ଶୁକ୍ଳ ସୁବାସ ଫୁଲ ଛଡ଼ା ଅନ୍ୟ ଫୁଲ ଲାଗି ହୁଅନ୍ତି ନାହିଁ । ଠାକୁରମାନଙ୍କର ପଣା ଭୋଗ ପତିମହାପାତ୍ର କରନ୍ତି । ଦଶାବତାର ଦିଅଁଙ୍କର ବଡ଼ସିଂହାର ଭୋଗ ପରେ ଓ ପହୁଡ଼ ପୂର୍ବରୁ ଅଣସର ଦିଅଁଙ୍କର ଚକଟା ଭୋଗ ହୁଏ । ଏହି ଭୋଗରେ ଧୁଆ ମୁଗ, ପାଚିଲା ପଣସ ଇତ୍ୟାଦି ଥାଏ ।

ଅଣସର ସମୟରେ ଠାକୁରମାନେ ଏକବସ୍ତ୍ର ପରିଧାନ କରୁଥିବାରୁ ଦଇତାପତିମାନେ ମଧ୍ୟ ଏକବସ୍ତ୍ର ପିନ୍ଧି ସେବା କରନ୍ତି । ଅଣସର ଦ୍ୱିତୀୟା ଦିନ ଦିଅଁମାନଙ୍କର ସ୍ନାନଯାତ୍ରା ପହଣ୍ଡିର ବସ୍ତ୍ର ବାହାର କରାଯାଏ । ଚତୁର୍ଥୀ ଦିନ ଶ୍ରୀଅଙ୍ଗ ଫିଟା ନୀତି ହୁଏ । ଅର୍ଥାତ୍ ଶ୍ରୀମୁଖ ଓ ଶ୍ରୀଅଙ୍ଗ ଖୋଲାଯାଏ । ପାଟବସ୍ତ୍ର ଓ ଲାଗି ହୋଇଥିବା ଚନ୍ଦନ ବାହାର କରାଯାଏ । ପଞ୍ଚମୀ ଦିନ 'ଫୁଲୁରି ଲାଗି' ହୁଏ । ଦଇତାପତିମାନେ ରାଶିତେଲ, ଚୁଆ, କର୍ପୂର, ପିଙ୍ଗଣ ଓ ପରଖରେ ରଖି ଫୁଲରି ଲାଗି କରନ୍ତି । ଷଷ୍ଠୀଠାରୁ ନବମୀ ଯାଏଁ ଦିଅଁମାନଙ୍କୁ 'ଓଷୁଅ ଲାଗି' କରାଯାଏ । ଅଣସର ସୁଧସୁଆର ଝୁଣା ବାଟି ଓଷୁଅ ପ୍ରସ୍ତୁତ କରି ଯୋଗାନ୍ତି । ଦଶମୀ ଦିନ 'ଚକା ବିଜେ' ନୀତି ହୁଏ । ଏକାଦଶୀ ଦିନ ଚନ୍ଦନ ସହିତ କର୍ପୂର କେଶର ବଟା ହୁଏ ଓ ତାହା ଦଇତାପତିମାନେ ଦିଅଁମାନଙ୍କୁ ଲାଗି କରନ୍ତି । ଏହି ଦିନ ଘଣ୍ଟା, କାହାଳୀ ଓ ବାଜା ବାଜେ । ଅଣସର ତାଟି ଆଗରେ ବିରାଜିତ ଦଶାବତାର ଦିଅଁଙ୍କୁ ମଧ୍ୟ ଉକ୍ତଦିନ ଚନ୍ଦନଲାଗି କରାଯାଏ । ଅଣସରର ପ୍ରଥମ ଦିନଠାରୁ ଦଶମୀ ଦିନ ଯାଏଁ କୌଣସି ଦିଅଁଙ୍କ ନୀତିରେ ଘଣ୍ଟ କାହାଳୀ ବାଜେ ନାହିଁ କିମ୍ବା ମନ୍ଦିରରେ କୌଣସିଠାରେ ନାମ ସଂକୀର୍ତ୍ତନ ହୁଏ ନାହିଁ । ଅଣସର ପିଣ୍ଡିରେ ଦିଅଁମାନଙ୍କୁ ପତି ମହାପାତ୍ର ସର୍ପାମଣୋହି କରି ପୂଜା କରନ୍ତି । ଏହି ପୂଜାରେ ଘଣ୍ଟି, ଶଙ୍ଖ, ପିଢ଼ା କିମ୍ବା ଥାଳି ବ୍ୟବହାର କରାଯାଏ ନାହିଁ ।

ଦ୍ୱାଦଶୀ ଦିନ 'ରାଜପ୍ରସାଦ' ନୀତି ହୁଏ । ଭୋଗମଣ୍ଡପ ଧୂପ ପରେ ରୂପାଥାଳିମାନଙ୍କରେ ରାଜପ୍ରସାଦ (ଶ୍ରୀଅଙ୍ଗର ଚନ୍ଦନ ଓ କରାଳ ଚନ୍ଦନ) ଓ ପାଟଡୋର ରଖି ଦଇତାପତିମାନେ ଶ୍ରୀନଅରକୁ ଯାଆନ୍ତି । ସେମାନଙ୍କ ଆଗରେ ତଳିଛ ଓ ପ୍ରଧାନୀ ହାତ ପଇଠ କରି ଘଣ୍ଟ, ଛତା ଓ କାହାଳୀ ସହ ଯାଆନ୍ତି । ନଅରରେ ରାଜାଙ୍କ ହାତଛୁଆଁ ଶାଢ଼ିମାନ ଦଇତା, ପତିମହାପାତ୍ର, ତଢ଼ଉ, ଦେଉଳକରଣ ଓ ତଳିଛଙ୍କୁ ପ୍ରଦାନ କରାଯାଏ । ତ୍ରୟୋଦଶୀ ଦିନ 'ଘଣାଲାଗି' ଓ 'ଶ୍ରୀପୟର ପୂଜା' (ପାଟ ଡୋର, ଖଳି ପ୍ରସାଦ ଓ ଖଡ଼ି ପ୍ରସାଦ) ଲାଗି ହୁଏ । ଘଣାଲାଗି ପରେ ଖଳିଲାଗି ହୁଏ । ତା' ପରେ ଖଡ଼ିଲାଗି ହୁଏ । ଲାଗି ପରେ ଖଡ଼ି ପ୍ରସାଦ ଧରି ଦଇତାପତି ମାନେ ନଅରକୁ ଯାଆନ୍ତି । ସେମାନଙ୍କ ସାମନାରେ ଦତ୍ତ ମହାପାତ୍ର ଓ ପ୍ରଧାନୀ ହାତ ପଇଠ ହୋଇ ଯାଆନ୍ତି । ନଅରରେ 'ରାଜପ୍ରସାଦ' ନୀତି ଭଳି ଶାଢ଼ି ପ୍ରଦାନ ହୁଏ । ତ୍ରୟୋଦଶୀ ଦିନ 'ଶ୍ରୀମୁଖ ଓତା' ନୀତି ହୁଏ । ଚତୁର୍ଦ୍ଦଶୀରେ 'ବନକଲାଗି' କାର୍ଯ୍ୟ ଦତ୍ତ ମହାପାତ୍ରମାନେ କରନ୍ତି । ତା'ପରେ ଚକା ଅପସର ଲାଗି ହୁଏ । ନୂଆ କନା ପଡ଼ି ଏଗୁଡ଼ିକ ତିଆରି ହୋଇଥାଏ । ଏହା ଲାଗି ପରେ ଏବଂ ଦଶାବତାର ଠାକୁରମାନଙ୍କର ଆଳତି ଓ ଅବକାଶ ନୀତି ପରେ ମହାଜନମାନେ 'ଦଶାବତାର'ରୁ ପାଞ୍ଚମୂର୍ତ୍ତି ଦକ୍ଷିଣ ଘରକୁ ନିଅନ୍ତି । ଶ୍ରୀଦେବୀ ଓ ଭୂଦେବୀଙ୍କୁ ଖଟଶେଯ ଘରେ ବିଜେ କରାନ୍ତି । ପଟି ଦିଅଁ (୩)ଙ୍କୁ ବିମଳା ମନ୍ଦିର ନିକଟସ୍ଥ ମଣ୍ଡଣି ଘରକୁ ବିଜେ କରାନ୍ତି । ଏହାପରେ କୋଠ ସୁଆଁସିଆମାନେ ଅଣସର ଘରୁ ତାଟି ଓ ଖଟ ବାହାର କରନ୍ତି । ଭିତରେ ପାଣି ପଡ଼ିବା ପରେ ସେବକମାନେ ଓ ସର୍ବସାଧାରଣ ଚତୁର୍ଦ୍ଧାମୂର୍ତ୍ତିଙ୍କୁ ଦର୍ଶନ କରନ୍ତି । ସେତେବେଳେ ଅମାବାସ୍ୟାର ସକାଳ ହୋଇଯାଇଥାଏ । ଏହି ଦିଅଁ ଦର୍ଶନକୁ 'ନବଯୌବନ ଦର୍ଶନ' କୁହାଯାଏ ।

ଏହି ଦିନର ଅନ୍ୟ ଏକ ବିଶିଷ୍ଟ ନୀତି ହେଉଛି 'ନେତ୍ରୋତ୍ସବ' । ନବଯୌବନ ଦର୍ଶନ ପରେ ଭିତର ପହଁରା ଯାଇ ଚୂନପାଣି ପଡ଼େ । ତିନୋଟି ରୁପା ପିଙ୍ଗଣରେ ଚନ୍ଦନ ଆସିଲେ ପତି ମହାପାତ୍ର ତାହା ସଂସ୍କାର କରିବା ପରେ ଦଇତାପତି ଚନ୍ଦନଲାଗି କରାନ୍ତି । ତା'ପରେ ମଇଲମ ହୋଇ ତିନି ଠାକୁର ନଅଖଣ୍ଡ ଓ ସୁଦର୍ଶନ ଏକ ଖଣ୍ଡ ବୋଇରାଣୀ ବସ୍ତ୍ର ପରିଧାନ କରନ୍ତି । ଏହା ପରେ ପତି ମହାପାତ୍ର ଅକ୍ଷତ, କର୍ପୂର ଆଳତି, ସାତବତୀ, ସଞ୍ଜକାହାଳୀ ବନ୍ଦାପନା କରିବା ଉତ୍ତାରେ ଦତ୍ତ ମହାପାତ୍ର (୩ଜଣ) ଆସି ତିନୋଟି ରୁପା ବଟାରେ ପୂର୍ବରୁ ପ୍ରସ୍ତୁତ କଳା ଯୋଗାନ୍ତି । ପୂଜାପଣ୍ଡା ତିନିଜଣ ତିନୋଟି କାଠିରେ ଶ୍ରୀନେତ୍ର ଲାଗି କରନ୍ତି । ଏହାକୁ ନେତ୍ରୋତ୍ସବ କୁହାଯାଏ ।

ନେତ୍ରୋତ୍ସବ ନୀତି ପରେ ତିନି ବାଡ଼ରେ ପୂଜାପଣ୍ଡା, ପତି ମହାପାତ୍ର ଓ ମୁଦିରସ୍ତ ବନ୍ଦାପନା କରନ୍ତି । ବନ୍ଦାପନା ସମାପନ ପରେ ମୁଦିରସ୍ତ ତିନି ବାଡ଼ରେ ତିନିଯୋଡ଼ା ଗାମୁଛା ଦେଇ ଦଣ୍ଡ ପ୍ରଣାମ କରନ୍ତି । ଏହାକୁ 'ନିଉଛାଳି' କୁହାଯାଏ । ତା'ପରେ ସେ ତିନିବାଡ଼ରେ ରାଜନୀତି କରନ୍ତି । ଏହା ପରେ ଭିତର ପାଣିପଡ଼ି ଯାତ୍ରାଙ୍କ ମହାସ୍ନାନ ହୁଏ । ରୋଷରେ ଭୋଗ, ସୂର୍ଯ୍ୟପୂଜା ଓ ଦ୍ୱାରପାଳ ପୂଜା ସରିଲେ ମହାସ୍ନାନ ହୁଏ । ମହାସ୍ନାନ ଶେଷରେ ଶାନ୍ତିଜଳ ପ୍ରଭୁଙ୍କ ଶ୍ରୀଅଙ୍ଗରେ ସିଞ୍ଚାଯାଏ । ମଇଲମ ପରେ ଶ୍ରୀଅଙ୍ଗରେ ଚନ୍ଦନଲାଗି କରାଯାଏ । ଏହି ଚନ୍ଦନଲାଗିକୁ 'ସର୍ବାଙ୍ଗ' କୁହାଯାଏ । ସର୍ବାଙ୍ଗ ପରେ ବେଶ ହୁଏ । ଅଣସର ପିଣ୍ଡି ସିଂହାସନ ଧୋପଖାଳ ପରେ ସକାଳ ଧୂପ ଡାକରା ହୁଏ । ଏହି ଭୋଗ ଘଣ୍ଟ, ଛତା, କାହାଳୀ ସହ ନିର୍ଦ୍ଦିଷ୍ଟ ସେବକଙ୍କ ହାତପୈଠ ମଧ୍ୟରେ ଛାମୁକୁ ଆସେ । ଏହି ଦିନର ଗୋପାଳବଲ୍ଲଭ ଭୋଗ ସକାଳ ଧୂପ ସହିତ ହୁଏ । ଏହା ପରବର୍ତ୍ତୀ ଦୈନନ୍ଦିନ ନୀତି କ୍ରମ ଅନୁସାରେ ପାଳିତ ହୁଏ ଏବଂ ଶ୍ରୀଗୁଣ୍ଡିଚା ଯାତ୍ରାର ଆନୁଷଙ୍ଗିକ ପାଳନୀୟ ବିଧିବିଧାନ ଆବଶ୍ୟକତା ଅନୁସାରେ ପାଳିତ ହୁଏ । କାରଣ ଯଦି ଅମାବାସ୍ୟା ପ୍ରତିପଦ ସଂଯୁକ୍ତ ହୋଇପଡ଼େ ତେବେ ଦୁଇଦିନରେ ବିଭକ୍ତ ହୋଇ ପାଳିତ ହୋଇଥାଏ ।

ଶ୍ରୀଗୁଣ୍ଡିଚା ପୂର୍ବଦିନ ସକାଳ ଧୂପ ଶେଷ ପରେ ତିନିବାଡ଼ରୁ ଆଜ୍ଞାମାଳ ନେଇ ପୂଜାପଣ୍ଡା ତିନିଜଣ ଘଣ୍ଟ, ଛତା, କାହାଳୀ ସହ ରଥ ଖଳା ବା ରଥ ନିର୍ମାଣ ସ୍ଥାନକୁ ଆସନ୍ତି ଓ ଯେଉଁ ବାଡ଼ର ଆଜ୍ଞାମାଳ, ସେହି ବାଡ଼ର ରଥ ଦେହରେ ବାନ୍ଧି ଦିଅନ୍ତି । ଆଜ୍ଞାମାଳ ପାଇବା ପରେ ତିନୋଟି ରଥ ଟଣାହୋଇ ସିଂହଦ୍ୱାର ସାମନାସ୍ଥ ନିର୍ଦ୍ଧାରିତ ସ୍ଥାନରେ ରଖାଯାଏ । ବିଧି ଅନୁସାରେ ରଥ ପ୍ରତିଷ୍ଠା କର୍ମ ହୁଏ । କିନ୍ତୁ ରଥ ନିର୍ଦ୍ଧାରିତ ସ୍ଥାନରେ ଲାଗିବାକୁ ରାତି ହୋଇଗଲେ ପ୍ରତିଷ୍ଠା କର୍ମ ପରବର୍ତ୍ତୀ ଦିନ ଅର୍ଥାତ୍ ଶ୍ରୀଗୁଣ୍ଡିଚା ଦିନ ସକାଳୁ ହୋଇଥାଏ । ରଥ ଦଧିନଉତିର ଉପରି ଭାଗରେ ଖଞ୍ଜା ହେବା ନିମନ୍ତେ ଥିବା କଳସମାନ ଜୟ ବିଜୟ ଦ୍ୱାରଠାରେ ରଖାଯାଇଥାଏ । ସଂଧ୍ୟାଧୂପ ପରେ ଶ୍ରୀଜୀଉଙ୍କ ତିନିବାଡ଼ରୁ ଆଜ୍ଞାମାଳ ନେଇ ପୂଜାପଣ୍ଡା କଳସମାନଙ୍କରେ ଦିଅନ୍ତି ଓ ତିନିଖଣ୍ଡି ପତନି କଳସମାନଙ୍କରେ ବନ୍ଧାଯାଏ । ତା'ପରେ କୋଠ ସୁଆଁସିଆମାନେ କଳସମାନ ନେଇ ରଥମାନଙ୍କରେ ବାନ୍ଧନ୍ତି । ବଡ଼ସିଂହାର ପହୁଡ଼ ଆଳତି ପରେ ଶ୍ରୀମୁଖ ଖଣ୍ଡୁଆ ପଡ଼ିବା ପରେ ଦଇତାମାନେ ବାହୁଟ ମାପ କରନ୍ତି । ସାକ୍ଷୀଗୋପାଳରୁ ଅଣାଯାଇଥିବା ବଉଳକାଠରେ ବିଶ୍ୱକର୍ମା (ବଢ଼େଇ) ବାହୁଟ ତିଆରି କରିଥାନ୍ତି ଓ ତାମରା ବିଶୋଇ ତହିଁରେ ତମ୍ବା ପତ୍ର ଯୋଡ଼ି ଦିଅନ୍ତି ।

ବାହୁଟ ଲାଗି ଓ ସେନାପଟା ଲାଗି କରାଯାଏ । ଶୁକ୍ଳସଜ ଲାଗି କରାଯାଏ । ଏହିପରି ଭାବରେ ରଥଯାତ୍ରା ପୂର୍ବଦିନର ପ୍ରସ୍ତୁତି ଶେଷ ହୋଇଥାଏ ।

## ଶ୍ରୀଗୁଣ୍ଡିଚା ଯାତ୍ରା

ମହାପ୍ରଭୁଙ୍କର ବିଶ୍ୱପ୍ରସିଦ୍ଧ ଶ୍ରୀଗୁଣ୍ଡିଚା ଯାତ୍ରା ପ୍ରତିବର୍ଷ ଆଷାଢ଼ ଶୁକ୍ଳ ଦ୍ୱିତୀୟା ତିଥିରୁ ଆରମ୍ଭ ହୁଏ । ଏହି ଯାତ୍ରାର ଅବଧି ପ୍ରକୃତରେ ବାରଦିନ । ଆଷାଢ଼ ଶୁକ୍ଳ ଦ୍ୱିତୀୟାଠାରୁ ଆଷାଢ଼ ଶୁକ୍ଳ ତ୍ରୟୋଦଶୀ (ନୀଳାଦ୍ରି ବିଜେ) ପର୍ଯ୍ୟନ୍ତ । ଶ୍ରୀଗୁଣ୍ଡିଚା ଯାତ୍ରାର ଅନ୍ୟାନ୍ୟ ନାମ ହେଲା- ଘୋଷ ଯାତ୍ରା, ରଥ ଯାତ୍ରା, ଆଡ଼ପ ମଣ୍ଡପ ଯାତ୍ରା, ନବଦିନାତ୍ମକ ଯାତ୍ରା, ଦଶାବତାର ଯାତ୍ରା, ମହାବେଦୀ ମହୋତ୍ସବ, ଅନ୍ତର୍ବେଦୀ ମହୋତ୍ସବ, ଉତ୍ତରାଭିମୁଖୀ ଯାତ୍ରା, ଦକ୍ଷିଣାଭିମୁଖୀ ଯାତ୍ରା, ପତିତପାବନ ଯାତ୍ରା ଇତ୍ୟାଦି । ଶ୍ରୀଗୁଣ୍ଡିଚା ଓ ବାହୁଡ଼ାକୁ ଏକ ଉତ୍ସବ, ଅର୍ଥାତ୍ ଏକ ରଥୋତ୍ସବ ବିବେଚନା କରାଯାଏ । ଏହା 'ତ୍ରି-ଅବୟନା ଯାତ୍ରା' (୧. ଶ୍ରୀଗୁଣ୍ଡିଚା ଯାତ୍ରା, ୨. ମହାବେଦୀରେ ସାତଦିନ ଅବସ୍ଥାନ, ୩. ବାହୁଡ଼ା ଯାତ୍ରା) ।

ସ୍ନାନଯାତ୍ରା ପରି ରଥଯାତ୍ରା ସକାଶେ ଶ୍ରୀମନ୍ଦିର ପ୍ରଶାସନ କର୍ତ୍ତୃପକ୍ଷ, ବିଭିନ୍ନ ସେବାୟତ ନିଯୋଗମାନଙ୍କର ପରାମର୍ଶକ୍ରମେ ଓ ପରିଚାଳନା କମିଟିର ସ୍ୱୀକୃତିପୂର୍ବକ ଏକ ନୀତି ନିର୍ଘଣ୍ଟ ପୁସ୍ତିକା ପ୍ରକାଶ କରିଥାନ୍ତି । ଏହି ପୁସ୍ତିକା ସଂପୃକ୍ତ ସମସ୍ତ ପକ୍ଷଙ୍କୁ ପୂର୍ବରୁ ବଣ୍ଟନ କରାଯାଇଥାଏ । ଏଥିରେ ବିଭିନ୍ନ ଦିନର ନୀତି ଓ ତା'ର ସମୟ ସୂଚିତ ହୋଇଥାଏ । ରଥଯାତ୍ରା ଦିନର ନୀତିମାନ କ୍ରମାନ୍ୱୟରେ ହେଲା- ମଙ୍ଗଳ ଆଳତି, ମଇଲମ, ତଡ଼ପଲାଗି, ରୋଷହୋମ, ଅବକାଶ, ସୂର୍ଯ୍ୟପୂଜା, ଦ୍ୱାରପାଳ ପୂଜା, ବେଶ ଶେଷ, ବଲ୍ଲଭ ଓ ସକାଳ ଧୂପ (ଖେଚେଡ଼ି ଭୋଗ), ରଥ ପ୍ରତିଷ୍ଠା, ମଙ୍ଗଳାର୍ପଣ, ପହଣ୍ଡି ଆରମ୍ଭ, ପହଣ୍ଡି ଶେଷ, ମଦନମୋହନ ବିଜେ, ଚିତାଲାଗି, ଛେରାପହଁରା, ଚାରମାଳ ଫିଟା ଓ ଘୋଡ଼ା ସାରଥି ଲାଗିବା, ରଥଟଣା ଆରମ୍ଭ (ରଥ ଲାଗିବା ପରେ ଅନ୍ୟାନ୍ୟ ନୀତି ରଥ ଉପରେ ହେବ) ।

ରଥଯାତ୍ରା ଦିନ ବଡ଼ି ଭୋରରୁ ଆଳତି, ଅବକାଶ ଶେଷ ହେବା ପରେ ତିନି ବାଡ଼ର ଦୈନନ୍ଦିନ ବେଶ ହୁଏ । ରୋଷ ହୋମ, ସୂର୍ଯ୍ୟପୂଜା, ଦ୍ୱାରପାଳ ପୂଜା ପ୍ରଭୃତି ବଢ଼ିବା ବେଳେ ସ୍ନାନବେଦୀ ନିକଟସ୍ଥ ଚାହାଣି ମଣ୍ଡପରେ ଦେଉଳ ପୁରୋହିତଙ୍କ ଦ୍ୱାରା ତିନି ରଥର ପ୍ରତିଷ୍ଠା ପୂଜା ହୋମ, ବଢ଼ି, ଘଣ୍ଟ, ଛତା କାହାଳୀ ସହ ତିନି ରଥକୁ ଯାଇ ରଥ ପ୍ରତିଷ୍ଠାର ସଂସ୍କାର ଆଦି କାର୍ଯ୍ୟ କରାଯାଏ । ଭିତରେ ସଂପୃକ୍ତ ସେବକଙ୍କଦ୍ୱାରା ପାଣି ପଡ଼ି, ଟେରା ବନ୍ଧାଯାଇ, ସକାଳ ଧୂପ ଡକାଯିବା ପରେ କେବଳ କୋଠଭୋଗ (ସ୍ୱତ୍ୱଲିପି ପ୍ରକାରେ ବାର କୁଡ଼ୁଆ ଖେଚେଡ଼ି, ପିଠା, ଟାକୁଆ) ଆସି ଷୋଡ଼ଶ ଉପଚାରରେ ପୂଜା ହୁଏ । ଏହି ଭୋଗରେ ମୁରୁଜ ପଡ଼େ ନାହିଁ । କାରଣ ଦିଅଁମାନେ ରତ୍ନ ସିଂହାସନ ଛାଡ଼ିବା ପରେ ପୁନର୍ବାର ରତ୍ନ ସିଂହାସନକୁ ଫେରିଯିବା ପର୍ଯ୍ୟନ୍ତ ମୁରୁଜ ପଡ଼ିବାର ବିଧି ନାହିଁ । ଭୋଗ ସମାପନ ପରେ ପାଣି ପଡ଼େ । ସୁଧ ସୁଆର ତିନି ବାଡ଼ରେ ତିନୋଟି ପିତ୍ତଳ ବଟାରେ ଅଠର ମୂର୍ତ୍ତି ପାତ୍ରସଜ ନେଇ ମଙ୍ଗଳାର୍ପଣ ଜିନିଷ ଠିକଣା କରି ରଖିଥାନ୍ତି । ଏହା ପରେ ତିନିବାଡ଼ରେ ପୂଜାପଣ୍ଡା, ପତି ମହାପାତ୍ର ଓ ମୁଦିରସ୍ତ ମଙ୍ଗଳାର୍ପଣ କରନ୍ତି ।

ତାହାପରେ ଡୋରଲାଗି, ପୁଷ୍ପାଞ୍ଜଳି ଓ ତୂଳୀଲାଗି ବଢ଼େ । ମଇଲମ ବାହାର କରାଯାଇ ଦଇତାପତି ଚାଙ୍ଗଡ଼ା ମେକାପଙ୍କୁ ଦିଅନ୍ତି । ପାଳିଆ ଖୁଣ୍ଟିଆ 'ମଣିମା' ଡାକ ଦେଲା ପରେ ଦଇତାପତି ରୁନ୍ଧା ଫିଟାନ୍ତି ଓ ପହଣ୍ଡି ବିଜେ ଆରମ୍ଭ କରନ୍ତି । ଧାଡ଼ି ପହଣ୍ଡି ହୁଏ । ଘଣ୍ଟ, କାହାଳୀ ଓ ବାଜା ବାଜେ ଏବଂ ଛତାର ଛତା ଧରେ । ପ୍ରଥମେ ସୁଦର୍ଶନ ଠାକୁର ବିଜେ ହୁଅନ୍ତି । ସେ ଜଗମୋହନ ସାତପାହାଚରେ ପହଞ୍ଚିଲେ ବଡ଼ଠାକୁର ବଳଭଦ୍ରଙ୍କ ରୁନ୍ଧା ଫିଟେ । ସେ ସାତପାହାଚ ଦ୍ୱାର ଡେଇଁଲେ ଦେବୀ ସୁଭଦ୍ରାଙ୍କର ଏବଂ ଦେବୀ ସାତ ପାହାଚ ଡେଇଁଲେ ଶ୍ରୀଜଗନ୍ନାଥଙ୍କର ରୁନ୍ଧା ଫିଟେ । ସାତପାହାଚଠାରେ ପ୍ରତ୍ୟେକ ଠାକୁର  ରାଘବ ଦାସ ମଠ ଯୋଗାଇଥିବା ଟାହିଆ ଲାଗି ହୁଅନ୍ତି । କ୍ରମାନ୍ୱୟରେ ଆନନ୍ଦ ବଜାର, ବାଇଶି ପାହାଚ ଦେଇ ସ୍ୱ ସ୍ୱ ରଥକୁ ବିଜେ ହୁଅନ୍ତି । ସୁଦର୍ଶନ ସୁଭଦ୍ରାଙ୍କ ରଥରେ ବିଜେ କରନ୍ତି । ତିନିଠାକୁରଙ୍କୁ ଚକା ଅପସରଲାଗି କରାଯାଏ । ତା'ପରେ ରଥରେ ଠାକୁରମାନଙ୍କର ରୁନ୍ଧା ହୁଏ । ତା'ପରେ ଦକ୍ଷିଣ ଘରୁ ମଦନମୋହନ ଓ ରାମକୃଷ୍ଣଙ୍କୁ ମହାଜନମାନେ ଆଣି ବଟମୂଳେ ଥିବା ପାଲିଙ୍କିରେ ବିଜେ କଲା ପରେ ବିମାନବଡୁମାନେ ପାଲିଙ୍କିରେ ନେଇ ବଳଭଦ୍ରଙ୍କ ତାଳଧ୍ୱଜ ରଥ ସାମନାରେ ଠିଆ କରାନ୍ତି । ମହାଜନେ ସେଠାରୁ ରାମ ଓ କୃଷ୍ଣଙ୍କୁ ଉକ୍ତ ରଥରେ ବିଜେ କରାନ୍ତି । ଶ୍ରୀଜଗନ୍ନାଥଙ୍କ ନନ୍ଦିଘୋଷ ରଥ ସାମନାକୁ ପାଲିଙ୍କି ନେଇ ସେହି ରଥରେ ମଦନମୋହନଙ୍କୁ ବିଜେ କରାନ୍ତି । ଏହି କାର୍ଯ୍ୟ ପରେ କୋଠ ସୁଆଁସିଆମାନେ ରତ୍ନଭଣ୍ଡାର ଦୁଆରୁ ଦୁଇଟି ବଡ଼ ସିନ୍ଦୁକ (ଗୋଟିଏ ସିନ୍ଦୁକରେ ନଅ ଦିନପାଇଁ ଲୁଗା ଓ ପାଟ ଏବଂ ଅନ୍ୟଟିରେ ଅଳଙ୍କାର) ନେଇ ଶ୍ରୀଜଗନ୍ନାଥଙ୍କ ରଥର ପଛପଟେ ରଖନ୍ତି । ପ୍ରତି ରଥରେ ପୂଜା ଠା' ସାମଗ୍ରୀ, ଥାଳି, ଘଣ୍ଟ, ଗଡୁ ଇତ୍ୟାଦି ଯଥାସ୍ଥାନରେ ରଖାଯାଏ । ଏହା ଉତ୍ତାରେ ଲେଙ୍କା ଓ ପାଇକ, ଘଣ୍ଟ, ଛତା ଓ କାହାଳୀ ସହ ବଣିଆ ସେବକଙ୍କ ଘରକୁ ଯାଇ ତିନିବାଡ଼ର ସୋଲ ଚିତା (ମଝିରେ ସୁନା ଓ ପଥର ଥାଇ) ଆଣନ୍ତି । ଚିତାଲାଗି ପରେ ମାଳଫୁଲ ଲାଗି କରାଯାଏ ।

ଏହାର ପରବର୍ତ୍ତୀ ଆକର୍ଷଣୀୟ ନୀତି ହେଲା ଗଜପତି ମହାରାଜାଙ୍କଦ୍ୱାରା  ତିନି ରଥରେ ଛେରା ପହଁରା । ଶ୍ରୀଜଗନ୍ନାଥଙ୍କ ଆଦ୍ୟ ସେବକ, ଚଳନ୍ତି ବିଷ୍ଣୁ ଭାବେ ସମ୍ମାନିତ ଗଜପତି ମହାରାଜା ଶ୍ରୀନଅରରୁ ବାଜା ପଟୁଆର ସହିତ ରାଜାବେଶରେ ତାମଯାନରେ ବସି ଆସନ୍ତି । ପ୍ରଥମେ ବଳଭଦ୍ର ଠାକୁରଙ୍କ ରଥରେ ଉଠନ୍ତି । ସେ ଦଣ୍ଡପ୍ରଣାମ କରି ହାତୁଆଣି ନେଇ (ହାତଧୋଇ) ନିଉଛାଳି ହୋଇ ପୁଷ୍ପାଞ୍ଜଳି ଦିଅନ୍ତି । ରାଜା ତା'ପରେ ସୁନା ଦାନିରେ କର୍ପୂର ଆଳତି କରି, ସୁନା ଚାମର ଆଳତି କରନ୍ତି । ତାପରେ ରଥର ସିଂହାସନରୁ ଓହ୍ଲେଇ ଛେରାପହଁରା କରନ୍ତି ।  ରାଜଗୁରୁ ସୁନାଖଡ଼ିକା ସଂସ୍କାର କରି ରାଜାଙ୍କ ହାତକୁ ବଢ଼େଇ ଦିଅନ୍ତି । ଭଣ୍ଡାର ମେକାପ ରଥର ଚାରି ପାଖରେ ବୁଲି ଧଳାଫୁଲ ଆଗରେ ପକାନ୍ତି, ରାଜା ଚାରି ପାଖରେ ବୁଲି ପହଁରା କରନ୍ତି । ପହଁରା ପରେ ରଥର ଚାରିପଟେ ସଂସ୍କାର କରାଯାଇଥିବା ଚନ୍ଦନପାଣି ଓ ଚନ୍ଦନ ଗୁଣ୍ଡ ଛିଞ୍ଚନ୍ତି । ଏହିପରି ଭାବରେ ତା'ପରେ ଶ୍ରୀଜଗନ୍ନାଥଙ୍କ ରଥ ଓ ଦେବୀଙ୍କ ରଥରେ ଛେରାପହଁରା ନୀତି ହୁଏ ।

ଛେରାପହଁରା ନୀତି ପରେ ଗଜପତି ମହାରାଜା ନଅରକୁ ଫେରିଯା'ନ୍ତି । ତିନି ରଥର ଚାରମାଳ (ରଥକୁ ଚଢ଼ିବା ନିମନ୍ତେ ପଡ଼ିଥିବା କାଠପଟା) ଖୋଲାଯାଏ ଏବଂ ସାରଥି ଓ ଘୋଡ଼ା ଯୋଚାଯାଏ । ଏହା ଭୋଇ ସେବକମାନେ କରନ୍ତି । ଏହା ପରେ ରଥମାନଙ୍କରେ ଦଉଡ଼ି ବନ୍ଧାଯାଏ । ରଥମାନଙ୍କୁ ପୋଲିସଦ୍ୱାରା କର୍ଡ଼ନ କରାଯାଏ । ରଥମାନଙ୍କ ଉପରେ ସଂପୃକ୍ତ ସେବକମାନେ, ଡାହୁକ, ଆବଶ୍ୟକ କର୍ମଚାରୀ ଉପସ୍ଥିତ ରହିଥାନ୍ତି । କ୍ରମାନ୍ୱୟରେ ଶ୍ରୀବଳଭଦ୍ର, ଦେବୀ ସୁଭଦ୍ରା ଓ ଶ୍ରୀଜଗନ୍ନାଥଙ୍କ ରଥ ଟଣା ହୋଇ ଗୁଣ୍ଡିଚା ଘର ଅଭିମୁଖେ ଯାଏ । ବାଟରେ କେତେକ ମଠବାଡ଼ିର ପକ୍ତି ଭୋଗ ହୁଏ ।

ସଂଧ୍ୟା ହୋଇଗଲେ ସାଧାରଣତଃ ରଥଟଣା ବନ୍ଦ ରଖାଯାଏ । ରଥମାନ ଗୁଣ୍ଡିଚା ଦାଣ୍ଡ (ଗୁଣ୍ଡିଚା ମନ୍ଦିର ସାମନା ନିର୍ଦ୍ଧାରିତ ସ୍ଥାନ)ରେ ପହଞ୍ଚିବା ପରେ କିମ୍ବା ବାଟରେ ଯେଉଁଠି ରହନ୍ତି ସେଠାରେ ଠାକୁରମାନେ ମହାସ୍ନାନ ହୋଇ ନୂଆ ବୋଇରାଣୀ ଲୁଗାଲାଗି ହୋଇ ସର୍ବାଙ୍ଗ ଓ ବେଶ ହୁଅନ୍ତି । ବେଶ ପରେ ମଧ୍ୟାହ୍ନ ଧୂପଠାରୁ ଆରମ୍ଭ କରି ଅନ୍ୟାନ୍ୟ ନୀତି ହୁଏ । ରଥ ଉପରେ କେବଳ ଶୁଖିଲା ଭୋଗ ହୁଏ । ପହୁଡ଼ ଆଳତି ହୋଇ ଶ୍ରୀମୁଖ ଖଣ୍ଡୁଆ ପକାଇ ପାଳିଆ ପୁଷ୍ପାଳକମାନେ ଚାଲିଯାଆନ୍ତି । ରଥର ସାମନାରେ ପରଦା ବନ୍ଧାଯାଏ । ତିନିରଥ ନିର୍ଦ୍ଧାରିତ ସ୍ଥାନରେ ଲାଗିବାର ପରବର୍ତ୍ତୀ ଦିନ ସଂଧ୍ୟାରେ ଗୁଣ୍ଡିଚାମନ୍ଦିରକୁ ପହଣ୍ଡିବିଜେ ଆରମ୍ଭ ହୁଏ । ସଂଧ୍ୟାଧୂପ ପରେ ଗୋଟି ପହଣ୍ଡିରେ ବିଜେ କରାଯାଏ । ବିଜେ କାହାଳୀ ବାଜିବା ପରେ ଡୋର ଲାଗି ଓ ପୁଷ୍ପାଞ୍ଜଳି କରାଯାଏ । ମହାଜନମାନେ ଆଗରେ ମଦନମୋହନ ଓ ରାମକୃଷ୍ଣଙ୍କୁ ହାତରେ ବିଜେ କରାଇ ନେଇ ଗୁଣ୍ଡିଚା ଘର ଭଣ୍ଡାର ଘର ସିଂହାସନ ଉପରେ ବିଜେ କରାନ୍ତି । ଏହାପରେ ଦଇତାମାନେ ସୁଦର୍ଶନଙ୍କୁ ବିଜେ କରାଇ ଆଣି ରତ୍ନ ସିଂହାସନ ଚାରତଳେ ବିଜେ କରାନ୍ତି । ତା'ପରେ ସେମାନେ ମଇଲମ କରି, ରୁନ୍ଧା ଫିଟାଇ ତିନିଠାକୁରଙ୍କୁ କ୍ରମରେ ବିଜେ କରାନ୍ତି । ଚାର ଉପରେ ରାଘବ ଦାସ ମଠ ଯୋଗାଇଥିବା ଟାହିଆ ଲାଗି କରାଯାଏ । ପତିମହାପାତ୍ର ଗରାବଡୁଠାରୁ ହାତୁଆଣି ନେଇ ଧଣ୍ଡି ଓ ଚନ୍ଦନ ଲାଗି କରନ୍ତି । କର୍ପୂର ଆରତି, ଦୂର୍ବାକ୍ଷତ, ସାତବତି, ସଂଜକାହାଳୀ ବନ୍ଦାପନା କରନ୍ତି ଓ ବିଡ଼ିଆ ମଣୋହି କରନ୍ତି । ଛାମୁଖୁଣ୍ଟିଆଙ୍କ ମଣିମା ଡାକ ଭିତରେ ଘଣ୍ଟ କାହାଳୀ ବାଜି ଗୁଣ୍ଡିଚା ଘରକୁ ପହଣ୍ଡି ବିଜେ କରାଯାଏ । ଯିବା ବାଟରେ ପକ୍ତି ଭୋଗ ହୁଏ ।

ଗୁଣ୍ଡିଚା ଘରେ ଠାକୁରମାନେ ସିଂହାସନରେ ବିଜେ ହେବା ପରେ ଦଇତାପତିମାନେ ରୁନ୍ଧାକାର୍ଯ୍ୟ କରନ୍ତି । ତା'ପରେ ତିନିବାଡ଼ରେ ସର୍ବାଙ୍ଗ ଲାଗି ଓ ବନ୍ଦାପନା କରି ଏବଂ ଶ୍ରୀମୁଖ ଖଣ୍ଡୁଆ ପକାଇ ପତି ମହାପାତ୍ର ଓ ଦଇତାମାନେ ଚାଲିଆସନ୍ତି । କୋଠ ସୁଆଁସିଆମାନେ ଭିତରକୁ ଯାଇ ପହଣ୍ଡିପାଇଁ ପଡ଼ିଥିବା ଚାର ଫିଟାନ୍ତି । ଚାର ଫିଟାଇବା ପରେ ଦଇତାମାନେ ସୁଦର୍ଶନଙ୍କୁ ସିଂହାସନ ଉପରକୁ ବିଜେ କରାନ୍ତି । ଭିତରେ ଧୋପଖାଳ ହୋଇ ଚୂନପାଣି ପଡ଼ିବା ପରେ ସୁଧସୁଆର ତିନିବାଡ଼ରେ ମହାସ୍ନାନ ପୂଜା ଠା' କରନ୍ତି । ତିନିଜଣ ପୂଜାପଣ୍ଡା ମହାସ୍ନାନ ପୂଜା କରନ୍ତି । ତା'ପରେ ପୁଷ୍ପାଳକ ତିନିଜଣ ମଇଲମ ଓ ମାଳଫୁଲ ଲାଗି କରନ୍ତି । ଏ ସମୟକୁ ପ୍ରାୟ

ଭୋର ହୋଇଯାଇଥାଏ । ରାତି ପାହିବା ପରେ ମଙ୍ଗଳ ଆଳତି ଇତ୍ୟାଦି ଦୈନନ୍ଦିନ ନୀତି ଗୁଣ୍ଡିଚା ଘରେ କ୍ରମାନ୍ୱୟରେ ସଂପାଦିତ ହୁଏ । କିନ୍ତୁ ଏଠାରେ ଗୋପାଳ ବଲ୍ଲଭ ଭୋଗ ସର୍ପାମଣୋହିରେ ପୂଜା ହୁଏ । ବାହୁଡ଼ା ପର୍ଯ୍ୟନ୍ତ ଭୋଗମଣ୍ଡପ ପରେ ଦୈନିକ ମହାସ୍ନାନ, ସର୍ବାଙ୍ଗ ଓ ନୂଆ ଲୁଗା ଲାଗି କରାଯାଏ ।

## ହେରାପଞ୍ଚମୀ

ଏହି ନୀତି ରଥଯାତ୍ରାର ପଞ୍ଚମ ଦିନ, ଅର୍ଥାତ୍ ଆଷାଢ଼ ଶୁକ୍ଳ ଷଷ୍ଠୀରେ ପାଳିତ ହୁଏ । ଶ୍ରୀମନ୍ଦିର ଭଣ୍ଡାର ଘରେ ବିଜେ ହୋଇଥିବା ଲକ୍ଷ୍ମୀଙ୍କୁ ପାଳିଆ ମହାଜନମାନେ ମାଜଣା କରନ୍ତି । ତା' ପରେ ବନକ ଲାଗି, ପାଟ ଓ ଅଳଙ୍କାର ଲାଗି ହୁଏ । ପାଳିଆ ମେକାପ, ପ୍ରତିହାରୀ ଓ ମୁଦୁଲି ଦେଇଥିବା ପନ୍ତି ଭୋଗ ପୂଜାପଣ୍ଡା କରନ୍ତି । ଏହାପରେ ମହାଜନମାନେ ଲକ୍ଷ୍ମୀଙ୍କୁ ନେଇ ବଟବୃକ୍ଷ ତଳେ ଥିବା ବିମାନରେ ବିଜେ କରାନ୍ତି । ବିମାନବଡୁମାନେ ବିମାନ କାନ୍ଧେଇ, ଘଣ୍ଟ, କାହାଳୀ ବାଜା, ଛତାର ଛତ୍ର ସହ ସିଂହଦ୍ୱାର ଦେଇ ବଡ଼ଦାଣ୍ଡରେ ଗୁଣ୍ଡିଚା ଘର ସାମନାରେ ଶ୍ରୀଜଗନ୍ନାଥଙ୍କ ରଥ ପାଖରେ ଠିଆ ହୁଅନ୍ତି । ଏଠାରେ ପତି ମହାପାତ୍ର ପ୍ରସାଦ ଲାଗି ବନ୍ଦାପନା ଓ ଚାମର ଆଲଟ କରନ୍ତି । ଘଷା ବିଡ଼ିଆ ଓ ଦହିପଟି ମଣୋହି କରନ୍ତି । ଏ ମଧ୍ୟରେ ଗୁଣ୍ଡିଚା ଘରେ ତିନିବାଡ଼ରେ ସର୍ବାଙ୍ଗ ପରେ ବେଶ ହୋଇ ଓ ସଂଧ୍ୟାଧୂପ ଉଠି ପୂଜାପଣ୍ଡା ପୂଜାରେ ବସିଥାନ୍ତି । ଲକ୍ଷ୍ମୀ ରଥ ପାଖରୁ ଜଗମୋହନ ଜୟ ବିଜୟ ଦ୍ୱାରଠାକୁ ଆସିଥାନ୍ତି । ପତି ମହାପାତ୍ର ସିଂହାସନ ଉପରକୁ ଉଠି ଶ୍ରୀଜଗନ୍ନାଥଙ୍କ ଶ୍ରୀଅଙ୍ଗରୁ ଆଜ୍ଞାମାଳ ଆଣି ଲକ୍ଷ୍ମୀଙ୍କୁ ଦେଲା ପରେ ପୂଜାପଣ୍ଡା ପୂଜା ବଢ଼ାଇ ଧୂପ ଦୀପ ଦେଇ ଟେରା ପକାନ୍ତି । ଲକ୍ଷ୍ମୀଙ୍କ ବିମାନକୁ ଜଗମୋହନରୁ ନାକଚଣା ଦ୍ୱାର ଦେଇ ତେନ୍ତୁଳିଗଛ ପାଖରେ ରଖାଯାଏ । ସେଠାରେ ଭିତରଛ ମହାପାତ୍ର ଗରାବଡୁଠାରୁ ହାତୁଆଣି ନେଇ ବନ୍ଦାପନା କରନ୍ତି ଓ ଦହିପଟି ମଣୋହି କରାନ୍ତି । ଏହାପରେ ତାଙ୍କର ବିମାନକୁ ଶ୍ରୀଜଗନ୍ନାଥଙ୍କ ରଥ ପାଖକୁ ନିଆଯାଏ । ସେବକଙ୍କ ଭିତରୁ ଜଣେ ରଥର କାଠ ଖଣ୍ଡିଏ ଭାଙ୍ଗି ଦେବା ପରେ ହରଗୌରୀ ସାହି ଦେଇ ବଡ଼ ଦେଉଳକୁ ବିଜେ କରନ୍ତି ।

ଶ୍ରୀଗୁଣ୍ଡିଚା ଦିନଠାରୁ ଆଡ଼ପ ମଣ୍ଡପ (ଗୁଣ୍ଡିଚା ଘରେ) ଦିଅଁମାନଙ୍କ ଅବସ୍ଥାନ କାଳରେ ତିନି ରଥରେ ଧ୍ୱଜ ପୂଜା ହୁଏ । ସପ୍ତମୀ, ଅଷ୍ଟମୀ ଓ ନବମୀ ତିଥି ଦିନରେ ଏଠାରେ 'ରାହାସ' ନୀତି ହୁଏ । ପ୍ରତ୍ୟହ ଏହି ତିନିଦିନ ସଂଧ୍ୟାଧୂପ ପରେ ମଦନମୋହନ ଜଗମୋହନରେ ସିଂହାସନ ଉପରେ ବିଜେ କରନ୍ତି । ସେଠାରେ ତାଙ୍କୁ ପୂଜାପଣ୍ଡା ସର୍ପା ମଣୋହିରେ କୋରା ଭୋଗ କରନ୍ତି । ଭୋଗ ପରେ ବନ୍ଦାପନା କରାଯାଏ ।

ହେରାପଞ୍ଚମୀ ପରଦିନ ଅର୍ଥାତ୍ ସପ୍ତମୀ ତିଥିରେ ତନି ଦିଅଁଙ୍କ ଶ୍ରୀଅଙ୍ଗରୁ ତିନିଖଣ୍ଡ ଆଜ୍ଞାମାଳ ସକାଳ ଧୂପ ପରେ ଘଣ୍ଟ, ଛତା, କାହାଳୀ ସହ ତିନି ରଥରେ ପହଞ୍ଚି ଲାଗି ହୁଏ । ତା'ପରେ ରଥମାନଙ୍କର ଦକ୍ଷିଣ ମୋଡ଼ ହୁଏ । ପ୍ରଥମେ ସୁଭଦ୍ରାଙ୍କ ରଥ, ପରେ ବଳଭଦ୍ରଙ୍କ ରଥ ଓ ଶେଷରେ ଜଗନ୍ନାଥଙ୍କ ରଥର ଦକ୍ଷିଣ ମୋଡ଼ କରାଯାଇ ନାକଚଣା ଦ୍ୱାର ସାମନାରେ ତିନି ରଥକୁ ଦକ୍ଷିଣାଭିମୁଖରେ ସମାନ ଭାବରେ ସଜାଇ ରଖାଯାଏ ।

ନବମୀ ତିଥିରେ ଗୁଣ୍ଡିଚା ଘରେ 'ସଂଧ୍ୟା ଦର୍ଶନ' ହୁଏ । ସେଦିନର ସଂଧ୍ୟାକାଳୀନ ଦର୍ଶନ ଆଡ଼ପ ମଣ୍ଡପରେ ଶ୍ରୀଜୀଉଙ୍କର ଶେଷ ଦର୍ଶନ ହୋଇଥିବାରୁ ଏ ଦର୍ଶନର ନାମ ସଂଧ୍ୟା ଦର୍ଶନ ଓ ଏହି ଦର୍ଶନ ଅତ୍ୟନ୍ତ ପୁଣ୍ୟଦାୟକ ବୋଲି ମନେ କରାଯାଏ । ସୁତରାଂ ଦର୍ଶନପାଇଁ ପ୍ରବଳ ଜନସମାଗମ ହୋଇଥାଏ । ଏହି ଦିନ ବଡ଼ସିଂହାର ଭୋଗ ଶେଷ ପରେ ପହୁଡ଼ ଆଳତି, ଶ୍ରୀମୁଖ ଖଣ୍ଡୁଆ ପଡ଼ିବା ପରେ ବାହୁଟ କଷ୍ଟ କରାଯାଏ । ରଥଯାତ୍ରା ପୂର୍ବଦିନ ରାତିରେ ଶ୍ରୀମନ୍ଦିରରେ ଯେଉଁ ନୀତିରେ ହୋଇଥାଏ, ଏହା ସେହି ନୀତିରେ ହୁଏ । କୋଠ ସୁଆଁସିଆମାନେ ଚାର ବାନ୍ଧନ୍ତି । ତା'ପରେ କୁସୁମି ଲାଗି ହୁଏ ।

ଦଶମୀ ତିଥିରେ ବାହୁଡ଼ା ଯାତ୍ରା ଅନୁଷ୍ଠିତ ହୁଏ । ଏଥିପାଇଁ ଶ୍ରୀମନ୍ଦିର ପ୍ରଶାସନ ନୀତି ନିର୍ଘଣ୍ଟ ପ୍ରକାଶ କରିଥାନ୍ତି । ଏ ଦିନର ନୀତିମାନ ହେଲା ମଙ୍ଗଳ ଆଳତି, ମଇଲମ, ତଡ଼ପଲାଗି, ରୋଷ ହୋମ, ଅବକାଶ, ସୂର୍ଯ୍ୟ ପୂଜା, ଦ୍ୱାରପାଳ ପୂଜା, ବେଶ ଶେଷ, ଗୋପାଳବଲ୍ଲଭ ଓ ଖେଚେଡ଼ି ଭୋଗ, ସେନାପଟା ଲାଗି, ମଙ୍ଗଳାର୍ପଣ, ବାହୁଡ଼ା ପହଣ୍ଡି, ଛେରା ପହଁରା, ଚାର ଫିଟିବା, ଘୋଡ଼ା ସାରଥି ଲାଗିବା, ରଥଟଣା ଆରମ୍ଭ (ରଥଟଣା ଶେଷ ପରେ ଅନ୍ୟାନ୍ୟ ନୀତି ହେବ) ।

ବାହୁଡ଼ା ଦିନ ପୁଷ୍ପାଳକ ଓ ଭିତରଛ ମହାପାତ୍ର ମଙ୍ଗଳ ଆଳତି, ଅବକାଶ କରନ୍ତି । ରୋଷରେ ହୋମ, ସୂର୍ଯ୍ୟପୂଜା, ଦ୍ୱାରପାଳ ପୂଜା ହୋଇ ସକାଳ ଧୂପ (ଖେଚେଡ଼ି ଭୋଗ) ସାଙ୍ଗରେ ବଲ୍ଲଭ ଭୋଗ ଏକତ୍ର ଷୋଡ଼ଶ ଉପଚାରରେ ମଣୋହି ହୁଏ । ତା'ପରେ ଦଇତାମାନେ ସେନାପଟାଲାଗି କରନ୍ତି । ପୂଜାପଣ୍ଡା, ପତିମହାପାତ୍ର ଓ ମୁଦିରସ୍ତ ତିନି ବାଡ଼ରେ ମଙ୍ଗଳାର୍ପଣ କରନ୍ତି । ମୁଦିରସ୍ତ ଡୋରଲାଗି, ପୁଷ୍ପାଞ୍ଜଳି କଲା ପରେ ବିଜେ କାହାଳୀ ବାଜେ ଓ ଧାଡ଼ି ପହଣ୍ଡି ଆରମ୍ଭ ହୁଏ । ଜଗମୋହନ ଦ୍ୱାରରେ ରାଘବ ଦାସ ମଠ ଦେଇଥିବା ଟାହିଆ ଲାଗି ହୁଏ । ଶ୍ରୀଗୁଣ୍ଡିଚା ଦିନ ପରି ପହଣ୍ଡି, ଟାହିଆଲାଗି, ତୂଳୀଲାଗି, ପତି ମହାପାତ୍ରଙ୍କଦ୍ୱାରା ବନ୍ଦାପନା, ବିଡ଼ିଆ ମଣୋହି ଇତ୍ୟାଦି ନୀତି ହୁଏ । ଚାରି ଠାକୁର ଯେ ଯାହା ରଥରେ ଅବସ୍ଥାନ କଲା ପରେ ଓ ରୁନ୍ଧା ହେବା ପରେ ମହାଜନମାନେ ମଦନମୋହନ ଓ ରାମକୃଷ୍ଣଙ୍କୁ ହାତରେ ବିଜେ କରାଇ ନେଇ ଶ୍ରୀଗୁଣ୍ଡିଚା ଦିନ ବସାଇଲା ପରି ରଥରେ ବିଜେ କରାନ୍ତି । ଏହାପରେ ରାଜା ଶୋଭାଯାତ୍ରାରେ ଆସି ପ୍ରତ୍ୟେକ ରଥରେ ଛେରା ପହଁରା କରନ୍ତି । ତାହା ଶେଷ ହେଲେ ରଥରୁ ଚାରମାଳ ଫିଟାଯାଏ । ଘୋଡ଼ା ସାରଥି ଯୋଚା ଯାଏ । ଦଉଡ଼ି ବନ୍ଧା ଯାଏ । ଘଣ୍ଟ, ମାଦଳ, କାହାଳୀ ବାଜି ବଳଭଦ୍ରାଦି କ୍ରମରେ ରଥ ଟଣା ହୁଏ । ବଡ଼ ଶଙ୍ଖ ଯାଏ ବଳଭଦ୍ରଙ୍କ ରଥ ଟଣା ହେବା ପରେ ସୁଭଦ୍ରାଙ୍କ ରଥ ଓ ସେହିପରି ଶେଷରେ ଜଗନ୍ନାଥଙ୍କ ରଥ ଟଣାଯାଏ । ରଥ ଉପରେ ଦେବଦର୍ଶନ ଅତ୍ୟନ୍ତ ପୁଣ୍ୟପ୍ରଦ ଓ ପାପତାପସଂହାରକ ବୋଲି ଶାସ୍ତ୍ରରେ ଉଲ୍ଲେଖ ଅଛି ।

ଉତ୍ତରାଭିମୁଖେ ଜାତେ ତଥା ଦକ୍ଷିଣଦିଙ୍ମୁଖେ ।
ରଥତ୍ରୟେ ଜନୋଯସ୍ତୁ ଭକ୍ତି ଶ୍ରଦ୍ଧାନ୍ୱିତଃ ପରମ୍ ॥ ୧୧୬ ॥
ରାମଂକୃଷ୍ଣଂ ସୁଭଦ୍ରାଂ ଚ ପଶ୍ୟେନ୍ମାର୍ଗେ ରଥେ ସ୍ଥିତମ୍ ।
ପଦେ ପଦେଽଶ୍ୱମେଧାନାଂ ଫଳଂ ପ୍ରାପ୍ୟ ମହୀତଳେ ॥ ୧୧୭ ॥

(ନୀଳାଦ୍ରି ମହୋଦୟଃ, ୧୬ଶ ଅଧ୍ୟାୟ)

(ମହାପ୍ରଭୁ ଉତ୍ତରାଭିମୁଖ ହୋଇ ଶ୍ରୀଗୁଣ୍ଡିଚା ଏବଂ ଦକ୍ଷିଣାଭିମୁଖ ହୋଇ ବାହୁଡ଼ାଯାତ୍ରାରେ ତିନି ରଥରେ ବଡ଼ ଦାଣ୍ଡରେ ଯାଉଥିବା ସମୟରେ ଭକ୍ତି ଓ ଶ୍ରଦ୍ଧା ସହକାରେ ଯେଉଁ ପରମ ଭକ୍ତଗଣ ରଥସ୍ଥିତ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କୁ ଦର୍ଶନ କରନ୍ତି ସେମାନେ ସଂସାରରେ ପ୍ରତିପଦରେ ଅଶ୍ୱମେଧ ଯଜ୍ଞାନୁଷ୍ଠାନର ଫଳ ଲାଭ କରନ୍ତି ।)

ବଳଭଦ୍ର ଠାକୁର ଓ ଦେବୀ ସୁଭଦ୍ରାଙ୍କ ରଥଟଣା ହୋଇ ସିଂହଦ୍ୱାର ପାର୍ଶ୍ୱ ନିର୍ଦ୍ଧାରିତ ସ୍ଥାନକୁ ଆସେ । ମହାପ୍ରଭୁ ଜଗନ୍ନାଥଙ୍କ ରଥ ବାଟରେ ମାଉସୀମା' ମନ୍ଦିର ପାଖରେ ରହେ । ଉକ୍ତ ଦେଉଳ ତରଫରୁ ଛେନାପୋଡ଼ପିଠା ଶ୍ରୀଜଗନ୍ନାଥଙ୍କୁ ଭୋଗ ହୁଏ । ସେଠାରୁ ମହାପ୍ରଭୁଙ୍କ ରଥ ଆସି ରାଜାଙ୍କ ନଅର ପାଖରେ ରହେ । ଏହି ସମୟରେ ଶ୍ରୀମନ୍ଦିରରେ ଲକ୍ଷ୍ମୀ ପାଟ ପିନ୍ଧି, ମାଳଫୁଲ ବେଶ ହୋଇ ମହାଜନଙ୍କଦ୍ୱାରା ହାତରେ ବିଜେ ହୋଇ ସାତ ପାହାଚ ଦୁଆରରେ ଥିବା ପାଲିଙ୍କିରେ ବିଜେ କରନ୍ତି । ବିମାନବଡୁମାନେ ପାଲିଙ୍କି ନେଇ ଆନନ୍ଦବଜାରସ୍ଥ ଚାହାଣି ମଣ୍ଡପରେ ଠିଆ କରାନ୍ତି । ସେଠାରେ ଲକ୍ଷ୍ମୀ ଶ୍ରୀଜଗନ୍ନାଥଙ୍କ ରଥକୁ ଚାହାନ୍ତି । ଏହା ପରେ ବିମାନବଡୁମାନେ ପାଲିଙ୍କି ନେଇ ଘଣ୍ଟ, ଛତା ଓ କାହାଳିଆ ସହ ଶ୍ରୀଜଗନ୍ନାଥଙ୍କ ରଥ ପାଖକୁ ଯାଆନ୍ତି । ସେଠାରେ ଦହିପତି ମଣୋହି ହୁଏ । ଏହି ସମୟରେ ରାଜା ସେଠାରେ ବିଜେ ହୋଇଥାନ୍ତି । ମଣୋହି ପରେ ବିମାନବଡୁମାନେ ବିମାନ (ପାଲିଙ୍କି) କାନ୍ଧେଇ ରଥ ଚାରିପାଖରେ ଏକ ବେଢ଼ା ବୁଲାନ୍ତି । ଦଇତାପତିମାନେ ଶ୍ରୀଜଗନ୍ନାଥଙ୍କ ଶ୍ରୀଅଙ୍ଗରୁ ଆଜ୍ଞାମାଳ ଦେଲା ପରେ ଲକ୍ଷ୍ମୀ ଶ୍ରୀମନ୍ଦିରକୁ ବିଜେ କରିଥାନ୍ତି । ଏହା ପରେ ରଥ ସିଂହଦ୍ୱାର ନିକଟକୁ ଆସେ । ତିନି ରଥରେ ଶୁଖିଲା ଭୋଗ ମଧ୍ୟାହ୍ନ ଧୂପଠାରୁ ଆରମ୍ଭ ହୋଇ ଅବଶିଷ୍ଟ ଦୈନନ୍ଦିନ ନୀତି ରଥରେ କରାଯାଇ ପହୁଡ଼ ହୋଇଥାଏ ।

## ଏକାଦଶୀ ନୀତି : ସୁନାବେଶ ଓ ଶୟନଠାକୁର ବିଜେ

ଏହି ତିଥିରେ ତିନି ରଥରେ ତିନିଠାକୁରଙ୍କର ଏକ ଆକର୍ଷଣୀୟ ବେଶ ହେଉଛି ରାଜବେଶ । ଏହା ମଧ୍ୟାହ୍ନ ଧୂପ ପରେ ହୁଏ । ସବୁ ରାଜବେଶ ହେଉଛି ସୁନାବେଶ । କିନ୍ତୁ ସବୁ ସୁନାବେଶ ରାଜବେଶ ନୁହେଁ । ଏହି ବେଶ ଦେଖିବାକୁ ଲକ୍ଷ ଲକ୍ଷ ଦର୍ଶନାର୍ଥୀ ଭକ୍ତ ସିଂହଦ୍ୱାର ନିକଟରେ ଜମା ହୁଅନ୍ତି । ପ୍ରାଶାସନିକ କର୍ତ୍ତୃପକ୍ଷ ଓ ପୋଲିସ ପ୍ରଶାସନ ବାରିକେଡ୍ ନିର୍ମାଣ କରାଇ ଯଥେଷ୍ଟ ସଂଖ୍ୟକ ଆରକ୍ଷୀ ବନ୍ଦୋବସ୍ତ କରାଇ ଶୃଙ୍ଖଳିତ ଦର୍ଶନର ବ୍ୟବସ୍ଥା କରନ୍ତି । (ରାଜବେଶ / ସୁନାବେଶ ସଂପର୍କରେ ଅଧିକ ତଥ୍ୟ 'ବେଶ ଅଧ୍ୟାୟ'ରେ ପ୍ରଦାନ କରାଯାଇଛି ।)

ଏହି ଏକାଦଶୀର ଅନ୍ୟ ନାମ ବଡ଼ ଏକାଦଶୀ ବା ହରିଶୟନ ଏକାଦଶୀ । ରଥ ଉପରେ ବଡ଼ସିଂହାର ଭୋଗ ପରେ ମହାସ୍ନାନ ଓ ପୂଜା ଠା' ହେଲା ପରେ ଭଣ୍ଡାର ମେକାପ ଭଣ୍ଡାର ଘରୁ ତିନିମୂର୍ତ୍ତି ଶୟନଠାକୁରଙ୍କୁ ତିନି ରଥକୁ ବିଜେ କରାନ୍ତି । ଯଥାଃ-

ବଡ଼ବାଡ଼ (ବଳଭଦ୍ର) - ବାସୁଦେବ
ମଝିବାଡ଼ (ସୁଭଦ୍ରା) - ଭୁବନେଶ୍ୱରୀ
ମହାପ୍ରଭୁଙ୍କ ବାଡ଼ (ଜଗନ୍ନାଥ) - ନାରାୟଣ

ଏହି ଦିଅଁମାନେ ଶ୍ରୀଅଙ୍ଗକୁ ଲାଗି ହେବା ପରେ ତିନିଜଣ ପୂଜାପଣ୍ଡା ମହାସ୍ନାନ ବଢ଼ାନ୍ତି । ସର୍ବାଙ୍ଗ ଲାଗି, ନୂଆ ପତନି ଲୁଗାଲାଗି ଓ ମାଳଫୁଲଲାଗି ହୁଅନ୍ତି । ତା'ପରେ ପାଣି ପଡ଼ି ଟେରା ବନ୍ଧାଯାଏ । ପାଳିଆ ପଢ଼ିଆରୀ (ପ୍ରତିହାରୀ) ତଳିଚ୍ଛ ମହାପାତ୍ର ଓ ପ୍ରଧାନୀ ଘଣ୍ଟ, ଛତା ଓ କାହାଳୀ ସହ ବଲ୍ଲଭ ବଡ଼ସିଂହାର ଭୋଗ ରଥ ଉପରକୁ ଆଣନ୍ତି । ବଡ଼ସିଂହାର ଭୋଗ ଶେଷ ହେବା ପରେ ଯଦି ଅଧିକା ଭୋଗ ହୁଏ ତାହାକୁ 'ବଲ୍ଲଭ ବଡ଼ସିଂହାର' ଭୋଗ କହନ୍ତି । ଏହି ଭୋଗ ଷୋଡ଼ଶ ଉପଚାରରେ ପୂଜାପଣ୍ଡା ପୂଜା କରନ୍ତି । ଏହା ପରେ କର୍ପୂର ଆଳତି ହୁଏ । ତିନିଜଣ ପୂଜାପଣ୍ଡା ତିନି ରଥରୁ ବିଜେ ହୋଇଥିବା ଶୟନ ଠାକୁରଙ୍କୁ ଧରି ଶ୍ରୀମନ୍ଦିର ସାତ ପାହାଚ, ଜଗମୋହନ ଦେଇ ଭଣ୍ଡାର ଘର ଦୁଆରଠାକୁ ନିଅନ୍ତି । ତା'ପରେ ଶୟନଠାକୁରଙ୍କୁ ଶୟନ ଘରେ ଶେଯ ମାଣ୍ଡିରେ ଶୟନ କରାନ୍ତି । ମୁଦିରସ୍ତ ପ୍ରସାଦଲାଗି, ଆରତି ଓ ବନ୍ଦାପନା କରନ୍ତି । ପରେ ଶୟନ ଘର ଦ୍ୱାରକୁ ତଡ଼ାଉକରଣ ମୁଦ ଦିଅନ୍ତି ।

## ଦ୍ୱାଦଶୀ ନୀତିଃ ଅଧରପଣା ଓ ଗରୁଡ଼ ଶୟନ

ମଧ୍ୟାହ୍ନ ଧୂପ ସମାପନ ପରେ ରଥ ଉପରେ ତିନି ଦିଅଁଙ୍କୁ ଅଧରପଣା ଭୋଗ ହୁଏ । ରାଘବ ଦାସ ମଠ, ଓଡ଼ିଆ ମଠ ଓ ଷ୍ଟେଟ୍ (ଶ୍ରୀମନ୍ଦିର ପ୍ରଶାସନ) ତରଫରୁ ଗୋଟିଏ ଗୋଟିଏ ପ୍ରତି ରଥରେ ତିନୋଟି, ଦିଅଁଙ୍କ ଅଧରକୁ ପାଇବା ପରି ଉଚ୍ଚ ଥିବା ତୁମ୍ବ ଭଳି ମାଟି ହାଣ୍ଡିରେ ପଣା ଢ଼ଳାଯାଇ ଭୋଗ ହୁଏ । ସାଚି, ଛେନା, କଦଳୀ, କ୍ଷୀର ଇତ୍ୟାଦି ଦ୍ରବ୍ୟରେ ପଣା ପ୍ରସ୍ତୁତ ହୋଇଥାଏ । ପୂଜାପଣ୍ଡାମାନେ ପଞ୍ଚ ଉପଚାରରେ ପଣା ପୂଜା କରନ୍ତି । ଭୋଗ ପରେ ରଥ ଉପରେ ପଣାହାଣ୍ଡି ଭଙ୍ଗାଯାଏ ।

ଶ୍ରୀମନ୍ଦିରର ଅଧିକାର-ଅଭିଲେଖ (ରେକର୍ଡ଼ ଅଫ୍ ରାଇଟ୍ସ)ରେ ଉଲ୍ଲେଖ ଅଛି ଯେ, ଏକାଦଶୀ ଦିନ ରାଘବ ଦାସ ମଠ ଓ ଓଡ଼ିଆ ମଠ ତରଫରୁ ରଥ ଉପରେ ମଧ୍ୟାହ୍ନ ଧୂପ ପରେ ଅଧରପଣା ଭୋଗ ହୁଏ ଏବଂ ଦ୍ୱାଦଶୀ ଦିନ ପହଣ୍ଡି ପୂର୍ବରୁ ରାଜା-ସୁପରିନ୍‌ଟେଣ୍ଡେଣ୍ଟଙ୍କ ତରଫରୁ ଅଧରପଣା ଭୋଗ ହୁଏ । କିନ୍ତୁ ଅନେକ ବର୍ଷ ହେଲା କେବଳ ଦ୍ୱାଦଶୀ ଦିନ ମଧ୍ୟାହ୍ନ ଧୂପ ପରେ ଅଧରପଣା ଭୋଗ କରାଯାଉଛି । ଦ୍ୱାଦଶୀ ଦିନ ଦିଅଁମାନେ ଶ୍ରୀମନ୍ଦିରକୁ ପ୍ରବେଶ କରୁ ନାହାନ୍ତି । ଅର୍ଥାତ୍ ଉକ୍ତଦିନ ନୀଳାଦ୍ରି ବିଜେ କରାଯାଉ ନାହିଁ । ଦ୍ୱାଦଶୀ ଦିନ ଅଧରପଣା ଭୋଗ ପରେ ତ୍ରୟୋଦଶୀ ଦିନ ନୀଳାଦ୍ରିବିଜେ ହେଉଅଛି । ଏଠାରେ ଉଲ୍ଲେଖ ଯୋଗ୍ୟ ଯେ, ୧୯୮୭ ମସିହାରେ ଅଧରପଣା ନୀତି ଦୁଇ ଦିନରେ ହୋଇଥିଲା । ଅପରିହାର୍ଯ୍ୟ କାରଣରୁ ପ୍ରଥମ ଦିନ ଷ୍ଟେଟ୍ ତରଫରୁ ଓ ଦ୍ୱିତୀୟ ଦିନ (ଅର୍ଥାତ୍ ତ୍ରୟୋଦଶୀ ଦିନ) ଦୁଇମଠ ତରଫରୁ ଅଧରପଣା ଭୋଗ କରାଯାଇଥିଲା । ଫଳରେ ତ୍ରୟୋଦଶୀ ଦିନ ନୀଳାଦ୍ରିବିଜେ ହୋଇ ନପାରି ଚତୁର୍ଦ୍ଦଶୀ ଦିନ ନୀଳାଦ୍ରିବିଜେ ହୋଇଥିଲା । ପରମ୍ପରା ଅନୁସାରେ ନବକଳେବର ରଥଯାତ୍ରାର ଦିନେ ପରେ ଅର୍ଥାତ୍ ତ୍ରୟୋଦଶୀ ପରଦିନ ଚତୁର୍ଦ୍ଦଶୀରେ ନୀଳାଦ୍ରି ବିଜେ କରାଯାଉଛି ।

ଅଧରପଣା ଓ ଗରୁଡ଼ ଶୟନ ନୀତି ଦ୍ୱାଦଶୀରେ ପାଳନ କରାଯାଉଛି । ସଂଧ୍ୟାଧୂପ ପରେ ଗରୁଡ଼ସ୍ତମ୍ଭ ପାଖରେ ପର୍ବଯାତ୍ରା ଯୋଗାଣିଆ ଦେଇଥିବା ମହାସ୍ନାନ ସାମଗ୍ରୀ ସୁଧସୁଆର ପୂଜା ଠା' କରିବା ପରେ ଜଣେ ପୂଜାପଣ୍ଡା ମହାସ୍ନାନ କରାନ୍ତି । ତା'ପରେ ଶୀତଳ ଭୋଗ କରି ଆଳତି ଓ ବନ୍ଦାପନା କରନ୍ତି । ଏଥିପୂର୍ବରୁ 'ହରିଙ୍କ ଶୟନ' ପଲଙ୍କ ଅର୍ଥାତ୍ ପୂର୍ବରୁ ଶୋଇଥିବା ପ୍ରଭୁଙ୍କ ପଲଙ୍କ ତଳେ ଶୋଇବାପାଇଁ ଗରୁଡ଼ଙ୍କୁ ପ୍ରାର୍ଥନା କରାଯାଇ ଶୟନ ଯାତ୍ରା ଶେଷ କରାଯାଏ ।

## ତ୍ରୟୋଦଶୀ ନୀତି : ନୀଳାଦ୍ରି ବିଜେ

ସଂଧ୍ୟା ଧୂପ ଶେଷ ପରେ ବିଜେ କାହାଳୀ, ବାଜି ପହଣ୍ଡି (ଗୋଟି ପହଣ୍ଡି) ଆରମ୍ଭ ହୁଏ । ଗୁଣ୍ଡିଚା ଘରକୁ ଯେଉଁପରି ପହଣ୍ଡି ହୋଇଥାଏ ସେହିପରି ହୁଏ । ରାଘବ ଦାସ ମଠ ଟାହିଆ ଯୋଗାନ୍ତି । ପହଣ୍ଡି ପୂର୍ବରୁ ରତ୍ନ ସିଂହାସନ ତ୍ରିମୁଣ୍ଡିରେ ଚାନ୍ଦୁଆ ବନ୍ଧା ହୋଇଥାଏ । ସୁଦର୍ଶନଙ୍କ ବିଜେ ପରେ ପ୍ରଭୁ ବଳଭଦ୍ର ଓ ଦେବୀ ସୁଭଦ୍ରା ପହଣ୍ଡି ହୋଇ ସିଂହାସନକୁ ଆସନ୍ତି । ଆସିଲା ବେଳେ ଶୁଆଶାରୀ ଦେଉଳଠାରେ ପତି ମହାପାତ୍ର ଘସା ବିଡ଼ିଆ ମଣୋହି ଓ ବନ୍ଦାପନା କରନ୍ତି । ଜଗମୋହନଠାରେ ମଧ୍ୟ ସେହିପରି ନୀତି ହୁଏ । ପ୍ରଭୁ ଜଗନ୍ନାଥ ରଥରୁ ଚାର ଉପରକୁ ଓହ୍ଲାଇଲେ ଲକ୍ଷ୍ମୀଠାକୁରାଣୀ ମହାଜନ ହାତରେ ବିଜେ ହୋଇ ଭେଟ ମଣ୍ଡପଠାରେ ଖଟଶେଯ ମେକାପ ପକାଇଥିବା ଡମ୍ବରୁ ଉପରେ ବିଜେ କରିଥାଆନ୍ତି । ରଥରେ ଶ୍ରୀଜଗନ୍ନାଥଙ୍କର ବନ୍ଦାପନା ହେଲେ ଦେବୀ ଲକ୍ଷ୍ମୀଙ୍କ ବନ୍ଦାପନା ଭିତରଚ୍ଛ ମହାପାତ୍ର କରନ୍ତି । ତା'ପରେ ଦେବୀ ଭଣ୍ଡାର ଘରକୁ ବିଜେ କରନ୍ତି । ଶ୍ରୀଜଗନ୍ନାଥ ସିଂହଦ୍ୱାରକୁ ଆସିବା ପୂର୍ବରୁ ଦରଜା ବନ୍ଦ କରାଯାଏ ଓ ସେ ସିଂହଦ୍ୱାରକୁ ଆସିଲେ, ତାହା ଫିଟାଇ ଦିଆଯାଏ । ଦେବୀଙ୍କ ସହିତ ଆସିବା ଓ ସିଂହଦ୍ୱାର ବନ୍ଦ କାର୍ଯ୍ୟ ପୂର୍ବେ ଦେବଦାସୀ କରୁଥିଲେ । ଦେବଦାସୀ ସେବା ଏବେ ଆଉ ପ୍ରଚଳନ ହେଉନାହିଁ । ଶ୍ରୀଜଗନ୍ନାଥ ଭିତରକୁ ବିଜେ ବେଳେ ଜୟବିଜୟ ଦ୍ୱାର ବନ୍ଦ ଥାଏ । ଦଇତା ଓ ଭିତରପଟେ ଦେବଦାସୀ ମଧ୍ୟରେ ବଚନିକା ହୁଏ । ତା'ପରେ ଉକ୍ତ ଦ୍ୱାର ଖୋଲାଯାଇ ଠାକୁର ଭଣ୍ଡାରକୁ ମୁହଁକରି ଭଣ୍ଡାର ଦ୍ୱାରଠାରେ ବିଜେ କରିଥିବା ଦେବୀ ଲକ୍ଷ୍ମୀଙ୍କ ପାଶରେ ବିଜେ ହେଲେ ରୁକ୍ମିଣୀ ବିବାହକାଳୀନ ଗଇଁଠାଳ ଭିତରଚ୍ଛ ଫିଟାଇ ଦିଅନ୍ତି । ବନ୍ଦାପନା ଓ ଭୋଗ, ରସଗୋଲା ଭୋଗ ହୁଏ । ଘସା ବିଡ଼ିଆ ମଣୋହି ପରେ ଠାକୁର ସିଂହାସନକୁ ବିଜେ କରନ୍ତି ।

ରଥଯାତ୍ରା କାଳ ଏହିପରି ପରିସମାପ୍ତ ହୁଏ । ପରବର୍ତ୍ତୀ ଦିନଠାରୁ ସାଧାରଣ ଦୈନନ୍ଦିନ ନୀତି ହୁଏ ।

(୧୯୯୩ ମସିହାରେ ଭିତରଗାଆଣୀ ଦେବଦାସୀ କୋକିଳପ୍ରଭାଙ୍କ ଦେହାନ୍ତ ପରେ ନୀଳାଦ୍ରି ବିଜେ ଦିନ ଦେବଦାସୀ ସେବା ଏବେ ହେଉ ନାହିଁ । ସିଂହଦ୍ୱାର ଓ ଜୟବିଜୟ ଦ୍ୱାର, ସଂପୃକ୍ତ ପ୍ରତିହାରୀ ଓ ଗୋଛିକାର ସେବକ ଆବଶ୍ୟକତା ଅନୁଯାୟୀ ବନ୍ଦ କରନ୍ତି ଓ ଖୋଲନ୍ତି । ଜୟ ବିଜୟ ଦ୍ୱାରଠାରେ କେବଳ ଶ୍ରୀଜଗନ୍ନାଥଙ୍କ ତରଫରୁ ମହାପ୍ରଭୁଙ୍କର ଜଣେ ବାଡ଼ଗ୍ରାହୀ ଦଇତା ସେବକ ସଂସ୍କୃତ ଭାଷାରେ ବଚନିକା ବୋଲନ୍ତି ।)

## କର୍କଟ ସଂକ୍ରାନ୍ତି ବା ଦକ୍ଷିଣାୟନ ବନ୍ଦାପନା

କର୍କଟ ସଂକ୍ରାନ୍ତି ଦିନ ଶ୍ରୀଜୀଉମାନଙ୍କର ସକାଳ ଧୂପ ଓ ଭୋଗ ମଣ୍ଡପ ଧୂପ ଶେଷ ପରେ ମଇଲମ ଓ ଭିତରେ ପାଣିପଡ଼ି ମହାସ୍ନାନ କରାଯାଏ । ତିନିବାଡ଼ରେ ଦିଅଁଙ୍କୁ ବୋଇରାଣି ବସ୍ତ୍ର ଲାଗି କରାଯାଏ । ପୂଜାପଣ୍ଡା, ପତି ମହାପାତ୍ର ଓ ମୁଦିରସ୍ତ ସିଂହାସନ ଉପରକୁ ଉଠି ଚନ୍ଦନ ସର୍ବାଙ୍ଗ ଲାଗି କରାନ୍ତି । ତା'ପରେ ପୁଷ୍ପାଳକ ବେଶ ବଢ଼ାଇ ସିଂହାସନରୁ ଓହ୍ଲାଇ ଆସନ୍ତି । ତା'ପରେ ପାଣି ପଡ଼ି ଦ୍ୱିପ୍ରହର ଧୂପ ଉଠେ । ଘଣ୍ଟ, ଛତା, କାହାଳୀ ସହ ରୋଷରୁ ତଳିଛ ଓ ପ୍ରଧାନୀ ହାତପୈଠ ହୋଇ ଭୋଗ ଛାମୁକୁ ଆସେ । ଭୋଗ ଉଠିଲେ ଶ୍ରୀଅଙ୍ଗରେ ମୁଦିରସ୍ତ ପ୍ରସାଦ ଲାଗି କରନ୍ତି । ତିନିଜଣ ପୂଜାପଣ୍ଡା ପୂଜାରେ ବସି ଟେରା ପଡ଼ିବା ପରେ ପ୍ରସ୍ତୁତ ବଳିଭାତରୁ ଅନ୍ନ ବଳି, ଜଣେ ପୂଜାପଣ୍ଡା, ପତ୍ରୀ ଓ ସୁଆରବଡୁ ବାହାରକୁ ଆସି ମନ୍ଦିର ଚାରିପଟେ ଦିଅନ୍ତି । ତା'ପରେ ଭିତରେ ପୂଜା ବଢ଼ିଲେ ଟେରା ଫିଟି ଆଳତି ହୁଏ । ଭୋଗ ବାହାରି ପାଣିପଡ଼ିବା ପରେ ପୂଜାପଣ୍ଡା, ପତି ମହାପାତ୍ର ଓ ମୁଦିରସ୍ତ ବନ୍ଦାପନା କରନ୍ତି । ରଥ ଉପରେ ଠାକୁର ଥିବା ସମୟରେ ଏ ସଂକ୍ରାନ୍ତି ପଡ଼ିଲେ ବି ଏହି ନୀତି ରଥ ଉପରେ ହୁଏ । କିନ୍ତୁ ଅନ୍ନ ବଦଳରେ ଶୁଖିଲା ଚାଉଳ ଓ ବିରିରେ ବଳି ହୁଏ । ଦିଅଁଙ୍କୁ ଶୁଖିଲା ଭୋଗ ନୈବେଦ୍ୟ ହୋଇଥାଏ । ଗୁଣ୍ଡିଚା ଘରେ ଦିଅଁମାନେ ଥିବାବେଳେ ସଂକ୍ରାନ୍ତି ପଡ଼ିଲେ ସେଠାରେ ଶ୍ରୀମନ୍ଦିର ପରି ନୀତି ହୁଏ ।

## ଚିତାଲାଗି ଅମାବାସ୍ୟା

ଶ୍ରାବଣ ଅମାବାସ୍ୟା ଦିନ ହୁଏ । ସକାଳ ଧୂପ ପୂଜା ବସିଥିବା ବେଳେ ଭଣ୍ଡାର ମେକାପ ମୁଦ ହୋଇଥିବା ହୀରାଚିତା ତିନିଗୋଟା ଆଣି ବେହରଣଠାରେ ତଡ଼ଉ, ଦେଉଳକରଣ ଓ ପ୍ରାଶାସନିକ ଅଧିକାରୀଙ୍କ ମାର୍ଫତରେ ଦିଅନ୍ତି । ଶ୍ରୀମନ୍ଦିର ବଣିଆ ସେବକ ସେମାନଙ୍କ ଉପସ୍ଥିତିରେ ଚିତାମାନ ମାଜି ସଫା କରନ୍ତି । ସକାଳ ଧୂପ ଓ ଭୋଗ ମଣ୍ଡପ ପରେ ପୁଷ୍ପାଳକ ତିନିବାଡ଼ରୁ 'ଝୋବାକଣ୍ଠି' ଅଳଙ୍କାର ମଇଲମ କରି ପାଳିଆ ମେକାପଙ୍କୁ ଦିଅନ୍ତି । ସେ ଉକ୍ତ ଅଳଙ୍କାରମାନ ଭଣ୍ଡାର ମେକାପଙ୍କୁ ଦିଅନ୍ତି । ପୁଷ୍ପାଳକମାନେ ଲକ୍ଷ୍ମୀ ଓ ସରସ୍ୱତୀ (ଶ୍ରୀଦେବୀ ଓ ଭୂଦେବୀ)ଙ୍କୁ ଖଟ ଶେଯ ଘରେ ବିଜେ କରାନ୍ତି । ଏହା ପରେ ପାଳିଆ ଖୁଣ୍ଟିଆ ଦଇତାପତିମାନଙ୍କୁ ଡାକନ୍ତି । ସେମାନଙ୍କ ସାଥିରେ ପାଳିଆ ମେକାପ ଥାଆନ୍ତି । ବାଡ଼ଗ୍ରାହୀ ଦଇତା ଓ ପତି ତିନିବାଡ଼ରେ ସିଂହାସନ ଉପରକୁ ଉଠି ଚିତାଲାଗି କରନ୍ତି । ଏଥିପାଇଁ ଅଣସର ସୁଧ ସୁଆର ଓଷୁଅ ଓ ପାଟରା ବିଶୋଇ ପାଟ ଡୋର ଯୋଗାନ୍ତି । ଚିତାଲାଗି ହେବା ପରେ ପାଳିଆ ମେକାପ ସିଂହାସନ ଉପର ଧୁଅନ୍ତି । ସୁଧ ସୁଆର ମହାସ୍ନାନ ପୂଜା ଠା' କରନ୍ତି । ତିନିଜଣ ପୂଜାପଣ୍ଡା ଆସି ମହାସ୍ନାନ ପୂଜା କରନ୍ତି । ତା'ପରେ ଭିତରେ ପାଣି ପଡ଼ି ଧୋପଖାଳ ହେବା ପରେ ପୁଷ୍ପାଳକମାନେ ଆସି ମଇଲମ କରନ୍ତି । ସେମାନେ ଖଟଶେଯ ଘରେ ଥିବା ଶ୍ରୀଦେବୀ ଓ ଭୂଦେବୀଙ୍କୁ ନେଇ ସିଂହାସନରେ ବିଜେ କରାନ୍ତି । ମାଳ ଫୁଲ ଇତ୍ୟାଦି ଲାଗି ହେବା ପରେ ଓ ବେଶ ବଢ଼ିବା ପରେ ଦିଅଁମାନେ ଛଅ ମୂର୍ତ୍ତି ଅଳଙ୍କାର ଲାଗି ହୁଅନ୍ତି । ଏହା ପରେ ମଧ୍ୟାହ୍ନ ଧୂପ ହୁଏ । ତା' ପରେ ପାଣି ପଡ଼ିଲା ପରେ ପୂଜାପଣ୍ଡା ପତି ମହାପାତ୍ର ଓ ମୁଦିରସ୍ତ ତିନିବାଡ଼ରେ ବନ୍ଦାପନା କରନ୍ତି ।

## ବାଡ଼ି ନୃସିଂହ ବିଜେ

ଶ୍ରାବଣ ଶୁକ୍ଳପକ୍ଷ ଏକାଦଶୀରେ ମଧ୍ୟାହ୍ନ ଧୂପ ପରେ ଦକ୍ଷିଣ ଘରୁ ନୃସିଂହ ପ୍ରତିମା ଶ୍ରୀଜଗନ୍ନାଥଙ୍କ ଆଜ୍ଞାମାଳ ପାଇ ଝୁଲଣ ମଣ୍ଡପ ତଳେ ଥିବା ବିମାନରେ ବିଜେ କରନ୍ତି । ତା'ପରେ ବିମାନବଡୁମାନେ ସିଂହଦ୍ୱାର ଦେଇ ଚାରି ଆଶ୍ରମକୁ ବିମାନ ନିଅନ୍ତି । ଏହି ଚାରି ଆଶ୍ରମ ହେଲା- ମହର୍ଷି ମାର୍କଣ୍ଡେୟ (ମାର୍କଣ୍ଡେଶ୍ୱର ସାହି), ମହର୍ଷି ଅଙ୍ଗିରା (ଦୋଳମଣ୍ଡପ ସାହି), ମହର୍ଷି କଣ୍ଡୁ (ଗଉଡ଼ବାଡ଼ ସାହି) ଓ ମହର୍ଷି ଭୃଗୁ (ବାଲି ସାହି) । ପ୍ରତ୍ୟେକ ଆଶ୍ରମରେ ଶୀତଳ ଭୋଗ ହୁଏ। ତା'ପରେ ଠାକୁର ଫେରିଆସନ୍ତି ।

## ଝୁଲଣ ଯାତ୍ରା

ଏହି ଯାତ୍ରା ଶ୍ରାବଣ ଶୁକ୍ଳ ଦଶମୀଠାରୁ ପ୍ରତିପଦ ଯାଏଁ ସାତ ଦିନ ହୁଏ। ସାତ ଦିନ ପାଳନ ହେବା ବିଧି ଥିବାରୁ ଦଶମୀଠାରୁ ପ୍ରତିପଦ ମଧ୍ୟରେ ତିଥି କ୍ଷୟ ଥିଲେ ନବମୀ ତିଥିରୁ ପାଳନ କରାଯାଇ ପାରେ, କିନ୍ତୁ ଛଅ ଦିନ ଯାତ୍ରା କେବେ ହୁଏ ନାହିଁ।

ଏହି ଯାତ୍ରାର ପ୍ରଥମ ଦିନ ମଧ୍ୟାହ୍ନ ଧୂପ ଶେଷ ହୋଇ ଭିତର ଧୋପଖାଳ ହେବା ପରେ ମଇଲମ ହୁଏ । ତିନି ବାଡ଼ରେ ସର୍ବାଙ୍ଗ ହୋଇ ବେଶ ହୁଏ । ଏହି ସମୟରେ ଲକ୍ଷ୍ମୀ (ଶ୍ରୀଦେବୀ) ଓ ଭୂଦେବୀ ଦକ୍ଷିଣ ଘରେ ଖଟ ଶେଯ ଉପରେ ବିଜେ କଲେ ଦକ୍ଷିଣ ଘରୁ ମଦନମୋହନଙ୍କୁ ଏହାଙ୍କ ସଙ୍ଗେ ବିଜେ କରାଯାଏ । ତା'ପରେ ଏମାନଙ୍କୁ ଅଳଙ୍କାର ଲାଗି ହୁଏ । ଭିତର ବେଶ ବଢ଼ିଲା ପରେ ଶ୍ରୀଜଗନ୍ନାଥଙ୍କର ଉତ୍ତର ଭୁଜରେ ଦୁଇଖଣ୍ଡି ଓ ଦକ୍ଷିଣ ଭୁଜରେ ଖଣ୍ଡିଏ ଏହିପରି ତିନିଖଣ୍ଡି ମାଳା ଆଜ୍ଞାମାଳା ନିମନ୍ତେ ଲାଗି କରାଯାଏ । ଦକ୍ଷିଣ ଘରେ ପାଣି ପଡ଼ି ପୂଜା ଠା' ସରିଲେ ବାହାର ଦେଉଳି ରୋଷରୁ ଭୋଗ ଛାମୁକୁ ଆସେ । ଜଣେ ପୂଜାପଣ୍ଡା ତିନିଗୋଟି ସରାରେ ପ୍ରସ୍ତୁତ ଥିବା ତିନିଗୋଟି ମାଣ୍ଡୁଅ ସର୍ପାମଣୋହି (ସମର୍ପଣ) କରନ୍ତି । ଏହା ପରେ ଦକ୍ଷିଣଘରର ଅନ୍ୟ ଠାକୁରମାନଙ୍କର ଭୋଗ ବଢ଼ିଥାଏ । ତା'ପରେ ଲକ୍ଷ୍ମୀ, ଭୂଦେବୀ ଓ ମଦନମୋହନଙ୍କୁ ମହାଜନମାନେ ଭିତର ସିଂହାସନକୁ ବିଜେ କରାନ୍ତି । ତିନି ବାଡ଼ରେ କର୍ପୂର ଲାଗି ପରେ ସଂଧ୍ୟା ଆଳତି ହୋଇଥାଏ । ପରେ ଜଣେ ପୂଜାପଣ୍ଡା ମହାପ୍ରଭୁଙ୍କ ଦକ୍ଷିଣ ଭୁଜରୁ ଆଜ୍ଞାମାଳ ମଦନମୋହନଙ୍କୁ ଓ ବାମ ଭୁଜରୁ ଆଜ୍ଞାମାଳ ଲକ୍ଷ୍ମୀ ଓ ଭୂଦେବୀଙ୍କୁ ଦିଅନ୍ତି । ଛାମୁ ଦିହୁଡ଼ି ସହ ଏହି ତିନି ଦେବଦେବୀଙ୍କୁ ମହାଜନମାନେ ଜଗମୋହନ ଦେଇ ବଟଦ୍ୱାର ବାଟେ ଝୁଲଣ ମଣ୍ଡପ ଦୋଳି ଉପରେ ବିଜେ କରାନ୍ତି । ମୁକ୍ତି ମଣ୍ଡପରେ ଝୁଲଣ କୁଞ୍ଜ ଓ ଝୁଲଣ ଦୋଳା ନିର୍ମାଣ କରାଯାଇଥାଏ । ଦୋଳାରେ ଦେବଦେବୀ ବିଜେ କରିବା ପରେ ବିଡ଼ିଆ ମଣୋହି ହୁଏ ଓ ଦେବଦେବୀ ଦୋଳି ଖେଳନ୍ତି । ସଂଧ୍ୟାଧୂପ ଶେଷ ପରେ ଝୁଲଣ ମଣ୍ଡପ କୁଞ୍ଜରେ ପାଣି ପଡ଼ି ଟେରା ବନ୍ଧା ଯାଇ ଶୀତଳ ଭୋଗ ଜଣେ ପୂଜାପଣ୍ଡା ପଞ୍ଚ ଉପଚାରରେ କରନ୍ତି । ଭୋଗ ଶେଷ ପରେ ମୁଦିରସ୍ତ ବନ୍ଦାପନା କରନ୍ତି । ଭିତରେ ଚନ୍ଦନଲାଗି ନୀତି ପରେ ମହାଜନମାନେ ମଇଲମ କରି ମଦନମୋହନଙ୍କୁ ଦକ୍ଷିଣ ଘରକୁ ଓ ଦୁଇ ଠାକୁରାଣୀଙ୍କୁ ରତ୍ନ ସିଂହାସନକୁ ବିଜେ କରାଇ ନିଅନ୍ତି ।

ଏହି ଝୁଲଣ ଯାତ୍ରା ଅଷ୍ଟାଦଶ ଶତାବ୍ଦୀର ଶେଷ ଭାଗରୁ ଆରମ୍ଭ ହୋଇଥିବା ଜଣାଯାଏ । ଏହି ସାତ ଦିନର ଯାତ୍ରା ମଧ୍ୟରେ ଝୁଲଣ ଏକାଦଶୀ ଓ ଝୁଲଣ ପୂର୍ଣ୍ଣିମାରେ ସ୍ୱତନ୍ତ୍ର ପର୍ବ ଥିବାରୁ ତାହା ନିମ୍ନରେ ସ୍ୱତନ୍ତ୍ର ଭାବରେ ଉଲ୍ଲେଖ କରାଯାଉଛି ।

## ଶ୍ରାବଣ ଶୁକ୍ଳ ଏକାଦଶୀ (ଝୁଲଣ ଏକାଦଶୀ)

ଝୁଲଣ ଏକାଦଶୀରେ ଏକାଦଶୀ ବେଢ଼ା ଥିବାରୁ ମଦନମୋହନ ଭିତର ସର୍ବାଙ୍ଗକୁ ବିଜେ କରନ୍ତି ନାହିଁ । ସର୍ବାଙ୍ଗ ନୀତି ପରେ ଶ୍ରୀଦେବୀ ଓ ଭୂଦେବୀ ବେହରଣ (ଦକ୍ଷିଣ ଘର ଦ୍ୱାର) ଉପରକୁ ବିଜେ ହୁଅନ୍ତି । ଦକ୍ଷିଣ ଘର ଭୋଗ ଶେଷ ହେଲେ ଓ ଭିତର ବେଶ ବଢ଼ିଲେ ମଦନମୋହନ ଓ ଦୁଇ ଠାକୁରାଣୀ ସିଂହାସନକୁ ଯାଆନ୍ତି । ମହାପ୍ରଭୁଙ୍କ ଶ୍ରୀଅଙ୍ଗରୁ ଆଜ୍ଞାମାଳ ଜଣେ ପୂଜାପଣ୍ଡା ଆଣି ମଦନମୋହନଙ୍କୁ ଦେବା ପରେ ମଦନମୋହନ ମୁକ୍ତିମଣ୍ଡପ ପାଖରେ ଥିବା ପାଲିଙ୍କିରେ ବିଜେ ହୋଇ ସଂପୃକ୍ତ ସେବକମାନଙ୍କଦ୍ୱାରା ଶ୍ରୀମନ୍ଦିର ଚାରିପଟେ ଗୋଟିଏ ଥର ବେଢ଼ା କରନ୍ତି । ତା'ପରେ ଜୟ ବିଜୟ ଦ୍ୱାରଠାରେ ମଦନମୋହନଙ୍କର ଏକାଦଶୀ ଭୋଗ ଓ ବନ୍ଦାପନା ହୁଏ । ଏହା ଶେଷ ହେଲେ ଦୁଇ ଠାକୁରାଣୀ ସେଠାକୁ ବିଜେ ହୋଇ ଆସିଲା ପରେ ମଦନମୋହନଙ୍କ ସହିତ ତିନି ଠାକୁର ଓ ଠାକୁରାଣୀ ଝୁଲଣ ମଣ୍ଡପକୁ ବିଜେ କରନ୍ତି ଓ ପୂର୍ବ ବର୍ଣ୍ଣନାମତେ ଝୁଲଣ ପୂର୍ଣ୍ଣିମା ନୀତି ହୁଏ ।

## ଝୁଲଣ ପୂର୍ଣ୍ଣିମା (ବଳଭଦ୍ର ଜନ୍ମ)

ଝୁଲଣ ଯାତ୍ରା କାଳରେ ପଡୁଥିବା ଶ୍ରାବଣ ପୂର୍ଣ୍ଣିମାକୁ 'ଝୁଲଣ ପୂର୍ଣ୍ଣିମା' କୁହାଯାଏ । ଏହା ମଧ୍ୟ ଗହ୍ମାପୂର୍ଣ୍ଣିମା । ଏହା ଶ୍ରୀମନ୍ଦିରର ଏକ ବିଶିଷ୍ଟ ଦିନ । ଏହି ଦିନ ବଳଭଦ୍ର ଠାକୁରଙ୍କ ଜନ୍ମ ନୀତି ପାଳନ କରାଯାଏ ।

ଏହି ଦିନ ଭୋଗମଣ୍ଡପ ଶେଷ ହେବା ପରେ ତିନିବାଢ଼ରେ ମଇଲମ ହୋଇ ମହାସ୍ନାନ ହୁଏ । ପରେ ତିନିବାଢ଼ରେ ପୂଜାପଣ୍ଡା, ପତି ମହାପାତ୍ର ଓ ମୁଦିରସ୍ତଙ୍କଦ୍ୱାରା ସର୍ବାଙ୍ଗ ନୀତି ହୁଏ । ତା'ପରେ ଦିଅଁମାନେ ବୋଇରାଣୀ ପତନି ନୂଆ ଲୁଗା ଲାଗି ହୁଅନ୍ତି ଓ ଦ୍ୱିପ୍ରହର ଧୂପପାଇଁ ବେଶ ହୁଅନ୍ତି । ଏହି ବେଶରେ ତିନି ଖଣ୍ଡ ଆଜ୍ଞାମାଳ (ଦକ୍ଷିଣ ଭୁଜ -୧ , ବାମ ଭୁଜ-୨ ) ମହାପ୍ରଭୁ ଲାଗି ହୋଇଥାନ୍ତି । ଚାରିଟି ପାଟ ରାକ୍ଷୀ ଓ ଗୁଆର ମାଳି ଲାଗି ହୁଏ । ପାଣି ପଡ଼ି ଭିତର ଧୋପଖାଳ ହୁଏ । ସିଂହାସନ ତଳେ ବଳଭଦ୍ର ଠାକୁରଙ୍କ ବାଡ଼ ଆଡ଼େ ଷଷ୍ଠୀ ମାର୍କଣ୍ଡି ଓ ବରୁଣ ପୂଜାର ଠା' ସୁଧ ସୁଆର କିମ୍ବା ଆସ୍ଥାନ ପଡ଼ିଆରୀ କରନ୍ତି । ପୂଜାପଣ୍ଡା, ପତି ମହାପାତ୍ର ଓ ମୁଦିରସ୍ତ ଏହି ପୂଜା କରନ୍ତି । ଏହି ପୂଜା ଶେଷ ପରେ ଭିତର ପାଣି ପଡ଼ି ଧୋପଖାଳ ହୁଏ । ଏହା ପରେ ଦ୍ୱିପ୍ରହର ଧୂପ ସହ ଯାତ୍ରାଙ୍ଗୀ ଭୋଗ ଛାମୁକୁ ଆସେ । ପୂଜାପଣ୍ଡା ତିନି ଜଣ ଷୋଡଶ ଉପଚାରରେ ପୂଜା କରନ୍ତି । ମଣୋହି ପରେ ଟେରାଫିଟା ଆଳତି ହୁଏ । ସୁଧ ସୁଆର ବଡ଼ବାଡ଼ (ବଳଭଦ୍ରଙ୍କ ବାଡ଼)ରେ ମଙ୍ଗଳାର୍ପଣ ସାମଗ୍ରୀ ରଖନ୍ତି । ପୂଜାପଣ୍ଡା ବଡ଼ ବାଡ଼ରେ ମଙ୍ଗଳାର୍ପଣ କରନ୍ତି । ପୂଜାପଣ୍ଡା, ପତି ମହାପାତ୍ର ଓ ମୁଦିରସ୍ତ ତିନି ବାଡ଼ରେ ବନ୍ଦାପନା କରନ୍ତି । ଏହା ପରେ ମହାଜନେ ମଦନମୋହନଙ୍କୁ

ରତ୍ନ ସିଂହାସନକୁ ବିଜେ କରାନ୍ତି । ପୂଜାପଣ୍ଡା ଆଜ୍ଞାମାଳ ଦେଲା ପରେ ଶ୍ରୀଦେବୀ, ଭୂଦେବୀ ଓ ମଦନମୋହନ ଝୁଲଣମଣ୍ଡପକୁ ବିଜେ କରନ୍ତି । ଏହାପରେ ସୁଦର୍ଶନଙ୍କ ବିଜେ ପାଇଁ ଦଇତାପତିମାନଙ୍କୁ ଡକାଯାଏ । ଦଇତାପତିମାନେ ସିଂହାସନକୁ ଉଠନ୍ତି । ଜଗନ୍ନାଥଙ୍କ ଶ୍ରୀଅଙ୍ଗରୁ ଗୋଟିଏ ଆଜ୍ଞାମାଳ ସୁଦର୍ଶନ ପାଆନ୍ତି । ଦଇତାମାନେ ସୁଦର୍ଶନଙ୍କୁ ଜଗମୋହନରେ ଥିବା ଚଉଦୋଳରେ ବସାନ୍ତି । ସେଠାରେ ପାଟପତନି, ଚୂଳ ଲାଗି କରାଯାଏ । ଏହାପରେ ବିମାନବଡୁମାନେ ସୁଦର୍ଶନଙ୍କୁ ଚଉଦୋଳରେ ନେଇ ଝୁଲଣ ମଣ୍ଡପରେ ବିଜେ କରାନ୍ତି । ସେଠାରେ ସୁଦର୍ଶନଙ୍କୁ ସୁବର୍ଣ୍ଣ କମରପଟି ଓ ହରଡ଼ମାଳ ଲାଗି କରାଯାଏ । ତା'ପରେ ବିମାନବଡୁମାନେ ସୁଦର୍ଶନଙ୍କୁ ବିମାନରେ ନେଇ ମାର୍କଣ୍ଡଙ୍କ ଠା'କୁ ଯାଆନ୍ତି ଓ ସେଠାରେ ମଣ୍ଡପ ଉପରେ ବିଜେ କରାନ୍ତି । ଏଠାରେ ସୁଧ ସୁଆର ଚିକିଟା ମାଟିରେ ବଳଭଦ୍ର ମୂର୍ତ୍ତି ନିର୍ମାଣ କରନ୍ତି । ପୂଜାପଣ୍ଡା ଉକ୍ତ ମୂର୍ତ୍ତିକୁ ଜୀବନ୍ୟାସ ଦେଇ ଜାତକର୍ମ କରନ୍ତି । ମୁଦିରସ୍ତ ପ୍ରସାଦ ଲାଗି କରନ୍ତି । ପୂଜାପଣ୍ଡା ପଞ୍ଚ ଉପଚାରରେ ଶୀତଳ ମଣୋହି କରାନ୍ତି । ତା' ପରେ ବନ୍ଦାପନା ହୋଇ, ବଳଭଦ୍ର ପିତୁଳାକୁ ଜଳରେ ବିସର୍ଜନ କରାଯାଏ । ଏହା ପରେ ବିମାନବଡୁମାନେ ବିମାନରେ ସୁଦର୍ଶନଙ୍କୁ ନେଇ ଚାରି ଆଶ୍ରମ, ନଗର ଭ୍ରମଣ କରାଇ ଶ୍ରୀମନ୍ଦିରକୁ ବିଜେ କରାନ୍ତି । ସୁଦର୍ଶନ ରତ୍ନ ସିଂହାସନକୁ ବିଜେ କରିବା ପରେ ପାଳିଆ ମେକାପ ସିଂହାସନ ଧୁଅନ୍ତି । ସୁଧ ସୁଆର ଚାରି ବାଡ଼ରେ ସିଂହାସନ ତଳେ ମହାସ୍ନାନ ପୂଜା ଠା' କରନ୍ତି । ଚାରିଜଣ ପୂଜାପଣ୍ଡା ଆସି ମହାସ୍ନାନ ବଢ଼ାନ୍ତି । ମହାସ୍ନାନ ପରେ ପୁଷ୍ପାଳକମାନେ ମଇଲମ କରି ଦିଅଁମାନଙ୍କର ବେଶ ବଢ଼ାନ୍ତି । ତା'ପରେ ସିଂହାସନରୁ ଓହ୍ଲାଇ ସଂଧ୍ୟା ଆଳତି କରନ୍ତି । ଏହା ପରେ ଧୋପଖାଳ ହୋଇ ସୁଆରବଡୁ ଥାଳି ପକାଇବା ପରେ ପାଳିଆ ପ୍ରତିହାରୀ ରୋଷକୁ ସଂଧ୍ୟା ଧୂପ ଡାକିଯାଏ । ରୋଷରୁ ଭୋଗ ଆସିବା ପରେ ପତ୍ରିବଡୁ ଚାରିବାଡ଼ରେ ପୂଜା ଠା' କରନ୍ତି । ଚାରିଜଣ ପୂଜାପଣ୍ଡା ଷୋଡ଼ଶ ଉପଚାରରେ ପୂଜା କରନ୍ତି । ତିନିଜଣ ପୂଜାପଣ୍ଡା ସିଂହାସନ ଉପରେ ବସନ୍ତି ଓ ଜଣେ ତଳେ ସୁଦର୍ଶନଙ୍କ ବାଡ଼ରେ ବସନ୍ତି । ସଂଧ୍ୟା ଧୂପ ସମାପ୍ତି ପରେ ସୁଦର୍ଶନଙ୍କ ବାଡ଼ରେ ବନ୍ଦାପନା ହୁଏ । ମୁଦିରସ୍ତ ସୁଦର୍ଶନଙ୍କ ଶ୍ରୀଅଙ୍ଗରେ ପ୍ରସାଦ ଲାଗି କରନ୍ତି । ଏହା ପରେ ଅନ୍ୟାନ୍ୟ ଦୈନନ୍ଦିନ ନୀତି ହୁଏ ।

## ରାହୁରେଖା ଲାଗି (ରେଖା ପଞ୍ଚମୀ)

ଭାଦ୍ରବ ମାସ କୃଷ୍ଣପକ୍ଷ ପଞ୍ଚମୀ ଦିନ ବଲ୍ଲଭ ଭୋଗ ଶେଷ ପରେ ଭଣ୍ଡାର ମେକାପ ଭଣ୍ଡାର ଘରେ ମୁଦ ହୋଇଥିବା ସୁବର୍ଣ୍ଣ ରାହୁରେଖା, ଦେଉଳକରଣ, ତଡ଼ଉକରଣ ଓ ଶ୍ରୀମନ୍ଦିରର ପ୍ରାଶାସନିକ ଅଧିକାରୀଙ୍କ ଉପସ୍ଥିତିରେ ବାହାର କରି ଆଣି ବେହରଣ କିମ୍ବା ମାଜଣା ମଣ୍ଡପରେ ଉପସ୍ଥିତ ଥିବା ବଣିଆଙ୍କୁ ସଫା କରିବାକୁ ଦିଅନ୍ତି । ଏ ସମସ୍ତଙ୍କ ଉପସ୍ଥିତିରେ ବଣିଆ ରାହୁରେଖା ତିନିଟି ସଫା କରନ୍ତି । ଭୋଗମଣ୍ଡପ ସରିବା ପରେ ପାଳିଆ ପ୍ରତିହାରୀ ଜୟ ବିଜୟ ଦ୍ୱାର ବନ୍ଦ କରିବେ । ପାଳିଆ ପୁଷ୍ପାଳକମାନେ ଠାକୁରମାନଙ୍କର ଝୋବାକଣ୍ଠି ଅଳଙ୍କାର ମଇଲମ କରିବେ ଓ ଶ୍ରୀଦେବୀ, ଭୂଦେବୀଙ୍କୁ ନେଇ ଖଟଶେଯ ଘରେ ବିଜେ କରାଇବେ । ଅଣସର ସୁଧ ସୁଆର

ସିଂହାସନ ତଳେ ଓଷୁଅ ପ୍ରସ୍ତୁତ କରି ରଖିବେ । ପରେ ପରେ ଦଇତାପତିମାନେ ଆସି ଗୋଡ଼ହାତ ଧୋଇ ସିଂହାସନ ଉପରକୁ ଉଠିବେ । ପାଳିଆ ମେକାପ ବାଡ଼ ବାଡ଼ କରି ରାହୁରେଖା ପତି ମହାପାତ୍ରଙ୍କୁ ଦେଲେ ସେ ସଂସ୍କାର କରି ବାଡ଼ଗ୍ରାହୀ ଦଇତାଙ୍କୁ ଦେବେ । ତା'ପରେ ସମସ୍ତ ଦଇତା ମିଶି ଓଷୁଅ ଓ ବଇତମ (ଛିଣ୍ଡା କପଡ଼ା)ରେ ରୁନ୍ଧା କାର୍ଯ୍ୟ କରିସାରି ସିଂହାସନରୁ ଓହ୍ଲାଇ ଆସନ୍ତି। ସିଂହାସନ ପୋଛା ସରି ମହାସ୍ନାନ ପୂଜା ଠା' ହେଲେ ପୂଜାପଣ୍ଡା ଆସି ପୂଜା ବଢ଼ାନ୍ତି। ତା ପରେ ଶ୍ରୀଦେବୀ ଓ ଭୂଦେବୀ ଖଟଶେଯ ଘରୁ ଆସି ସିଂହାସନରେ ବିଜେ କଲେ ମଇଲମ ହୋଇ ବେଶ ବଢ଼େ । ମଧ୍ୟାହ୍ନ ଧୂପ ପରେ ପାଣି ପଡ଼ିବା ଉତ୍ତାରେ ପଣ୍ଡା, ପତି ଓ ମୁଦିରସ୍ତ ତିନିବାଡ଼ରେ ବନ୍ଦାପନା କରନ୍ତି । ଏହା ପରେ ଅନ୍ୟାନ୍ୟ ଦୈନନ୍ଦିନ ନୀତି ପାଳିତ ହୁଏ ।

ସୁବର୍ଣ୍ଣ ରାହୁରେଖାମାନଙ୍କର ଓଜନ ହେଲା- ଶ୍ରୀବଳଭଦ୍ରଙ୍କର ପ୍ରାୟ ୯୬ ତୋଳା, ଦେବୀଙ୍କର ପ୍ରାୟ ୭୬ ତୋଳା, ଶ୍ରୀଜଗନ୍ନାଥଙ୍କର ପ୍ରାୟ ୧୩୫ ତୋଳା।

## ଶ୍ରୀକୃଷ୍ଣ ଜନ୍ମ, ନନ୍ଦୋତ୍ସବ ଓ କୃଷ୍ଣଲୀଳା

ଜନ୍ମାଷ୍ଟମୀ ପୂର୍ବଦିନ ଅର୍ଥାତ୍ ଭାଦ୍ରବ କୃଷ୍ଣପକ୍ଷ ସପ୍ତମୀ ଦିନ ସଂଧ୍ୟା ଆଳତି ବେଶରେ ତିନି ଦିଅଁ ଛଅ ମୂର୍ତ୍ତି ସୁନା ଅଳଙ୍କାର ଲାଗି ହୁଅନ୍ତି । ଏହା ପରେ ପାଣି ପଡ଼ି ଟେରା ବନ୍ଧାଯାଇ ସଂଧ୍ୟା ଧୂପ ଛେକ ଛାମୁକୁ ଆସେ । ସଂଧ୍ୟା ଧୂପ ପୂଜା ପରେ ଭିତରେ ପାଣିପଡ଼ି ଧୋପଖାଳ ପରେ ଜୟ ବିଜୟ ଦ୍ୱାର ବନ୍ଦ ହୁଏ । ଟେରା ବନ୍ଧା ହୋଇ ଅଣସର ପିଣ୍ଡିଠାରେ ଜେଉଡ଼ (ଜେଉଟ) ଭୋଗ (ଶାଗ, ତରକାରି, ପିଠା, ଝିଲି, ଓରିଆ, ଖିରି ଇତ୍ୟାଦି) ରୋଷରୁ ଆସି ରଖାହୁଏ । ମୁଦିରସ୍ତ ଶ୍ରୀଅଙ୍ଗରେ ପ୍ରସାଦଲାଗି କରନ୍ତି। ତିନି ଜଣ ପୂଜାପଣ୍ଡା ପଞ୍ଚ ଉପଚାରରେ ପୂଜା କରନ୍ତି । ପାଣି ପଡ଼ି ଧୋପଖାଳ ହେଲା ପରେ ପଣ୍ଡା, ପତି ଓ ମୁଦିରସ୍ତ ତିନି ବାଡ଼ରେ ବନ୍ଦାପନା କରନ୍ତି । ଗୋଟିଏ ଅଧିକ ବନ୍ଦାପନା ଶ୍ରୀଜଗନ୍ନାଥଙ୍କ ବାଡ଼ରେ ହୁଏ । ଏହାକୁ 'ଗର୍ଭଉଦକ ବନ୍ଦାପନା' କହନ୍ତି । ତା'ପରେ ଅନ୍ୟାନ୍ୟ ଦୈନନ୍ଦିନ ନୀତି ହୁଏ ।

ଭାଦ୍ରବ କୃଷ୍ଣ ପକ୍ଷ ଅଷ୍ଟମୀ ଦିନ ଜନ୍ମାଷ୍ଟମୀ ବ୍ରତ ହୁଏ । ଏହି ଦିନ ସଂଧ୍ୟା ଧୂପ ବେଶରେ ସୁବର୍ଣ୍ଣ ଅଳଙ୍କାର (ଛ' ମୂର୍ତ୍ତି) ଲାଗି କରାଯାଏ । ସଂଧ୍ୟା ଧୂପ ପରେ ଜୟ-ବିଜୟ ଦ୍ୱାର ବନ୍ଦ କରାଯାଏ । ସୁଧସୁଆର ଭଣ୍ଡାର ଦୁଆର ଆଗରେ ପୋଛା ମାରନ୍ତି । ପୂଜାପଣ୍ଡା ପଞ୍ଚବର୍ଣ୍ଣ ମୁରୁଜରେ ସର୍ବତ୍ର ଭଦ୍ରମଣ୍ଡଳ ଆଙ୍କନ୍ତି । ଭିତର ଗମ୍ଭୀରାରେ ଧୋପଖାଳ ହୁଏ । ସୁଧସୁଆର ମଣ୍ଡଳ ପାଖରେ ପୂଜା ଠା' କରନ୍ତି । ପଣ୍ଡା, ପତି ଓ ମୁଦିରସ୍ତ ଜନ୍ମ ଚକଡ଼ାରେ ବସି ସଂକଳ୍ପ ବାକ୍ୟ ପାଠ କରନ୍ତି । ଏହା ପରେ କଳସରେ ବରୁଣ ପୂଜା ହୁଏ। ଚିତ୍ରକର ଗୋଟିଏ କୃଷ୍ଣ ଜନ୍ମପଟି ଦେଇଥିବେ । ବଣିଆ ଦେବା ରୁପା ପଦ୍ମପାଖୁଡ଼ା ମଣ୍ଡଳ ଉପରେ ପୂଜାପଣ୍ଡା ରଖିବେ । ଗୋଟିଏ କୃଷ୍ଣମୂର୍ତ୍ତି (ସୁନାର) ମଣ୍ଡଳ ଉପରେ ରଖିବେ । ଏହା ପରେ ଚକଡ଼ା ଛାମୁରେ ନଅଟି ପନ୍ତି ଭୋଗ ବଢ଼ାଯିବ । କାରଣ ଜନ୍ମପଟି ପାଖୁଡ଼ାରେ ଦେବକୀ, ବସୁଦେବ, ନନ୍ଦ, ଯଶୋଦା, ଲକ୍ଷ୍ମୀ, ଉଗ୍ରସେନ, ବଳଭଦ୍ର, ଗାର୍ଗବ ମୁନିଙ୍କର ଚିତ୍ର ଓ ମଝିରେ କୃଷ୍ଣଙ୍କର ଚିତ୍ର (ନଅଟି) ଅଙ୍କିତ ଥାଏ । ଫୁଲମାଳ ଓ ଚନ୍ଦନ ଲାଗି ହେବ । ପୂଜାପଣ୍ଡା ପଞ୍ଚ ଉପଚାରରେ

ପୂଜା କରିବେ । ଏହା ପରେ ଦକ୍ଷିଣ ଘରୁ ମଦନମୋହନଙ୍କୁ (ଉଲଗ୍ନ କରି) ଆଣି ରତ୍ନ ସିଂହାସନରେ ବିଜେ ପରେ ମହାପ୍ରଭୁଙ୍କ ବାଡ଼ରୁ ମୁଦିରସ୍ତ ମଦନମୋହନଙ୍କୁ ଧଣ୍ଡି ପ୍ରସାଦ ଆଜ୍ଞାମାଳ ଦେବେ । ତା'ପରେ ମହାଜନେ ମଦନମୋହନଙ୍କୁ ଜନ୍ମ ଚକଡ଼ାରେ ବିଜେ କରାଇବେ । ପୂଜାପଣ୍ଡା ଗର୍ଭଉଦକ କର୍ମ କରି ଶୀତଳ ଭୋଗ ଷୋଡ଼ଶ ଉପଚାରରେ କରିବେ । ଏହା ପରେ ଦୁଇଜଣ ମହାଜନ ସେବକ ଲୁଗା ଘୋଡ଼ାଇ ହୋଇ ଦେବକୀ ଓ ବସୁଦେବ ବେଶ ହୋଇ ଜନ୍ମ ଚକଡ଼ାରେ କୃଷ୍ଣଙ୍କୁ ଜନ୍ମ କରାଇବେ । ମୁଦିରସ୍ତ ପ୍ରସାଦ ଲାଗି କଲା ପରେ ଜନ୍ମ ଚକଡ଼ାକୁ ଦୁଧ, ଲହୁଣୀ ଓ ଗଣ୍ଡୂଷ ମସଲା ଆସିଲେ ପୂଜାପଣ୍ଡା ସମର୍ପଣ କରି ମଣୋହି କରନ୍ତି ଓ କର୍ପୂର ଆଳତି କରନ୍ତି । ଏହା ପରେ ରୁପା ଥାଳିରେ କୃଷ୍ଣ (ମଦନମୋହନ) ବିଜେ ହୋଇ ଛାମୁ ଦିହୁଡ଼ି ନଥାଇ, ବିନା ଘଣ୍ଟ ବାଦ୍ୟରେ ଦେବକୀ ବସୁଦେବ (ସେବକ ଦ୍ୱୟ) ସହିତ ସରସ୍ୱତୀଙ୍କ ଦେଉଳ ଆଗକୁ ଯାଆନ୍ତି । ଏହି ସ୍ଥାନକୁ ଯମୁନା ନଦୀ ରୂପେ ବିବେଚନା କରାଯାଏ । ଉଗ୍ରସେନ ବେଶରେ ଜଣେ ପୂଜାପଣ୍ଡା ଦଣ୍ଡ ପ୍ରଣାମ କରିବେ । ଏହା ପରେ ଠାକୁର ଘଣ୍ଟ, ଛତା, କାହାଳୀ ସହିତ ନାଭିକଟା ମଣ୍ଡପରେ ଖଟଶେଯ ଉପରେ ବିଜେ କରିବେ । ଦକ୍ଷିଣ ଘରୁ ଆସି ରାମକୃଷ୍ଣ ଦିଅଁ ଦ୍ୱୟ ଉକ୍ତ ଶେଯରେ ବିଜେ କରନ୍ତି । ଏହା ପରେ ପୂଜାପଣ୍ଡା କୁଶରେ ନାଭିଛେଦନ ଓ ପଞ୍ଚାମୃତରେ ମହାସ୍ନାନ କରିବେ । ତା'ପରେ ପଞ୍ଚୋପଚାର ବିଧିରେ ଶୀତଳ ଭୋଗ ଓ ବନ୍ଦାପନା ହୁଏ । ଏହା ପରେ ମହାଜନେ ଜଗମୋହନରେ ବନ୍ଧା ହୋଇଥିବା ଦୋଳିରେ ରାମକୃଷ୍ଣ ଓ ମଦନମୋହନଙ୍କୁ ବିଜେ କରାଇବେ । ଏଠାରେ ପାଣି ପଡ଼ି, ଟେରାବନ୍ଧା ପରେ ଶୀତଳ ଭୋଗ (ରାଶିକୋରା ଓ ଲଡୁ) ଷୋଡ଼ଶ ଉପଚାରରେ ପୂଜା ହୁଏ । ତା'ପରେ ବନ୍ଦାପନା ହୁଏ । ଭିତରେ ପାଣି ପଡ଼ି ବଡ଼ ସିଂହାର ଭୋଗ ଛେକ ଆସିଲେ ଦୋଳିରେ ଥିବା ରାମକୃଷ୍ଣ ଦୁଇ ମୂର୍ତ୍ତି ଭିତର ରତ୍ନ ସିଂହାସନକୁ ବିଜେ କରିବେ । ମଦନମୋହନ ଦକ୍ଷିଣ ଘରକୁ ବିଜେ କରିବେ । ଏହା ପରେ ଶ୍ରୀଜୀଉଙ୍କର ବଡ଼ ସିଂହାର ଭୋଗ, ପହୁଡ଼ ଆଦି ନୀତି ପାଳିତ ହୁଏ ।

ଜନ୍ମାଷ୍ଟମୀ ପରଦିନ **ନନ୍ଦୋତ୍ସବ** ନୀତି ହୁଏ । ମଙ୍ଗଳ ଆଳତି ପରେ ରାମକୃଷ୍ଣ ଓ ମଦନମୋହନ (ତିନି ଦିଅଁ) ଜଗମୋହନରେ ଦୋଳାରେ ବସନ୍ତି । ସକାଳ ଧୂପ ସମାପ୍ତ ହେବା ପରେ ପାଣିପକା ଭୋଗ ହୁଏ । ଏହି ଦିନ ଭୋଗ ମଣ୍ଡପ ଘର ଓ ଶ୍ରୀଜୀଉଙ୍କ ମଧ୍ୟରେ ଦୋଳା ଥିବାରୁ ଭୋଗମଣ୍ଡପ ଭୋଗକୁ 'ପାଣିପକା ଭୋଗ' କୁହାଯାଏ । ଏହା ପରେ ସଂପୃକ୍ତ ସେବକମାନଙ୍କ ଦ୍ୱାରା ମଇଲମ, ମହାସ୍ନାନ ପୂଜା ଠା', ମହାସ୍ନାନ, ନୂଆ ଲୁଗା ଲାଗି ପରେ ପଣ୍ଡା, ପତି, ମୁଦିରସ୍ତ ସର୍ବାଙ୍ଗ ଲାଗି କରାଇବେ । ଦିଅଁମାନେ ୬ ମୂର୍ତ୍ତି ଅଳଙ୍କାର ଲାଗି ହେବେ । ଦେବୀ ସୁଭଦ୍ରାଙ୍କୁ ଆଜ୍ଞାମାଳ ଖଣ୍ଡିଏ ଲାଗି କରାଇ କର୍ପୂର ଲାଗି କରାଇ ପୁଷ୍ପାଳକ ସିଂହାସନରୁ ଓହ୍ଲାଇବେ । ସୁଭଦ୍ରା ଓ ଜଗନ୍ନାଥଙ୍କ ବାଡ଼ରେ ଷଷ୍ଠୀ ଓ ମାର୍କଣ୍ଡି ପୂଜା ହୁଏ । ଏହା ପରେ ମଧ୍ୟାହ୍ନ ଧୂପର ଛେକ ରୋଷ ଘରୁ ଘଣ୍ଟ, ଛତା ଓ କାହାଳୀ ସହ ତଳୁଛ ଓ ପ୍ରଧାନୀଙ୍କ ହାତ ପୈଠ ହୋଇ ଆସିବ । ମୁଦିରସ୍ତଙ୍କ ପ୍ରସାଦଲାଗି ପରେ ପୂଜାପଣ୍ଡା ପୂଜା କରିବେ । ଧୂପ ଶେଷ ପରେ ଧୋପଖାଳ ହେବ । ପଣ୍ଡା,

ପତି ଓ ମୁଦିରସ୍ତ ଆସି ଜଗନ୍ନାଥଙ୍କ ବାଡ଼ ଓ ସୁଭଦ୍ରାଙ୍କ ବାଡ଼ରେ ମଙ୍ଗଳାର୍ପଣ କରିବେ ଓ ତିନି ବାଡ଼ରେ ବନ୍ଦାପନା କରିବେ। ଏହା ପରେ ଭଣ୍ଡାର ଘରୁ ଦୁର୍ଗା ମୂର୍ତ୍ତିଙ୍କୁ ପତି ମହାପାତ୍ର ବିଜେ କରାଇନେଲେ ସୁଭଦ୍ରାଙ୍କ ଶ୍ରୀଅଙ୍ଗରୁ ପୂଜାପଣ୍ଡା ଆଜ୍ଞାମାଳ ଦିଅନ୍ତି । ପତି ମହାପାତ୍ର ଏହା ପରେ ଦୁର୍ଗାଙ୍କୁ ହାତରେ ବିଜେ କରାଇ ଆଣି ଜଗମୋହନର ଦୋଳି ଆଗରେ ଖଟୁଲି ଉପରେ ବିଜେ କରାଇବେ । ଏଠାରେ ମହାସ୍ନାନ ଓ ଶୀତଳ ଭୋଗ ହେବା ପରେ ବନ୍ଦାପନା ହୋଇ ଦୁର୍ଗାଙ୍କୁ ସାତ ପାହାଚ ଦ୍ୱାରଠାରେ ଡମ୍ବରୁ ଉପରେ ବିଜେ କରାଯାଏ । ଏ ସମୟରେ ବିଜୁଳି କନ୍ୟା ବଧ ଲୀଳା ଅନୁଷ୍ଠିତ ହୁଏ । ଜଣେ ସେବକ କାଠରେ ନିର୍ମିତ ବିଜୁଳି କନ୍ୟାକୁ ଧରି ଫୋପାଡ଼ି ଦିଅନ୍ତି । ଏଠାରେ ଦେବୀଙ୍କର କର୍ପୂର ଆଳତି ହୋଇ ତାଙ୍କୁ ଭଣ୍ଡାରକୁ ବାହୁଡ଼ା ବିଜେ କରାଯାଏ ।

ଏହା ପରେ ଦୋଳିରେ ବସିଥିବା ରାମକୃଷ୍ଣ ଓ ମଦନମୋହନଙ୍କୁ ଖଟ ଉପରେ ବିଜେ କରାଯାଏ । ଏଠାରେ ମାଜଣା ଓ ମାଳଫୁଲ ଲାଗି ପରେ ଦିଅଁଙ୍କୁ ସାତ ପାହାଚ ଦ୍ୱାରରେ ପାଲିଙ୍କିରେ ବସାଇ ଲକ୍ଷ୍ମୀ ମନ୍ଦିରର ଜଗମୋହନରେ ଖଟ ଉପରକୁ ବିଜେ କରାଯାଏ । ଏ ଉତ୍ତାରୁ ଭିତରଚ୍ଛ ମହାପାତ୍ର (ନନ୍ଦ ରାଜା ରୂପରେ) ରାଜାଙ୍କ ନଅରକୁ ଯାଇ ଫେରିଆସି ସ୍ନାନ ମଣ୍ଡପଠାରେ ବସିବେ । ତାଟ ଲେଙ୍କା ଗୋଟିଏ ଦୁହାଁଳୀ ଗାଈ ଲକ୍ଷ୍ମୀମନ୍ଦିର ପାଖକୁ ଆଣନ୍ତି। ଭରତିଆ ଗୌଡ଼ ପୁତ୍ରଜନ୍ମ ସୁସମ୍ବାଦ ନନ୍ଦ ରାଜାଙ୍କୁ (ଭିତରଚ୍ଛଙ୍କୁ) ଦେବ ଓ ନନ୍ଦ ରାଜାଙ୍କ ଲୁଗାଫେରକୁ ଟାଣି ଟାଣି ଲକ୍ଷ୍ମୀଙ୍କ ମନ୍ଦିରଠାକୁ ନେବ । ଏଠାରେ ନନ୍ଦ ରାଜା ଗୋଦୋହନ କରିବେ । ରୁପା ପିଙ୍ଗଣରେ ଦିଅଁମାନଙ୍କୁ ଦୁଧ ସମର୍ପଣ ଓ ପ୍ରସାଦ ଲାଗି କରାଯାଏ । ରାଣିକୋରା ମଣୋହି କରାଯାଏ ଓ ବନ୍ଦାପନା କରାଯାଏ । ନନ୍ଦରାଜା ପୁତ୍ରମାନଙ୍କୁ ଧରି ଜଗମୋହନର ଦୋଳାରେ ବିଜେ କରାଇବା ପରେ ରାମ, କୃଷ୍ଣ ଓ ମଦନମୋହନ ଦକ୍ଷିଣଘରକୁ ବାହୁଡ଼ା ବିଜେ କରନ୍ତି ଓ ନନ୍ଦୋତ୍ସବ ଶେଷ ହୁଏ । ଏହା ପରେ ଭିତର ଠାକୁରମାନଙ୍କର ଅନ୍ୟାନ୍ୟ ନୀତି ବିଧି ଅନୁସାରେ ହୁଏ ।

ଶ୍ରୀମନ୍ଦିରରେ କୃଷ୍ଣ ଲୀଳା ଭାଦ୍ରବ କୃଷ୍ଣପକ୍ଷ ସପ୍ତମୀଠାରୁ ଆରମ୍ଭ ହୋଇ ଶୁକ୍ଳପକ୍ଷ ଦଶମୀ ଯାଏଁ ପାଳନ କରାଯାଏ । ସପ୍ତମୀ ତିଥିରେ ଜେଉଡ଼ / ଜେଉଟ ଭୋଗ, ଅଷ୍ଟମୀରେ ଶ୍ରୀକୃଷ୍ଣ ଜନ୍ମ, ନବମୀରେ ନନ୍ଦୋତ୍ସବ, ଦଶମୀରେ ବନଭୋଜି ବେଶ, କୋଳି ବିକା, ବକାସୁର ଓ ଅର୍ଘାସୁର ବଧ, ଏକାଦଶୀରେ କାଳୀୟଦଳନ ବେଶ, ଧେନୁକାସୁର ବଧ, ଦ୍ୱାଦଶୀରେ ପ୍ରଳମ୍ବାସୁର ବଧ, ତ୍ରୟୋଦଶୀରେ କୃଷ୍ଣ ବଳରାମ ବେଶ, ଅମାବାସ୍ୟା (ସପ୍ତପୁରୀ ଅମାବାସ୍ୟା)ରେ ବସ୍ତ୍ର ହରଣ, ଭାଦ୍ରବ ଶୁକ୍ଳ ପ୍ରତିପଦରେ ଦାବାଗ୍ନି, ଦ୍ୱିତୀୟାରେ ନିକୁଞ୍ଜ ଲୀଳା, ତୃତୀୟାରେ ଅନ୍ଧ ଲୀଳା, ପଞ୍ଚମୀରେ ଦାହ ଲୀଳା, ଷଷ୍ଠୀରେ ବିମ୍ବାସୁର ବଧ, ସପ୍ତମୀରେ କେଶୀ ବଧ, ଦଶମୀରେ ଲବଣିଖିଆ, ମଥୁରା ହାଟ ଯୁର ଓ କଂସବଧ ହୋଇ କୃଷ୍ଣଲୀଳାର ପରିସମାପ୍ତି ହୁଏ । ଏହି କୃଷ୍ଣ ଲୀଳାରେ ପୁରୀର ବିଭିନ୍ନ ସାହି ଲୋକେ ଯଥାଃ ବାଲି ସାହି, ହରଚଣ୍ଡୀ ସାହି, କୁଣ୍ଡାଇବେଣ୍ଟ ସାହି, ଦୋଳ ମଣ୍ଡପ ସାହି, ଗୌଡ଼ବାଡ଼ ସାହି, କାଳିକାଦେବୀ ସାହି, ମାଟି ମଣ୍ଡପ ସାହି, ବାସେଳି ସାହି, ମାର୍କଣ୍ଡେଶ୍ୱର ସାହି ଅଂଶଗ୍ରହଣ କରନ୍ତି । ଭାଦ୍ରବ କୃଷ୍ଣ ଚତୁର୍ଦ୍ଦଶୀରେ ସାତପୁରି ଘେନାଣ ନିମନ୍ତେ, ଶୁକ୍ଳ ଚତୁର୍ଥୀରେ ଗଣେଶ ପୂଜା, ଅଷ୍ଟମୀ ଓ ନବମୀରେ ରାଧାଷ୍ଟମୀ ନୀତିପାଇଁ କୃଷ୍ଣ ଲୀଳା ବନ୍ଦ ରହେ ।

## ଭାଦ୍ରବ କୃଷ୍ଣ ଚତୁର୍ଦ୍ଦଶୀ ଓ ସପ୍ତପୁରି ଅମାବାସ୍ୟା

ଚତୁର୍ଦ୍ଦଶୀ ଦିନ ସାତପୁରି ଘେନାଣ ନିମନ୍ତେ ଦ୍ୱିପ୍ରହର ଧୂପ ପରେ କୁମ୍ଭାରପଡ଼ା ଆଲମଚଣ୍ଡୀ ଠାକୁରାଣୀଙ୍କଠାରୁ ସାତପୁର ତାଡ଼ ଘଣ୍ଟ, ଛତା, କାହାଳୀ ସହ ସିଂହଦ୍ୱାର ବାଟେ ଶ୍ରୀମନ୍ଦିରକୁ ଆସେ । ବେଢ଼ା ଏକ ଥର ବୁଲାଯିବା ପରେ ତାଡ଼ ରୋଷ ବେହରଣଠାରେ ରଖାଯାଏ । ସଂଧ୍ୟାଧୂପ ପରେ ଜଣେ ପୂଜାପଣ୍ଡା ଶ୍ରୀଅଙ୍ଗରୁ ଆଜ୍ଞାମାଳ ନେଇ ଘଣ୍ଟ, ଛତା, କାହାଳୀ ସହ ଦକ୍ଷିଣକାଳୀ ମନ୍ଦିରକୁ ଯାଆନ୍ତି । ଦକ୍ଷିଣକାଳୀଙ୍କ ସେବକ ତାଙ୍କଠାରୁ ଆଜ୍ଞାମାଳ ନେଇ ଶ୍ରୀମନ୍ଦିର ଆସି ସିଂହଦ୍ୱାର ଦେଇ ରୋଷଦ୍ୱାର ବାହାର ପାଶେ ଆଜ୍ଞାମାଳ ରୋଷଆଡ଼େ ଦେବେ । ଏହା ପରେ ଅନ୍ୟାନ୍ୟ ନୀତି ହେବ । ଭାଦ୍ରବ ଅମାବାସ୍ୟା ଦିନ ଅବକାଶ ପରେ ତିନି ବାଡ଼ରେ ବେଶ ହୋଇ ୬ ମୂର୍ତ୍ତି ଅଳଙ୍କାର ଲାଗି କରାଯାଏ ଓ ତା'ପରେ ଗୋପାଳବଲ୍ଲଭ ଭୋଗ ହୁଏ । ଏହା ପରେ ପାଣିପଡ଼ି ଟେରା ବନ୍ଧାଯାଇ ସକାଳ ଧୂପ ସହ ସାତପୁରି ଭୋଗ ତାଟ ରୋଷରୁ ଘଣ୍ଟ, ଛତା, କାହାଳୀ ସହ ହାତପୈଠ ହୋଇ ଆସିବ । ମୁଦିରସ୍ତ ପ୍ରସାଦ ଲାଗି କଲା ପରେ ପୂଜାପଣ୍ଡା ଷୋଡ଼ଶ ଉପଚାରରେ ମଣୋହି କରନ୍ତି । ଆଳତି ପରେ ପଣ୍ଡା, ପତି, ମୁଦିରସ୍ତ ତିନିବାଡ଼ରେ ବନ୍ଦାପନା କରନ୍ତି । ପରେ ପାଣି ପଡ଼ିବା ପରେ ଅମାବାସ୍ୟା ନାରାୟଣ ମୂର୍ତ୍ତି ଆଜ୍ଞାମାଳ ପାଇ ସାଗର ବିଜେ କରନ୍ତି ।

## ଭାଦ୍ରବ ଶୁକ୍ଳ ଚତୁର୍ଥୀ (ଗଣେଶ ପୂଜା)

ସଂଧ୍ୟା ଧୂପ ଶେଷ ପରେ ବଟ ଗଣେଶ, ତଳିଚ୍ଛ ମହାପାତ୍ର ଓ ଭିତରଚ୍ଛ ମହାପାତ୍ରଙ୍କ ଗଣେଶଠାରେ ବନ୍ଦାପନା ଓ ଶୀତଳ ଭୋଗ ହୁଏ । ତା'ପରେ ସରସ୍ୱତୀ ମନ୍ଦିରଠାରେ ଭୁବନେଶ୍ୱରୀଙ୍କ ପାଖରେ ଶୀତଳ ଭୋଗ ବନ୍ଦାପନା ହୁଏ ଓ ଭଦ୍ରାସନ ଉପରେ ବେହରଣ କରଣମାନଙ୍କ ମାଦଳାପାଞ୍ଜି ରଖାଯାଇ ପତନି ଓ ମାଳା ଲାଗି ହୋଇ ଶୀତଳ ଭୋଗ ବନ୍ଦାପନା ହୁଏ । ତା'ପରେ ୨୨ଟି ନଡ଼ିଆ ଉକ୍ତ କରଣମାନେ ଭାଙ୍ଗନ୍ତି ।

## ଭାଦ୍ରବ ଶୁକ୍ଳ ପଞ୍ଚମୀ (ଋଷି ପଞ୍ଚମୀ)

ସକାଳ ଧୂପ ପରେ ଲକ୍ଷ୍ମୀ ଶ୍ରୀଅଙ୍ଗରୁ ଆଜ୍ଞାମାଳ ପାଇ ସାତ ପାହାଚଠାରେ ରଖାଯାଇଥିବା ପାଲିଙ୍କିରେ ମାର୍କଣ୍ଡେଶ୍ୱର ଠାକୁ ବିଜେ କରିବେ । ସେଠାରେ ଭିତର ଗମ୍ଭୀରାରେ ମାଜଣା, ବନକ ଲାଗି ହୋଇ, ଏହାଙ୍କ ସାମନାରେ ପୂଜାପଣ୍ଡା ଋଷି ପଞ୍ଚମୀ ବ୍ରତ କଥା ବ୍ୟାଖ୍ୟାନ କଲା ପରେ ଶୀତଳ ଭୋଗ ବନ୍ଦାପନା ହୋଇ ଶ୍ରୀମନ୍ଦିରକୁ ବାହୁଡ଼ା ବିଜେ କରିବେ ।

## ଭାଦ୍ରବ ଶୁକ୍ଳ ଅଷ୍ଟମୀ (ରାଧାଷ୍ଟମୀ)

ସକାଳ ଧୂପ ଶେଷ ପରେ ଲକ୍ଷ୍ମୀ ଠାକୁରାଣୀ ଶ୍ରୀଅଙ୍ଗରୁ ଆଜ୍ଞାମାଳ ପାଇ ସାତ ପାହାଚରେ ଥିବା ପାଲିଙ୍କିରେ ଯାଇ ଲକ୍ଷ୍ମୀ ମନ୍ଦିରର ଜଗମୋହନରେ ପଡ଼ିଥିବା ଖଟ ଉପରେ ବିଜେ କରିବେ ।

ଏଠାରେ ମାଜଣା, ଶୀତଳ ଭୋଗ ହୋଇ ବନ୍ଦାପନା ହେବ । ମଧ୍ୟାହ୍ନ ଧୂପ ଉଠିଲେ ଲକ୍ଷ୍ମୀ ରତ୍ନ ସିଂହାସନ ଉପରକୁ ବିଜେ କରିବେ । ଭୋଗ ଶେଷ ହୋଇ ପାଣି ପଡ଼ିବା ପରେ ଲକ୍ଷ୍ମୀ ଓ ଭୂଦେବୀ (ସରସ୍ୱତୀ)ଙ୍କୁ ମହାଜନ ଖଟଶେଯ ଘରେ ବିଜେ କରାଇବେ । ପୂଜାପଣ୍ଡା ସୁଦର୍ଶନଙ୍କୁ ଶ୍ରୀଅଙ୍ଗରୁ ଆଜ୍ଞାମାଳ ଦେଲା ପରେ ଦଇତାପତିମାନେ ସୁଦର୍ଶନଙ୍କୁ ଜଗମୋହନରେ ଥିବା ଚଉ ଦୋଳରେ ବିଜେ କରାଇବେ । ରୁନ୍ଧା ସରି ପାଟ ପତନି ଲାଗି ପରେ ବିମାନବଡୁମାନେ ଚଉଦୋଳକୁ ଝୁଲଣ ମଣ୍ଡପଠାକୁ ନେବେ । ସେଠାରେ ସୁଦର୍ଶନ ଠାକୁରଙ୍କୁ କେତେକ ସୁନା ଅଳଙ୍କାର ଓ ଚୂଳ ଲାଗି କରାଯାଏ । ବଡ଼ଦେଉଳରେ ଗୋଟିଏ ବେଢ଼ା ସାରି ବିମାନବଡୁ ତାଙ୍କୁ ଯମେଶ୍ୱରଙ୍କ ଦେଉଳରେ ବିଜେ କରାନ୍ତି । ଏଠାରେ ତାଙ୍କୁ ପ୍ରସାଦ ଲାଗି ହୋଇ ଶୀତଳ ଭୋଗ ଓ ବନ୍ଦାପନା କରାଯାଇ ଶ୍ରୀମନ୍ଦିର ସିଂହାସନକୁ ବାହୁଡ଼ା ବିଜେ କରାଯାଏ । ସିଂହାସନ ପୋଛା ଓ ଚାରିବାଡ଼ରେ ମହାସ୍ନାନ ପରେ ଲକ୍ଷ୍ମୀ ଓ ଭୂଦେବୀ ଖଟଶେଯ ଘରୁ ସିଂହାସନକୁ ବିଜେ କରନ୍ତି । ସଂଧ୍ୟା ଆଳତି ବେଶ ପରେ ଆଳତି ହୁଏ । ସଂଧ୍ୟା ଧୂପରେ ଚାରିଜଣ ପୂଜାପଣ୍ଡା ପୂଜାରେ ବସନ୍ତି । ସୁଦର୍ଶନଙ୍କ ବାଡ଼ରେ ପ୍ରସାଦ ଲାଗି ହୁଏ । ଭୋଗ ପରେ ବନ୍ଦାପନା ହୁଏ ।

## ଭାଦ୍ରବ ଶୁକ୍ଳ ଏକାଦଶୀ (ପାର୍ଶ୍ୱ ପରିବର୍ତ୍ତନ)

ଏହି ଦିନ ଭୋଗମଣ୍ଡପ ଶେଷ ପରେ ତିନିବାଡ଼ରେ ମହାସ୍ନାନ, ନୂଆଲୁଗା ଲାଗି, ଚନ୍ଦନ ଲାଗି ହୁଏ । ଦ୍ୱିପ୍ରହରର ଧୂପ, ସଂଧ୍ୟା ଆଳତି ପରେ ଏକାଦଶୀ ବେଢ଼ାକୁ ମଦନମୋହନ ବିଜେ କଲାପରେ ପୁଣି ପଣ୍ଡା, ପତି ଓ ମୁଦିରସ୍ତ ଶ୍ରୀଅଙ୍ଗରେ ଚନ୍ଦନ ଲାଗି କରାନ୍ତି । ଶ୍ରୀଅଙ୍ଗରୁ ଆଜ୍ଞାମାଳ ମିଳିଲେ ମଦନମୋହନ ବଟତଳେ ଥିବା ପାଲିଙ୍କିରେ ବସନ୍ତି । ପାଲିଙ୍କିରେ ଏକଘେରା ମନ୍ଦିର ପ୍ରଦକ୍ଷିଣ କରି ସେହି ମୂଳକୁ ଫେରି ଜୟବିଜୟ ଦ୍ୱାରଠାରେ ଏକାଦଶୀ ଭୋଗ ବନ୍ଦାପନା ପରେ ଦକ୍ଷିଣ ଘରକୁ ମଦନମୋହନ ବିଜେ କରନ୍ତି । ସଂଧ୍ୟାଧୂପ ପରେ ଅନନ୍ତ ବାସୁଦେବ ମନ୍ଦିର ମଧ୍ୟରେ ପବିତ୍ରାଧିବାସ ନିମନ୍ତେ ଦେଉଳ ପୁରୋହିତ ଆଚାର୍ଯ୍ୟ ବ୍ରହ୍ମାବରଣ ହୋଇ ହୋମ କରନ୍ତି । ପ୍ରଥମ ବଡ଼ସିଂହାର ଭୋଗ ପରେ ଖଟଶେଯ ଘର ଧୋପଖାଳ ହୋଇ ମୁରୁଜରେ ତିନିଟି ମଣ୍ଡଳ ପଡ଼େ ଓ ପୂର୍ଣ୍ଣକୁମ୍ଭ ସ୍ଥାପନ ହୁଏ । ତା'ପୂର୍ବରୁ ସେଠାରେ ଖଟଶେଯ ବାହାର କରାଯାଇଥାଏ । ମଣ୍ଡଳମାନଙ୍କରେ ତିନିଟି ଚାଙ୍ଗୁଡ଼ିରେ ପବିତ୍ରା ନଅମୂର୍ତ୍ତି, କୁର୍ବନ୍ତିମାଳ ତିନିମୂର୍ତ୍ତି ପତନି ଘୋଡ଼ାଇ ରଖାଯାଇଥାଏ । ଦେଉଳ ପୁରୋହିତ ବରୁଣ ପୂଜା କରି ପବିତ୍ରାମାନଙ୍କୁ ଅଧିବାସ କରାନ୍ତି । ଏହି ନୀତି ପରେ ଖଟଶେଯ ଘରଦ୍ୱାର ବନ୍ଦ ହୋଇ ତଡ଼ଉକରଣଙ୍କ ଦ୍ୱାରା ମୁଦ ହୁଏ । ଏହା ପରେ ରତ୍ନବେଦୀରେ ଦିଅଁମାନଙ୍କର ମଇଲମ, ମହାସ୍ନାନ ଓ ନୂଆଲୁଗା ଲାଗି ହୁଏ । ପରେ ସର୍ବାଙ୍ଗ ହୁଏ । ତା'ପରେ ବଲ୍ଲଭ-ବଡ଼ସିଂହାର ଭୋଗ ହୁଏ । ଏ ଭୋଗ ଷୋଡ଼ଶ ଉପଚାରରେ ହୁଏ । ଏ ଭୋଗରେ କୁତ କୌତୁକ ସୂତ୍ର ପ୍ରସାଦ ତିନି ବାଡ଼ରେ ଲାଗି ହୁଏ । ଟେରା ଫିଟିଲେ କର୍ପୂର ଆଳତି ବଢ଼ି ପାର୍ଶ୍ୱପରିବର୍ତ୍ତନ ନୀତି ନିମନ୍ତେ ଖଟଶେଯ ଘର ଉପରେ ଶୟନ ଦିନ ମୁଦ

କରାଯାଇଥିବା ଘରର ମୁଦ ଭଙ୍ଗାଯାଇ ଠାକୁରଙ୍କର ଶୟନ ପେଡ଼ି ଖୋଲାଯାଏ । ଶୁକ୍ଳଫୁଲରେ ପୁଷ୍ପାଞ୍ଜଳି ଦେଲା ପରେ ଶୟନଠାକୁରଙ୍କର କଡ଼ ଲେଉଟାଯାଏ (ପାର୍ଶ୍ୱ ପରିବର୍ତ୍ତନ) ।ଏଥିପୂର୍ବରୁ ଶୟନକାଳରେ ଦକ୍ଷିଣ ଦିଗକୁ ଠାକୁରଙ୍କର ମୁଖ ଥାଏ, ପରିବର୍ତ୍ତନ ଉତ୍ତର ଦିଗକୁ କରାଯାଏ । ଏହାପରେ ବନ୍ଦାପନା ପରେ ପେଡ଼ି ବନ୍ଦ ହୁଏ ଓ ଦୁଆର ବନ୍ଦ କରାଯାଇ ମୁଦ ହୁଏ । ତା'ପରେ ଛଅମୂର୍ତ୍ତି ଅଳଙ୍କାର ମଇଲମ, ବିଡ଼ିଆ ମଣୋହି ଇତ୍ୟାଦି ହୋଇ ପହୁଡ଼ ହୁଏ ।

## ଭାଦ୍ରବ ଶୁକ୍ଳ ଦ୍ୱାଦଶୀ (ବାମନ ଜନ୍ମ, ସୁନିଆ, ଗରୁଡ଼ ପାର୍ଶ୍ୱପରିବର୍ତ୍ତନ, ଇନ୍ଦ୍ରଧ୍ୱଜପୂଜା)

ସକାଳ ଧୂପ ଶେଷ ପରେ ମହାସ୍ନାନ, ସର୍ବାଙ୍ଗ ହୁଏ । ଗତଦିନ ଅଧିବାସ ହୋଇଥିବା ପବିତ୍ରା ଚାଙ୍ଗୁଡ଼ିକୁ ପଣ୍ଡା, ପତି, ମୁଦିରସ୍ତ ଓ ତିନିଜଣ ପାଳିଆ ପୁଷ୍ପାଳକ ବିଧି ଅନୁସାରେ ପଟୁଆର ହୋଇ ଜୟବିଜୟ ଦ୍ୱାର ଦେଇ ବଡ଼ ଦେଉଳକୁ ତିନି ଘେରା ବୁଲି ରତ୍ନସିଂହାସନଠାକୁ ବିଜେ କରାନ୍ତି । ପବିତ୍ରା ଓ ଛଅ ମୂର୍ତ୍ତି ଅଳଙ୍କାର ଶ୍ରୀଜୀଉମାନେ ଲାଗି ହୁଅନ୍ତି । କର୍ପୂର ଲାଗି ପରେ ବେଶ ହୁଏ । ମଧ୍ୟାହ୍ନ ଧୂପ ଉଠିଲେ ଜୟ ବିଜୟ ଦ୍ୱାର ବନ୍ଦ ହୋଇ ଭିତର ଚନ୍ଦନ ଅର୍ଗଳିଠାରେ ପାଣି ପଡ଼ି ପୋଛା ମରାଯିବା ଯିବା ପରେ ପୂଜାପଣ୍ଡା ପଞ୍ଚବର୍ଣ୍ଣ ମୁରୁଜରେ ମଣ୍ଡଳ ଅଙ୍କନ କରନ୍ତି । ତିନି ବାଡ଼ରେ ବନ୍ଦାପନା ପରେ ପୂଜାପଣ୍ଡା କଳସ ବରୁଣ ପୂଜା କରନ୍ତି ।ଏହା ପରେ ପତି ଓ ମୁଦିରସ୍ତ ଥାଇ ବ୍ରହ୍ମା ଆଚାର୍ଯ୍ୟ ବରଣ ହୋଇ ଦକ୍ଷିଣ ଘରେ ଭୋଗ ଶେଷ ପରେ ମହାଜନମାନେ କୃଷ୍ଣଙ୍କୁ ହାତରେ ଧରି ଭିତର ସିଂହାସନକୁ ବିଜେ କରାନ୍ତି । ମୁଦିରସ୍ତ ଶ୍ରୀଅଙ୍ଗରେ ଧଣ୍ଡି ପ୍ରସାଦ ଲାଗି କଲା ପରେ ମହାଜନେ କୃଷ୍ଣଙ୍କୁ ସର୍ବତ୍ର ଭଦ୍ରମଣ୍ଡଳ ଉପରେ ବିଜେ କରାନ୍ତି । ଏଠାରେ ବଣିଆ ନିର୍ମାଣ କରିଥିବା ଏକ କ୍ଷୁଦ୍ରାକୃତି ସୁବର୍ଣ୍ଣ ବାମନ ପ୍ରତିମା ବିଜେ କରିଥା'ନ୍ତି ।ପ୍ରତିମାଙ୍କୁ ପଞ୍ଚାମୃତରେ ମହାସ୍ନାନ କରି ଶୀତଳ ଭୋଗ କରାଯାଇ ଗର୍ଭ ଉଦକ ନିମନ୍ତେ ପଞ୍ଚ ଉପଚାରରେ ପୂଜା କରାଯାଇଥାଏ । ପରେ ଖଣ୍ଡୁଆ ଘୋଡ଼ାଇ ଜନ୍ମବିଧି ହୁଏ । ଏହା ପରେ ପୂଜାପଣ୍ଡା କୋରା, କ୍ଷୀର ଓ ଲହୁଣୀ ମଣୋହି କରନ୍ତି ଓ ମୁଦିରସ୍ତ ପ୍ରସାଦ ଲାଗି କରନ୍ତି । ପରେ ମହାଜନେ ଠାକୁରଙ୍କୁ ବିଜେ କରାଇ ଜୟ ବିଜୟ ଦ୍ୱାର ତଳେ ଠିଆ ହୁଅନ୍ତି । ଏଠାରେ ମାର୍କଣ୍ଡେଶ୍ୱର ସାହିର ଲୋକେ ଗୋଟିଏ ବାମନ ମୂର୍ତ୍ତି ପଟି ଦିଅନ୍ତି । ବଟଦ୍ୱାର ଦେଇ ସୋମନାଥ ମଣ୍ଡପ (ମାଜଣା ମଣ୍ଡପ)ରେ ଖଟ ଉପରେ ବିଜେ କରାଯାଏ । ଭଣ୍ଡାରରୁ ଦୁର୍ଗା ପ୍ରତିମାଙ୍କୁ ପତି ମହାପାତ୍ର ହାତରେ ବିଜେ କରାଇ ଆଣି, ପଣ୍ଡା ଆଜ୍ଞାମାଳ ଦେବା ପରେ, ଉକ୍ତ ମଣ୍ଡପ ଖଟ ଉପରେ ବିଜେ କରାନ୍ତି । ଏଠାରେ ପୂଜାପଣ୍ଡା ବସୁଧାରା କରନ୍ତି ଓ ଯଜ୍ଞ ପବିତ୍ରା ଦିଅନ୍ତି । ପାଣି ପଡ଼ି ଶୀତଳ ଭୋଗ ପନ୍ତି ହୁଏ । ଦୁଧ ମଣୋହି କରି ମୁଦିରସ୍ତ ପ୍ରସାଦ ଲାଗି ପରେ ପୂଜାପଣ୍ଡା ପଞ୍ଚ ଉପଚାରରେ ପୂଜା କରନ୍ତି । ବନ୍ଦାପନା ଓ ପ୍ରସାଦ ଲାଗି ହୋଇ କୃଷ୍ଣ (ବାମନ) ଦକ୍ଷିଣ ଘରକୁ ଓ ଦୁର୍ଗା ଭଣ୍ଡାର ଘରକୁ ବିଜେ ହୁଅନ୍ତି ।

ସଂଧ୍ୟା ଧୂପ ଶେଷ ପରେ ସ୍ନାନବେଦୀ ପାଖ ଚାହାଣି ମଣ୍ଡପଠାରେ ବଡ଼ଛତା ମଠ କୋଣରେ ଗୋଟିଏ କାଠ ଗୟଳରେ ସପ୍ତ ମେଘ ବାଉଁଶରେ ତୟାର କରି କୋଠ ସୁଆଁସିଆ ସେବକ ପୋତି

ଥା'ନ୍ତି । ସଂଧ୍ୟା ଧୂପ ବଢ଼ିବା ପରେ ସେଠାରେ ପୂଜା ଠା' କରାଯାଏ । ରୋଷରୁ ମହାସୁଆର କିମ୍ବା ରୋଷ ପାଇକ ଦୁଇ ଓଳି ଅନ୍ନ ଇନ୍ଦ୍ରଧ୍ୱଜ ପୂଜାପାଇଁ ଆଣନ୍ତି । ପୂଜାପଣ୍ଡା ପଞ୍ଚ ଉପଚାରରେ ଭୋଗ କରନ୍ତି । (ବର୍ଷକରେ କେବଳ ଏହି ଗୋଟିଏ ଦିନ ସଙ୍ଖୁଡ଼ି ମନ୍ଦିର ବାହାରକୁ ଯାଏ) । ଭୋଗ ପରେ ବନ୍ଦାପନା ହୁଏ । ପୂର୍ଣ୍ଣିମା ପର୍ଯ୍ୟନ୍ତ ସପ୍ତମେଘ ବନ୍ଧା ହୋଇ ରହିଥାଏ । ଆଷାଢ ଶୁକ୍ଳ ଦ୍ୱାଦଶୀ ଦିନ ହରି ଶୟନ ପଲଙ୍କ ତଳେ ଶୟନ କରିଥିବା ଗରୁଡଙ୍କର ଏହି ଦିନ ପାର୍ଶ୍ୱ ପରିବର୍ତ୍ତନ ନୀତି କରାଯାଏ । ସେହିପରି ଏହି ଦିନ ଶ୍ରୀନଅରରେ ଗଜପତିଙ୍କର ସୁନିଆ ନୀତି ହୁଏ ।

## ଭାଦ୍ରବ ଶୁକ୍ଳ ଚତୁର୍ଦ୍ଦଶୀ (ଅନନ୍ତ ଚତୁର୍ଦ୍ଦଶୀ)

ସଂଧ୍ୟା ଧୂପ ଶେଷ ହେଲା ପରେ ମୁକ୍ତିମଣ୍ଡପ ନିକଟସ୍ଥ ଅନନ୍ତ ବାସୁଦେବ ମନ୍ଦିରରେ ପର୍ବଯାତ୍ରା ଯୋଗାଣିଆ ମହାସ୍ନାନ ଓ ଭୋଗ ଦ୍ରବ୍ୟ ଯୋଗାନ୍ତି । ଜଣେ ପୂଜାପଣ୍ଡା ମହାସ୍ନାନ ଓ ଭୋଗ କରନ୍ତି । ତା' ପରେ ଅନନ୍ତ ବ୍ରତ କଥା ପାଠ କରି ବନ୍ଦାପନା କରନ୍ତି ।

## ଭାଦ୍ରବ ପୂର୍ଣ୍ଣିମା (ଇନ୍ଦୁ ପୂର୍ଣ୍ଣିମା ବା ଐନ୍ଦ୍ରି ପୂର୍ଣ୍ଣିମା)

ଏହି ଦିନ ଦୋଳଗୋବିନ୍ଦ ଠାକୁର ଦକ୍ଷିଣ ଘର ଭୋଗ ଶେଷ ପରେ ଶ୍ରୀଜଗନ୍ନାଥଙ୍କ ଆଜ୍ଞାମାଳ ପାଇ ଘଣ୍ଟ, ଛତା, କାହାଳୀ ସହ ପାଲିଙ୍କିରେ ବଡ଼ଛତା ମଠ ପାର୍ଶ୍ୱରେ ବିଜେ ହୁଅନ୍ତି । ଏଠାରେ ଶୀତଳ ଭୋଗ ହୁଏ । ତା' ପରେ ଭିତରଛ ମହାପାତ୍ର ଇନ୍ଦ୍ର, ଚନ୍ଦ୍ର ଓ ଗୋବିନ୍ଦଙ୍କୁ ବନ୍ଦାପନା କରନ୍ତି । ଏହିଦିନ ଏଠାକୁ ବାସେଳି ସାହିରୁ ଇନ୍ଦ୍ରହାତୀ (ହାତୀ ବେଶ ହୋଇ ଜଣେ ଲୋକ) ଆସନ୍ତି । ବନ୍ଦାପନା ଶେଷ ପରେ ଦୋଳଗୋବିନ୍ଦ ବଡ଼ ଦେଉଳକୁ ବିଜେ କରନ୍ତି ।

## ସହସ୍ର କୁମ୍ଭାଭିଷେକ (ବିମଳାଙ୍କ ଷୋଡ଼ଶ ପୂଜାରମ୍ଭ)

୧୬ ଦିନ ଗଣତି ହୋଇ ଆଶ୍ୱିନ କୃଷ୍ଣ ସପ୍ତମୀ କିମ୍ବା ଅଷ୍ଟମୀ ଦିନଠାରୁ ବିମଳା ଠାକୁରାଣୀଙ୍କ ପୂଜା ଆରମ୍ଭ ହୁଏ । ତିଥି ବୃଦ୍ଧି ନଥିଲେ ଅଷ୍ଟମୀ ଦିନ କିମ୍ବା ତିଥି ବୃଦ୍ଧିରେ ସପ୍ତମୀ ଦିନ ଦୁର୍ଗା ଭଣ୍ଡାର ଘରୁ ସକାଳ ଧୂପ ପରେ ଆଜ୍ଞାମାଳ ପାଇ ପତି ମହାପାତ୍ରଙ୍କ ହାତରେ ସୋମନାଥ ମଣ୍ଡପ (ମାଜଣା ମଣ୍ଡପ)ରେ ଖଟରେ ବିଜେ ହୁଅନ୍ତି । ପଣ୍ଡା, ପତି ଓ ମୁଦିରସ୍ତ ଆଚାର୍ଯ୍ୟ ବ୍ରହ୍ମାବରଣ ହୋଇ ଦୁର୍ଗାଙ୍କୁ ୧୦୦୦ ଗରା ଜଳରେ ଅଭିଷେକ କରାନ୍ତି । ଏହା ପରେ ଶ୍ରୀଅଙ୍ଗ ପୋଛା, ନବବସ୍ତ୍ର ଲାଗି, ବେଶ, ପ୍ରସାଦ ଲାଗି, ଶୀତଳ ଭୋଗ, ବନ୍ଦାପନାଦି ନୀତି ଶେଷ ପରେ ଦେବୀଙ୍କୁ ଭଣ୍ଡାର ଘର ଦ୍ୱାର ଦେଶରେ ବିଜେ କଲା ପରେ ସହସ୍ର କୁମ୍ଭାଭିଷେକ ବିଧି ଶେଷ ହୁଏ ।

ଦୁର୍ଗା ବିଗ୍ରହ ଭଣ୍ଡାର ଦ୍ୱାରଠାରେ ବିଜେ ହେବା ପରେ ଶ୍ରୀବାଳ ପୁରୁଷୋତ୍ତମ (ନୀଳମାଧବ/ ମାଧବ) ସିଂହାସନରୁ ଆଜ୍ଞାମାଳ ପାଇ ଆସି ଦୁର୍ଗାଙ୍କ ସହିତ ଏକତ୍ର ଭଦ୍ରାସନରେ ବସିଲେ ରୁନ୍ଧା କାର୍ଯ୍ୟ ହୁଏ । ଏକତ୍ର ରୁନ୍ଧା ଅବସ୍ଥାରେ ଦୁର୍ଗାମାଧବ ରତ୍ନ ସିଂହାସନକୁ ଯାଇ ଆଜ୍ଞାମାଳ ପାଇଲା

ପରେ ଜୟ ବିଜୟ ଦ୍ୱାର ବାଟ ଦେଇ ଝୁଲଣ ମଣ୍ଡପଠାରେ ପାଲିଙ୍କିରେ ବସି କର୍ପୂର ଜଳ ଲାଗି ହେବା ପରେ ବିମଳା ମନ୍ଦିରକୁ ବିଜେ କରନ୍ତି । ସେଠାର ଖଟ ଉପରେ ଦୁର୍ଗାମାଧବ ବିଜେ ହେଲେ ଶୀତଳ ଭୋଗ ମଣୋହି ଓ ବନ୍ଦାପନା ହୁଏ । ତତ୍‌ପୂର୍ବରୁ ବିମଳାଙ୍କ ସକାଳ ଧୂପ ଶେଷ ହୋଇଥାଏ । ତିନି ଧୂପ ସରି ଭିତରେ ଚନ୍ଦନ ଲାଗି ନୀତି ପରେ ଦୁର୍ଗାମାଧବ ପାଲିଙ୍କିରେ ଯାଇ ଭଣ୍ଡାରରେ ବିଜେ କରନ୍ତି । ଷୋହଳ ଦିନ ଏହିପରି ରୁନ୍ଧା ଅବସ୍ଥାରେ ରହନ୍ତି । ଦଶହରା ଦିନ ରୁନ୍ଧା ଖୋଲାଯାଏ ।

ଷୋହଳ ପୂଜାର ପ୍ରଥମ ଆଠ ଦିନ ଦୁର୍ଗାମାଧବ ରୁନ୍ଧା ଅବସ୍ଥାରେ ବିମଳାଙ୍କ ମନ୍ଦିରକୁ ଓ ପରବର୍ତ୍ତୀ ଆଠଦିନ ଦୋଳ ମଣ୍ଡପ ସାହିର ନାରାୟଣୀ ମନ୍ଦିରକୁ ବିଜେ କରନ୍ତି । ଉଭୟ ସ୍ଥାନରେ ଏକା ପରି ନୀତି ହୁଏ ।

ଦୁର୍ଗାମାଧବ ପ୍ରଥମ ଦିନ ବିମଳା ମନ୍ଦିରକୁ ବିଜେ ହେବା ପୂର୍ବରୁ ବିମଳାଙ୍କ ପାଖରେ ସହସ୍ର କୁମ୍ଭାଭିଷେକ ପୂଜା ସରିଥାଏ । ପ୍ରଥମ ପୂଜାପାଇଁ ସକାଳ ଧୂପ ଶେଷ ପରେ ବିମଳାଙ୍କ ଦେଉଳରେ ପରିଚ୍ଛା ଓ ପରିକରଣମାନେ ହୁକୁମମାନ ପାଠ କରନ୍ତି । ବ୍ରହ୍ମାବରଣ ନିମନ୍ତେ ବରୁଣ ପୂଜା ହୁଏ । ଆଚାର୍ଯ୍ୟ ବରଣ, ବ୍ରହ୍ମାବରଣ, ସ୍ୱସ୍ତିବାଚନ ଓ ଚଣ୍ଡୀବରଣ ହୁଏ । ସଂକଳ୍ପ ହୁଏ । ଠାକୁରାଣୀଙ୍କ ଛାମୁରେ ପାଣି ପଡ଼ି, ପାହାଡ଼ ପଡ଼ି ଭୋଗ ବଢ଼ାହୁଏ । ପାଳିଆ ସେବକ ପୂଜା ଠା' କରେ । ପ୍ରଧାନୀ ପୂଜକଙ୍କୁ ଡକାଇ ପୂଜାରେ ବସାନ୍ତି । ପୂଜା ଷୋଡ଼ଶ ଉପଚାରରେ ହୁଏ । କୋଠଭୋଗର ମହାପ୍ରସାଦ ପିଠା, ଥାଳି ଖେଚୁଡ଼ି ବିମଳାଙ୍କ ମଣୋହିରେ ବଢ଼ାଯାଏ । ଭୋଗ ପୂଜା ବେଳେ ଘଣ୍ଟ, କାହାଳୀ ବାଜେ, ଛତ୍ର ଧରାଯାଏ । ଆଗ କାଳରେ ଏହି ସମୟରେ ପରିଚ୍ଛା ପଟୁଆର କରୁଥିଲେ ଓ ଦେବଦାସୀ ନୃତ୍ୟ କରୁଥିଲେ । ତାହା ଏବେ ହେଉନାହିଁ ।

ଟେରା ଫିଟିଲେ କର୍ପୂର ଆଳତି ଓ ୨୧ବତି ବନ୍ଦାପନା ହୁଏ । ସକାଳ ଧୂପ ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ଚଣ୍ଡୀପାଠ ଓ ସହସ୍ର ନାମାଦି ପାଠ କରାଯାଏ । କିନ୍ତୁ ଏହି ପାଠ ମଧ୍ୟାହ୍ନ ଓ ରାତ୍ର ଧୂପମାନଙ୍କରେ ହୁଏ ନାହିଁ । ବିଧି ଅନୁସାରେ ଶ୍ରୀଜୀଉମାନଙ୍କର ମଧ୍ୟାହ୍ନ ଧୂପ ଓ ସଂଧ୍ୟା ଧୂପ ପରେ ବିମଳାଙ୍କର ମଧ୍ୟାହ୍ନ ଓ ସଂଧ୍ୟା ଧୂପ ହୁଏ । ଏହି ଧୂପମାନଙ୍କରେ ସକାଳ ଧୂପ ପରି ପ୍ରସାଦ ଓ ପିଷ୍ଟକାଦି ଦେବୀଙ୍କୁ ନୈବେଦ୍ୟ ରୂପେ ବଢ଼ାଯାଏ । ଘଣ୍ଟ, କାହାଳୀ ଓ ଛତି ବ୍ୟବସ୍ଥା ପ୍ରତ୍ୟେକ ଧୂପପାଇଁ ଅଛି । ସପ୍ତମୀ ଦିନଠାରୁ ବିମଳାଙ୍କର ତ୍ରିଦିବସାତ୍ମକ ପୂଜାପାଇଁ ପୃଥକ ସଂକଳ୍ପ କରାଯାଏ । ଏଥିରେ ତର୍ପଣ ମାର୍ଜନାଦି ସହ ବଳି, ଜପ, ହୋମ ଆଦି ଯୋଗ କରାଯାଏ । ଏହି ତିନି ଦିନ ଅର୍ଥାତ୍ ସପ୍ତମୀ, ଅଷ୍ଟମୀ ଓ ନବମୀ ନିଶାର୍ଦ୍ଧରେ ସଙ୍କୁଡ଼ି ଓ ଆମିଷ (ମାଛ) ଭୋଗର ବ୍ୟବସ୍ଥା ଅଛି । ଏହି ଭୋଗ ପ୍ରସ୍ତୁତି ପାଇଁ ବିମଳା ମନ୍ଦିର ଆଗରେ ଥିବା କୂପର ଦକ୍ଷିଣ ଦିଗରେ ଅସ୍ଥାୟୀ ପାକଶାଳା ନିର୍ମିତ ହୋଇଥାଏ ।

ବଡ଼ ଦେଉଳରେ ଶ୍ରୀଜୀଉମାନଙ୍କର ରାତ୍ର ପହୁଡ଼ ପରେ ଶ୍ରୀମନ୍ଦିର ବେଢ଼ା ଶୋଧ କରାଯାଏ । ପଶ୍ଚିମ ଦ୍ୱାର ବାଟେ ଦେବୀଙ୍କ ଭୋଗ ପ୍ରସ୍ତୁତି ନିମନ୍ତେ ବଳିପାଇଁ ପଶୁ ଓ ମାଛ ଆଦି ଅଣାଯାଏ ।

ଏହି ତିନି ଦିନ ପ୍ରତ୍ୟେକ ରାତ୍ରରେ ଦୁଇଟି ଲେଖାଏଁ ମେଣ୍ଢା ବଳି ପଡ଼େ । ମାଛ ରନ୍ଧା ହୁଏ । ଛେଦ ବିମଳାଙ୍କ କୂପ ପାଖରେ ପଡ଼ିବା ପରେ ଠାକୁରାଣୀଙ୍କ ପୂଜକ ରକ୍ତ ସରାରେ ନେଇ ଠାକୁରାଣୀଙ୍କ ପାଖରେ ରଖେ । ନିର୍ଦ୍ଦିଷ୍ଟ ପଶୁ ବଳି ଛଡ଼ା ଯାଚଞ୍ଚା ବଳି ବ୍ୟବସ୍ଥା ଏଠାରେ ନାହିଁ । କାହାର ମାନସିକ ଥିଲେ ତାଙ୍କ ତରଫରୁ ପଶୁବଳି ଶ୍ରୀମନ୍ଦିର ବାହାରେ କାକୁଡ଼ିଖାଇ ଠାକୁରାଣୀଙ୍କ ପାଖରେ ପଡ଼େ । ସଙ୍ଖୁଡ଼ି ଧୂପ ପାଣି ପଡ଼ିବା ପରେ ପଶ୍ଚିମ ଦ୍ୱାର ପର୍ଯ୍ୟନ୍ତ ଚୂନପାଣି ପଡ଼ି ଧୂଆଯାଏ । ବିମଳାଙ୍କ ପୂଜା (୧୬ ଦିନ) ଭିତରେ କୌଣସି ସ୍ତ୍ରୀ ଲୋକ ବିମଳାଙ୍କ ମନ୍ଦିର ଭିତରକୁ ପ୍ରବେଶ ନିଷେଧ । ଏହି ସମୟ କାଳରେ ଗୁରୁବାର ପଡ଼ିଲେ 'ଏକାନ୍ତ' ନୀତି ହୁଏ ନାହିଁ । ଦୈନନ୍ଦିନ ଭୋଗକୁ ଛାଡ଼ି ଦେଲେ ଷୋହଳ ପୂଜା ବେଳେ ବିମଳାଙ୍କପାଇଁ କେତେକ ଅଧିକ ଭୋଗ ହୁଏ । ଲୋକଙ୍କ ଖଞ୍ଜା ଅନୁଯାୟୀ ସଂଧ୍ୟା ଧୂପ ପରେ ବିମଳା ଠାକୁରାଣୀଙ୍କର ବିଭିନ୍ନ ଦେବୀ ବେଶ ହୁଏ । ତାହାହେଲା- ବନଦୁର୍ଗା ବେଶ, ଭୁବନେଶ୍ୱରୀ ବେଶ, ନାରାୟଣୀ ବେଶ, ବଗଳା ବେଶ, ଜୟଦୁର୍ଗା ବେଶ, ଉଗ୍ରତାରା ବେଶ, ମାତଙ୍ଗିନୀ ବେଶ, ଦଶଭୁଜା ବେଶ, ରାଜରାଜେଶ୍ୱରୀ ବେଶ, ହରଚଣ୍ଡୀ ବେଶ ଓ ସିଂହ ବାହିନୀ ବେଶ ।

ଷୋଳ ପୂଜା ସମୟରେ ମା' ବିମଳା କେତେକ ଅଧିକ ସୁବର୍ଣ୍ଣ ଅଳଙ୍କାର ପରିଧାନ କରନ୍ତି । ତାହା ହେଲା-

କମରପଟି-୧, ଝୋବା କଣ୍ଠି-୪, ସୁଉକି ମାଳ (ରାମାଭିଷେକ ପଦକ ଥାଇ)-୧, ଚମ୍ପାକଢ଼ି ମାଳ (୫୭ କଢ଼ି ଥାଇ)-୧, କୁରୁଜାତକ ମାଳି-୧, ବଡ଼ମୁଣ୍ଡ ମାଳି (୪୦ଟି ମୁଣ୍ଡ ଥାଇ)-୧, ସାନମୁଣ୍ଡି ମାଳି (୨୭ଟି ମୁଣ୍ଡ ଥାଇ)-୧, ନୋଥ-୧, ଅଷ୍ଟରତ୍ନ ଗୁଣା-୧, ଦଣ୍ଡି-୧, ଉପଚାର-୧, ସେବତୀ ହାର (ଅଷ୍ଟରତ୍ନ ପଦକ ଥାଇ ୧୬ଟି ସେବତୀ)-୧, ପଦ୍ମହାର (୩୦, ୫୫, ୩୨, ୨୪ ଓ ୪୦ଟି ପଦ୍ମ ଥାଇ)- ୫ଟି ଓ ରୁପାର ଏକ ପଦ୍ମ ହାର (୪୦ଟି ପଦ୍ମ ଥାଇ) ।

ଷୋଳ ପୂଜାରେ ପିନ୍ଧୁଥିବା ବିଶେଷ ଅଳଙ୍କାର ବ୍ୟତୀତ ବର୍ଷସାରା ସଦା ସର୍ବଦା ଦେବୀଙ୍କ ଶ୍ରୀଅଙ୍ଗରେ ନିମ୍ନଲିଖିତ ସୁବର୍ଣ୍ଣ ଅଳଙ୍କାର ଶୋଭାପାଏ । କିରୀଟ, ନାକଫୁଲ, କାନଫୁଲ, ଅନନ୍ତ ବ୍ରତ, ବାଜୁ, କିଆ, ଚୂଡ଼ି, ତ୍ରିନେତ୍ର, ନେତ୍ର, ଚାପସରି, କଣ୍ଠିମାଳ, ହରିଡ଼ାକଣ୍ଠି ମାଳ (୩), ବଟଫଳ, ବକ୍ଷସ୍ଥଳ ପଦ୍ମ, ହସ୍ତ ଓ ପଦର ମୁଦ୍ରିକା, ପଦର ନଖ ଇତ୍ୟାଦି ।

## ଆଶ୍ୱିନ କୃଷ୍ଣ ଅଷ୍ଟମୀ (ଦ୍ୱିତୀୟା ଓଷା)

ସକାଳ ଧୂପ ପରେ ଲକ୍ଷ୍ମୀ (ଶ୍ରୀଦେବୀ) ଶ୍ରୀଜଗନ୍ନାଥଙ୍କ ଆଜ୍ଞାମାଳ ପାଇବା ପରେ ସାତ ପାହାଚଠାରେ ଥିବା ପାଲିଙ୍କିରେ ବିଜେ ହୋଇ ଲକ୍ଷ୍ମୀମନ୍ଦିରଠାରେ ପଡ଼ିଥିବା ଖଟ ଉପରେ ବିଜେ ହୁଅନ୍ତି । ସେଠାରେ ତାଙ୍କର ମାଜଣା, ବନକଲାଗି କରାଯାଏ । ବେଶ ହୋଇ ଅଳଙ୍କାର ଲାଗି ଓ କର୍ପୂର ଲାଗି ହୁଅନ୍ତି । ପୂଜାପଣ୍ଡା ଲକ୍ଷ୍ମୀବ୍ରତ କଥା ଶୁଣାନ୍ତି । ଭୋଗ, ବନ୍ଦାପନା ହୁଏ । ମଧ୍ୟାହ୍ନ ଧୂପ ଉଠିଲେ ରତ୍ନ ସିଂହାସନକୁ ବାହୁଡନ୍ତି ।

## ଆଶ୍ୱିନ ଶୁକ୍ଳ ଦଶମୀ (ଦଶହରା ଓ ଆୟୁଧ ପୂଜା)

ଏହି ଦିନ ଅବକାଶ ଶେଷ ପରେ ତିନିବାଡ଼ରେ ଚନ୍ଦନ ଲାଗି ବଢ଼ିଲେ ନୂଆ ଲୁଗା ଓ ନିର୍ଦ୍ଦିଷ୍ଟ ଅଳଙ୍କାରମାନ ଲାଗି ହୋଇ ଶ୍ରୀଜୀଉମାନଙ୍କର (ତ୍ରିମୂର୍ତ୍ତିଙ୍କର) ରାଜବେଶ ହୋଇଥାଏ । ଗୋପାଳବଲ୍ଲଭ ଓ ସକାଳ ଧୂପ ପରେ ଭଣ୍ଡାର ଦ୍ୱାରରେ ପୂଜା ପାଉଥିବା ଆୟୁଧମାନଙ୍କର ମହାସ୍ନାନ ହୋଇ ବରୁଣ ପୂଜା ହେଲା ପରେ ତିନିଗୋଟି ରୁପା ଥାଳିରେ ତିନି ଦେବଦେବୀଙ୍କ ଆୟୁଧମାନ ରଖାଯାଇ ଘଣ୍ଟ, ଛତା, କାହାଳୀ ସହ ପଟୁଆରରେ ତିନି ଥର ମନ୍ଦିର ପ୍ରଦକ୍ଷିଣ କରାଯାଇ ଭିତର ସିଂହାସନକୁ ବିଜେ କଲା ପରେ ତିନି ବାଡ଼ରେ ଆୟୁଧ ଲାଗି କରାହୁଏ । ଆୟୁଧମାନ ହେଲା-

ଶ୍ରୀବଳଭଦ୍ରଙ୍କର ହଳ ଓ ମୂଷଳ (୨)

ଦେବୀ ସୁଭଦ୍ରାଙ୍କର ତଡଗୀ (୨)

ଶ୍ରୀଜଗନ୍ନାଥଙ୍କର ଶଙ୍ଖ ଓ ଚକ୍ର (୨)

ଆୟୁଧମାନ ଷୋଳ ପୂଜା ଶେଷ ଚାରିଦିନ ଭଣ୍ଡାର ଘରେ ରହି ପୂଜିତ ହୁଅନ୍ତି । ଦକ୍ଷିଣ ଘରଠାରେ ମଦନମୋହନ, ରାମ ଓ କୃଷ୍ଣ ଦଶହରା ପଦା (ମହାଖଳା)କୁ ଯିବାପାଇଁ ବୀରବେଶ ହୁଅନ୍ତି । ଭିତରେ ଆଳତି ଶେଷ ପରେ ମଦନମୋହନ, ରାମ , କୃଷ୍ଣ ଓ ଭଣ୍ଡାର ଘରୁ ରୁନ୍ଧା ହୋଇଥିବା ଦୁର୍ଗାମାଧବ ସିଂହାସନକୁ ବିଜେ କରନ୍ତି । ସୁଧସୁଆର ତିନି ବାଡ଼ରେ ମଙ୍ଗଳାର୍ପଣ ସାମଗ୍ରୀ ରଖିଥାନ୍ତି । ପଣ୍ଡା, ପତି ଓ ମୁଦିରସ୍ତ ତିନି ବାଡ଼ରେ ମଙ୍ଗଳାର୍ପଣ କରନ୍ତି । ଏହା ପରେ ପୂଜାପଣ୍ଡା ପାଞ୍ଚ ଠାକୁରଙ୍କୁ ୫ଟି ଆଜ୍ଞାମାଳ ଦେଲେ ମହାଜନମାନେ ହାତରେ ବିଜେ କରାଇ ଆଣି ଜଗମୋହନ ଦେଇ ବଟ ମୂଳେ ଥିବା ପାଲିଙ୍କିରେ ରାମକୃଷ୍ଣଙ୍କୁ, ରଥରେ ଦୁର୍ଗାମାଧବଙ୍କୁ ଓ ବିମାନରେ ମଦନମୋହନଙ୍କୁ ବିଜେ କରାନ୍ତି । ରୁନ୍ଧା ଶେଷ ପରେ ବିମାନବଡୁମାନେ ଦିଅଁମାନଙ୍କୁ ମହାଖଳାପଦା ଠାକୁ ବିଜେ କରାନ୍ତି । ଏଠାରେ ମୁଦିରସ୍ତ ରାମକୃଷ୍ଣ ଓ ଅନ୍ୟ ଦିଅଁଙ୍କୁ ପ୍ରସାଦ ଲାଗି କରାନ୍ତି ଏବଂ ଶୀତଳ ଭୋଗ ଓ ବନ୍ଦାପନା ଶେଷ ହେବା ପରେ ଦିଅଁମାନଙ୍କର ବାହୁଡ଼ା ବିଜେ ହୁଏ । ମାଧବ ସିଂହାସନକୁ, ଦୁର୍ଗା ଭଣ୍ଡାର ଘରକୁ ଓ ଅନ୍ୟ ତିନି ଦିଅଁ ଦକ୍ଷିଣ ଘରକୁ ବିଜେ କରନ୍ତି ।

## କାର୍ତ୍ତିକ ମାସ ନୀତି

ଶ୍ରୀମନ୍ଦିରରେ ପ୍ରତିବର୍ଷ ଆଶ୍ୱିନ ଶୁକ୍ଳ ଏକାଦଶୀଠାରୁ କାର୍ତ୍ତିକ ପୂର୍ଣ୍ଣିମା ପର୍ଯ୍ୟନ୍ତ କାର୍ତ୍ତିକ ମାସର ଭୋଗ, ବେଶ ଓ ବ୍ରତ ପାଳନ କରାଯାଏ । ଅର୍ଥାତ୍ ଏହି ଏକାଦଶୀ ତିଥିଠାରୁ ବା ଦଶହରା ବାସି ଦିନଠାରୁ କାର୍ତ୍ତିକ ମାସ ଧରାଯାଏ । କାର୍ତ୍ତିକ ମାସର ପାରମ୍ପରିକ ନୀତି ପାଳନ ପାଇଁ ଶ୍ରୀମନ୍ଦିର ପ୍ରଶାସନ ପ୍ରତିବର୍ଷ ନୀତି ନିର୍ଘଣ୍ଟ ପ୍ରସ୍ତୁତ କରିଥାନ୍ତି । ଏହି ସମୟରେ କେତେକ ସ୍ୱତନ୍ତ୍ର ବେଶ ଓ ଧୂପ (ବାଳଭୋଗ) କରାଯାଏ । କାର୍ତ୍ତିକ ମାସରେ କେତେକ ପର୍ବଦିନମାନଙ୍କରେ ମଧ୍ୟ ସ୍ୱତନ୍ତ୍ର ନୀତି ପାଳନ କରାଯାଏ ।

କାର୍ତ୍ତିକ ମାସରେ ରାତି ୨ଟା୩୦ କିମ୍ବା ୩ଟାରେ ଦ୍ୱାରଫିଟା ହୁଏ । ପରବର୍ତ୍ତୀ ନୀତିମାନ ହେଲା ମଙ୍ଗଳ ଆରତି, ମଇଲମ ଓ ତଡ଼ପଲାଗି, ଅବକାଶ, ରାଧା-ଦାମୋଦର ବେଶ, ରୋଷ ହୋମ,ସୂର୍ଯ୍ୟପୂଜା, ଦ୍ୱାରପାଳ ପୂଜା, ଗୋପାଳବଲ୍ଲଭ ଭୋଗ, ସକାଳ ଧୂପ (କେବଳ କୋଠ ଭୋଗ), ବାଳଧୂପ, ମଇଲମ-ବେଶ, ଭୋଗମଣ୍ଡପ ଭୋଗ, ମଧ୍ୟାହ୍ନ ଧୂପ, ଦ୍ୱିତୀୟ ଭୋଗମଣ୍ଡପ ଧୂପ (ଯଦି ଆବଶ୍ୟକ ହୁଏ) ମଇଲମ-ବେଶ, ଦିବାପହୁଡ଼, ଦ୍ୱାରଫିଟା (ଯଦି ଦିବା ପହୁଡ଼ ହୁଏ ) ସଂଧ୍ୟା ଆଳତି, ସାହାଣମେଲା, ମଇଲମ-ବେଶ, ସଂଧ୍ୟା ଧୂପ, ମଇଲମ, ଚନ୍ଦନଲାଗି, ବଡ଼ସିଂହାର ବେଶ, ବଡ଼ସିଂହାର ଭୋଗ ଓ ରାତ୍ର ପହୁଡ଼ ।

କାର୍ତ୍ତିକ ମାସରେ ସଂଧ୍ୟା ଆଳତି ପରେ ସର୍ବ ସାଧାରଣ ଦର୍ଶନ ବା ସାହାଣମେଲା ହୁଏ । ସାଧାରଣତଃ ଅନ୍ୟ ଦିନମାନଙ୍କରେ ସାହାଣମେଲା ସକାଳେ ଅବକାଶ ପରେ ଓ ଗୋପାଳବଲ୍ଲଭ ଧୂପ ପୂର୍ବରୁ ହୋଇଥାଏ । ସମୟ ଅଭାବରୁ ଅନ୍ୟ ଦିନମାନଙ୍କରେ ଦିବା ପହୁଡ଼ ହୋଇ ପାରେ ନାହିଁ । କିନ୍ତୁ କାର୍ତ୍ତିକ ମାସରେ ଓ ପହିଲି ଭୋଗ (ଧନୁମାସରେ)ରେ ଦିବା ପହୁଡ଼ ସମ୍ଭବ ହୋଇଥାଏ ।

## ଆଶ୍ୱିନ ମାସର ପୂର୍ଣ୍ଣିମା (କୁମାର ପୂର୍ଣ୍ଣିମା)

କୁମାର ପୂର୍ଣ୍ଣିମା ଶ୍ରୀମନ୍ଦିରର ଏକ ବିଶେଷ ପର୍ବ । ଏହି ଦିନ ସୁଦର୍ଶନ ଠାକୁର ମନ୍ଦିର ବାହାରେ ଥିବା କେତେକ ଆସ୍ଥାନ (ଉଗ୍ରସେନଙ୍କ ଆଶ୍ରମ) ବିଜେ କରି ଫେରନ୍ତି । ସୁଦର୍ଶନଙ୍କ ନିମନ୍ତେ ସ୍ୱତନ୍ତ୍ର ପୂଜା ଓ ବନ୍ଦାପନା ହୁଏ । ସଂଧ୍ୟା ଧୂପ ପରେ ଶ୍ରୀଜଗନ୍ନାଥଙ୍କ ଚଳନ୍ତି ପ୍ରତିମା ମଦନମୋହନ ଓ ରତ୍ନବେଦୀସ୍ଥ ଲକ୍ଷ୍ମୀ ପ୍ରତିମା (ଶ୍ରୀଦେବୀ) ପାଲିଙ୍କିରେ ଯାଇ ଲକ୍ଷ୍ମୀମନ୍ଦିରର ଜଗମୋହନରେ ବିଜେ ହୁଅନ୍ତି । ଏଠାରେ ପ୍ରତିନିଧି ଭାବେ ମୁଦିରସ୍ତ ସେବକ ଓ ଲକ୍ଷ୍ମୀଙ୍କ ପ୍ରତିନିଧି ଭିତରଛ ମହାପାତ୍ରଙ୍କ ମଧ୍ୟରେ କଉଡ଼ି ଓ ପଶାଖେଳ ହୁଏ । ତା'ପରେ ଦୁଇ ଦିଅଁଙ୍କୁ ଶୀତଳ ମଣୋହି କରାଯିବା ପରେ ବାହୁଡ଼ା ବିଜେ ହୁଏ । ଏହା ପରେ ଚନ୍ଦନଲାଗି ଓ ବଡ଼ସିଂହାର ବେଶ ହୋଇଥାଏ । ଠାକୁରମାନଙ୍କୁ ନୂଆ ଲୁଗା (ପତନି) ଲାଗି କରାଯାଏ । ବଡ଼ସିଂହାର ଧୂପ ପରେ ପୁନର୍ବାର ରତ୍ନ ସିଂହାସନ ତଳେ ପୂଜାପଣ୍ଡା, ପତି ମହାପାତ୍ର ଓ ମୁଦିରସ୍ତ ଜୁଆ, ପଶା ଓ କଉଡ଼ି ଖେଳନ୍ତି । ପରେ ସିଂହାସନ ଉପରେ ଖେଳନ୍ତି । ଏ ଖେଳରେ ଲକ୍ଷ୍ମୀଙ୍କ ପାଖରେ ଜଗନ୍ନାଥ ମହାପ୍ରଭୁ ହାରିଯିବାରୁ ମାଧବ ମହାଜନଙ୍କ ହାତରେ ବିଜେ ହୋଇ ଲକ୍ଷ୍ମୀଙ୍କ ମନ୍ଦିରରେ ସାତ ଦିନ ବନ୍ଧା ରହନ୍ତି । ଅଷ୍ଟମ ଦିନ ଅବକାଶ ପୂଜା ଠା' ସମୟରେ ବନ୍ଧାରୁ ଫିଟି ରତ୍ନ ସିଂହାସନକୁ ଫେରି ଆସନ୍ତି ।

ସାଧାରଣ ମାନବ ପରି ପ୍ରଭୁ ଜଗନ୍ନାଥ ଓ ତାଙ୍କ ପତ୍ନୀ ଲକ୍ଷ୍ମୀ ଠାକୁରାଣୀ କୁମାରପୂର୍ଣ୍ଣିମାରେ ନୂଆଲୁଗା ପିନ୍ଧନ୍ତି ଓ ଖେଳନ୍ତି ।

ଦଶହରା ବାସି ଏକାଦଶୀଠାରୁ କାର୍ତ୍ତିକ ଶୁକ୍ଳ ଦଶମୀ ଯାଏଁ ରାଧା-ଦାମୋଦର ବେଶ ହୁଏ । ପଞ୍ଚକ ଏକାଦଶୀଠାରୁ କାର୍ତ୍ତିକ ପୂର୍ଣ୍ଣିମା ଯାଏଁ ଯଥାକ୍ରମେ ଠିଆକିଆ ବା ଲକ୍ଷ୍ମୀନାରାୟଣ ବେଶ , ବାଙ୍କଚୂଡ଼ ବା ବାମନ ବେଶ, ତ୍ରିବିକ୍ରମ ବେଶ, ଲକ୍ଷ୍ମୀ ନୃସିଂହ ବେଶ ଏବଂ ରାଜବେଶ ହୁଏ ।

(ଏ ସଂକ୍ରାନ୍ତରେ ବିସ୍ତୃତ ତଥ୍ୟ ବେଶ ଅଧ୍ୟାୟରେ ପ୍ରଦାନ କରାଯାଇଛି ।)

କାର୍ତ୍ତିକ ମାସରେ ଶୁକ୍ଳ ଏକାଦଶୀ ଦିନ **'ହରି ଉତ୍‌ଥାପନ'** ନୀତି ହୁଏ । ଏହି ନୀତି ଶୟନ ଏକାଦଶୀ ଭଳି ବଲ୍ଲଭ-ବଡ଼ସିଂହାର ପର୍ଯ୍ୟନ୍ତ ହୁଏ । କାର୍ତ୍ତିକ ଶୁକ୍ଳ ଦ୍ୱାଦଶୀରେ **'ଗରୁଡ଼ ଉତ୍‌ଥାପନ'** ନୀତି ହୁଏ । ଶୁକ୍ଳ ଦ୍ୱାଦଶୀ, ତ୍ରୟୋଦଶୀ ଓ ଚତୁର୍ଦ୍ଦଶୀରେ **'ଶରତ ରାହାସ'** ନୀତି ହୁଏ । କାର୍ତ୍ତିକ ପୂର୍ଣ୍ଣିମାରେ ସଂଧ୍ୟା ଧୂପ ପରେ **'ଦୋଳଗୋବିନ୍ଦାଭିଷେକ'** ହୁଏ । ଦକ୍ଷିଣ ଘରୁ ଦୋଳ ଗୋବିନ୍ଦ ଠାକୁର ରତ୍ନବେଦୀକୁ ବିଜେ କରନ୍ତି । ଆଜ୍ଞାମାଳ ପାଇଲା ପରେ ତାଙ୍କୁ ଜଗମୋହନରେ ପଡ଼ିଥିବା ଖଟ ଉପରେ ବିଜେ କରାଯାଏ । ଏଠାରେ ଭୋଗ ଓ ବନ୍ଦାପନା ପରେ ଠାକୁର ଦକ୍ଷିଣ ଘରକୁ ଫେରନ୍ତି ।

## ଗର୍ଭଣା ସଂକ୍ରାନ୍ତି (ତୁଳ ସଂକ୍ରମଣ, କାର୍ତ୍ତିକ)

ଭୋଗମଣ୍ଡପ ଧୂପ ପରେ ତିନି ବାଡ଼ରେ ମଇଲମ, ମହାସ୍ନାନ, ନୂଆଲୁଗାଲାଗି, ପଣ୍ଡା, ପତି, ମୁଦିରସ୍ତଦ୍ୱାରା ସର୍ବାଙ୍ଗ ଓ ୬ ମୂର୍ତ୍ତି ଅଳଙ୍କାର ଲାଗି ହୁଏ । ମଧ୍ୟାହ୍ନ ଧୂପ ଉଠିଲା ପରେ ମୁଦିରସ୍ତ ପ୍ରସାଦ ଲାଗି କରନ୍ତି । ମଧ୍ୟାହ୍ନ ଧୂପ ଟେରା ପଡ଼ିବା ପରେ ଜଣେ ପୂଜାପଣ୍ଡା ରୋଷ ପାଇକ ହାତରେ ଭିତରୁ ୧ ଓଳି ସଙ୍ଖୁଡ଼ି ବାହାର କରି ଆଣି ମନ୍ଦିର ଚତୁଃପାର୍ଶ୍ୱରେ ବଳି ଦିଅନ୍ତି । ଭୋଗ ପରେ ଆଳତି ଓ ବନ୍ଦାପନା ହୁଏ ।

## ନବାନ୍ନ

ଏଥିପାଇଁ ନିର୍ଦ୍ଦିଷ୍ଟ ଦିନ ନାହିଁ । ଦିଅଁମାନଙ୍କ ରାଶି ନକ୍ଷତ୍ର ଦେଖି ଏହା ଠିକ୍ କରାଯାଏ । ଏ ଦିନ ନୂଆ ବିରି ଓ ନୂଆ ଚାଉଳ ଭୋଗରେ ଲାଗି ହୁଏ । ପର୍ବ ଯାତ୍ରା ଭୋଗ ବିଧିପୂର୍ବକ ହୁଏ । ମଧ୍ୟାହ୍ନ ଧୂପ ବେଶରେ ୬ ମୂର୍ତ୍ତି ଅଳଙ୍କାର ଲାଗି ହୁଏ । ପ୍ରସାଦ ଲାଗି ଓ ବନ୍ଦାପନା ହୁଏ ।

## ପ୍ରଥମାଷ୍ଟମୀ (ମାର୍ଗଶିର କୃଷ୍ଣ ଅଷ୍ଟମୀ)

ଭୋଗମଣ୍ଡପ ଧୂପ ପରେ ତିନିବାଡ଼ରେ ମଇଲମ ହୋଇ ମହାସ୍ନାନ ବଢ଼େ । ନୂଆଲୁଗା ଓ ଚନ୍ଦନ ଲାଗି ହେବା ପରେ ବେଶ ହୁଏ । କର୍ପୂର ଲାଗି ପରେ, ସୁଧସୁଆର ତିନିବାଡ଼ରେ ପୂଜା ଠା' କଲା ପରେ ପଣ୍ଡା, ପତି ଓ ମୁଦିରସ୍ତ ବରୁଣ ପୂଜା କରନ୍ତି । ମଧ୍ୟାହ୍ନ ଧୂପ ଉଠିଲେ ତିନିବାଡ଼ରେ ମଙ୍ଗଳାର୍ପଣ ହୁଏ । ଫୁଲ ପରିଆ, ଖଦି ଓ ଛେଦା ପ୍ରସାଦ ଲାଗି ହୁଏ । ତା'ପରେ ବନ୍ଦାପନା ହୋଇ ଅନ୍ୟାନ୍ୟ ଦୈନିକ ନୀତି ହୁଏ ।

## ଦୀପ ଦାନ ଓ ପିତୃଶ୍ରାଦ୍ଧ (ମାର୍ଗଶିର କୃଷ୍ଣ ଚତୁର୍ଦ୍ଦଶୀ, ଅମାବାସ୍ୟା ଓ ଶୁକ୍ଳ ପ୍ରତିପଦ)

ଚତୁର୍ଦ୍ଦଶୀ ଦିନ ସଂଧ୍ୟା ଧୂପ ପରେ ଧୋପଖାଳ ହୋଇଥାଏ । ପରେ ଭଣ୍ଡାର ମେକାପ ସିଂହାସନ ତଳେ ଚାଉଳରେ ଏକ ଗଛ କରନ୍ତି । ପାଳିଆ ମେକାପ ବଇଠାମାନଙ୍କରେ ଘିଅ ଦେଇ

ଚାଉଳ ଗଛରେ ବତି ବସାନ୍ତି । ପୂଜାପଣ୍ଡା ଉକ୍ତ ଚାଉଳ ଗଛ ଓ ଦୀପମାନଙ୍କୁ ସଂସ୍କାର କଲା ପରେ ସିଂହାସନ ଉପରକୁ ଉଠି ପତି ଓ ମୁଦିରସ୍ତଙ୍କ ସମେତ ବନ୍ଦାପନା କରନ୍ତି । ପରେ ମହାଦୀପ ତିନିଟି ବନ୍ଦାପନା ହୁଏ । ତିନିଜଣ ପୂଜାପଣ୍ଡା ମହାଦୀପ ତିନିଟି ହାତରେ ଧରି ଜୟ ବିଜୟ ଦ୍ୱାରର ଭିତର ପାଖକୁ ଆସନ୍ତି । ଏଠାରେ ମଧ୍ୟ ଚାଉଳର ଗଛ ଆସ୍ଥାନ ପଢ଼ିଆରୀ କରିଥାନ୍ତି । ଏହି ଗଛକୁ ଜଣେ ପୂଜାପଣ୍ଡା ସଂସ୍କାର କରନ୍ତି । ଏହା ପରେ ମହାଦୀପ କଳସଗୁଡ଼ିକ ଚୂନରାଙ୍କୁ ଦେବା ପରେ ଚୂନରା ତେଲ ଓ ଘିଅ ନେଇ ମନ୍ଦିର ଉପରେ ତିନି ଦେଉଳରେ ଦୀପମାନ ଜାଳନ୍ତି ଓ ଚନ୍ଦ୍ର ଉଦିଆ ଜାଳି ହରିବୋଲ ଡାକନ୍ତି (ଏକାଦଶୀ ଦିନ ପରି) ।

ଅମାବାସ୍ୟା ଦିନ ଠିକ୍ ପୂର୍ବୋକ୍ତ ନୀତି ପାଳିତ ହୁଏ । କିନ୍ତୁ ପ୍ରତିପଦ ଦିନ ଚାଉଳ ଗଛ ହେବା ପରେ ମଦନମୋହନ ଭିତର ସିଂହାସନକୁ ବିଜେ କରନ୍ତି । ପ୍ରସାଦ ଲାଗି, ଚାଉଳଗଛ ସଂସ୍କାର ପରେ ତିନିବାଡ଼ରେ ବନ୍ଦାପନା ହୁଏ ଏବଂ ତା'ପରେ ମଦନମୋହନ ଲକ୍ଷ୍ମୀ ଓ ଭୂଦେବୀ ଆଜ୍ଞାମାଳ ପାଇ ଜୟ-ବିଜୟ ଦ୍ୱାର ଭିତର ପାଖେ ବିଜେ କରିଥିବା ବେଳେ ସେଠାରେ ଚାଉଳ ଗଛର ସଂସ୍କାର ହୁଏ । ତା'ପରେ ଜୟ-ବିଜୟ ଦ୍ୱାର ଖୋଲାଯାଏ । ଏହି ତିନିଦିଅଁ ଝୁଲଣ ମଣ୍ଡପ ତଳେ ଥିବା ବିମାନରେ ବିଜେ କରନ୍ତି । ରୁନ୍ଧା ପରେ ବିମାନବଡୁମାନେ ବିମାନକୁ ଜଗନ୍ନାଥ ବଲ୍ଲଭ ମଠକୁ ନିଅନ୍ତି । ଏଠାରେ କାଠର ଭଦ୍ରାସନ ଉପରେ ଚାଉଳର ଗଛ କରାଯାଇ ଦୀପ ବସାଯାଏ । ମୁଦିରସ୍ତଙ୍କ ଦ୍ୱାରା ପ୍ରସାଦ ଲାଗି ଓ ପୂଜାପଣ୍ଡାଙ୍କ ଦ୍ୱାରା ଗଛ ସଂସ୍କାର ପରେ, ମୁଦିରସ୍ତ ବନ୍ଦାପନା କରନ୍ତି । ଏହା ପରେ ଦିଅଁମାନେ ବଡ଼ ଦେଉଳକୁ ବାହୁଡ଼ା ବିଜେ କରନ୍ତି ।

## ଓଢ଼ଣ ଷଷ୍ଠୀ ବା ପ୍ରାବରଣ ଷଷ୍ଠୀ (ମାର୍ଗଶିର ଶୁକ୍ଳ ଷଷ୍ଠୀ)

ଶୁକ୍ଳ ପଞ୍ଚମୀ ରାତ୍ରିରେ ଚନ୍ଦନ ଲାଗି ନୀତି ପରେ ପତନି, ଘୋଡ଼ ଓ ଖଣ୍ଡୁଆ ଘୋଡ଼, ପାଗ, ମଦନମୋହନଙ୍କ କବରୀ, ବିମଳା, ଶ୍ରୀଦେବୀ ଓ ଭୂଦେବୀଙ୍କ ଘୋଡ଼ ଭୋଗମଣ୍ଡପ ଘରେ ଅଧିବାସ ହୋଇ ରହିଥାଏ । ଏଥିପାଇଁ ଭୋଗମଣ୍ଡପ ଧୋପଖାଳ ହୋଇ ଚାନ୍ଦୁଆ ବନ୍ଧା ହୋଇଥାଏ । ତିନିଟି ମଣ୍ଡଳ ଉପରେ ଚାଙ୍ଗୁଡ଼ାରେ ଘୋଡ଼ମାନଙ୍କୁ ରଖାଯାଇ ଅଧିବାସ କର୍ମ କରାଯାଏ । ଏହା ପରେ ଦୁଆର ମୁଦ ହୋଇଥାଏ । ତା'ପରେ ଅନ୍ୟାନ୍ୟ ନୀତି ହୋଇ ପହୁଡ଼ ହୁଏ । ଏହି ଦିନ ଅଧିବାସ ଯୋଗୁଁ ପୁଷ୍ପାଞ୍ଜଳି ଠାକୁର ବିଜେ ହୁଅନ୍ତି ନାହିଁ ।

ଷଷ୍ଠୀ ଦିନ ସକାଳେ ଧୂପ ପରେ ମଇଲମ କରାଯାଏ । ଗତଦିନ ଭୋଗ ମଣ୍ଡପ ଘରେ ଅଧିବାସ ହୋଇଥିବା ଘୋଡ଼ମାନଙ୍କୁ ପଣ୍ଡା, ପତି, ମୁଦିରସ୍ତ ଓ ତିନି ଜଣ ପୁଷ୍ପାଳକ ଗରାବଡୁଠାରୁ ହାତୁଆଣି ନେଇ ଘଣ୍ଟ, ଛତା, କାହାଳୀ ସହ ତଳିଚ୍ଛ ପଟୁଆର ହୋଇ ବଡ଼ଦେଉଳକୁ ତିନି ଘେରା ବୁଲି ରତ୍ନ ସିଂହାସନ ନିକଟକୁ ବିଜେ କରାନ୍ତି । ସିଂହାସନରେ ଠାକୁରମାନଙ୍କ ଘୋଡ଼ଲାଗି ଓ ପାଟ ଲାଗି ପରେ ୬ମୂର୍ତ୍ତି ଅଳଙ୍କାର ଲାଗି ହୁଏ । ଏହା ପରେ ଶ୍ରୀଅଙ୍ଗରେ ପ୍ରସାଦ ଲାଗି ସରିଲେ ତିନିବାଡ଼ରେ ପଣ୍ଡା, ପତି ଓ ମୁଦିରସ୍ତ ବନ୍ଦାପନା କରନ୍ତି ।

## ମାର୍ଗଶିର ପୂର୍ଣ୍ଣିମା (ପଣ୍ଡୁ ପୂର୍ଣ୍ଣିମା)

ସକାଳ ଧୂପ ପରେ ପୁଷ୍ପାଳକମାନେ ସିଂହାସନରେ ଦିଅଁଙ୍କୁ ମଇଲମ କରନ୍ତି ଓ ଖଣ୍ଡେ ଆଜ୍ଞାମାଳ ଲାଗି କରାନ୍ତି । ଦକ୍ଷିଣ ଘର ଭୋଗ ଶେଷ ପରେ ମହାଜନ ଦକ୍ଷିଣଘରୁ ନୃସିଂହ ଠାକୁରଙ୍କୁ ସିଂହାସନକୁ ବିଜେ କରାନ୍ତି । ଏହି ଠାକୁରଙ୍କୁ ଆଜ୍ଞାମାଳ ଲାଗି ହେବା ପରେ ସେ ଝୁଲଣ ମଣ୍ଡପ ତଳେ ଥିବା ବିମାନରେ ବିଜେ ହୁଅନ୍ତି । ବିମାନବଡୁମାନେ ବିମାନକୁ ଚାରି ଆଶ୍ରମରେ ଭ୍ରମଣ କରାଇ ବଡ଼ ଦେଉଳକୁ ଆଣନ୍ତି । ମହାଜନମାନେ ରୁନ୍ଧା ଫିଟାଇ ନୃସିଂହଙ୍କୁ ଦକ୍ଷିଣ ଘରକୁ ବିଜେ କରାନ୍ତି ।

## ଧନୁ ସଂକ୍ରାନ୍ତିଠାରୁ ମକର ସଂକ୍ରାନ୍ତି (ପହିଲି ଭୋଗ)

ଏହି ମାସକପାଇଁ ଶ୍ରୀମନ୍ଦିର ପ୍ରଶାସନ ତରଫରୁ ପ୍ରତିବର୍ଷ ପରମ୍ପରାନୁସାରେ ନୀତି ପାଳନ ନିମନ୍ତେ ସ୍ୱତନ୍ତ୍ର ନିର୍ଘଣ୍ଟ ପ୍ରସ୍ତୁତ କରାଯାଏ । ପ୍ରତ୍ୟେକ ନୀତି ପାଇଁ ସମୟ ଧାର୍ଯ୍ୟ କରାଯାଇଥାଏ । ନୀତିମାନ ହେଲା- ଦ୍ୱାରଫିଟା (ରାତ୍ର ୨ଟା୩୦), ମଙ୍ଗଳ ଆଳତି, ମଇଲମ, ତଡ଼ପଲାଗି, ରୋଷହୋମ, ଅବକାଶ, ସୂର୍ଯ୍ୟପୂଜା, ଦ୍ୱାରପାଳ ପୂଜା, ବେଶ ଶେଷ, ପହିଲି ଭୋଗ, ସକାଳ ଧୂପ, ସାହାଣମେଲା, ମଇଲମ ଓ ବେଶ, ଭୋଗମଣ୍ଡପ ଭୋଗ, ମଧ୍ୟାହ୍ନ ଧୂପ (ଆବଶ୍ୟକ ହେଲେ ପୁଣି ଭୋଗମଣ୍ଡପ ଭୋଗ ବା ପଛ ଭୋଗମଣ୍ଡପ), ମଇଲମ ଓ ବେଶ, ଦିବା ପହୁଡ଼, ଦ୍ୱାରଫିଟା, ସନ୍ଧ୍ୟା ଆଳତି, ମଇଲମ, ବେଶ, ସନ୍ଧ୍ୟାଧୂପ, ସାହାଣମେଲା, ମଇଲମ, ଚନ୍ଦନଲାଗି, ବଡ଼ସିଂହାର ବେଶ, ବଡ଼ ସିଂହାର ଭୋଗ, ରାତ୍ର ପହୁଡ଼ ।

ବଲ୍ଲଭ ସହିତ ପହିଲି ଭୋଗ ହୁଏ । ପହିଲି ଭୋଗର ତାଲିକା (୧୯୯୭ ମସିହାରେ ସଂଗୃହୀତ)ଃ ଦରସୁଆ ବଡ଼ି (ବଡ଼ବଡ଼ି) ୧ପଣ (୨୦ଗଣ୍ଡା), ଛତୁ (ଲିଆଗୁଣ୍ଡ, ଘିଅ, ଚିନି, ଅଳେଇଚ, ଲବଙ୍ଗ ମିଶ୍ରିତ) ୧୦ଗଣ୍ଡା, ଚୁଡ଼ାପୁଆଁ (ଚୁଡ଼ାକୁ ଘିଅରେ ଭାଜି, ନଡ଼ିଆ ପକାଇ) ୧ସରା ଓ ୫ ଓଳି, ବଡ଼ଝିଲି ୧୦ଗଣ୍ଡା, ସାନଝିଲି ୧୦ଗଣ୍ଡା, କାକରା ୧୦ଗଣ୍ଡା, ନଳୀ (ନଳୀ ଆକୃତିର କାକରା) ୮ଗଣ୍ଡା, ଟିକିଲି (ଟିପ ପରି କାକରା) ୧ପଣ ଓ ୨ଗଣ୍ଡା, କଣ୍ଟେଇ (ଅତି ଟିକି କାକରା) ୧ପଣ ୨ଗଣ୍ଡା, ଆରିସା ୫ଗଣ୍ଡା, ଝଡ଼େଇଲଦା ୧୪ଗୁଳା, ମୁଗେଇ (ମୁଗ ସିଝାଯାଇ ମସଲା, ନଡ଼ିଆ ପଡ଼ି ଘିଅରେ ଭଜା ହୁଏ) ୧୫ଗଣ୍ଡା, ବୟ ବଡ଼ି ୧ତାଡ଼ (୪୦୦ଟି) । ପହିଲି ଭୋଗ ମାସରେ ଏଗୁଡ଼ିକ ବଲ୍ଲଭ ସହିତ ଲାଗେ । ଏହା ବ୍ୟତୀତ, ଏହି ମାସରେ ସକାଳଧୂପ ସହିତ ଲାଗେ- ସାନବଡ଼ି ୩୦୦ଟି, ଗଜାବଡ଼ି ୫ଓଳି, ଖୁରୁମା ୫ଓଳି, ଗଇଁଠା ୪୮ଟି, ମଣ୍ଡା ୪୮ଟି, ଏଣ୍ଡୁରି ୨ଟି, ସାନ ଅମାଲୁ ୧ପଣ ଓ ୨ଟି ମାଣ୍ଡି (୨ସରା), ବିରିବଡ଼ା ୧ବଡ଼ ଓ ୪ଗଣ୍ଡା ସାନ, ଲଡୁ (ଚାଉଳ ଚୂନାରେ ତିଆରି) ୫ଓଳି । ଧନୁଠାରୁ ମକର ସଂକ୍ରାନ୍ତି ଯାଏଁ ମଙ୍ଗଳ ଆଳତି ବଢ଼ିବାପରେ ପହିଲି ଭୋଗ ସକାଶେ ରୋଷଘରେ ହୋମ ହୁଏ । ଏହି ଧନୁ ମାସରେ ଧନୁମୁଆଁ ଭୋଗ ହୁଏ । ମକର ସଂକ୍ରାନ୍ତିରେ ମକରଚାଉଳ ଭୋଗ ହୁଏ ।

## ବକୁଳ ଅମାବାସ୍ୟା (ପୌଷ ଅମାବାସ୍ୟା)

ଏ ଦିନ ଅବକାଶ ପରେ ଶ୍ରୀଜଗନ୍ନାଥଙ୍କ ବାଡ଼ରେ ଗୋଟିଏ ଆଜ୍ଞାମାଳ ଲାଗି ହୋଇଥାଏ । ସକାଳ ଧୂପ ଉଠିବା ସମୟରେ ରୋଷଘରୁ 'ବଉଳ-ଗଇଁଠା' ତାଟ ଛାମୁକୁ ଆସେ । ମୁଦିରସ୍ତ ପ୍ରସାଦ ଲାଗି କଲାପରେ ସକାଳଧୂପ ପୂଜା ହୁଏ । ଭୋଗ ଆଳତି ପରେ ପଣ୍ଡା, ପତି ଓ ମୁଦିରସ୍ତ ବନ୍ଦାପନା କରନ୍ତି । ତା'ପରେ ତାଟ ମହାପ୍ରସାଦ ବାହାର କରାଯାଏ । ପାଣି ପଡ଼ିବା ପରେ ନାରାୟଣଙ୍କୁ ସିଂହାସନକୁ ବିଜେ କରାଯାଏ । ଆଜ୍ଞାମାଳ ପାଇବା ପରେ ପାଲିଙ୍କିରେ ସାଗର ବିଜେ କରାଯାଏ ।

## ପୁଷ୍ୟାଭିଷେକ (ପୌଷପୂର୍ଣ୍ଣିମା)

ଏହି ଉତ୍ସବ ପୌଷପୂର୍ଣ୍ଣିମା ଦିନ ପାଳନ କରାଯାଉଥିଲେ ମଧ୍ୟ ଏହି ଉତ୍ସବର ଆନୁଷଙ୍ଗିକ ଅଙ୍କୁରାରୋପଣ କର୍ମ ପୌଷ ଶୁକ୍ଳ ଏକାଦଶୀ ଦିନ ଶ୍ରୀମନ୍ଦିରରେ ସନ୍ଧ୍ୟାଧୂପରେ ଦେଉଳ ପୁରୋହିତଙ୍କ ଦ୍ୱାରା ସମାହିତ ହୋଇଥାଏ ।

ପୌଷପୂର୍ଣ୍ଣିମା ପୂର୍ବଦିନ (ଚତୁର୍ଦ୍ଦଶୀ ଦିନ) ଚନ୍ଦନଲାଗି ନୀତି ପରେ ଅଧିବାସ କର୍ମ କରାଯାଏ । ଏଥିପାଇଁ ଭୋଗମଣ୍ଡପ ଘର ଧୋପଖାଳ ହୋଇ ଚାନ୍ଦୁଆ ବନ୍ଧା ଯାଇଥାଏ । ଏକ ହାଣ୍ଡି ଘିଅ ଓ ରୋଷକୂପରୁ ନୂଆହାଣ୍ଡିରେ ଅଣାଯାଇଥିବା ପାଣି ପରଖମାନଙ୍କରେ ରଖାଯାଇଥାଏ । ଘିଅକୁ ଏକୋଇଶ ଗରାରେ ଓ ପାଣିକୁ ସତାଅଶୀ ଗରାରେ ବିଭକ୍ତ କରାଯାଇ ଚାରି ପନ୍ତି ହୋଇ ଚାନ୍ଦୁଆତଳେ ରଖାଯାଏ । ଏହି ଗରାମାନଙ୍କୁ ଦେଉଳ ପୁରୋହିତ ଚେମେଡ଼ି ପତନି ଘୋଡ଼ାଇ, ଫୁଲ ଚନ୍ଦନ ଦେଇ ଅଧିବାସ କରନ୍ତି । ପରେ ଭୋଗମଣ୍ଡପ ଦ୍ୱାର ବନ୍ଦହୋଇ ତଡ଼ଉକରଣ ମୁଦ ଦିଅନ୍ତି । ପରେ ପରେ ବଡ଼ସିଂହାର ଭୋଗ ପୂଜା ସରିବା ପରେ ପାଣି ପଡ଼ି ଧୋପଖାଳ ହୋଇ ଭଦ୍ରାସନ ଉପରେ ପାହାଡ଼ା ପଡ଼ି ଅଧିବାସ ଦର୍ପଣ ଶ୍ରୀଜଗନ୍ନାଥଙ୍କ ସମ୍ମୁଖରେ ମନ୍ତ୍ରପୂତ ପୁଷ୍ପ ଓ ଚନ୍ଦନାଦି ଦ୍ୱାରା ଅଧିବାସ ହୁଏ । ଭଦ୍ରାସନର ଚାରିପାଖେ ଚିକିଟାମାଟିରେ ବନ୍ଧ କରାଯାଇଥାଏ । ଏହାପରେ ପଇଡ଼ ବିଡ଼ିଆ ମଣୋହି ହୋଇ ପହୁଡ଼ ହୁଏ । ଏକାଦଶୀ ଦିନ ଦେଉଳ ପୁରୋହିତ ସ୍ନାନବେଦୀ ପାଖରେ ଅଙ୍କୁରାରୋପଣ ପୂଜା କରିଥିବେ ।

ଶ୍ରୀମନ୍ଦିର ଭିତରବେଢ଼ାରେ ଥିବା ପ୍ରତିହାରୀ ନିଯୋଗ କାର୍ଯ୍ୟାଳୟ ଗୃହ ସମ୍ମୁଖରେ କୋଠସୁଆଁସିଆଙ୍କଦ୍ୱାରା ଏକ ଯଜ୍ଞଶାଳା ନିର୍ମିତ ହୋଇଥାଏ । ପୂର୍ଣ୍ଣିମା ଦିନ ସକାଳଧୂପ ପୂଜା ବସିଥିବା ବେଳେ ଏଠାରେ ହୋମ କରାଯାଏ । ଭିତରେ ସକାଳଧୂପ ଶେଷ ପରେ ପାଣିପଡ଼ିବା ପରେ କେବଳ ଶ୍ରୀଜଗନ୍ନାଥଙ୍କ ବାଡ଼ରେ ମୈଲମ ହୋଇ ତଡ଼ପ ଉତ୍ତରୀ ଲାଗି କରାଯାଏ । ପରେ ମହାସ୍ନାନ ପୂଜା ଠା' ହୁଏ । ଗତଦିନରେ ଅଧିବାସ ହୋଇଥିବା ଭୋଗମଣ୍ଡପ ଘରର ମୁଦ ଖୋଲାଯାଇ ରୋଷଘରୁ ନିଆଁ ଅଣାଯାଏ ଓ ସେଥିରେ ଘିଅକୁ ତରଳାଯାଇ କୁମ୍ଭମାନଙ୍କରେ ଥିବା ପାଣିରେ ମିଶାଯାଏ । ଟେରାବନ୍ଧା ପରେ ଭୋଗମଣ୍ଡପ ଘରଠାରୁ ଜଳଛେକ ଗରାବଡୁମାନେ ବାଘମୁହଁ ବାନ୍ଧି, ଘଣ୍ଟା ଛତା କାହାଳୀ ସହ ତଳିଛ ପ୍ରଧାନୀ ପଟୁଆରରେ ଆସି ଚାରି ଥରରେ

ଚାରିଟି ପନ୍ତିରେ ରଖନ୍ତି । ଏହା ପରେ ଶୀତଳ ଭୋଗ ଛେକ ଆସେ । ତା'ପରେ ମୁଦିରସ୍ତ ଶ୍ରୀଅଙ୍ଗରେ ପ୍ରସାଦଲାଗି କରନ୍ତି । ପୂଜାପଣ୍ଡା ଓ ଦେଉଳ ପୁରୋହିତ ପାତ୍ରି, ଅଧିବାସ ଦର୍ପଣ ପାଖରେ ଧରିଥାନ୍ତି । ଗରାବଡୁମାନେ ଘିଅ ଓ ଜଳ ଉକ୍ତ ପାତ୍ରିରେ ଦେଇ ଦର୍ପଣ ଉପରେ ଲାଗି କରାନ୍ତି (କେବଳ ଶ୍ରୀଜଗନ୍ନାଥଙ୍କ ବାଡରେ) । ପାଣି ପଡ଼ିବା ପରେ ପୁଷ୍ପାଳକମାନେ ମୈଲମ କରି ନୂଆ ଲୁଗା ଲାଗି କରିବା ପରେ ପଣ୍ଡା, ପତି, ମୁଦିରସ୍ତ ସର୍ବାଙ୍ଗ ଲାଗି କରାନ୍ତି । ଏହା ପରେ ଲକ୍ଷ୍ମୀ ଆଜ୍ଞାମାଳ ପାଇ ପାଲିଙ୍କିରେ ଯାଇ ଲକ୍ଷ୍ମୀମନ୍ଦିରର ଜଗମୋହନରେ ଖଟ ଉପରେ ବିଜେ ହୁଅନ୍ତି । ସେଠାରେ ତାଙ୍କର ମାଜଣା, ଚନ୍ଦନଲାଗି ବେଶ ହୁଏ । ଏହା ପରେ ଭିତରେ ମହାପ୍ରଭୁଙ୍କର ଅଭିଷେକ ବେଶ, ସୁନା ଅଳଙ୍କାର ଲାଗି, ମାଳଫୁଲ କର୍ପୂର ଲାଗି ପରେ ରୋଷଘରୁ ଘଣ୍ଟ, ଛତା, କାହାଳୀ, ପଟୁଆରରେ ପୁଷ୍ୟାଭିଷେକ ଯାତ୍ରାର୍ଗୀ ଭୋଗ ଛାମୁକୁ ଆସେ । ଏହା ପରେ ଲକ୍ଷ୍ମୀ ବାହୁଡ଼ା ବିଜେ ହୋଇ ଭିତର ସିଂହାସନକୁ ବିଜେ କରନ୍ତି । ମୁଦିରସ୍ତ ପ୍ରସାଦ ଲାଗି କରନ୍ତି ଓ ଦଣ୍ଡଛତ୍ର ସଂସ୍କାର କରି ଭିତରଛ ମହାପାତ୍ର ସିଂହାସନ ଉପରକୁ ଉଠିଲେ ତାଙ୍କୁ ଦିଅନ୍ତି । ଭିତରଛ ସିଂହାସନ ଉପରେ ଲକ୍ଷ୍ମଣଙ୍କ ସ୍ୱରୂପ ଠିଆହୋଇ ଦଣ୍ଡଛତ୍ର ଧରନ୍ତି । ପାଳିଆ ଭଣ୍ଡାରମେକାପ ହନୁମାନ ସ୍ୱରୂପ ଦଣ୍ଡଛତ୍ର ମୂଳକୁ ଧରନ୍ତି । ପୂଜାପଣ୍ଡା ଆସି ଷୋଡ଼ଶ ଉପଚାରରେ ପୂଜା କରନ୍ତି । ଭୋଗସରି ପାଣି ପଡ଼ିଲେ ପଣ୍ଡା, ପତି, ମୁଦିରସ୍ତ ତିନିବାଡ଼ରେ ବନ୍ଦାପନା କରନ୍ତି । ମୁଦିରସ୍ତ ଫୁଲ ଶର ଆୟୁଧ ଲାଗି କରନ୍ତି । ପରେ ସେ ସିଂହାସନ ଉପରେ ଚାମର ଆଲଟ କରନ୍ତି । ତା'ପରେ ସିଂହାସନ ତଳେ ମଧ୍ୟ ଆଲଟ ଲାଗି ଓ ଘଷା ବିଡ଼ିଆ ଦହି ମଣୋହି କରନ୍ତି । ଅଖଣ୍ଡ ମେକାପ ବଇଠା ହାତରେ ଧରି ଶ୍ରୀଜଗନ୍ନାଥଙ୍କ ବାଡ଼ରେ ଠିଆ ହୋଇଥା'ନ୍ତି । ରାଜନୀତି ଓ ବନ୍ଦାପନା ସରିବା ପରେ ମୁଦିରସ୍ତ ସିଂହାସନ ଉପରକୁ ଫୁଲ ଧନୁଶର ଓ ଗଦି ପ୍ରସାଦ ମୈଲମ କରନ୍ତି । ଭିତରଛ ଦଣ୍ଡଛତ୍ର ମୈଲମକରି ତଳକୁ ଦିଅନ୍ତି । ଏ ଉତ୍ତାରୁ ଦକ୍ଷିଣଘର ଭୋଗ ଶେଷ ପରେ ରଘୁନାଥ ଠାକୁର ରତ୍ନସିଂହାସନଙ୍କୁ ବିଜେ କରନ୍ତି । ସେ ଶ୍ରୀଅଙ୍ଗରୁ ଆଜ୍ଞାମାଳ ପାଇବା ପରେ ଲକ୍ଷ୍ମୀମନ୍ଦିରକୁ ବାହାର ଅଭିଷେକପାଇଁ ବିଜେ କରନ୍ତି । ସେଠାରେ କାଠ ଭଦ୍ରାସନରେ ବିଜେ ହେବା ପରେ ମହାସ୍ନାନ ହୁଏ । ଭୋଗ ବନ୍ଦାପନା ହୋଇ ଦକ୍ଷିଣ ଘରକୁ ବାହୁଡ଼ା ବିଜେ କରନ୍ତି ।

## ନବାଙ୍କ ଓ ମକର ସଂକ୍ରାନ୍ତି

ନବାଙ୍କ ପୂର୍ବଦିନ ଦୁଧମେଲାଣ ନୀତି ହୁଏ । ନବାଙ୍କ ଦିନ ଚାଉଳ ମେଲାଣ ଓ ଫୁଲ ମେଲାଣ ନୀତି ହୁଏ ।

ମକର ସଂକ୍ରାନ୍ତି ଦିନ ଆଳତି, ଅବକାଶ ପରେ ଦିଅଁମାନେ ଫୁଟାପହରଣ ଲାଗି ହୁଅନ୍ତି । ତ୍ରିମୁଣ୍ଡିରେ ମକରଚୂଳ ଲାଗି ହୁଏ । ମାଳ ଲାଗି ବେଶ ଓ କର୍ପୂର ଲାଗି ହୁଏ । ବଲ୍ଲଭ ଭୋଗ ପରେ ସକାଳ ଧୂପ ସରି ମଇଲମ ପରେ ମହାସ୍ନାନ କରାଯାଏ । ଏହା ପରେ ସର୍ବାଙ୍ଗ ବିଜେ ହୋଇ ଆସି ସର୍ବାଙ୍ଗ ଲାଗି ବଢ଼ିବା ପରେ ନୂଆଲୁଗା, ଚୂଳ, ମାଳ, ଛଅମୂର୍ତ୍ତି ଅଳଙ୍କାର ଲାଗି

ପରେ ବେଶ ଶେଷ ହୁଏ । ଧୋପଖାଳ ପରେ ଦ୍ୱିପ୍ରହର ଧୂପ ସହିତ ଯାତ୍ରାର୍ଙ୍ଗୀ ଭୋଗ ରୋଷଘରୁ ଘଣ୍ଟ, ଛତା କାହାଳୀ ସହ ସେବକଙ୍କ ପଟୁଆରରେ ଆସେ । ଷୋଡ଼ଶ ଉପଚାରରେ ମଣୋହି ବଢ଼େ । ଟେରା ପଡ଼ିବା ପରେ ଏକ ଓଳି ଅନ୍ନ ବାହାରକୁ ଆସି ମନ୍ଦିର ଚାରି ପାଖରେ ଦିଗବଳି ପ୍ରଦାନ ହୁଏ । ଏହି ଭୋଗ ଶେଷ ହୋଇ ଆଳତି ବଢ଼ି, ଧୋପଖାଳ ହୋଇ ଟେରାବନ୍ଧା ଗଲା ପରେ ଅଧିବାସ ହୋଇଥିବା ମକରଚାଉଳ ଆଣିବାପାଇଁ ଭୋଗମଣ୍ଡପ ଘରକୁ ଭୋଗ ଡ଼କାଯାଏ ।

ଭୋଗ ଡାକିଯିବା ବେଳକୁ ସୁଧ ସୁଆରମାନେ ପୂର୍ବରୁ ଗୋଦମରୁ ନଡ଼ିଆ, ଘିଅ, ମିଠା, ମସଲା ଓ ଦୁଧସର ନେଇଥା'ନ୍ତି । ପର୍ବଯାତ୍ରା ଯୋଗାଣିଆଠାରୁ ହାଣ୍ଡି କୁଡୁଆମାନ ନେଇଥା'ନ୍ତି । ସେମାନେ ପଣ୍ଡିବଡୁମାନଙ୍କଠାରୁ ତିନିଗୋଟି ରୂପାଥାଳି ନେଇଥା'ନ୍ତି । ସେଥିରେ ଉକ୍ତ ଚାଉଳକୁ ମୁର୍ତ୍ତୁମୂଳ କରି ରଖିଥା'ନ୍ତି । ତାହା ପଣ୍ଡିବଡୁମାନେ ବାଘମୁହଁ ବାନ୍ଧି ଘଣ୍ଟ, ଛତା, କାହାଳୀ ସହିତ ତଳିଛ ପଟୁଆର କରି ବଡ଼ଦେଉଳକୁ ତିନିବେଢ଼ା ବୁଲି ଭିତରେ ପଣ୍ଡିରେ ବାଢନ୍ତି । ଏହା ପରେ ରୋଷଘରୁ ମକରଚୌରାଶୀ ଭୋଗ ଘଣ୍ଟ, ଛତା, କାହାଳୀ ସହ ପଟୁଆରରେ ଛାମୁକୁ ଆସେ । ପରେ ମହାଭୋଇମାନେ ବାଘମୁହଁ ବାନ୍ଧି, ଘଣ୍ଟା, ଛତା କାହାଳୀ ସହ ନିର୍ଦ୍ଦିଷ୍ଟ ସେବକଙ୍କ ସହ ପଟୁଆରରେ ଆସି ଦୁଧଘରଠାରୁ ସେମାନେ ଆଣିଥିବା ଦହି ଜୟବିଜୟ ଦ୍ୱାରଠାରେ ଲଣ୍ଡାବର୍ତ୍ତିରେ ଦରଶୁଆ କରାଇ, ବଡ଼ଦେଉଳକୁ ଗୋଟିଏ ବେଢ଼ା ବୁଲି ଦହି ମହାସୁଆରଙ୍କ ଜିମା ଦିଅନ୍ତି । ସେ ଛାମୁରେ ବାଢ଼ନ୍ତି । ହଡ଼ପ ନାୟକମାନେ ସେହିପରି ହଡ଼ପଘରଠାରୁ ବାଘମୁହଁ ବାନ୍ଧି ଘଣ୍ଟ, ଛତା, କାହାଳୀ ସହ ପଟୁଆରରେ ବଡ଼ ଦେଉଳକୁ ବେଢ଼ାଏ ବୁଲି ନଳିପାନ ଓ ଛାଚିପାନ ଭୋଗରେ ବାଢ଼ିବା ପାଇଁ ମହାସୁଆରଙ୍କୁ ଦିଅନ୍ତି । ଏହା ପରେ ମୁଦିରସ୍ତ ପ୍ରସାଦ ଲାଗି କରନ୍ତି । ଏ ଭୋଗ ପୂଜାପଣ୍ଡାମାନେ ପଞ୍ଚ ଉପଚାରରେ ମଣୋହି କରନ୍ତି । ପରେ ଟେରା ଫିଟି ମହାପ୍ରସାଦ ଭିତରେ ଥାଇ ପଣ୍ଡା, ପତି, ମୁଦିରସ୍ତ ବନ୍ଦାପନା କରନ୍ତି ।

**ପଦ୍ମବେଶ :** ବେଶ ଅଧ୍ୟାୟ ଦ୍ରଷ୍ଟବ୍ୟ ।

## ବସନ୍ତ ପଞ୍ଚମୀ (ମାଘ ଶୁକ୍ଳ ପଞ୍ଚମୀ)

ମଧ୍ୟାହ୍ନ ଧୂପ ପରେ ମଇଲମ ପରେ ମାଧବାଳି ଲୁଗା ଲାଗି ହୁଏ । ତିନିଗୋଟି ରୁପା ପିଙ୍ଗଣରେ ନିର୍ଦ୍ଦିଷ୍ଟ ସେବକମାନଙ୍କଦ୍ୱାରା ଚନ୍ଦନବିଜେ ହୋଇ ଚନ୍ଦନଲାଗି କରାଯାଏ । ଦକ୍ଷିଣ ଘରେ ପଡ଼ିଥିବା ଖଟ ଉପରେ ସିଂହାସନରୁ ଶ୍ରୀଦେବୀ ଓ ଭୂଦେବୀ ଏବଂ ଦୋଳଗୋବିନ୍ଦ ଠାକୁରଙ୍କୁ ଉକ୍ତ ଖଟ ଉପରେ ବିଜେ କରାଯାଏ । ଭିତରର ବେଶ ବଢ଼ିବା ବେଳକୁ, ଏହି ତିନି ଦିଅଁଙ୍କର ଚାଚେରୀ ବେଶ, ମାଣ୍ଡୁଅ ଭୋଗ, ସର୍ପାମଣୋହି ଓ ଦକ୍ଷିଣ ଘର ଭୋଗ ଶେଷ ହୋଇଯାଇଥାଏ । ଭିତରେ ପାଣି ପଡ଼ି ରୋଷ ଘରକୁ ଚାଚେରୀ ଭୋଗ ଡାକରା ଯାଏ । ଭୋଗ ଛାମୁକୁ ଆସିଲେ ଦୁଇ ଦେବୀ ଓ ଦୋଳଗୋବିନ୍ଦ ଭିତରେ ସିଂହାସନକୁ ବିଜେ କରନ୍ତି । ପରେ ମୁଦିରସ୍ତ ଶ୍ରୀଅଙ୍ଗରେ ପ୍ରସାଦ ଲାଗି କରନ୍ତି । ପୂଜାପଣ୍ଡା ପଞ୍ଚୋପଚାରରେ ଭୋଗ କରନ୍ତି । ଭୋଗ ସରି ଧୋପଖାଳ

ହେବା ପରେ ପୂଜାପଣ୍ଡା, ପତି ମହାପାତ୍ର ଓ ମୁଦିରସ୍ତ ଚନ୍ଦନଫଗୁ ବିଜେ କରି ଆଣି ସିଂହାସନ ଉପରକୁ ଉଠି ତିନିବାଡ଼ରେ ଏହା ଲାଗି କରନ୍ତି । ପରେ ଏମାନେ ତିନିବାଡ଼ରେ ବନ୍ଦାପନା କରି ତଳକୁ ଓହ୍ଲାଇ ଆସନ୍ତି । ଏହା ପରେ ମୁଦିରସ୍ତ ତିନିବାଡ଼ରେ ସିଂହାସନ ତଳେ ଝିମିର ଫଗୁ ଅଞ୍ଜଳି କରନ୍ତି । ପୁଣି ସିଂହାସନକୁ ଉଠି ଫଗୁଚନ୍ଦନ ମୁଣି ପ୍ରସାଦ ଲାଗି କରିବା ଉତ୍ତାରୁ ସିଂହାସନ ଉପରେ ଚାମର ଆଲଟ କରନ୍ତି ଓ ତଳେ ମଧ୍ୟ ତାହା କରନ୍ତି । ଏହା ପରେ ପୂଜାପଣ୍ଡା ଉକ୍ତ ଦୁଇ ଦେବୀ ଓ ଠାକୁରଙ୍କୁ ଶ୍ରୀଅଙ୍ଗରୁ ଆଜ୍ଞାମାଳ ଦେବା ପରେ ମହାଜନେ ଉକ୍ତ ତିନି ଠାକୁରଙ୍କୁ ବିଜେ କରାଇ ଆଣି ଜୟବିଜୟ ଦ୍ୱାର ଲଣ୍ଡାବର୍ତ୍ତ ଉପରେ ଠିଆହୋଇ ରହନ୍ତି । ଏଠାରେ ଠାକୁରମାନଙ୍କୁ ମୁଦିରସ୍ତ ଫଗୁଚନ୍ଦନ ମୁଣି ପ୍ରସାଦ ଲାଗି କରନ୍ତି ଓ ବନ୍ଦାପନା, ଚାମର ଆଲଟ କରନ୍ତି । ପରେ ସେ ତିନିଠାକୁରଙ୍କ ପ୍ରଭା ଉପରକୁ ଫଗୁ ଛିଞ୍ଚନ୍ତି । ତା'ପରେ ତିନି ଦିଅଁ ହାତରେ ମହାଜନଙ୍କଦ୍ୱାରା ବିଜେ ହୋଇ ବଟମୂଳେ ଥିବା ବିମାନରେ ବିଜେ କରନ୍ତି । ବିମାନବଡୁମାନେ ଘଣ୍ଟ, ଛତା ଓ କାହାଳୀ ସହ ବିମାନକୁ ଗୁଣ୍ଡିଚା ତୋଟା (ନରେନ୍ଦ୍ର)କୁ ନିଅନ୍ତି । ଏ ବିମାନ ପଛରେ ପଞ୍ଚ ମହାଦେବ (ପଞ୍ଚପାଣ୍ଡବ)ଙ୍କ ବିମାନମାନ ଯାଏ । ଏଠାରେ ଦୁଇଦେବୀ ଜଗତି ଉପରେ ଓ ଦୋଳଗୋବିନ୍ଦ ଚଉଦୋଳରେ ବିଜେକରି ରହନ୍ତି । ନିର୍ଦ୍ଦିଷ୍ଟ ସେବକମାନଙ୍କଦ୍ୱାରା ଫଗୁଖେଳ ହୁଏ । ଦୋଳଗୋବିନ୍ଦ ଜଗତିରେ ଦୁଇ ଦେବୀଙ୍କ ପାଖରେ ବିଜେ ହୁଅନ୍ତି । ଏଠାରେ ଶୀତଳଭୋଗ ତିନିଟି ପନ୍ତିରେ ବଢ଼ାଯାଏ । ମୁଦିରସ୍ତ ପ୍ରସାଦ ଲାଗି, ବନ୍ଦାପନା, ଚାମର ଆଲଟ କରିବା ପରେ ପ୍ରସାଦ ମୈଲମ ହୁଏ । ଏହା ପରେ ଦିଅଁମାନେ ବେଣ୍ଟବିନ୍ଧା ନୀତିପାଇଁ ବେଣ୍ଟପୋଖରୀ (ଜଗନ୍ନାଥ ବଲ୍ଲଭ)କୁ ବିଜେ କରନ୍ତି । ଏଠାରେ ତୀରକମାଣକୁ ଭିତରଛ ଦିଅଁଙ୍କ ଶ୍ରୀଅଙ୍ଗରେ ଛୁଆଁଇ ଲେଙ୍କା ସେବକକୁ ଦେଲେ ସେ ପଇଡ଼କୁ ବେଣ୍ଟ ବିନ୍ଧନ୍ତି । ଦିଅଁମାନେ ଏହା ଉତ୍ତାରୁ ବଡ଼ଦେଉଳକୁ ବାହୁଡ଼ାବିଜେ କରନ୍ତି । ବଟ ମୂଳେ ରୁନ୍ଧା ଫିଟା ଗଲା ପରେ ମହାଜନମାନେ ହାତରେ ବିଜେ କରାଇନେଇ ଚାଚେରୀ ନିମନ୍ତେ ଜୟବିଜୟ ଦ୍ୱାରରେ ରହନ୍ତି । ଏଠାରେ ପ୍ରସାଦଲାଗି ଓ ବନ୍ଦାପନା ହେବା ପରେ ଦୋଳଗୋବିନ୍ଦ ଦକ୍ଷିଣ ଘରକୁ ଓ ଠାକୁରାଣୀ ଦ୍ୱୟ ସିଂହାସନକୁ ବିଜେ ହୁଅନ୍ତି । ସନ୍ଧ୍ୟାଧୂପ ସମାପନ ପରେ ସରସ୍ୱତୀ ମନ୍ଦିରରେ ପାଞ୍ଜି ପୂଜା ହୁଏ ।

## ତିଳ ସପ୍ତମୀ (ମାଘ ଶୁକ୍ଳ ସପ୍ତମୀ)

ସନ୍ଧ୍ୟାଧୂପ ପରେ ସୂର୍ଯ୍ୟ ମନ୍ଦିରରେ ଠାକୁରଙ୍କ ବେଶ, ଭୋଗ (ଖିଞ୍ଚା ଭୋଗ) ଓ ବନ୍ଦାପନା ହୁଏ । ଏହା ପରେ ଭିତରେ ଅନ୍ୟାନ୍ୟ ନୀତି ହୁଏ ।

## ଭୌମ ଏକାଦଶୀ (ମାଘ ଶୁକ୍ଳ ଏକାଦଶୀ)

ଭୋଗମଣ୍ଡପ ଧୂପ ପରେ ଶ୍ରୀଜୀଉମାନଙ୍କର ପଞ୍ଚାମୃତରେ ମହାସ୍ନାନ ହୋଇ ମଇଲମ ହେବା ପରେ ସର୍ବାଙ୍ଗ ବିଜେ ହୋଇ ଲାଗି କରାଯାଏ । ଛଅମୂର୍ତ୍ତି ଅଳଙ୍କାର ଓ କର୍ପୂର ଲାଗିହୋଇ ବେଶ

ବଢ଼େ । ପାଣି ପଡ଼ି ମଧ୍ୟାହ୍ନ ଧୂପ ଛେକ ଆସିଲେ ମୁଦିରସ୍ତ ପ୍ରସାଦଲାଗି କରନ୍ତି । ଭୋଗ ସରିଲେ ତିନିବାଡ଼ରେ ବନ୍ଦାପନା ହୁଏ ।

## ଗଜ ଉଦ୍ଧାରଣ ବେଶ (ମାଘ ପୂର୍ଣ୍ଣିମା)

ମଧ୍ୟାହ୍ନ ଧୂପ ପରେ ହୁଏ । 'ବେଶ ଅଧ୍ୟାୟ' ଦ୍ରଷ୍ଟବ୍ୟ ।

## ଶିବରାତ୍ରି (ଫାଲଗୁନ କୃଷ୍ଣ ଚତୁର୍ଦ୍ଦଶୀ)

ଶ୍ରୀମନ୍ଦିରର ରତ୍ନଭଣ୍ଡାରର ରକ୍ଷକ ଶ୍ରୀଲୋକନାଥ ଠାକୁର ଏହି ଦିନ ଶ୍ରୀଲୋକନାଥ ମନ୍ଦିରକୁ ବିଜେ କରନ୍ତି । ଉକ୍ତ ମନ୍ଦିରର ସେବକମାନେ ଆସି ବିମାନରେ ସେଠାକୁ ନିଅନ୍ତି । ସେଠାରେ ହରିହର ଭେଟ, ଭୋଗ, ବନ୍ଦାପନା ସରିବା ପରେ ବାହୁଡ଼ାବିଜେ କରନ୍ତି ।

## ଦୋଳ ଯାତ୍ରା (ଫାଲଗୁନ ଶୁକ୍ଳ ଦଶମୀଠାରୁ ଚୈତ୍ର କୃଷ୍ଣ ପ୍ରତିପଦ)

ଶ୍ରୀମନ୍ଦିରର ପ୍ରସିଦ୍ଧ ଦ୍ୱାଦଶ ଯାତ୍ରାରୁ ଅନ୍ୟତମ ଦୋଳଯାତ୍ରା ସାତଦିନ ଧରି ପାଳିତ ହୁଏ । ପୂର୍ଣ୍ଣିମାର ପାଞ୍ଚଦିନ ପୂର୍ବରୁ ଏହି ଯାତ୍ରା ଆରମ୍ଭ ହୋଇ ପୂର୍ଣ୍ଣିମାର ପରଦିନ (ପ୍ରତିପଦ) ଶେଷ ହୁଏ । ଦଶମୀଠାରୁ ଚତୁର୍ଦ୍ଦଶୀ ମଧ୍ୟରେ ତିଥିକ୍ଷୟ ଥିଲେ ଫାଲଗୁନ ଶୁକ୍ଳ ନବମୀଠାରୁ ପାଳନ କରାଯାଏ । ସର୍ବତ୍ର ରାଧାକୃଷ୍ଣଙ୍କର ଦୋଳଯାତ୍ରାର ପ୍ରସିଦ୍ଧି ଥିଲେ ମଧ୍ୟ ଶ୍ରୀକ୍ଷେତ୍ରରେ ଶ୍ରୀଦେବୀ ଓ ଭୂଦେବୀଙ୍କ ସହିତ ଦୋଳଗୋବିନ୍ଦଙ୍କ ଦୋଳଯାତ୍ରା ପରେ ଏକତ୍ରାବସ୍ଥାନ ଶ୍ରୀକ୍ଷେତ୍ରର ଓ ଶ୍ରୀମନ୍ଦିରର ମାହାତ୍ମ୍ୟ ପୃଥକ ଭାବେ ଚିହ୍ନାଇ ଦିଏ ।

ଦଶମୀ ଦିନ ମଧ୍ୟାହ୍ନ ଧୂପ ପରେ ମୈଲମ ଓ ନାଲି ଲୁଗା ଲାଗି ପରେ ଶ୍ରୀଜୀଉମାନଙ୍କର ସର୍ବାଙ୍ଗ ବଢ଼େ । ପରେ ଚାଚେରୀ ବେଶ ନିମନ୍ତେ ଶ୍ରୀଦେବୀ ଓ ଭୂଦେବୀ ସିଂହାସନରୁ ଦକ୍ଷିଣ ଘରଠାକୁ ବିଜେ ହୁଅନ୍ତି । (ବସନ୍ତ ପଞ୍ଚମୀ ପରି ନୀତି ହୁଏ) । ବିମାନରେ ଜଗନ୍ନାଥବଲ୍ଲଭ ମଠକୁ ବିଜେ ହୁଅନ୍ତି । ସେଠାରେ ଭୋଗ ଓ ଜଉଡାବ ଖେଳ ପରେ ବାହୁଡ଼ାବିଜେ କରନ୍ତି । ଏକାଦଶୀ ଦିନ ଜୟବିଜୟ ଦ୍ୱାରଠାରେ ଭୋଗ ବନ୍ଦାପନା (ଦୋଳଗୋବିନ୍ଦଙ୍କ) ସରିବା ପରେ ଦୁଇଦେବୀ ଭିତରୁ ବିଜେ କରି ଆସି ଜୟବିଜୟ ଦ୍ୱାରଠାକୁ ଆସନ୍ତି । ତିନିଦିଅଁ ବିମାନରେ ଜଗନ୍ନାଥବଲ୍ଲଭ ମଠକୁ ବିଜେ କରନ୍ତି । ଅନ୍ୟାନ୍ୟ ନୀତି ଫଗୁ ଦଶମୀ ପରି ହୁଏ । ଏହିପରି ଦ୍ୱାଦଶୀ ଓ ତ୍ରୟୋଦଶୀ ପର୍ଯ୍ୟନ୍ତ ନୀତି ହୁଏ ।

ଫାଲଗୁନ ଶୁକ୍ଳ ଚତୁର୍ଦ୍ଦଶୀ ଦିନ ଅଗ୍ନି ଉତ୍ସବ ହୁଏ । ମଧ୍ୟାହ୍ନ ଧୂପ ପରେ ଚନ୍ଦନବିଜେ, ସର୍ବାଙ୍ଗ ଲାଗି ପରେ ଦୁଇ ଠାକୁରାଣୀ ଚାଚେରୀ ବେଶ ନିମନ୍ତେ ଦକ୍ଷିଣ ଘରଠାରେ ଖଟଶେଯ ଉପରକୁ ବିଜେ କରନ୍ତି । ଏମାନଙ୍କ ସହିତ ଦୋଳଗୋବିନ୍ଦ ମଧ୍ୟ ବେଶ ହୁଅନ୍ତି । ବେଶ ପରେ ମାଳଫୁଲ କର୍ପୂର ଲାଗି ହୁଏ । ଧୋପଖାଳ ପରେ ପରେ ଚାଚେରୀ ଭୋଗ ଡକାଯାଏ । ଦକ୍ଷିଣ ଘର ଭୋଗ ପରେ ସେଠାରୁ ଦିଅଁମାନେ ଭିତରକୁ ବିଜେ କରନ୍ତି । ମୁଦିରସ୍ତଙ୍କ ପ୍ରସାଦ ଲାଗି

ପରେ ପୂଜାପଣ୍ଡା ପଞ୍ଚ ଉପଚାରରେ ଭୋଗ କରନ୍ତି । ଧୋପଖାଳ ହେବା ପରେ ପଣ୍ଡା, ପତି, ମୁଦିରସ୍ତ ପରମ୍ପରା ଅନୁସାରେ ଚନ୍ଦନ ଫଗୁ ବିଜେ କରାଇ ଆଣି ତିନିବାଡ଼ରେ ଶ୍ରୀଅଙ୍ଗରେ ଲାଗି କରାନ୍ତି ଓ ବନ୍ଦାପନା କରନ୍ତି । ମୁଦିରସ୍ତ ସିଂହାସନ ତଳେ ଝିମିରି ଫଗୁ ଅଞ୍ଜଳି କରନ୍ତି ଓ ଶ୍ରୀଅଙ୍ଗରେ ଫଗୁମୁଣି ଲାଗି କରନ୍ତି । ଚାମର ଆଲଟ କରନ୍ତି । ପୂଜାପଣ୍ଡା ଆଜ୍ଞାମାଳ ଦେଲା ପରେ ମହାଜନମାନେ ଶ୍ରୀଦେବୀ, ଭୂଦେବୀ ଓ ଦୋଳଗୋବିନ୍ଦଙ୍କୁ ହାତରେ ବିଜେ କରାଇନେଇ ଜୟବିଜୟ ଦ୍ୱାର ଓ ମୁକ୍ତିମଣ୍ଡପ ଦେଇ ଲକ୍ଷ୍ମୀଙ୍କ ମନ୍ଦିରଠାରେ ପଲଙ୍କରେ ବିଜେ କରାନ୍ତି । ଏଠାରେ ଫଗୁ ଖେଳ ହୁଏ । ପରେ ପ୍ରସାଦ ଲାଗି ଓ ବନ୍ଦାପନା ହୁଏ । ପରେ ଲକ୍ଷ୍ମୀମନ୍ଦିରଠାରେ ଥିବା ବିମାନରେ ତିନିଦିଅଁ ବିଜେକରି ଦୋଳବେଦୀଠାରେ ଥିବା ଅଗ୍ନିଉତ୍ସବ ଘରକୁ ବିଜେ କରନ୍ତି । ସେଠାରେ ପୂଜାପଣ୍ଡା ହୋମ କରନ୍ତି । ହୋମ ପରେ ପ୍ରସାଦ ଲାଗି, ଶୀତଳ ଭୋଗ ମଣୋହି ହୋଇ ଚାମର ଆଲଟ ହୁଏ । ଅଗ୍ନିଘରେ ନିଆଁ ଲଗାଯାଏ । ବିମାନ ଅଗ୍ନିଘର ଚାରିପଟେ ସାତଘେରା ବୁଲେ । ବାହୁଡ଼ା ବିଜେ ପୂର୍ବଦିନମାନଙ୍କ ପରି ହୁଏ । ଏହା ପରେ ଭିତରେ ବଡ଼ସିଂହାର ଭୋଗ ହୋଇ ଅନ୍ୟାନ୍ୟ ନୀତି ହୁଏ ।

## ଦୋଳପୂର୍ଣ୍ଣିମା

ପୂର୍ଣ୍ଣିମା ଦିନ ଅବକାଶ ଓ ମୈଲମ ପରେ ପୁଷ୍ପାଳକମାନେ ଚନ୍ଦନଲାଗି, ନୂଆ ବୋଇରାଣୀ ଶାଢ଼ି ଖଣ୍ଡୁଆ ଲାଗି, ତ୍ରିମୁଣ୍ଡିରେ ଗଭାଲାଗି କରନ୍ତି । ଏହା ପୂର୍ବରୁ ରୋଷହୋମ, ସୂର୍ଯ୍ୟପୂଜା ଓ ଦ୍ୱାରପାଳ ପୂଜା ସରିଥାଏ । ଖଇକୋରା ଭୋଗ ଛାମୁକୁ ଆସିବା ପରେ ମହାଜନ ଦୋଳଗୋବିନ୍ଦଙ୍କୁ ସିଂହାସନକୁ ବିଜେ କରାନ୍ତି । ପୂଜାପଣ୍ଡା ପଞ୍ଚୋପଚାରରେ ଭୋଗ କରନ୍ତି । ଭୋଗ ପରେ ପୂଜାପଣ୍ଡା ଶ୍ରୀଅଙ୍ଗରୁ ଆଜ୍ଞାମାଳ ଦିଅନ୍ତି । ଏହା ପରେ ମହାଜନେ ଶ୍ରୀଦେବୀ, ଭୂଦେବୀ ଓ ଦୋଳଗୋବିନ୍ଦଙ୍କୁ ସିଂହାସନ ଚାରିପଟେ ସାତଘେରା ବୁଲାନ୍ତି । ତା'ପରେ ସେମାନେ ଦିଅଁ ତିନି ଜଣଙ୍କୁ ନାଭିକଟା ମଣ୍ଡପରେ ଖଟରେ ବିଜେ କରାନ୍ତି । ଏଠାରେ ନିର୍ଦ୍ଦିଷ୍ଟ ସେବକମାନଙ୍କଦ୍ୱାରା ମହାସ୍ନାନ, ମାଜଣା, ବନକଲାଗି, ପାଟଯୋଡ଼ ଶାଢ଼ି ଲାଗି ହୋଇ ବେଶ ବଢେ । ତା'ପରେ ଶୀତଳ ଭୋଗ ଛେକ ଆସେ । ମୁଦିରସ୍ତ ପ୍ରସାଦ ଲାଗି କରନ୍ତି । ପୂଜାପଣ୍ଡା ପଞ୍ଚୋପଚାରରେ ମଣୋହି କରନ୍ତି । ବନ୍ଦାପନା ହୁଏ । ମହାଜନେ ତିନିଦିଅଁଙ୍କୁ ସାତପାହାଚ ଦ୍ୱାରଠାରେ ଥିବା ବିମାନରେ ବିଜେ କରାନ୍ତି । ବିମାନବଡୁମାନେ ବିମାନ କାନ୍ଧେଇ, ଘଣ୍ଟ ଛତା କାହାଳୀ ସହ ବଡ଼ଦେଉଳକୁ ସାତଘେରା ବୁଲି ଦୋଳବେଦୀକୁ ଯା'ନ୍ତି । ବେଦୀ ଚାରିପଟେ ସାତଘେରା ବୁଲନ୍ତି । ତା'ପରେ ମହାଜନେ ଦିଅଁମାନଙ୍କୁ ସାତଘେରା ବେଦୀ ଉପରେ ଚାରିପଟେ ବୁଲାନ୍ତି ଓ ବନ୍ଧା ହୋଇଥିବା ଦୋଳିର ଚାରିପଟେ ସାତଘେରା ବୁଲାଇ ଦୋଳିରେ ବିଜେ କରାନ୍ତି । ଏହା ପରେ ଦୋଳବେଦୀରେ ସର୍ବସାଧାରଣପାଇଁ ଦର୍ଶନ ବ୍ୟବସ୍ଥା ହୁଏ । ତା'ପରେ ପାଣିପଡ଼ି ଧୋପଖାଳ ହୁଏ । ଏଠାରେ ଘଣ୍ଟ, ଛତା ଓ କାହାଳୀ, ତଳିଛ ପଟୁଆର ହୋଇ ସକାଳ, ମଧ୍ୟାହ୍ନ ଓ ସନ୍ଧ୍ୟାଧୂପ ଷୋଡ଼ଶ ଉପଚାରରେ ପୂଜା ହୁଏ । ଏହା ପରେ ବାହୁଡ଼ାବିଜେ ସକାଶେ ଦିଅଁମାନେ ଦୋଳିରୁ ଓହ୍ଲାନ୍ତି ।

ମୁଦିରସ୍ତ ନିଉଛାଳି କରିବା ପରେ ସିଂହାସନ ଚାରିପଟେ ସାତଘେରା ବୁଲି ସିଂହାସନ ତଳେ ଠିଆ ହୋଇ ରହନ୍ତି । ପ୍ରସାଦ ଲାଗି ଓ ବନ୍ଦାପନା ହୁଏ । ସିଂହାସନ ତଳେ ଚାରିପଟ ସାତଘେରା ବୁଲି ବିମାନରେ ଦିଅଁମାନେ ବିଜେ କରନ୍ତି । ବିମାନ ବେଦୀ ଚାରିପଟେ ସାତଘେରା ବୁଲିବା ପରେ ଦିଅଁମାନେ ଶ୍ରୀମନ୍ଦିରକୁ ବିଜେ କରନ୍ତି । ଶ୍ରୀମନ୍ଦିରରେ ସାତଘେରା ବୁଲିବା ପରେ ସରସ୍ୱତୀ ଦେଉଳ ସାମନାରେ ବିମାନ ରଖାଯାଏ । ସେଠାରେ ଶୀତଳଭୋଗ ମଣୋହି ହୁଏ ଓ ବନ୍ଦାପନା ହୁଏ । ଏହା ପରେ ବିମାନ ସାତ ପାହାଚ ଦେଇ ଭିତର କାଠ ପାଖରେ ଭଣ୍ଡାର ଦ୍ୱାରଠାରେ ବିଜେ ହୁଅନ୍ତି । ସେଠାରେ ବନ୍ଦାପନା ଓ ଜଳଲାଗି ସରିଲେ ଦିଅଁମାନେ ଯେଝା ସ୍ଥାନକୁ ବିଜେ କରନ୍ତି ।

ଏଣେ ଭିତରେ ଖଇକୋରା ଭୋଗ ସରି ତିନିଦିଅଁ ଯିବା ପରେ ପୁଷ୍ପାଳକମାନେ ସିଂହାସନସ୍ଥ ତ୍ରିମୂର୍ତ୍ତିଙ୍କୁ ରାଜବେଶ (ସୁନାବେଶ) କରାନ୍ତି । କର୍ପୂର ଲାଗି ହୁଏ । ବଲ୍ଲଭ, ସକାଳ ଧୂପ ଓ ଭୋଗମଣ୍ଡପ ଧୂପ ହୋଇଥାଏ । ଦିଅଁମାନେ ଦୋଳବେଦୀରୁ ଫେରିଲେ ଅନ୍ୟାନ୍ୟ ନୀତି ହୁଏ ।

## ହୋରି

ଚୈତ୍ର କୃଷ୍ଣ ପ୍ରତିପଦା ଦିନ ମଧ୍ୟାହ୍ନ ଧୂପ ସରିବା ପରେ ଓ ଦକ୍ଷିଣ ଘର ଭୋଗ ସରିବା ପରେ ଦୋଳଗୋବିନ୍ଦ ଠାକୁର ଭିତରକୁ ବିଜେ କରିବା ପରେ ପୂଜାପଣ୍ଡା ଶ୍ରୀଦେବୀ, ଭୂଦେବୀ ଓ ଦୋଳଗୋବିନ୍ଦଙ୍କୁ ଆଜ୍ଞାମାଳ ଶ୍ରୀଜୀଉଙ୍କ ଶ୍ରୀଅଙ୍ଗରୁ ବାହାର କରି ଦିଅନ୍ତି । ମହାଜନେ ତିନି ଦେବୀଙ୍କୁ ଝୁଲଣ ମଣ୍ଡପ ତଳେ ରଖାଯାଇଥିବା ବିମାନରେ ବିଜେ କରାନ୍ତି । ବିମାନବଡୁମାନେ ବିମାନ ନେଇ ସିଂହଦ୍ୱାର ଦେଇ ନରେନ୍ଦ୍ର ଚକଡ଼ାରେ ବିଜେ କରାନ୍ତି । ଏଠାରେ ମୁଦିରସ୍ତ ପ୍ରସାଦ ଲାଗି କରନ୍ତି । ଶୀତଳ ଭୋଗ ମଣୋହି ପୂଜାପଣ୍ଡା ପଞ୍ଚୋପଚାରରେ କଲା ପରେ ମୁଦିରସ୍ତ ବନ୍ଦାପନା କରନ୍ତି । ଚାମର ଆଲଟ କରନ୍ତି । ଏହା ପରେ ତିନିଦିଅଁ ଶ୍ରୀମନ୍ଦିରକୁ ବାହୁଡ଼ାବିଜେ କରନ୍ତି ।

## ଚୈତ୍ର ଗୁଣ୍ଡିଚା

ଚୈତ୍ର ଶୁକ୍ଳପକ୍ଷ ଷଷ୍ଠୀରେ ହୁଏ । ସନ୍ଧ୍ୟା ଧୂପ ବଢ଼ିବା ପରେ ସୂର୍ଯ୍ୟ ମନ୍ଦିରରେ ସୂର୍ଯ୍ୟଦେବଙ୍କୁ ମହାସ୍ନାନ କରାଇ ଗନ୍ଧ ପୁଷ୍ପାଦିରେ ବେଶ କରାଯାଏ । ଏହାଙ୍କ ଦେଉଳରେ ଖିରି, କାକରା ଓ ଲଡୁ ଭୋଗ ବଢ଼ା ହୁଏ । ଏହାଙ୍କ ସେବକ ପଞ୍ଚୋପଚାରରେ ମଣୋହି କରାନ୍ତି ।

## ଅଶୋକାଷ୍ଟମୀ

ଚୈତ୍ର ଶୁକ୍ଳପକ୍ଷ ଅଷ୍ଟମୀରେ ଏହି ନୀତି ହୁଏ । ସକାଳଧୂପ ପରେ ଭଣ୍ଡାରରୁ ଲୋକନାଥ ଠାକୁରଙ୍କୁ ମହାଜନେ ଝୁଲଣ ମଣ୍ଡପ ତଳେ ଥିବା ପାଲିଙ୍କିରେ ବିଜେ କରାନ୍ତି । ବିମାନବଡୁମାନେ ପାଲିଙ୍କି ନେଇ ଶ୍ରୀଈଶାନେଶ୍ୱର ମନ୍ଦିରଠାକୁ ନେଇଯାନ୍ତି । ପାଳିଆଖୁଣ୍ଟିଆ ଖଣ୍ଡେ ଅମୁଣିଆ ମାଳ ନେଇଥାନ୍ତି । ଏହି ମନ୍ଦିରରେ ଭିତରଛ ଉକ୍ତ ମାଳ ଈଶାନେଶ୍ୱରଙ୍କୁ ଲାଗି କରାଇ ମାଳଟି ଲୋକନାଥ ଠାକୁରଙ୍କୁ ଲାଗି କରାନ୍ତି । ତା’ପରେ ବିମାନବଡୁମାନେ ଲୋକନାଥଙ୍କୁ ପାଲିଙ୍କିରେ

ନେଇ ଜଗନ୍ନାଥବଲ୍ଲଭ ମଠକୁ ଯାଆନ୍ତି । ସେଠାରେ ଭୋଗ ବନ୍ଦାପନା ଅଶୋକ କଢ଼ି ମଣୋହି ହୋଇ ବାହୁଡ଼ାବିଜେ ହୁଏ ।

## ଶ୍ରୀରାମନବମୀ

ଶ୍ରୀରାମନବମୀ ପୂର୍ବଦିନ ସନ୍ଧ୍ୟା ଧୂପ ସରିବା ପରେ ଧୋପଖାଳ ହୋଇ ଅନ୍ୟ ଏକ ଭୋଗ, ଜେଉଡ଼ (ଜେଉଟ) ହୁଏ । ପଞ୍ଚ ଉପଚାରରେ ଏହି ପୂଜା ହୁଏ । ତା'ପରେ ପଣ୍ଡା, ପତି, ମୁଦିରସ୍ତ ତିନିବାଡ଼ରେ ବନ୍ଦାପନା କରନ୍ତି । ଶ୍ରୀଜଗନ୍ନାଥଙ୍କ ବାଡ଼ରେ ଅଧିକ ଏକ ବନ୍ଦାପନା ହୁଏ । ଏହାକୁ ଗର୍ଭ ଉଦକ ବନ୍ଦାପନା କୁହାଯାଏ ।

ଚୈତ୍ର ଶୁକ୍ଳ ନବମୀ ଦିନ ମଧ୍ୟାହ୍ନ ଧୂପ ଉଠିଲେ ଜୟବିଜୟ ଦ୍ୱାର ବନ୍ଦ ହୁଏ । ସୁଧ ସୁଆର ଭଣ୍ଡାର ଘର ଆଗରେ ପୋଛାମାରିବା ପରେ ପୂଜାପଣ୍ଡା ଆସି ଜନ୍ମମଣ୍ଡଳ କାଟନ୍ତି । ମଧ୍ୟାହ୍ନ ଧୂପ ଶେଷ ପରେ ଓ ଦକ୍ଷିଣ ଘର ଭୋଗ ଶେଷ ପରେ ରାମଚନ୍ଦ୍ର ପ୍ରତିମାଙ୍କୁ ମହାଜନେ ଭିତର ସିଂହାସନକୁ ବିଜେ କରାନ୍ତି । ମୁଦିରସ୍ତ ଧଣ୍ଡି ପ୍ରସାଦ ଲାଗି କରିବା ପରେ ପ୍ରସାଦ ଉଲାଗି ହୋଇ ରାମଚନ୍ଦ୍ର ଠାକୁରଙ୍କୁ ଆଜ୍ଞାମାଳ ପ୍ରଦାନ ପରେ ଉକ୍ତ ଜନ୍ମମଣ୍ଡଳ ଉପରେ ବିଜେ କରାଯାଏ । ଏଠାରେ ମହାଜନମାନଙ୍କ ଭିତରୁ ଦୁଇଜଣ ଦଶରଥ ଓ କୌଶଲ୍ୟା ଭାବରେ ଖଣ୍ଡୁଆ ଘୋଡ଼ାଇ ହୋଇ ଜନ୍ମବିଧି ହେବା କର୍ପୂର ଆଳତି ବନ୍ଦାପନା ପରେ ମହାସୁଆର ଗଣ୍ଡୂଷ ମସଲା ଓ କ୍ଷୀର ମଣୋହି କରାନ୍ତି । ପୂଜାପଣ୍ଡା ଜନ୍ମବିଧି, ଶୀତଳ ଭୋଗ ମଣୋହି କରନ୍ତି । ମହାସୁଆର ଜୟବିଜୟ ଦ୍ୱାରଠାରେ ଚରୁଭାତ ମଣୋହି କରାନ୍ତି । ଏହାପରେ ଠାକୁର ଦକ୍ଷିଣ ଘରକୁ ବାହୁଡ଼ାବିଜେ କରନ୍ତି ।

ନବମୀ ଦିନ ଜନ୍ମୋତ୍ସବ ପରେ ରାମଲୀଳା ଉତ୍ସବ ଚାଲେ । ଚୈତ୍ରଶୁକ୍ଳ ଦଶମୀ, ଏକାଦଶୀ, ଦ୍ୱାଦଶୀ, ଚତୁର୍ଦ୍ଦଶୀ, ପୂର୍ଣ୍ଣିମା, ବୈଶାଖ କୃଷ୍ଣ ପ୍ରତିପଦ ଓ ଦ୍ୱିତୀୟା ତିଥିମାନଙ୍କରେ ଯଥାକ୍ରମେ ଯଜ୍ଞରକ୍ଷା, ସୀତାବିବାହ, ବନବାସ, ମାୟାମୃଗ ବଧ, ଲଙ୍କାପୋଡ଼ି, ସେତୁବନ୍ଧ, ରାବଣବଧ ଲୀଳା ଉତ୍ସବ ପାଳନ କରାଯାଏ । ପରମ୍ପରାନୁସାରେ କେତେକ ସାହି ଏହି ଲୀଳାର ବିଭିନ୍ନ ଦିନରେ ଅଂଶଗ୍ରହଣ କରନ୍ତି । ଦକ୍ଷିଣ ଘର ଭୋଗ ସମାପ୍ତି ପରେ ଚଳନ୍ତି ପ୍ରତିମାମାନେ ରତ୍ନସିଂହାସନକୁ ବିଜେ ହୋଇ ଆଜ୍ଞାମାଳ ପାଇବା ପରେ ପାଲିଙ୍କିରେ ବିଜେ ହୋଇ ଘଣ୍ଟ, ଛତା, କାହାଳୀ ସହ ଜଗନ୍ନାଥବଲ୍ଲଭ ମଠକୁ ଯାଆନ୍ତି । ସେଠାରେ ସଂପୃକ୍ତ ସାହିର ଯାନିଯାତ୍ରା ଓ ଠାକୁରମାନଙ୍କର ଶୀତଳ ଭୋଗ ପରେ ବାହୁଡ଼ାବିଜେ କରନ୍ତି ।

ତ୍ରୟୋଦଶୀ ତିଥିରେ ଦୟଣାଚୋରି ଉତ୍ସବ ହେଉଥିବାରୁ ରାମଲୀଳା ବନ୍ଦ ରହେ ।

## ରାମାଭିଷେକ

ଏହି ଉତ୍ସବ ପୁଷ୍ୟା ନକ୍ଷତ୍ର ଓ କର୍କଟ ରାଶି ଥାଇ ମହାପ୍ରଭୁଙ୍କର ତାରାଶୁଦ୍ଧି ଥିବା ଦିବସରେ ପାଳନ କରାଯାଏ । ଏହି ଦିନ ସନ୍ଧ୍ୟା ଆଳତି ପରେ ଦକ୍ଷିଣ ଘର ଭୋଗ ପରେ ସିଂହାସନକୁ ବିଜେ ହୋଇ ସେଠାରୁ ଆଜ୍ଞାମାଳ ପାଇଲାପରେ ବଟମୂଳସ୍ଥ ରଥରେ ବିଜେ କରନ୍ତି ।

ବିମାନବଡୁମାନେ ଘଣ୍ଟ, କାହଳୀ ନଥାଇ ରଥକୁ ନନ୍ଦିଗ୍ରାମ (ଜଗନ୍ନାଥବଲ୍ଲଭ ମଠ)କୁ ନିଅନ୍ତି । ସନ୍ଧ୍ୟା ଧୂପ ପୂଜା ବସିଥିବାବେଳେ ଗୌଡ଼ବାଡ଼ ସାହିରୁ ଦୁଇଜଣ ବ୍ୟକ୍ତି ଭରତ ଓ ଶତ୍ରୁଘ୍ନ ବେଶରେ ଶ୍ରୀମନ୍ଦିରକୁ ଆସନ୍ତି ଓ ଭଣ୍ଡାରଘରୁ ରାମଚନ୍ଦ୍ରଙ୍କ ପାଦୁକା ନେଇ ଘଣ୍ଟ ଛତା, କାହାଳୀ ସହ ନନ୍ଦୀ ଗ୍ରାମରେ ପହଞ୍ଚନ୍ତି । ସେଠାରୁ ରାମ, ଲକ୍ଷ୍ମଣ , ସୀତା ଓ ହନୁମାନ ରଥରେ ଆସି ଲକ୍ଷ୍ମୀ ମନ୍ଦିରର ଜଗମୋହନରେ ଖଟରେ ଭଦ୍ରାସନରେ ବିଜେ କରନ୍ତି । ଏହା ପରେ ମହାସ୍ନାନ, ମାଳଫୁଲ ଲାଗି ହୋଇ ବେଶ ହୁଏ । ପାଣିପଡ଼ି ଅଭିଷେକ ଭୋଗ ଡାକରା ଯାଏ । ମହାସୁଆର ଛେକ ଆଣିବା ପରେ ମୁଦିରସ୍ତ ପ୍ରସାଦ ଲାଗି କରନ୍ତି । ପୂଜାପଣ୍ଡା ପଞ୍ଚୋପଚାରରେ ପୂଜା କରନ୍ତି । ତା'ପରେ ବନ୍ଦାପନା ହୁଏ । ଏହା ପରେ ମହାଜନମାନେ ଚାରି ଦିଅଁଙ୍କୁ ହାତରେ ଦକ୍ଷିଣ ଘରକୁ ବିଜେ କରାନ୍ତି । ଏହା ପରେ ଭିତରେ ଅନ୍ୟାନ୍ୟ ନୀତି ହୁଏ ।

## ଦମନକ ଚୋରି

ଚୈତ୍ର ଶୁକ୍ଳ ତ୍ରୟୋଦଶୀ ଦିନ ଦକ୍ଷିଣ ଘର ଭୋଗ ଶେଷ ପରେ ରାମକୃଷ୍ଣଙ୍କୁ ସିଂହାସନକୁ ବିଜେ କରାଯାଇ ଆଜ୍ଞାମାଳ ପ୍ରଦାନ କରାଯାଏ । ଗତଦିନ ଅଧିବାସ ହୋଇଥିବା କନ୍ଦର୍ପ ପଟିକୁ ମହାଜନେ ବିଜେ କରାଇ ଘଣ୍ଟା, ଛତା, କାହାଳୀ ସହ ବଟଗଛ ମୂଳରେ ପାଲିଙ୍କି ଆଗରେ ଦଣ୍ଡାୟମାନ ଥା'ନ୍ତି । ରାମକୃଷ୍ଣ ସ୍ଥାନକୁ ଆସି ପାଲିଙ୍କିରେ ବିଜେ ହୁଅନ୍ତି । ବିମାନବଡୁମାନେ ଘଣ୍ଟ, ଛତା, କାହାଳୀ ସଙ୍ଗରେ କନ୍ଦର୍ପ ପଟି ଆଗରେ ଥାଇ ରାମକୃଷ୍ଣଙ୍କୁ ପାଲିଙ୍କିରେ ନେଇ ଜଗନ୍ନାଥ ବଲ୍ଲଭ ମଠକୁ ଯାଆନ୍ତି । ସେଠାରେ ମହାଜନମାନେ ରାମକୃଷ୍ଣଙ୍କୁ ଖଟ ଉପରେ ବିଜେ କରାନ୍ତି । କନ୍ଦର୍ପ ପଟି ଦିଅଁଙ୍କ ଆଗରେ ବିଜେ କରାଯାଏ । ଏଠାରେ ବିଧିପୂର୍ବକ ହୋମ, ଭୋଗ ଓ ବନ୍ଦାପନା ହୁଏ । ରାମ ଓ କୃଷ୍ଣ ନିଃଶବ୍ଦରେ ଉଦ୍ୟାନକୁ ଯାଇ ଦୟଣାଚୋରି କରନ୍ତି । ଭିତରଛ ମହାପାତ୍ର ରାମକୃଷ୍ଣଙ୍କ ଶ୍ରୀହସ୍ତରେ ଦୁଇଗଛ ଦୟଣାଲାଗି କରନ୍ତି । ବାକି ଚାରିଗଛ ଦୟଣାପତ୍ରି ନୂଆ ତାଡ଼ରେ ରଖି ଖଣ୍ଡୁଆ ଘୋଡାଇ ରାମକୃଷ୍ଣଙ୍କ ସହିତ ପାଲିଙ୍କିକୁ ଆସନ୍ତି । ବାହୁଡ଼ା ବିଜେ ହୋଇ ଶ୍ରୀମନ୍ଦିର ବଟମୂଳେ ପାଲିଙ୍କି ରଖାଯାଏ । ତତ୍ପୂର୍ବରୁ ଭୋଗମଣ୍ଡପ ଘରେ ଧୋପଖାଳ ହୋଇ ଚାନ୍ଦୁଆ ଟଣା ହୋଇଥାଏ । ଚାନ୍ଦୁଆ ତଳେ ବାଲିବନ୍ଧ ଉପରେ ଦୟଣା, ମରୁଆ ସୁବାସଗଛମାନ ଲଗାଯାଇଥାଏ । ଗରୁଡ଼ ଦ୍ୱାରଠାରେ ମହାଜନେ ରାମ ଓ କୃଷ୍ଣଙ୍କ ଶ୍ରୀହସ୍ତରେ ଲାଗି ହୋଇ ରହିଥିବା ଦୟଣାଗଛ ମଇଲମ କରନ୍ତି ଓ ଦୟଣାପତ୍ରି ଉକ୍ତ ଗଛମାନଙ୍କୁ ତାଡ଼ରେ ରଖନ୍ତି । ବଡ଼ସିଂହାର ଭୋଗ ପରେ ମଦନମୋହନ ଠାକୁର ଭିତରକୁ ବିଜେ କରନ୍ତି । ଶ୍ରୀଦେବୀ, ଭୂଦେବୀ ଓ ମଦନ ମୋହନ ଆଜ୍ଞାମାଳ ପାଇଲା ପରେ ଭୋଗମଣ୍ଡପ ଘରେ ପଡ଼ିଥିବା ଶେଯ ଉପରେ ବିଜେ କରନ୍ତି । ବିଜେ ପରେ ମହାଜନେ ଶ୍ରୀଦେବୀ, ଭୂଦେବୀ ଓ ମଦନମୋହନଙ୍କ ହାତରେ ତିନିଟି ଦୟଣାଗଛ ବାନ୍ଧି ଦିଅନ୍ତି । ସେମାନଙ୍କ ଆଗରେ ଆଉ ତିନିଟି ଗଛକୁ ତିନିଟି ଚାଙ୍ଗୁଡ଼ିରେ ରଖାଯାଏ । ପୂଜାପଣ୍ଡା ଚେମେଡ଼ି ପତନି ଫୁଲଚନ୍ଦନ ଦେଇ ମଣ୍ଡଳ ଉପରେ ତିନିଟି ଚାଙ୍ଗୁଡ଼ି

ରଖନ୍ତି । ଏହାପରେ ପାଣିପଡ଼ି, ଶୀତଳ ଭୋଗ ବଢ଼ାଯାଇ ପଞ୍ଚ ଉପଚାରରେ ମଣୋହି ହୁଏ । ଭୋଗମଣ୍ଡପ ଘର ଦ୍ୱାରମାନଙ୍କୁ ତଡ଼ଉକରଣ ମୁଦ ଦିଅନ୍ତି । ଏହାପରେ ଭିତର ବଡସିଂହାର ଭୋଗ ହୁଏ ଓ ପହୁଡ଼ ଆଳତି ହୁଏ ।

## ଦମନକ ଚତୁର୍ଦ୍ଦଶୀ (ଦୟଣା ଲାଗି)

ଚୈତ୍ର ଶୁକ୍ଳ ଚତୁର୍ଦ୍ଦଶୀ ଦିନ ସକାଳ ଧୂପ ସରି ମହାସ୍ନାନ ହେବା ପରେ ପଣ୍ଡା, ପତି ଓ ମୁଦିରସ୍ତ ଚନ୍ଦନ ବିଜେ କରାଇଆଣି ସିଂହାସନ ଉପରକୁ ଉଠି ସର୍ବାଙ୍ଗ ଲାଗି କରନ୍ତି । ନୂଆ ଲୁଗା ଲାଗି, ବେଶ, ଛଅମୂର୍ତ୍ତି ଅଳଙ୍କାର ଲାଗି କରାଯାଏ । ପରେ ପଣ୍ଡା, ପତି ଓ ମୁଦିରସ୍ତ ଅଧିବାସ ହୋଇଥିବା ଭୋଗମଣ୍ଡପକୁ ଯା'ନ୍ତି । ତିନି ବାଡ଼ର ପୁଷ୍ପାଳକ ତିନିବାଡ଼ର ଚାଙ୍ଗୁଡ଼ିକୁ ଧରନ୍ତି । ମହାଜନମାନେ ଶ୍ରୀଦେବୀ, ଭୂଦେବୀ ଓ ମଦନମୋହନଙ୍କୁ ହାତରେ ବିଜେ କରାଇ ଘଣ୍ଟ, ଛତା ଓ କାହାଳୀ ସହିତ ତଳିଛ ପଟୁଆର ହୋଇ ବଡ଼ ଦେଉଳକୁ ତିନି ଘେରା ବୁଲି ଭିତର ସିଂହାସନରେ ବିଜେ କରାନ୍ତି । ଏହା ପରେ ଚାଙ୍ଗୁଡ଼ିରେ ଥିବା ଦୟଣାଗଛମାନ ଓ ଶ୍ରୀଅଙ୍ଗରେ ଲାଗି ହୋଇଥିବା ଦୟଣାଗଛମାନ ମଇଲମ କରାଯାଇ ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର ଓ ଦେବୀ ସୁଭଦ୍ରାଙ୍କୁ ଉକ୍ତ ୬ଟି ଗଛ ଲାଗି କରାଯାଏ । ଏ ଉତ୍ତାରେ ପ୍ରସାଦ ଲାଗି ପରେ ଦ୍ୱିପ୍ରହର ଧୂପ ହୁଏ । ବନ୍ଦାପନା ପରେ ଦୟଣାଗଛ ମଇଲମ କରାଯାଏ । ମଦନମୋହନ ଦକ୍ଷିଣ ଘରକୁ ବିଜେ କରନ୍ତି ।

## ମହାବିଷୁବ ସଂକ୍ରାନ୍ତି (ପଣା ସଂକ୍ରାନ୍ତି)

ସକାଳ ଧୂପ ଶେଷ ପରେ ହନୁମାନ ଠାକୁର ଆଜ୍ଞାମାଳ ପାଇଲା ପରେ ଝୁଲଣ ମଣ୍ଡପ ତଳେ ଥିବା ବିମାନରେ ବିଜେ କରନ୍ତି । ଚାରିଦ୍ୱାର ମହାବୀର ଓ ବାର ଭାଇ ମହାବୀରମାନଙ୍କୁ ଆଜ୍ଞାମାଳ ଦେବା ପରେ ବିମାନବଡୁମାନେ ଘଣ୍ଟ, ଛତା ଓ କାହାଳୀ ସହ ଜଗନ୍ନାଥ ବଲ୍ଲଭ ମଠକୁ ବିଜେ କରାନ୍ତି । ହନୁମାନ ବିମାନରେ ରହି ଥିବା ଅବସ୍ଥାରେ ପୂଜାପଣ୍ଡା ଜଗନ୍ନାଥ ବଲ୍ଲଭ ମଠରେ ବିରାଜିତ ମହାବୀର (ହନୁମାନ)ମାନଙ୍କୁ ଆଜ୍ଞାମାଳ ଦିଅନ୍ତି ଓ ତା'ପରେ ଦରିଆ ମହାବୀରଙ୍କୁ ଦେବା ନିମନ୍ତେ ଯାଆନ୍ତି । ସେଠାରୁ ଫେରିଲା ପରେ ମଠଠାରେ ଭୋଗ, ବନ୍ଦାପନା ହୁଏ । ତା'ପରେ ବାହୁଡ଼ାବିଜେ କରାଯାଏ ଓ ହନୁମାନ ଦକ୍ଷିଣଘରକୁ ଫେରନ୍ତି ।

ହନୁମାନ ଆଜ୍ଞାମାଳ ପାଇ ଯିବା ପରେ ଭୋଗମଣ୍ଡପ ଭୋଗ ଶେଷ ହୋଇ ମଇଲମ, ମହାସ୍ନାନ ଓ ନୂଆଲୁଗା ନୀତି ହୁଏ । ଚନ୍ଦନ ଲାଗି, ଛଅମୂର୍ତ୍ତି ଅଳଙ୍କାର, ମାଳଫୁଲ ଓ କର୍ପୂର ଲାଗି ହୋଇ ବେଶ ହୋଇଥାଏ । ଦ୍ୱିପ୍ରହର ଧୂପ ଭୋଗ ଆସିବା ପରେ ମୁଦିରସ୍ତ ପ୍ରସାଦ ଲାଗି କରନ୍ତି । ତା'ପରେ ପୂଜାପଣ୍ଡା ଷୋଡ଼ଶ ଉପଚାରରେ ପୂଜା କରନ୍ତି । ଟେରା ପଡ଼ିବା ପରେ ଜଣେ ପୂଜାପଣ୍ଡା ବଳିଅନ୍ନ ନେଇ ମନ୍ଦିର ଚାରିପାଖେ ଦିଗବଳି କରି ଭିତରକୁ ଯାଇ ଭୋଗ ମଣୋହି କରନ୍ତି । ଏହା ପରେ ପାଣି ପଡ଼ିଲେ ପଣ୍ଡା, ପତି ଓ ମୁଦିରସ୍ତ ତିନିବାଡ଼ରେ ବନ୍ଦାପନା କରନ୍ତି ।

## ଅକ୍ଷୟତୃତୀୟା (ଚନ୍ଦନ ଯାତ୍ରାରମ୍ଭ)

ଅକ୍ଷୟତୃତୀୟା ଶ୍ରୀମନ୍ଦିରର ଏକ ପ୍ରଧାନ ପର୍ବ । ଏହି ଦିନ ତିନି ରଥର ନିର୍ମାଣ କାର୍ଯ୍ୟର ଶୁଭାରମ୍ଭ ହୋଇଥାଏ ଓ ବାହାର ଚନ୍ଦନ ଯାତ୍ରା (୨୧ ଦିନ) ହୋଇଥାଏ । ଅକ୍ଷୟ ତୃତୀୟା ଦିନର ନୀତିମାନ ହେଲା;

ଦ୍ୱାରଫିଟା, ମଙ୍ଗଳ ଆଳତି, ମଇଲମ, ଅବକାଶ, ବେଶ, ରୋଷ ହୋମ, ସୂର୍ଯ୍ୟ ପୂଜା, ଦ୍ୱାରପାଳ ପୂଜା, ଗୋପାଳବଲ୍ଲଭ, ସକାଳ ଧୂପ, ଯାତ୍ରାଙ୍ଗୀ ମହାସ୍ନାନ, ଚନ୍ଦନ ବେଢ଼ା, ଖଇକୋରା ଭୋଗ, ଚନ୍ଦନ ଲାଗି, ବେଶ ଶେଷ, ଘଣ୍ଟ, ଛତା ଯାତ ଭୋଗ ଓ ମଧ୍ୟାହ୍ନ ଧୂପ, ବନ୍ଦାପନା, ବିମାନକୁ ଦିଅଁ ବିଜେ, ଭୋଗମଣ୍ଡପ ଭୋଗ, ଆଜ୍ଞାମାଳ ବିଜେ ଓ ବିମାନ ଉଠିବା, ସାହାଣମେଲା, ମଇଲମ ବେଶ, ସଂଧ୍ୟା ଆଳତି, ସଂଧ୍ୟା ଧୂପ, ମଇଲମ, ଆଲଟ ଲାଗି, ପଣାଭୋଗ, ଦିଅଁ ବାହୁଡ଼ା ବିଜେ, ଚନ୍ଦନ ଲାଗି, ବଡ଼ସିଂହାର ବେଶ, ବଡ଼ସିଂହାର ଭୋଗ, ପହୁଡ଼ ।

ଅକ୍ଷୟତୃତୀୟା ଦିନ ସକାଳ ଧୂପ ଶେଷ ପରେ ତିନିବାଡ଼ରେ ମଇଲମ ହୋଇ ମହାସ୍ନାନ ହେବା ପରେ ପୂର୍ବଦିନ ଭୋଗ ମଣ୍ଡପ ଘରେ ଅଧିବାସ କରାଯାଇଥିବା ଚନ୍ଦନ ପିଙ୍ଗଣ ଓ ପରିଖମାନ ଘଣ୍ଟ, ଛତା ଓ କାହାଳୀ ସହ ସଂପୃକ୍ତ ସେବକମାନେ ବଡ଼ ଦେଉଳକୁ ତିନିଘେରା ବୁଲାଇ ଭିତର ସିଂହାସନ ଉପରେ ତିନିବାଡ଼ରେ ସଜାଇ ରଖାଯାଏ । ଧୋପଖାଳ ହୋଇ ଶୀତଳ ଭୋଗ ହୁଏ । ଏ ଭୋଗରେ ଟେରା ପଡ଼େ ନାହିଁ । ଭୋଗ ପରେ ଶ୍ରୀଜୀଉମାନଙ୍କୁ ଅଳକା, ଚଉସରା, ୬ ମୂର୍ତ୍ତି ସୁନା ଅଳଙ୍କାର ଲାଗି ହୋଇ ବେଶ ବଢ଼େ । ଏହା ପରେ ପାଣି ପଡ଼ି ଧୋପଖାଳ ହେବା ପରେ ମଧ୍ୟାହ୍ନ ଧୂପ ଯାତ ଭୋଗ ସହ, ଘଣ୍ଟ, ଛତା, କାହାଳୀ ସହ ତଳିଛ ପଟୁଆରରେ ଛାମୁକୁ ଆସେ । ମୁଦିରସ୍ତଙ୍କ ପ୍ରସାଦ ଲାଗି, ଦକ୍ଷିଣ ଘରେ ଚନ୍ଦନ ସର୍ବାଙ୍ଗ ହୋଇ ଭୋଗ ଶେଷ ପରେ ରାମ, କୃଷ୍ଣ ଓ ମଦନମୋହନ ଭିତର ସିଂହାସନକୁ ବିଜେ କରନ୍ତି । ଏହା ପରେ ମଧ୍ୟାହ୍ନ ଧୂପ ହୁଏ । ପାଣି ପଡ଼ିବା ପରେ ପଣ୍ଡା, ପତି ଓ ମୁଦିରସ୍ତ ବନ୍ଦାପନା କରନ୍ତି । ପୂଜାପଣ୍ଡା ଆଜ୍ଞାମାଳ ଦେବା ପରେ ଝୁଲଣ ମଣ୍ଡପ ତଳେ ରହିଥିବା ପାଲିଙ୍କିରେ ରାମକୃଷ୍ଣ ଓ ବିମାନରେ ଶ୍ରୀଦେବୀ, ଭୂଦେବୀ ଓ ମଦନମୋହନଙ୍କୁ ବିଜେ କରାଯାଏ । ବିଜେ କାହାଳୀ ବାଜିଲା ପରେ ବିମାନବଡୁମାନେ ଘଣ୍ଟ ଛତା ଓ କାହାଳୀ ସହ ପାଲିଙ୍କି ଓ ମଣିବିମାନକୁ ନେଇ ନରେନ୍ଦ୍ର ଚକଡ଼ାକୁ ଯାତ୍ରା କରନ୍ତି । ବାଟରେ ଶ୍ରୀମନ୍ଦିର ମୁଖ୍ୟ କାର୍ଯ୍ୟାଳୟ ସାମନାରେ ରଥ ଅନୁକୂଳ ନୀତି ସକାଶେ ଅଟକି ରହନ୍ତି । ଏହାଙ୍କ ସହିତ ପଞ୍ଚ ମହାଦେବ (ଯମେଶ୍ୱର, ମାର୍କଣ୍ଡେୟ, ଲୋକନାଥ, କପାଳମୋଚନ ଓ ନୀଳକଣ୍ଠ)ଙ୍କର ବିଜେ ପ୍ରତିମାମାନ ସ୍ୱ ସ୍ୱ ବିମାନରେ ବିଜେ କରି ନରେନ୍ଦ୍ର ପୁଷ୍କରିଣୀକୁ ଯାତ୍ରା କରନ୍ତି । ଏହି ପଞ୍ଚମହାଦେବଙ୍କୁ 'ପଞ୍ଚପାଣ୍ଡବ' କୁହାଯାଏ । ଶ୍ରୀମନ୍ଦିର ମୁଖ୍ୟ କାର୍ଯ୍ୟାଳୟ ସାମନାରେ ଦେଉଳ ପୁରୋହିତ ରଥ ଅନୁକୂଳ ହୋମ କରନ୍ତି । ହୋମ ପରେ ରଥ ମହାରଣାମାନଙ୍କର ଶାଢ଼ିବନ୍ଧା କାର୍ଯ୍ୟ ହୁଏ । ତିନୋଟି ରଥର କାଠଗଣ୍ଡିକୁ ପୂଜାପଣ୍ଡାମାନେ ଶ୍ରୀଜୀଉଙ୍କ ତିନୋଟି ଆଜ୍ଞାମାଳ ଦେବେ ।

ଦିଅଁମାନେ ନରେନ୍ଦ୍ର ଚକଡ଼ାରେ ପହଞ୍ଚିଲା ପରେ ଭିତରଛ ମହାପାତ୍ର ପାଞ୍ଚ ଦିଅଁଙ୍କର କର୍ପୂର ଜଳରେ ମଣୋହି କରାନ୍ତି । ବିଜେ ପ୍ରତିମାମାନ ସେଠାରେ ପହଞ୍ଚିବା ପୂର୍ବରୁ ଚନ୍ଦନ ମଣ୍ଡପ ଓ ନାବମାନ ସୁସଜ୍ଜିତ ହୋଇ ରହିଥାଏ । ରାମକୃଷ୍ଣଙ୍କୁ ବଡ଼ ଚାପରେ ନିଜର ମଣ୍ଡିତ ଆସନକୁ ଓ ପଞ୍ଚପାଣ୍ଡବ ପଞ୍ଚସିଂହାସନକୁ ବିଜେ କରନ୍ତି। ମଦନମୋହନ, ଶ୍ରୀଦେବୀ ଓ ଭୂଦେବୀ ପଛରେ ଥିବା ଚାପ ବା ନୌକାରେ ବିଜେ ହୁଅନ୍ତି । ଚାପ ଉପରେ ପ୍ରସାଦ ଲାଗି ଓ ବିଡ଼ିଆ ଲାଗି ମଣୋହି ପରେ ଦିନ ଚାପ ଆରମ୍ଭ ହୁଏ ଓ ପୁଷ୍କରିଣୀ ଚାରିପଟେ ଏକ ଘେରା ବୁଲାଯାଏ । ଏକଘେରା ବୁଲି କୂଳରେ ଲାଗିଲା ପରେ ଦୁଇଚାପ ଏକତ୍ର କରାଯାଇ ରାମକୃଷ୍ଣଙ୍କୁ ମଦନମୋହନଙ୍କ ଚାପକୁ ବିଜେ କରାଯାଏ । ତା'ପରେ ବନ୍ଦାପନା, ଆଳଟ, ଚାମର ହୁଏ । ଏହା ପରେ ଦେବବିଗ୍ରହମାନଙ୍କୁ ଚନ୍ଦନ ମଣ୍ଡପର ଜଗତି ଉପରକୁ ନିଆଯାଇ ଚନ୍ଦନ କୁଣ୍ଡରେ ବିଜେ କରାଯାଏ । ପୁଷ୍ପଚନ୍ଦନାଦିରେ ସୁବାସିତ ଜଳ ତିନିଟି କୁଣ୍ଡରେ ଭର୍ତ୍ତି ହୋଇ ରହିଥାଏ । ଶ୍ରୀଦେବୀ, ଭୂଦେବୀ ଓ ମଦନମୋହନ ମଧ୍ୟ ଭାଗରେ, ରାମକୃଷ୍ଣ ପୂର୍ବ ଭାଗରେ ଓ ପଞ୍ଚ ପାଣ୍ଡବ ପଶ୍ଚିମ ଭାଗରେ ଥିବା କୁଣ୍ଡମାନଙ୍କରେ ବିଜେ କରନ୍ତି । ଜଳ ଲାଗି ପରେ ଜଳରୁ ବାହାରି ଦିଅଁମାନେ ପୁଷ୍ପାଦିରେ ସଜ୍ଜିତ ହୁଅନ୍ତି ଓ ଶୀତଳ ମଣୋହି ହୁଏ । ତା'ପରେ ବିଗ୍ରହମାନଙ୍କୁ ଭିତରକୁ ନିଆଯାଇ ନରେନ୍ଦ୍ର ଚକଡ଼ା ରୋଷରେ ପ୍ରସ୍ତୁତ ମାଣ୍ଡୁଆ ଭୋଗ ଓ ବିଡ଼ିଆ ମଣୋହି କରାଯାଏ । ତା'ପରେ ବିଗ୍ରହମାନେ ରାତ୍ରଚାପ ପାଇଁ ବିଜେ କରନ୍ତି । ରାତ୍ର ଚାପ ପୁଷ୍କରିଣୀରେ ତିନିଘେରା ବୁଲେ । ଚାପ ପରେ ବିଗ୍ରହମାନେ ସ୍ୱ ସ୍ୱ ବିମାନ ଓ ପାଲିଙ୍କିରେ ବିଜେ ହୋଇ ବଡ଼ଦେଉଳକୁ ବାହୁଡ଼ା ବିଜେ କରନ୍ତି । ପଞ୍ଚ ମହାଦେବ ବା ପଞ୍ଚପାଣ୍ଡବ ସିଂହଦ୍ୱାରଠାରୁ ନିଜ ନିଜର ମନ୍ଦିରକୁ ବାହୁଡ଼ନ୍ତି । ଶ୍ରୀମନ୍ଦିର ବଟମୂଳେ ଜଳଲାଗି ନୀତି ପରେ ଦକ୍ଷିଣ ଘରେ ପଞ୍ଚଦିଅଁ ଶେଯ ଉପରେ ବିଜେ ହୁଅନ୍ତି । ପରେ ଶ୍ରୀଦେବୀ ଓ ଭୂଦେବୀ ଭିତର ସିଂହାସନରେ ଏବଂ ରାମକୃଷ୍ଣ ଓ ମଦନମୋହନ ଦକ୍ଷିଣ ଘରେ ଅବସ୍ଥାନ କରନ୍ତି ।

ବିଜେ ପ୍ରତିମାମାନଙ୍କର ବାହାର ବିଜେ ସମୟରେ ଏଣେ ଶ୍ରୀମନ୍ଦିରରେ ସଂଧ୍ୟାଧୂପ ସମାପନ ପରେ ଜୟବିଜୟ ଦ୍ୱାର ବନ୍ଦ ରହେ । ଜଗମୋହନ ଅନ୍ଧକାର କରାଯାଏ । ଭିତରେ ମଇଲମ, ଆଲଟ ଲାଗି, ତ୍ରିମୁଣ୍ଡିରେ ସୁବାସ ଫୁଲ ଓ କର୍ପୂର ଲାଗି ହୁଏ । ଅଖଣ୍ଡ ବଇଠା ଲିଭାଇବା ପରେ ବିଡ଼ିଆ ମଣୋହି ଓ ଆଲଟ ଲାଗି ହୁଏ । ଆଲଟ ଲାଗି ବେଳେ ଭିତର ଗାଆଣୀ ଦେବଦାସୀ କଳାହାଟ ଦ୍ୱାରରେ ଗୀତ ଗାଇବା ବିଧି । ପରେ ଅଖଣ୍ଡ ମେକାପ ବଇଠା ବସାନ୍ତି । ପାଣି ପଡ଼ି ଧୋପଖାଳ ହେବା ପରେ ପଣାଭୋଗ ପଞ୍ଚ ଉପଚାରରେ ପୂଜା ହୁଏ ।

ଅକ୍ଷୟ ତୃତୀୟାର ପରବର୍ତ୍ତୀ ଦିନ ଅର୍ଥାତ୍ ଚତୁର୍ଥୀ ତିଥିରୁ ଭୋଗମଣ୍ଡପ ଧୂପ ପରେ ଜୟବିଜୟ ଦ୍ୱାର ବନ୍ଦ କରାଯିବା ପରେ ମଇଲମ, ଫୁଲ ଓ କର୍ପୂର ଲାଗି, ବଇଠା ଓହ୍ଲାଣ, ଆଲଟ ଲାଗି, ବଇଠା ବସା, ଚନ୍ଦନ ବିଜେ, ଚନ୍ଦନ ଲାଗି, ଅଳକା ଚଉସରା ଲାଗି, ବେଶ ନୀତି ହୁଏ । ଦକ୍ଷିଣ ଘର ଭୋଗ ସାରି ରାମକୃଷ୍ଣ ଓ ମଦନମୋହନ ଭିତର ସିଂହାସନକୁ ବିଜେ କରନ୍ତି । ଯାତ ଭୋଗ ପୂଜା ପରେ ଓ ପୂଜାପଣ୍ଡା ଆଜ୍ଞାମାଳ ଦେଲା ପରେ ଗତଦିନ ପରି ଦେବଦେବୀମାନେ ନରେନ୍ଦ୍ର ଚକଡ଼ାକୁ ବିଜେ ହୁଅନ୍ତି । ଯାତ୍ରା ସେହିପରି ହୁଏ ।

ଏହି ଯାତ୍ରା (ବାହାର ଚନ୍ଦନ ୨୧ ଦିନ ଓ ଭିତର ଚନ୍ଦନ ୨୧ ଦିନ, ଏପରି ୪୨ଦିନ) ହୁଏ । ଜ୍ୟେଷ୍ଠ ଶୁକ୍ଳ ଚତୁର୍ଦ୍ଦଶୀ ପର୍ଯ୍ୟନ୍ତ ପ୍ରତିଦିନ ଆଲଟ ଲାଗି ଦୁଇ ଥର ହୁଏ । ଭିତର ଚନ୍ଦନ ୨୧ ଦିନ ମଧ୍ୟରୁ ଜ୍ୟେଷ୍ଠ କୃଷ୍ଣ ଏକାଦଶୀ, ସାବିତ୍ରୀ ଅମାବାସ୍ୟା, ଶୀତଳ ଷଷ୍ଠୀ ଓ ରୁକ୍ମିଣୀ ହରଣ ଏକାଦଶୀ (ଏପରି ୪ଦିନ) ଜଳକ୍ରୀଡ଼ା ଉତ୍ସବ ହୋଇଥାଏ ।

## ନୀଳାଦ୍ରି ମହୋଦୟ

ବୈଶାଖ ଶୁକ୍ଳ ଅଷ୍ଟମୀ ଦିନ ଭୋଗମଣ୍ଡପ ଧୂପ ଆଲଟଲାଗି ଶେଷ ହୋଇ ଭିତରେ ପାଣି ପଡ଼ି ପୂଜା ହୁଏ । ଗତଦିନ ଅଧିବାସ ହୋଇଥିବା ଜଳଗରା (୧୦୮ ଗରା) ଗରାବଡୁମାନେ ବାଘମୁହଁ ବାନ୍ଧି ଘଣ୍ଟା, ଛତା, କାହାଳୀ, ତଳିଛ ପଟୁଆରରେ ଆସି ଚାରି ଥରରେ ଚାରିପନ୍ତି କରି ରଖନ୍ତି । ପୂଜାପଣ୍ଡା ସଂସ୍କାର କରି ଜଳଲାଗି କରାନ୍ତି । ପୁଷ୍ୟାଭିଷେକ ନୀତି ପରି ଏ ଅଭିଷେକ ନୀତି ହୁଏ । ଏହା ପରେ ରୂପା ପିଙ୍ଗଣ ତିନିଟିରେ ପଣ୍ଡା, ପତି ଓ ମୁଦିରସ୍ତ ଚନ୍ଦନ ବିଜେ କରାଇ ଆଣି ସିଂହାସନ ଉପରେ ସଂସ୍କାର କରାଇ ପୁଷ୍ପାଳକଙ୍କ ସହିତ ଚନ୍ଦନ ସର୍ବାଙ୍ଗ କରାନ୍ତି । ତା'ପରେ ଧୋପଖାଳ ହୋଇ ଯାତ୍ରାର୍ଥୀ ଭୋଗ ଓ ମଧ୍ୟାହ୍ନ ଧୂପ ଛାମୁକୁ ଆସେ । ଏହି ଧୂପ ଉଠିଲେ ଦକ୍ଷିଣ ଭୋଗ ସରି ରାମକୃଷ୍ଣ ଓ ମଦନମୋହନ ସିଂହାସନକୁ ବିଜେ କରନ୍ତି । ମୁଦିରସ୍ତ ପ୍ରସାଦ ଲାଗି କରନ୍ତି । ପୂଜାପଣ୍ଡା ଷୋଡ଼ଶ ଉପଚାରରେ ଧୂପ ମଣୋହି କଲା ପରେ, ପାଣି ପଡ଼ି ଧୋପଖାଳ ହୁଏ ଓ ତିନିବାଡ଼ରେ ବନ୍ଦାପନା ହେଲା ପରେ ପୂଜାପଣ୍ଡା ଆଜ୍ଞାମାଳ ଦେଲେ ଠାକୁର ଠାକୁରାଣୀ ଚନ୍ଦନ ଯାତ୍ରାକୁ ବିଜେ କରନ୍ତି ।

(ବାହାର ଚନ୍ଦନଯାତ୍ରାର ବିଂଶ ଦିବସଟି ଆଡ଼ମ୍ବରପୂର୍ଣ୍ଣ ଭାବରେ ପାଳିତ ହୁଏ । ଏହାକୁ **ଭଉଁରୀ** କହନ୍ତି । ଏହି ଦିନ ରାତ୍ରଚାପ ଚନ୍ଦନପୋଖରୀରେ ୨୧ ଘେରା ବୁଲିଥାଏ । ଏକବିଂଶ ଦିବସର ଯାତ୍ରାଦିନ ରାତ୍ରଚାପ ହୁଏ ନାହିଁ ଏବଂ ଦିଅଁମାନେ ଜଗତିକୁ ବିଜେ କରନ୍ତି ନାହିଁ । ଦିନଚାପ ସରି ଚାପକୂଳରେ ଲାଗିଲାପରେ ରାମକୃଷ୍ଣ ଓ ମଦନମୋହନ ଏକାଠି ହୋଇ ବନ୍ଦାପନା, **ହଳଦୀ ପାଣି** ପିଚିକାରୀ ଖେଳହୁଏ ।)

## ଶ୍ରୀନୃସିଂହ ଜନ୍ମ (ବୈଶାଖ ଶୁକ୍ଳ ଚତୁର୍ଦ୍ଦଶୀ)

ଏହି ଦିନ ଶ୍ରୀମନ୍ଦିରରେ ଯାତ ଭୋଗ ଶେଷ ହୋଇ ଦେବଦେବୀ ଚନ୍ଦନଯାତକୁ ଯିବା ପରେ ମଧ୍ୟାହ୍ନ ଧୂପ ହୁଏ । ଚନ୍ଦନ ପୁଷ୍କରିଣୀରୁ ଦେବଦେବୀଙ୍କ ବାହୁଡ଼ା ପରେ ଜଣେ ପୂଜାପଣ୍ଡା ଶ୍ରୀଜୀଉଙ୍କ ଶ୍ରୀଅଙ୍ଗରୁ ଆଜ୍ଞାମାଳ ନେଇ ଘଣ୍ଟ, ଛତା ଓ କାହାଳୀ ସହିତ ସିଂହଦ୍ୱାର ଓ ଦୋଳମଣ୍ଡପ ସାହି ଦେଇ ଚକ୍ରନାରାୟଣଙ୍କଠାକୁ ଯାଇ ସେଠାରେ ଆଜ୍ଞାମାଳ ଦେଇ ଫେରନ୍ତି । ଏହା ପରେ ମୈଲମ, ଆଳତି, ମହାସ୍ନାନ, ସର୍ବାଙ୍ଗ, ନୂଆ ଲୁଗାଲାଗି ଓ ୬ମୂର୍ତ୍ତି ଅଳଙ୍କାର ଲାଗି ହୁଏ । ପାଣିପଡି ସନ୍ଧ୍ୟାଧୂପ ହୁଏ । ଦକ୍ଷିଣ ଘରୁ ମହାଜନେ ନୃସିଂହ ଠାକୁରଙ୍କୁ ଆଣି ସିଂହାସନରେ ବିଜେ କରାନ୍ତି । ଆଜ୍ଞାମାଳ ପାଇଲା ପରେ ନୃସିଂହ ଠାକୁର ମୁକ୍ତିମଣ୍ଡପ ଉପରେ ଖଟୁଲିରେ ବିଜେ ହୁଅନ୍ତି । ମୁକ୍ତିମଣ୍ଡପ ପାର୍ଶ୍ୱରେ ଥିବା ନୃସିଂହ ମନ୍ଦିର ଭିତରେ ପତିମହାପାତ୍ର ମହାସ୍ନାନ ପୂଜାରେ ବସନ୍ତି ଓ ମଣ୍ଡପ ଉପରେ ବିରାଜିତ ନୃସିଂହଙ୍କ ପାଖରେ

ପୂଜାପଣ୍ଡା ମହାସ୍ନାନ ପୂଜା କରନ୍ତି । ମହାସ୍ନାନ ପରେ ଉଭୟ ଦିଅଁଙ୍କ ପାଖରେ ଶୀତଳ ଭୋଗ ପଞ୍ଚୋପଚାରରେ ପୂଜା ହୁଏ । ବନ୍ଦାପନା ପରେ ନୃସିଂହ ଠାକୁରଙ୍କୁ ମଣ୍ଡପରୁ ଆଣି ମହାଜନେ ଝୁଲଣମଣ୍ଡପ ତଳେ ଥିବା ବିମାନରେ ବିଜେ କରାନ୍ତି । ବିମାନବଡୁ ବିମାନକୁ ଜଗନ୍ନାଥବଲ୍ଲଭ ମଠକୁ ନିଅନ୍ତି । ସେଠାରେ ଭୋଗ ବନ୍ଦାପନା ହୋଇ ନୃସିଂହ ବାହୁଡ଼ା ବିଜେ କରନ୍ତି । ଆଲଟ ଲାଗି ଓ ଅନ୍ୟାନ୍ୟ ନୀତି ସେଦିନ ନୃସିଂହ ବିଜେ ହୋଇ ମଠକୁ ଯିବା ପରେ ହୋଇସାରିଥାଏ ।

## ଶୀତଳ ଷଷ୍ଠୀ (ଜ୍ୟେଷ୍ଠ ଶୁକ୍ଳଷଷ୍ଠୀ)

ସନ୍ଧ୍ୟା ଧୂପରେ ଦୋଳଗୋବିନ୍ଦ ଠାକୁର ଶ୍ରୀଅଙ୍ଗରୁ ଆଜ୍ଞାମାଳ ପାଇ ଖଟଶେଯ ଘରେ ବିଜେ ହୁଅନ୍ତି । ଏହାପରେ ଭିତରେ ମୈଲମ, ଆଲଟ ଲାଗି, ପଣାଲାଗି, ଚନ୍ଦନଲାଗି ଓ ବଡ଼ସିଂହାର ଭୋଗ ଶେଷ ହୁଏ । ପଞ୍ଚ ମହାଦେବ (ପଞ୍ଚପାଣ୍ଡବ) ଆଜ୍ଞାମାଳ ପାଇନଥିବାରୁ ପହୁଡ଼ ନୀତି ବନ୍ଦ ରହେ । ପଞ୍ଚପାଣ୍ଡବ ଜଗମୋହନରେ ବିଜେ କଲାପରେ ସେମାନଙ୍କୁ ଆଜ୍ଞାମାଳ ମିଳେ । ତା'ପରେ ଏମାନେ ଲକ୍ଷ୍ମୀମନ୍ଦିରଠାକୁ ବିଜେ ହୋଇ ସେଠା ଜଗମୋହନରେ ପଡ଼ିଥିବା ଖଟଶେଯ ଉପରେ ବିଜେ ହୁଅନ୍ତି । ଖଟଶେଯ ଘରୁ ଦୋଳଗୋବିନ୍ଦଙ୍କୁ ଘଣ୍ଟା, ଛତା ଓ କାହାଳୀ ସହ ମହାଜନେ ହାତରେ ନେଇ ସେଠାରେ ମହାଦେବମାନଙ୍କ ପାଖରେ ବିଜେ କରାନ୍ତି । ପୂଜା ଠା' ହୋଇ ଶୀତଳ ଭୋଗ ଛେକ ଆସିଲେ ମୁଦିରସ୍ତ ପ୍ରସାଦଲାଗି କରନ୍ତି ଓ ପୂଜାପଣ୍ଡା ପଞ୍ଚୋପଚାରରେ ୧୧ ପଙ୍କ୍ତି ଭୋଗ କରନ୍ତି । ବନ୍ଦାପନା ପରେ ଦୋଳଗୋବିନ୍ଦ ଦକ୍ଷିଣଘରକୁ ଫେରିଯାନ୍ତି । ରାତ୍ର ଅବଶିଷ୍ଟ ଥିଲେ ପହୁଡ଼ ନୀତି ହୁଏ । ପରଦିନ ସକାଳେ ବଲ୍ଲଭ ଭୋଗ ସରିଲେ ପଞ୍ଚପାଣ୍ଡବ ନଗର ପରିଭ୍ରମଣ ଉତ୍ସବରେ ଯାଆନ୍ତି ।

## ରାଜେନ୍ଦ୍ରାଭିଷେକ (ଜ୍ୟେଷ୍ଠ ଶୁକ୍ଳ ଦଶମୀ)

ସନ୍ଧ୍ୟା ଧୂପ ପରେ ମଦନମୋହନ ଶ୍ରୀଜଗନ୍ନାଥଙ୍କ ଆଜ୍ଞାମାଳ ପାଇବା ପରେ ଭୋଗ ବାଟ ଗଣେଶଙ୍କଠାରେ ସଜ୍ଜିତ ଖଟଶେଯ ଉପରେ ବିଜେ କରନ୍ତି । ଜୟବିଜୟ ଦ୍ୱାର ବନ୍ଦ ହୋଇ, ଜଗମୋହନ ଅନ୍ଧକାର ରହି ଭିତରେ ଆଲଟ ଲାଗି ହୁଏ । ଜଣେ ଡ଼ଗର (ସେବକ) ମଦନମୋହନଙ୍କ ନିକଟରେ ରୁକ୍ମିଣୀ ବିବାହ ପ୍ରସ୍ତାବ ଜଣାନ୍ତି ଓ ରାଜେନ୍ଦ୍ରାଭିଷେକ ହେବା ନିମନ୍ତେ କହନ୍ତି । ତା'ପରେ ମଦନମୋହନଙ୍କୁ ମହାଜନେ ହାତରେ ବିଜେ କରାଇ ବଟମୂଳେ ଥିବା ରଥରେ ବସାନ୍ତି । ବିମାନବଡୁ ଘଣ୍ଟ, ଛତା ଓ କାହାଳୀ ସହ ବଡ଼ଦେଉଳକୁ ବେଢ଼ାଏ ବୁଲି ବଟମୂଳେ ରଥ ରଖନ୍ତି । କୁତ କୌତୁକ ଋଷି (ଜଣେ ସେବକ) ଦଣ୍ଡ ପ୍ରଣାମ କରି ଶୁକ୍ଳ ଫୁଲ ଆଞ୍ଜୁଳି ଧରି ତାହାଙ୍କ ଆଶ୍ରମ (ଦକ୍ଷିଣ ଘର)କୁ ମଦନମୋହନଙ୍କୁ ପାଛୋଟି ନିଅନ୍ତି । ଏଠାରେ ମଦନମୋହନ ଖଟ ଉପରେ ବିଜେ କଲେ ପଞ୍ଚାମୃତରେ ମହାସ୍ନାନ ହୁଏ । ଏ ସମୟରେ ଛତି ଟେକା ହୋଇଥାଏ ଓ ଘଣ୍ଟ, କାହାଳୀ ବାଜୁଥାଏ । ମହାସ୍ନାନ ପରେ ଫୁଲ ଚନ୍ଦନଲାଗି ବେଶ ହୁଏ । ଶୀତଳଭୋଗ (ଖିରି, ଅମାଲୁ) ଭୋଗ ହୋଇ ବନ୍ଦାପନା ହୁଏ ।

## ରୁକ୍ମିଣୀ ହରଣ ଏକାଦଶୀ ଓ ବିବାହ

ଜ୍ୟେଷ୍ଠ ଶୁକ୍ଳ ଏକାଦଶୀ ତିଥିରେ ସକାଳ ଧୂପ ପୂଜା ବସିବା ସମୟରେ ଦକ୍ଷିଣ ଘରେ ମଦନମୋହନ ଠାକୁରଙ୍କ ବେଶ ଆରମ୍ଭ ହୁଏ । ଏହି ଧୂପ ଶେଷ ପରେ ଭିତରେ ପାଣି ପଡ଼ିବା ପରେ ପୂଜାପଣ୍ଡା ଶ୍ରୀଜଗନ୍ନାଥଙ୍କ ଶ୍ରୀଅଙ୍ଗରୁ ଆଜ୍ଞାମାଳ ନେଇ ଲକ୍ଷ୍ମୀ (ଶ୍ରୀଦେବୀ)ଙ୍କୁ ଦିଅନ୍ତି । ଏହା ପରେ ମହାଜନେ ଲକ୍ଷ୍ମୀଙ୍କୁ ସାତ ପାହାଚଠାରେ ରଖାଯାଇଥିବା ପାଲିଙ୍କିରେ ବିଜେ କରାନ୍ତି । ବିମାନବଡୁମାନେ ପାଲିଙ୍କିନେଇ ଲକ୍ଷ୍ମୀମନ୍ଦିରର ଜଗମୋହନରେ ଖଟ ଉପରେ ବିଜେ କରାନ୍ତି । ଏଠାରେ ଦେବୀଙ୍କର ମହାସ୍ନାନ, ମାଜଣା ଓ ବନକଲାଗି ହୁଏ । ଅଳଙ୍କାର ଲାଗି ବେଶ ହୁଏ । ବେଶ ହେବା ସମୟରେ ତଡଉ ପଟ୍ଟନାୟକ ସେଠାରେ ତାଳପତ୍ର ଓ ଲେଖନୀ ନେଇ ଉପସ୍ଥିତ ହୁଅନ୍ତି । ଭିତରଛ ଉକ୍ତ ତାଳପତ୍ର ଓ ଲେଖନୀକୁ ଲକ୍ଷ୍ମୀଙ୍କ ଶ୍ରୀହସ୍ତ ଛୁଆଁଇ ତଡ଼ଉଙ୍କୁ ଦିଅନ୍ତି । ତଡ଼ଉ ଠିଆହୋଇ ଲକ୍ଷ୍ମୀଙ୍କ ମନୋଭାବ ଜଣାଇ ମହାପ୍ରଭୁଙ୍କୁ ଚିଟାଉ ଲେଖନ୍ତି । ଏଣେ ମଦନମୋହନ ଭିତର ସିଂହାସନକୁ ବିଜେ କରନ୍ତି । ଭୋଗମଣ୍ଡପ ଭୋଗ ପରେ ସେ ଆଜ୍ଞାମାଳ ପାଇ ଜୟବିଜୟ ଦ୍ୱାରଠାରେ ବିଜେ କରି ରହନ୍ତି ।

(ଏ ଦିନ ରୁକ୍ମିଣୀ ହରଣ ଯୋଗୁଁ ଲକ୍ଷ୍ମୀ ଓ ମଦନମୋହନ ଜଳକ୍ରୀଡ଼ା ଏକାଦଶୀ ନୀତି ପାଇଁ ବିଜେ ହୁଅନ୍ତି ନାହିଁ । ମଦନମୋହନଙ୍କ ପରିବର୍ତ୍ତେ ଦୋଳଗୋବିନ୍ଦ ଯା'ନ୍ତି)

ଭିତରଛ ଚିଟାଉ ନେଇ ଲକ୍ଷ୍ମୀଙ୍କ ଶ୍ରୀହସ୍ତରେ ମୁଦ କରାନ୍ତି । ଏହା ପରେ ଜଣେ ସେବକ (ବିପ୍ରବ୍ରାହ୍ମଣ ରୂପେ) ଚିଟାଉଧରି ଘଣ୍ଟ, ଛତା, କାହାଳୀ ସହ ଜୟବିଜୟ ଦ୍ୱାରଠାରେ ମଦନମୋହନଙ୍କ ନିକଟକୁ ଆଣନ୍ତି । ଏଠାରେ ପୁରାଣ ପଣ୍ଡା, ପୂଜାପଣ୍ଡା ଓ ଖୁଣ୍ଟିଆ ଥାଇ ବଚନିକା ହୁଏ । ଏହାପରେ ମଦନମୋହନ ସାତପାହାଚଠାରେ ଥିବା ରଥରେ ବିଜେ କରନ୍ତି । ବିମାନବଡୁମାନେ ରଥନେଇ ବିମଳା ଠାକୁରାଣୀ ମନ୍ଦିର ପାଖରେ ରଖନ୍ତି । ଲକ୍ଷ୍ମୀଙ୍କ ମନ୍ଦିରଠାରୁ ଠାକୁରାଣୀ ପାଲିଙ୍କିରେ ବିଜେ ହୋଇ ଦାସୀ (ମାହାରୀ) ସଙ୍ଗରେ ଘେନି ଗ୍ରାମଦେବତୀ ପୂଜା କରିବାକୁ ବିମଳାଙ୍କ ମନ୍ଦିରକୁ ଆସନ୍ତି । ଏଠାରେ ଭିତରଛ ବିମଳାଙ୍କୁ ଚନ୍ଦନ ପ୍ରସାଦ ଲାଗି କରନ୍ତି । ଗ୍ରାମଦେବତୀ ପୂଜା ନିମନ୍ତେ, ପର୍ବଯାତ୍ରା ଯୋଗାଣିଆ ଦେଇଥିବା ସାମଗ୍ରୀମାନ ବିମଳାଙ୍କ ଶ୍ରୀଅଙ୍ଗରେ ଛୁଆଁ ହୋଇ ପୂଜା ବଢ଼ିବା ପରେ ବିମଳାଙ୍କ ଶ୍ରୀଅଙ୍ଗରୁ ଏକ ଖଣ୍ଡି ଆଜ୍ଞାମାଳ ଲକ୍ଷ୍ମୀ ପାଆନ୍ତି । ଲକ୍ଷ୍ମୀ ବାହାରକୁ ଆସିବା ବେଳେ, ମହାପ୍ରଭୁ (ମଦନମୋହନ) ବିମଳା ମନ୍ଦିର ଦ୍ୱାରଠାରେ ରଥରେ ବିଜେ ଥାଇ ଲକ୍ଷ୍ମୀଙ୍କୁ ହରଣ କରି (ଭିତରଛ ମହାପାତ୍ର ଲକ୍ଷ୍ମୀଙ୍କୁ ଉଠାଇନେଇ) ରଥରେ ବସାନ୍ତି । ସରସ୍ୱତୀଙ୍କ ଦେଉଳ ଆଗରେ ଶିଶୁପାଳ ପରାସ୍ତ ହୋଇ ରଥରେ ବନ୍ଧାହୁଏ । ଦକ୍ଷିଣଘରୁ ବଳରାମ ବିଜେହୋଇ ଆସି ଶିଶୁପାଳଙ୍କୁ ବନ୍ଧନ ମୁକ୍ତ କରାଇ ପୁନର୍ବାର ଦକ୍ଷିଣଘରକୁ ବିଜେ କରନ୍ତି । ଲକ୍ଷ୍ମୀ ଓ ମଦନମୋହନ ବାଟରେ ପନ୍ତିଭୋଗମାନ ମଣୋହି ହୋଇ ବିବାହ ନିମନ୍ତେ ବିବାହ ମଣ୍ଡପରେ ବିଜେ ହୁଅନ୍ତି । ପରେ ଭିତରେ ଅନ୍ୟାନ୍ୟ ନୀତି ହୋଇ ସନ୍ଧ୍ୟା ଆଳତି ପରେ ମହାସ୍ନାନ, ନୂଆ ଲୁଗାଲାଗି ଓ ସର୍ବାଙ୍ଗ ହୁଏ । ସର୍ବାଙ୍ଗ ପରେ ସନ୍ଧ୍ୟାଧୂପ ପୂଜା ବସେ । ତେଣେ ବିବାହ ମଣ୍ଡପରେ ବିବାହ କାର୍ଯ୍ୟ

ନୀତି ଆରମ୍ଭ ହୁଏ । ପଣ୍ଡା ପତି ମୁଦିରସ୍ତ, ଭିତରଛ ଥାଇ ବିବାହ କାର୍ଯ୍ୟ ସମ୍ପନ୍ନ ହୁଏ । ବିବାହ ଶେଷରେ ପଞ୍ଚଗ୍ରାସୀ ଭୋଗ ଓ ବନ୍ଦାପନା ହୁଏ । ତା'ପରେ ବରକନ୍ୟା ଭିତରକୁ ବିଜେ ହୁଅନ୍ତି । ଭିତରେ ବଡ଼ସିଂହାର ଭୋଗ ହୋଇ ଅନ୍ୟାନ୍ୟ ନୀତି ସରି ପହୁଡ଼ ହୁଏ । ପରଦିନ ମଙ୍ଗଳ ଆଳତି ପରେ ମହାଜନେ ବରକନ୍ୟାଙ୍କୁ ହାତରେ ବିଜେ କରାଇ ଆଣି ଦକ୍ଷିଣଘରେ ଖଟ ଉପରେ ବିଜେ କରାନ୍ତି ।

## ଚମ୍ପକ ଦ୍ୱାଦଶୀ

ରୁକ୍ମିଣୀ ବିବାହ ପରଦିନ, ଜ୍ୟେଷ୍ଠ ଶୁକ୍ଳ ଦ୍ୱାଦଶୀ ଦିନ, ସକାଳ ଧୂପ ଓ ଭୋଗମଣ୍ଡପ ଭୋଗ ଶେଷ ପରେ ଭିତରେ ଆଲଟଲାଗି ହୁଏ । ତା'ପରେ ମହାସ୍ନାନ ହୋଇ ନୂଆଲୁଗା ଲାଗି ହୁଏ । ପଣ୍ଡା, ପତି ଓ ମୁଦିରସ୍ତ ଚନ୍ଦନବିଜେ କରାଇ ଆଣି ସର୍ବାଙ୍ଗଲାଗି ନୀତି କରାନ୍ତି । ବେଶ ହୋଇ ମଧ୍ୟାହ୍ନଧୂପ ହୁଏ । ଧୂପ ସରି ପାଣିପଡ଼ିଲେ ବରକନ୍ୟା (ଲକ୍ଷ୍ମୀ ଓ ମଦନମୋହନ) ଭିତରକୁ ବିଜେ ହୁଅନ୍ତି । ଭିତରେ ବନ୍ଦାପନା ହେବା ପରେ ସେମାନେ ଆଜ୍ଞାମାଳ ପାଇ ଝୁଲଣମଣ୍ଡପ ତଳେ ଥିବା ପାଲିଙ୍କିରେ ବିଜେ ହୁଅନ୍ତି । ବିମାନବଡୁମାନେ ପାଲିଙ୍କି କାନ୍ଧେଇ ବଡ଼ଦେଉଳ ଚାରିପାଖରେ ଗୋଟିଏ ବେଢ଼ା ବୁଲି, ସିଂହଦ୍ୱାର ଦେଇ ରାଜାଙ୍କ ନଅରକୁ ବିଜେ କରାନ୍ତି । ରାଜା ନିଜେ ବରକନ୍ୟାଙ୍କୁ ବାଟରୁ ପାଛୋଟି ନେଇ ନଅର ଅଗଣାରେ ପଡ଼ିଥିବା ସୁସଜ୍ଜିତ ଖଟରେ ବିଜେ କରାନ୍ତି । ତା'ପରେ ପଞ୍ଚୋପଚାର ବିଧିରେ ନାନାପ୍ରକାର ପିଠା ମଣୋହି ହୁଏ । ପ୍ରସାଦଲାଗି ଓ ବନ୍ଦାପନା ହୁଏ । ରାଜା ବନ୍ଦାପନା ଓ ଚାମର ଆଲଟ କରନ୍ତି । ଏହାପରେ ନଅର ଭିତର ଶୋଧ ହୋଇ ସିଂହଦ୍ୱାର ବନ୍ଦହୁଏ । ଉଆସରୁ ରାଣୀ ଓ ରାଜପରିବାରବର୍ଗ ବରକନ୍ୟାଙ୍କୁ ବନ୍ଦାପନା କରି ଭେଟି ଦିଅନ୍ତି । ରାଣୀ ଓ ଅନ୍ୟମାନେ ଭିତରକୁ ଯିବା ପରେ ନଅର ସିଂହଦ୍ୱାର ଖୋଲାଯାଏ । ବରକନ୍ୟା ପାଲିଙ୍କିରେ ବିଜେ ହୋଇ ଯମେଶ୍ୱର ମନ୍ଦିରକୁ ବିଜେ କରନ୍ତି । ସେଠାରେ ପଞ୍ଚଗ୍ରାସୀ ଭୋଗ ଓ ବନ୍ଦାପନା ହୁଏ । ଏହାପରେ ବରକନ୍ୟା ବାହୁଡ଼ା ବିଜେ କରି ଦକ୍ଷିଣ ଘରକୁ ଫେରନ୍ତି । ଇତିମଧ୍ୟରେ ଶ୍ରୀମନ୍ଦିରରେ ସନ୍ଧ୍ୟାଧୂପ ଶେଷ ହୋଇଥାଏ । ବରକନ୍ୟାଙ୍କ ବାହୁଡ଼ାବିଜେ ପରେ ଭିତରେ ଆଲଟ ଲାଗି ଓ ଚନ୍ଦନଲାଗି ହୁଏ । ବଡ଼ସିଂହାର ଭୋଗ ପରେ ଭିତରକୁ ବରକନ୍ୟା ବିଜେ କରନ୍ତି । ଅବଶିଷ୍ଟ ନୀତି ହୋଇ ରାତ୍ର ପହୁଡ଼ ହୁଏ ।






# ଶ୍ରୀଜଗନ୍ନାଥଙ୍କ ବେଶ

'**ବେ**ଶ' ଅର୍ଥ ଶରୀରର ସାଜସଜ୍ଜା, ଭୂଷା । ଏହାର ଅନ୍ୟ ଅର୍ଥ ହେଉଛି ସିଂହାର । ବସ୍ତ୍ର, ପୁଷ୍ପ ଓ ଅଳଙ୍କାର ଆଦିରେ ଦିଅଁମାନଙ୍କର ଅଙ୍ଗସଜ୍ଜା କରାଯାଏ । ଶ୍ରୀମନ୍ଦିରରେ ପ୍ରଥମରେ ବସ୍ତ୍ର ସିଂହାର, ଦ୍ୱିତୀୟରେ ରତ୍ନାଳଙ୍କାର ବା ଭୂଷଣ ସିଂହାର ଓ ଶୟନ କାଳରେ ପୁଷ୍ପ ସିଂହାର କରାଯାଏ । ପ୍ରଥମେ 'ନିତ୍ୟପୂଜା', ପରେ 'ଐଶ୍ୱର୍ଯ୍ୟ ଉପାସନା ବା ପରପୂଜା' ଏବଂ ପରିଶେଷରେ 'ଭାବ ଉପାସନା ବା ମଧୁର ପୂଜା', ଏହି କ୍ରମ ହିଁ ଆଚରିତ ହୁଏ ।

ପ୍ରତିଦିନ ମଙ୍ଗଳ ଆଳତି ପରେ ରାତ୍ର ପହୁଡ଼ ଯାଏ ରତ୍ନବେଦିରେ ଦିଅଁମାନଙ୍କର ବିଭିନ୍ନ ବେଶ ହୁଏ । ଦୈନନ୍ଦିନ ନୀତି, ବିଶେଷ ନୀତି ଓ ପର୍ବପର୍ବାଣି ନୀତିମାନଙ୍କରେ ହେଉଥିବା ବେଶ ସାମଗ୍ରୀ ହେଲା- ସୂତାବସ୍ତ୍ର, ପାଟବସ୍ତ୍ର, ଫୁଲ, ଫୁଲର ଅଳଙ୍କାର, ସୁନା, ସୁନା ଅଳଙ୍କାର, ରତ୍ନପଥର, ସୋଲ, ଜରି, ଚନ୍ଦନ, କର୍ପୂର, ତୁଳସୀ, ଦୟଣା ପତ୍ର, କସ୍ତୁରୀ ଇତ୍ୟାଦି । ନିମ୍ନରେ ଶ୍ରୀଜୀଉମାନଙ୍କର କେତୋଟି ପ୍ରମୁଖ ବେଶ ସମ୍ପର୍କରେ ସଂକ୍ଷିପ୍ତ ସୂଚନା ପ୍ରଦାନ କରାଯାଇଛି ।

## ୧. ଅବକାଶ (ତଡ଼ପ ଉତ୍ତରୀ) ବେଶ

ଶ୍ରୀମନ୍ଦିର ନୀତିରେ 'ଅବକାଶ' କହିଲେ ସାଧାରଣତଃ ଦିଅଁଙ୍କର ମୁଖ ପ୍ରକ୍ଷାଳନ, ଦନ୍ତମାର୍ଜନ ଓ ସ୍ନାନକୁ ବୁଝାଏ । ନିତ୍ୟ ମଙ୍ଗଳ ଆଳତି ପରେ ପୁଷ୍ପାଳକ ସେବକମାନେ ପୂର୍ବ ରାତ୍ରରେ ବଡ଼ସିଂହାର ବେଶ ମଇଲମ କରି ଅବକାଶ ନୀତି ନିମନ୍ତେ ତଡ଼ପ ଉତ୍ତରୀ (ଉତ୍ତରୀୟ) ବେଶ କରାନ୍ତି । ସ୍ନାନ ଶୌଚ ବେଳେ ଆମେ ଯେପରି ଗାମୁଛା ପିନ୍ଧି କାନ୍ଧରେ ଅନ୍ୟ ଏକ ଗାମୁଛା ବ୍ୟବହାର କରୁ, ସେହିପରି ଦିଅଁମାନେ ଗାମୁଛା ପରି ଧଳା ବସ୍ତ୍ର ପରିଧାନ କରନ୍ତି । ଏଥିରେ ହଳଦିଆ ବା କମଳା ରଙ୍ଗର ଧଡ଼ି ଥାଏ । ଶ୍ରୀବଳଭଦ୍ର ୨ଟି, ଶ୍ରୀଜଗନ୍ନାଥ ୨ଟି, ଦେବୀ ସୁଭଦ୍ରା ୧ଟି ଓ ସୁଦର୍ଶନ ୧ଟି ଗାମୁଛା ପିନ୍ଧନ୍ତି । ଏହି ବସ୍ତ୍ର ପିନ୍ଧା ପରେ ଦିଅଁମାନଙ୍କର ସ୍ନାନ ନୀତି ହୁଏ । ସ୍ୱତ୍ୱଲିପିରେ ଲେଖାଅଛି- ''ତିନି ଠାକୁରଙ୍କୁ ୩ଗୋଟି ତଡ଼ପ ଓ ସୁଦର୍ଶନଙ୍କୁ ୧ ଗୋଟି ତଡ଼ପ ଲାଗି କରାହୁଏ । ଉତ୍ତରୀୟ ଦୁଇ ଗୋଟି ବଡ଼ଠାକୁର ଓ ଶ୍ରୀଜଗନ୍ନାଥଙ୍କୁ ଲାଗି କରାଯାଏ ।'' ଅବକାଶ ନୀତି ପରେ ଦିଅଁମାନଙ୍କର ବସ୍ତ୍ର ମଇଲମ କରାଯାଇ ବାରଲାଗି ପାଟବସ୍ତ୍ର ପରିଧାନ କରାଯାଏ ।

## ୨. ବଡ଼ସିଂହାର ବେଶ

ପ୍ରତିଦିନର ପ୍ରଥମବେଶ ହେଲା ଅବକାଶ ବେଶ ଏବଂ ଶେଷ ବେଶ ହେଲା ବଡ଼ସିଂହାର ବେଶ । ବଡ଼ସିଂହାର ବେଶରେ ଦିଅଁମାନେ ରାତ୍ର ପହୁଡ଼ ହୁଅନ୍ତି । ପ୍ରତିଦିନ ସଂଧ୍ୟା ଧୂପ ପରେ ମଇଲମ ହୋଇ ଚନ୍ଦନଲାଗି ନୀତି ହୁଏ । ପୁଷ୍ପାଳକମାନେ ତିନିବାଡ଼ରେ ଚନ୍ଦନ ଲାଗି କରାନ୍ତି ।

ତା'ପରେ ବଡ଼ସିଂହାର ବେଶ ହୁଏ । ପୁଷ୍ପାଳକ ସେବକ ଦିଅଁମାନଙ୍କୁ ବାରଲାଗି ପାଟ ପିନ୍ଧାନ୍ତି ଏବଂ ମାଳଫୁଲରେ ବେଶ କରାନ୍ତି । ଏହି ବେଶ ମୁଖ୍ୟତଃ ଫୁଲ ବେଶ । ସ୍ୱତ୍ୱଲିପିରେ ଉଲ୍ଲେଖ ଅଛି ଯେ ଶ୍ରୀରାମ ଦାସ ମଠ ଏହି ବେଶପାଇଁ ଫୁଲର କରପଲ୍ଲବ, କୁଣ୍ଡଳ ଓ ତଡ଼ଗି (ତଡ଼କୀ) ଏବଂ ଏମାର ମଠ ଫୁଲର ଚନ୍ଦ୍ରିକା ଯୋଗାନ୍ତି । କରପଲ୍ଲବ, କୁଣ୍ଡଳ ଓ ଚନ୍ଦ୍ରିକା ଦୁଇ ଠାକୁର (ଶ୍ରୀବଳଭଦ୍ର ଓ ଶ୍ରୀଜଗନ୍ନାଥ)ଙ୍କୁ ଲାଗି ହୁଏ । ତଡ଼କୀ ଓ ଚନ୍ଦ୍ରିକା ଦେବୀ ସୁଭଦ୍ରାଙ୍କୁ ଲାଗି ହୁଏ । ତଡ଼କୀ ହେଉଛି କର୍ଣ୍ଣ ନିମନ୍ତେ ଏକ ପୁଷ୍ପ ଭୂଷା । ଦିଅଁମାନେ ଅଧରମାଳା, ଚଉସରା, ବକ୍ଷରେ ପଦକ, ନାସାରେ ଗୁଣା ଓ ନାକୁଆସି, ମଥାରେ ଅଳକା ପରିଧାନ କରନ୍ତି । ପିନ୍ଧାଯାଇଥିବା ବାରଲାଗି ପାଟବସ୍ତ୍ରରେ ଜୟଦେବଙ୍କ ଗୀତଗୋବିନ୍ଦର କେତୋଟି ଧାଡ଼ି ବୁଣାଯାଇଥାଏ । ବେଶ ବଢ଼ିବା ପରେ ପୁଷ୍ପାଳକ ଠାକୁରମାନଙ୍କୁ କର୍ପୂର ଲାଗି କରାନ୍ତି । ବେଶ ପରେ ବଡ଼ସିଂହାର ଧୂପ ହୁଏ ।

## ୩. ଗଣପତି ବେଶ ବା ହାତୀ ବେଶ

ପ୍ରତିବର୍ଷ ଜ୍ୟେଷ୍ଠ ପୂର୍ଣ୍ଣିମା ଦିନ ଶ୍ରୀମନ୍ଦିର ସ୍ନାନବେଦୀରେ ଦେବସ୍ନାନ ନୀତି ପରେ ଶ୍ରୀଜୀଉମାନଙ୍କର ହାତୀ ବେଶ ହୁଏ । ଶ୍ରୀବଳଭଦ୍ର ଓ ଶ୍ରୀଜଗନ୍ନାଥ ଯଥାକ୍ରମେ ଧଳା ଓ କଳା ହସ୍ତୀ ବେଶରେ ସଜ୍ଜିତ ହୁଅନ୍ତି । ଗୋପାଳତୀର୍ଥ ମଠ ବଡ଼ ବାଡ଼ର ଅର୍ଥାତ୍ ଶ୍ରୀବଳଭଦ୍ରଙ୍କର ହାତୀ ବେଶର ଉପକରଣ ଓ ରାଘବ ଦାସ ମଠ ଅନ୍ୟ ଦୁଇ ବାଡ଼ର ଉପକରଣ ଯୋଗାନ୍ତି । ସୋଲ, ଜରି, କଦଳୀ ପଟରେ ତରାସ, ଚୂଳ ଓ କରପଲ୍ଲବ ଥାଇ ଏହି ବେଶ ତିଆରି କରାଯାଇଥାଏ । ପାଳିଆ ପୁଷ୍ପାଳକ ଓ ଦଇତାପତିମାନେ ଏହି ବେଶ କରନ୍ତି । ବେଶ ଶେଷ ପରେ କର୍ପୂର ଲାଗି ହୁଏ । ଓଡ଼ିଶାରେ ଗଙ୍ଗବଂଶର ଶେଷ ରାଜା ଭାନୁଦେବ (୪ର୍ଥ)ଙ୍କ ରାଜତ୍ୱ କାଳ (ଖ୍ରୀ. ୧୪୧୪-୧୪୩୫)ରେ ଏହି ହାତୀବେଶ ଆରମ୍ଭ ହୋଇଥିବା କୁହାଯାଏ ।

## ୪. ରାଜବେଶ ବା ସୁନାବେଶ

ରାଜବେଶର ଅନ୍ୟ ନାମ ବଡ଼ ତଡ଼ଉ ବେଶ । ତଡ଼ଉ ଅର୍ଥ ସୁନା । ସୁତରାଂ ରାଜବେଶ ହେଉଛି ଏକ ବଡ଼ ଧରଣର ସୁନା ବେଶ । ରତ୍ନଭଣ୍ଡାର ବା ଭଣ୍ଡାରକରଣ ସେବକ ହେଉଛନ୍ତି ତଡଉକରଣ । ରତ୍ନବେଦିସ୍ଥ ତ୍ରିମୂର୍ତ୍ତିଙ୍କ ଶ୍ରୀଅଙ୍ଗରେ ବର୍ଷ ତମାମ (ଅଣସର ସମୟକୁ ଛାଡ଼ି) କିଛି ନା କିଛି ଅଳଙ୍କାର ଲାଗି ହୋଇଥାଏ । ଶ୍ରୀଅଙ୍ଗରେ ସର୍ବଦା ତିନି ଦିଅଁଙ୍କର ସୁବର୍ଣ୍ଣ ଝୋବା କଣ୍ଠି (୨ ମୂର୍ତ୍ତି ଲେଖାଏଁ) ଥାଏ । ପ୍ରତ୍ୟେକ ଧୂପ ପୂଜାରେ ଗୋଟିଏ ଲେଖାଏଁ ସୁବର୍ଣ୍ଣ ପଦକ ଲାଗି ହୁଅନ୍ତି । ନୀଳାଦ୍ରିବିଜେଠାରୁ ଚିତାଲାଗି ଅମାବାସ୍ୟା ଯାଏ ଶ୍ରୀଗୁଣ୍ଡିଚା ବେଶ ହୁଅନ୍ତି । ଏହି ବେଶରେ ଲାଗି ହେଉଥିବା ରତ୍ନ ଅଳଙ୍କାରମାନ ହେଲା- ନଳୀ ଭୁଜ-୨, କୁଣ୍ଡଳ-୨, ମାଳି-୧, ତିଳକ-୧ଟି ଲେଖାଏଁ ଦୁଇଠାକୁରଙ୍କ ପାଇଁ ଏବଂ ମାଳି-୧, ତଡ଼କୀ-୨ ସୁଭଦ୍ରାଙ୍କ ପାଇଁ । ଆଉ କେତୋଟି ପର୍ବପର୍ବାଣି ଦିନରେ ଯଥା- ବାମନ ଜନ୍ମ, ରାଧା-ଦାମୋଦର ବେଶ, ଚାଚେରୀ ବେଶରେ ଅଧିକ ଅଳଙ୍କାର ଲାଗି କରାଯାଏ । କିନ୍ତୁ ରାଜବେଶରେ ସର୍ବାଧିକ ରତ୍ନ ଅଳଙ୍କାର ଲାଗି କରାଯାଏ । ସୁତରାଂ ସବୁ ରାଜବେଶ ସୁନାବେଶ, କିନ୍ତୁ ସବୁ ସୁନାବେଶ ରାଜବେଶ ନୁହେଁ ।

ରାଜବେଶ ବର୍ଷକୁ ପାଞ୍ଚ ଥର ହୁଏ । ସେହି ଦିନମାନ ହେଲା- ବିଜୟାଦଶମୀ, କାର୍ତ୍ତିକପୂର୍ଣ୍ଣିମା, ପୌଷପୂର୍ଣ୍ଣିମା, ଦୋଳପୂର୍ଣ୍ଣିମା ଓ ରଥ ଉପରେ ବଡ଼ ଏକାଦଶୀ । ଦଶହରା ଓ କାର୍ତ୍ତିକପୂର୍ଣ୍ଣିମାରେ ରାଜବେଶ ହେବା ପରେ ସକାଳ ଧୂପ ହୁଏ । ପୌଷପୂର୍ଣ୍ଣିମା (ଅଭିଷେକ ପୂର୍ଣ୍ଣିମା)ରେ ସକାଳ ଧୂପ ପରେ ଓ ରଥ ଉପରେ ରାଜବେଶ ମଧ୍ୟାହ୍ନ ଧୂପ ପରେ ହୁଏ । ଦୋଳପୂର୍ଣ୍ଣିମାରେ ବଲ୍ଲଭ ଭୋଗ ପୂର୍ବରୁ ଏହି ବେଶ ହୁଏ। କେବଳ ରଥ ଉପରେ ରାଜବେଶ ଶ୍ରୀମନ୍ଦିର ବାହାରେ ହୋଇଥାଏ । ରଥ ଉପରେ ରାଜବେଶକୁ 'ବଡ଼ ତଡ଼ଉ ବେଶ' ଓ କାର୍ତ୍ତିକପୂର୍ଣ୍ଣିମାର ରାଜବେଶକୁ 'ରାଜରାଜେଶ୍ୱର ବେଶ' ବୋଲି କେହି କେହି ମତବ୍ୟକ୍ତ କରନ୍ତି । ପ୍ରକୃତରେ ସବୁ ରାଜବେଶକୁ ହିଁ ବଡ଼ ତଡ଼ଉ ବେଶ ଓ ରାଜରାଜେଶ୍ୱର ବେଶ କହିବା ସମୀଚୀନ ହେବ ।

ରଥ ଉପରେ ରାଜବେଶର ତାଲିକା ନିମ୍ନରେ ପ୍ରଦତ୍ତ :

ଶ୍ରୀପୟର-୪, ଶ୍ରୀଭୁଜ-୪ (ଦେବୀଙ୍କର ନାହିଁ), କିରୀଟ-୩ (ପ୍ରତ୍ୟେକ-୧), କାନ-୬ (ପ୍ରତ୍ୟେକ-୨), ବାହାଡ଼ାମାଳି-୨ (ଶ୍ରୀବଳଭଦ୍ର-୧, ଶ୍ରୀଜଗନ୍ନାଥ-୧), ତାବିଜ ମାଳି-୧ (ଶ୍ରୀଜଗନ୍ନାଥଙ୍କର), ହରିଡ଼ା କଦମ୍ବ ମାଳି-୧ (ଶ୍ରୀଜଗନ୍ନାଥଙ୍କର), ବାଘନଖୀ ମାଳି-୧ (ଶ୍ରୀଜଗନ୍ନାଥଙ୍କର), କଦମ୍ବ ମାଳି-୪ (ଶ୍ରୀବଳଭଦ୍ର-୨, ଶ୍ରୀଜଗନ୍ନାଥ-୧, ଦେବୀ ସୁଭଦ୍ରା-୧), ସେବତୀ ମାଳି-୩ (ପ୍ରତ୍ୟେକ-୧), ହଳମୂଷଳ(୧+୧) (ଶ୍ରୀବଳଭଦ୍ର), ଚକ୍ର-୧ (ଶ୍ରୀଜଗନ୍ନାଥ), ତିଳକ-୨ (ଶ୍ରୀବଳଭଦ୍ର-୧, ଶ୍ରୀଜଗନ୍ନାଥ-୧), ଆଡ଼କାନି-୪(ଶ୍ରୀବଳଭଦ୍ର-୨, ଶ୍ରୀଜଗନ୍ନାଥ-୨), ଚନ୍ଦ୍ରସୂର୍ଯ୍ୟ-୬ (ପ୍ରତ୍ୟେକ-୨ଟି), ଅଳକା-୩ (ପ୍ରତ୍ୟେକ-୧ଟି), ଓଡ଼ିଆଣୀ-୩ (ପ୍ରତ୍ୟେକ-୧), ଚନ୍ଦ୍ରିକା-୨ (ଶ୍ରୀବଳଭଦ୍ର-୧, ଶ୍ରୀଜଗନ୍ନାଥ-୧), ତଡ଼କୀ-୨ (ଶ୍ରୀବଳଭଦ୍ର-୧, ଶ୍ରୀଜଗନ୍ନାଥ-୧), ଶଙ୍ଖ (ରୁପା)-୧ (ଶ୍ରୀଜଗନ୍ନାଥଙ୍କର)

ଏହି ରାଜବେଶରେ କେବଳ ଶଙ୍ଖଟି ରୁପା, ବାକି ସବୁ ଅଳଙ୍କାର ସୁନା । ରଥ ଉପରେ ହେଉଥିବା ରାଜବେଶରେ ଦୁଇଟି ପ୍ରଧାନ ଅଳଙ୍କାର ନଥାଏ । ତାହା ହେଲା: ସୁନାର ରାହୁରେଖା ଓ ରତ୍ନ ଚିତା । ରଥଯାତ୍ରା ସମୟରେ ତିନିଦିଅଁଙ୍କ ଶ୍ରୀମୁଖମଣ୍ଡଳରେ ପ୍ରକୃତ ରତ୍ନଚିତା ନଥାଏ । ରଥଯାତ୍ରା ଦିନ ପହଣ୍ଡି ଶେଷ ପରେ ଓ ଛେରାପହଁରା ପୂର୍ବରୁ ତିନି ଦିଅଁଙ୍କୁ ଗୋଟିଏ ଲେଖାଏଁ ସୋଲ ଚିତା ଲାଗି କରାଯାଏ । ସୋଲ ଚିତା ମଝିରେ ଅଳ୍ପ ପରିମାଣର ସୁନା ଓ ରତ୍ନ ପଥର ବସାଯାଇଥାଏ ।

ଓଡ଼ିଶାର କେଉଁ ରାଜାଙ୍କ ଶାସନ କାଳରେ ରାଜବେଶର ପ୍ରଚଳନ କରାଯାଇଥିଲା ତାହା ନିର୍ଦ୍ଦିଷ୍ଟ ଭାବରେ ଜଣାପଡୁନାହିଁ । ପୁରୁଷୋତ୍ତମ-ଜଗନ୍ନାଥ ହିଁ ଓଡ଼ିଶା ରାଜ୍ୟର ରାଜା ବୋଲି ଗଙ୍ଗବଂଶର ରାଜା ଅନଙ୍ଗଭୀମ ଦେବ-୩ୟ (ଖ୍ରୀଷ୍ଟାବ୍ଦ ୧୨୧୧-୧୨୩୮) ଘୋଷଣା କରିଥିଲେ । ହୁଏତ ତାଙ୍କ ସମୟରେ ଏହି ବେଶ ପ୍ରଚଳନ କରାଯାଇଥିବ । ଅନ୍ୟ ମତରେ ସମ୍ରାଟ କପିଳେନ୍ଦ୍ର ଦେବ (ଖ୍ରୀଷ୍ଟାବ୍ଦ ୧୪୩୫-୧୪୬୮) ଓଡ଼ିଶାର ରାଷ୍ଟ୍ରଦେବତା ଶ୍ରୀଜଗନ୍ନାଥଙ୍କ ପାଇଁ ଏହି ରାଜବେଶର ପ୍ରଚଳନ କରାଇଥିଲେ । ମହାପ୍ରଭୁ ଶ୍ରୀ ଜଗନ୍ନାଥଙ୍କ ରାଜକୀୟତା ତାଙ୍କର ରାଜବେଶରେ ପ୍ରତିଫଳିତ ହୁଏ ।

## ୫. ବଣଭୋଜି ବେଶ

ଏହା କୃଷ୍ଣଲୀଳା ଅନ୍ତର୍ଗତ ଏକ ବେଶ । ଭାଦ୍ରବ କୃଷ୍ଣପକ୍ଷ ଦଶମୀରେ ଏହି ବେଶ ହୁଏ । ଶ୍ରୀବଳଭଦ୍ର (ବଳରାମ) ଓ ଶ୍ରୀଜଗନ୍ନାଥ (କୃଷ୍ଣ) ଗଉଡ଼ ବାଳକ ରୂପେ ବଣଭୋଜି ନିମନ୍ତେ ଯାଉଥିବା ବେଶ । ସଂଧ୍ୟାଧୂପରେ ଏହି ବେଶ ହୁଏ । ଏହି ବେଶରେ ଠାକୁରମାନେ ଶ୍ରୀହସ୍ତରେ ଶିକାରେ ରୁପା ପିଙ୍ଗଣରେ ସର ଧରନ୍ତି ଓ ଅନ୍ୟ ହସ୍ତରେ ଲଉଡ଼ି ଧରନ୍ତି । ଦୁଧ ପେଡ଼ାର ମାଳି ଠାକୁରମାନଙ୍କୁ ଲାଗି ହୁଏ । ଏହି ବେଶ ରାଜା ପ୍ରତାପରୁଦ୍ରଦେବ (୧୬ଶ ଶତାବ୍ଦୀ), ମତାନ୍ତରେ ଚୋଡ଼ଗଙ୍ଗଦେବଙ୍କ ପୁତ୍ର କାମାର୍ଣ୍ଣବ ଦେବ (ଖ୍ରୀଷ୍ଟାବ୍ଦ ୧୧୪୭-୧୧୫୬)ଙ୍କ ରାଜତ୍ୱ କାଳରେ ଆରମ୍ଭ ହୋଇଥିଲା ।

## ୬. କାଳୀୟଦଳନ ବେଶ

ଏହି ବେଶ ଭାଦ୍ର କୃଷ୍ଣ ଏକାଦଶୀ ତିଥିରେ ହୁଏ । ସଂଧ୍ୟା ଧୂପ ପୂର୍ବରୁ ମୁଖ୍ୟତଃ ଶ୍ରୀଜଗନ୍ନାଥଙ୍କ ବାଡ଼ରେ ଏହି ବେଶ ହୁଏ । କନାରେ ନିର୍ମିତ ବିରାଟକାୟ ଗୋଟିଏ କଳା ନାଗ ମହାପ୍ରଭୁଙ୍କ ଶ୍ରୀଅଙ୍ଗକୁ ଆବୃତ କରି ରହିଥାଏ । ନାଗ ଫଣା ଉପରେ ମହାପ୍ରଭୁଙ୍କ ଶ୍ରୀପୟର ଦୁଇଟି ରହିଥାଏ । ବେଶ ବଢ଼ି ସଂଧ୍ୟା ଧୂପ ପାଣି ପଡ଼ିବା ପରେ ଏକ ଅମୃତ ଲଡୁ ଶ୍ରୀହସ୍ତରେ ଲାଗି କରାଯାଏ ।

## ୭. ପ୍ରଳମ୍ବାସୁର ବଧ ବେଶ

ଏହି ବେଶ ଭାଦ୍ରବ କୃଷ୍ଣ ଦ୍ୱାଦଶୀ ଦିନ ଶ୍ରୀବଳଭଦ୍ରଙ୍କ ବାଡ଼ରେ କରାଯାଏ । ମଧ୍ୟାହ୍ନ ଧୂପ ପରେ ଏହି ବେଶ ହୁଏ । ଏହି ବେଶରେ ଶ୍ରୀଜଗନ୍ନାଥ ଓ ଶ୍ରୀ ସୁଭଦ୍ରା ସାଧାରଣ ବେଶରେ ବିରାଜମାନ କରନ୍ତି । କେବଳ ଶ୍ରୀବଳଭଦ୍ରଙ୍କ ପଦପ୍ରାନ୍ତରେ ପ୍ରଳମ୍ବାସୁରର ଏକ ମୂର୍ତ୍ତି ସଜାଯାଏ । ଫଳରେ ଅସୁରର ସ୍କନ୍ଧ ଓ ଦୁଇ ଭୁଜରେ ବଳଭଦ୍ର ବସିବା ପରି ଦୃଶ୍ୟହୁଏ ।

## ୮. କୃଷ୍ଣ-ବଳରାମ ବେଶ

ଭାଦ୍ରବ କୃଷ୍ଣ ତ୍ରୟୋଦଶୀରେ ହୁଏ । ଶ୍ରୀଜଗନ୍ନାଥ ଓ ଶ୍ରୀବଳଭଦ୍ରଙ୍କୁ କୃଷ୍ଣ-ବଳରାମ ବେଶରେ ସଜାଯାଏ । ଏହି ବେଶ ଗିରିଗୋବର୍ଦ୍ଧନ ବେଶ ନାମରେ ବଡ଼ ଓଡ଼ିଆ ମଠ ଆନୁମାନିକ ୧୫୨୪ ଖ୍ରୀଷ୍ଟାବ୍ଦରେ କରାଉଥିଲେ । ପରେ ବନ୍ଦ ହୋଇଯାଇଥିଲା । ଖ୍ରୀଷ୍ଟାବ୍ଦ ୧୯୪୫ ପରଠାରୁ ଏହାର ପୁନଃ ପ୍ରଚଳନ କରାଗଲା । କିନ୍ତୁ ଗିରିଗୋବର୍ଦ୍ଧନ ସ୍ଥାନରେ କଦମ୍ବ ବୃକ୍ଷ ରଖାଯାଇ କୃଷ୍ଣ-ବଳରାମ ବେଶ ଭାବରେ ଏହାକୁ ନାମିତ କରାଗଲା । କଟକ ଜିଲ୍ଲା ସାଲେପୁର ଥାନାର ଖଣ୍ଡସାହି ଗ୍ରାମର ଜମିଦାର ଚୌଧୁରୀ ଗୋପବନ୍ଧୁ ମିଶ୍ର ଏହି ବେଶର ସମସ୍ତ ଖର୍ଚ୍ଚ ବହନ କରୁଥିଲେ । ତାଙ୍କର ଦେହାନ୍ତ ପରେ ତାଙ୍କର ଉତ୍ତରାଧିକାରୀ ଏହି ବେଶ କରାଇ ଆସୁଛନ୍ତି । ଏହା ଏକ ଯଜମାନି ବେଶ ।

## ୯. ବାମନ ବେଶ

ଭାଦ୍ରବ ଶୁକ୍ଳ ଦ୍ୱାଦଶୀରେ ବାମନ ବେଶ ହୁଏ । କାରଣ ଏହି ଦିନଟି ଭଗବାନଙ୍କ ବାମନାବତାରର ଜନ୍ମଦିବସ । ଏହିଦିନ ରତ୍ନ ବେଦୀରେ ତିନି ଦିଅଁଙ୍କ ସୁନାବେଶ ହୁଏ ।

ଶ୍ରୀଜଗନ୍ନାଥଙ୍କ ବାଡ଼ରେ ଏହି ବାମନ ଅବତାର ବେଶ ହୁଏ । ଏହି ବେଶରେ ଶ୍ରୀଜଗନ୍ନାଥଙ୍କ କିରୀଟରୁ ଫଳି କାଢ଼ି ଦିଆଯାଇ କିରୀଟଟି ଲଗାଯିବାରୁ ମହାପ୍ରଭୁ ବଡ଼ଠାକୁରଙ୍କ ତୁଳନାରେ ଗେଡ଼ା (ବାମନ) ଦେଖାଯାଆନ୍ତି ।

## ୧୦. ରାଧା-ଦାମୋଦର ବେଶ

ଆଶ୍ୱିନ ଶୁକ୍ଳ ଏକାଦଶୀଠାରୁ କାର୍ତ୍ତିକ ଶୁକ୍ଳ ଦଶମୀ ଯାଏ ଏହି ରାଧା-ଦାମୋଦର ବେଶ ହୁଏ । ଏହି ଏକାଦଶୀ ଦିନଠାରୁ ଶ୍ରୀମନ୍ଦିରରେ କାର୍ତ୍ତିକ ମାସର ନୀତି, ବେଶ ଓ ବ୍ରତ ଆରମ୍ଭ ହୁଏ । ପ୍ରତ୍ୟହ ଆଳତି ଅବକାଶ ପରେ ରାଧା-ଦାମୋଦର ବେଶ ହୋଇ ଗୋପାଳବଲ୍ଲଭ ଭୋଗ ହୁଏ । ରାଧା-ଦାମୋଦର ବେଶରେ ଦିଅଁମାନେ ୩୦ ମୂର୍ତ୍ତି ସୁନା ଅଳଙ୍କାର ଲାଗି ହୁଅନ୍ତି । ତାହା ହେଲା- ନଳୀଭୁଜ-୪, କୁଣ୍ଡଳ-୪, ତିଳକ-୨, ଆଡ଼କାନି-୪, ଚନ୍ଦ୍ରିକା-୨, ଚନ୍ଦ୍ରସୂର୍ଯ୍ୟ-୬, ତଡ଼କୀ-୨, ଓଡ଼ିଆଣୀ-୩, ମାଳି-୩ (ମୋଟ-୩୦)

## ୧୧. ଲକ୍ଷ୍ମୀ-ନାରାୟଣ (ଠିଆକିଆ) ବେଶ

କାର୍ତ୍ତିକ ଶୁକ୍ଳ ଏକାଦଶୀରେ ଏହି ବେଶ କରାଯାଏ । ମସ୍ତକରେ ସୁବର୍ଣ୍ଣ କିଆ ଠିଆ ଭାବରେ ଲାଗି ହେଉଥିବାରୁ ଏହି ବେଶର ଅନ୍ୟ ନାମ ଠିଆକିଆ ବେଶ । ଏହି ବେଶରେ ନିମ୍ନଲିଖିତ ଅଳଙ୍କାର ଲାଗି ହୁଏ । ଶ୍ରୀଭୁଜ ୪, ଶ୍ରୀପୟର-୪, କାନ-୬, ଆଡ଼କାନି-୪, ଚନ୍ଦ୍ରିକା-୨, ଚନ୍ଦ୍ରସୂର୍ଯ୍ୟ-୬, ତଡ଼କୀ-୨, ଓଡ଼ିଆଣୀ-୩, କିଆ-୫୦, ଶଙ୍ଖ(ରୁପା) ୧, ଚକ୍ର ୧, ହଳ+ମୂଷଳ (୧+୧) । ଏହା ବ୍ୟତୀତ କେତେଖଣ୍ଡ ମାଳି ପିନ୍ଧାଯାଏ ।

## ୧୨. ବାଙ୍କଚୂଡ଼ା ବେଶ

ଏହି ବେଶରେ ଚନ୍ଦ୍ରିକା ଚୂଳ ସହିତ ଦକ୍ଷିଣ ପଟକୁ ଆଡ଼ ଖୋସା ପଡ଼େ । କାର୍ତ୍ତିକ ଶୁକ୍ଳ ଦ୍ୱାଦଶୀରେ ଏହି ବେଶ ହୁଏ । ଏ ବେଶରେ ଠାକୁରମାନେ ଅପେକ୍ଷାକୃତ ଗେଡ଼ା ବା ବାମନ ପରି ଶୋଭା ପାଆନ୍ତି ।

## ୧୩. ତ୍ରିବିକ୍ରମ (ଆଡ଼କିଆ) ବେଶ

କାର୍ତ୍ତିକ ଶୁକ୍ଳ ତ୍ରୟୋଦଶୀରେ ଏହି ବେଶ ହୁଏ । ଏଥିରେ ଶ୍ରୀଜଗନ୍ନାଥ ଓ ଶ୍ରୀ ବଳଭଦ୍ରଙ୍କ ମସ୍ତକରେ ଚୂଳ ଲଗାଯାଏ । ଏହି ଚୂଳରେ ସ୍ୱର୍ଣ୍ଣ ନିର୍ମିତ କିଆ ଆଡ଼ବାଗରେ ଖଞ୍ଜାଯାଉଥିବାରୁ ଏହାର ନାମ ଆଡ଼କିଆ ବେଶ । ବାମନାବତାରର ତ୍ରିବିକ୍ରମ ରୂପ ସହିତ ଏହି ବେଶ ସଂପର୍କିତ ।

## ୧୪. ଲକ୍ଷ୍ମୀ ନୃସିଂହ (ଡାଳିକିଆ) ବେଶ

କାର୍ତ୍ତିକ ଶୁକ୍ଳ ଚତୁର୍ଦ୍ଦଶୀରେ ହୁଏ । ଏଥିରେ ସୁନାକିଆ ଡାଳିପରି ଖଞ୍ଜା ଯାଇଥିବାରୁ ଏହାର ନାମ ଡାଳିକିଆ ବେଶ ।

## ୧୫. ଶ୍ରାଦ୍ଧ ବେଶ

ମାର୍ଗଶିର କୃଷ୍ଣ ଚତୁର୍ଦ୍ଦଶୀଠାରୁ ଶୁକ୍ଳ ପ୍ରତିପଦା ମଧ୍ୟରେ ପ୍ରଭୁ ଜଗନ୍ନାଥ ପିତୃପୁରୁଷଙ୍କୁ ଶ୍ରାଦ୍ଧ ଦିଅନ୍ତି । ଏହି ସମୟରେ ପ୍ରଭୁ ଯେଉଁ ବେଶ ହୁଅନ୍ତି ତାହା ଶ୍ରାଦ୍ଧ ବେଶ ଭାବରେ ପରିଚିତ । ଏହି ବେଶରେ ପ୍ରଭୁ ନାଗପୁରୀ ଅର୍ଥାତ୍ କୁମ୍ଭପକା ଧଡ଼ି ବସ୍ତ୍ର ପିନ୍ଧନ୍ତି ।

## ୧୬. ନାଗାର୍ଜୁନ ବେଶ

ଯେଉଁ ବର୍ଷ କାର୍ତ୍ତିକ ଶୁକ୍ଳପକ୍ଷରେ ପଞ୍ଚକ ପାଞ୍ଚ ଦିନ ପରିବର୍ତ୍ତେ ଛଅ ଦିନ ପଡ଼େ, ସେହି ବର୍ଷ ପଞ୍ଚକର ବଡ଼ ଦିନ ବା ମଳ ତିଥିରେ ଶ୍ରୀଜଗନ୍ନାଥଙ୍କର ନାଗାର୍ଜୁନ ବେଶ ହୁଏ । ୧୯୯୩ ଓ ୧୯୯୪ ମସିହାରେ କାର୍ତ୍ତିକ ଶୁକ୍ଳ ଦ୍ୱାଦଶୀ (ମଳ) ଓ କାର୍ତ୍ତିକ ଶୁକ୍ଳ ତ୍ରୟୋଦଶୀ (ମଳ) ତିଥିରେ ଏହି ବେଶ ହୋଇଥିଲା । ତତ୍‌ପୂର୍ବରୁ ୧୯୬୬, ୧୯୬୭ ଓ ୧୯୬୮ ମସିହାରେ ମଳ ତିଥିରେ ଏହି ବେଶ ହୋଇଥିଲା । ସୁତରାଂ ପଞ୍ଚକର ମଳ ତିଥିରେ ପରମ୍ପରା ଅନୁସାରେ ନାଗାର୍ଜୁନ ବେଶ ହୋଇ ଆସୁଛି । ଏହି ବେଶକୁ ମଧ୍ୟ 'ପର୍ଶୁରାମ ବେଶ' କୁହାଯାଏ ।

ଏହି ବେଶରେ ଶ୍ରୀଜଗନ୍ନାଥ ଓ ଶ୍ରୀବଳଭଦ୍ର ବନବାସୀ ବୀର ବେଶରେ ସଜ୍ଜିତ ହୁଅନ୍ତି । ଏହା ଏକ ସାମରିକ ବେଶ । ଏହି ବେଶରେ ବଡ଼ ବଡ଼ ଫୁଲ ହାଣ୍ଡିଆ ବା ଶିରସ୍ତ୍ରାଣ, ବାଘ ନଖ, ଧନୁ, ଶରପୁଞ୍ଜ, କଟିରେ ଢାଲ ଏବଂ ନାନା ପ୍ରକାର ହାର ଲାଗି କରାଯାଏ । ନାଗା ବା ପାର୍ବତୀୟ ବୀର ବେଶରେ ଦିଅଁମାନେ ସଜ୍ଜିତ ହୁଅନ୍ତି । ପୁରୀରେ ନାଗାବେଶ ଅତି ଲୋକପ୍ରିୟ । ସାହି ଯାତ ବିଶେଷତଃ ଗୋସାଣୀ ଯାତରେ ଏହି ବେଶ ଅଧିକ ଦେଖାଯାଏ । ଏହି ବେଶ ସହିତ ଠାକୁରଙ୍କ ନାଗାର୍ଜୁନ ବେଶର ସାମଞ୍ଜସ୍ୟ ପରିଲକ୍ଷିତ ହୁଏ ।

ପୂର୍ବେ ପୁରୀର ଚକ୍ରକୋଟ ସ୍ଥାନର ଖୁଣ୍ଟିଆ ପଣ୍ଡା ଏହି ବେଶର ସମସ୍ତ ଖର୍ଚ୍ଚ ବହନ କରୁଥିଲେ । ୧୯୯୩ ମସିହାରେ ପୁରୀର ଦୋଳମଣ୍ଡପ ସାହିର ଶ୍ରୀମତୀ ତିଲୋତ୍ତମା ଦାସ ମହାପାତ୍ର ଏହି ବେଶ କରାଇ ଥିଲେ । ୧୯୯୪ରେ କାର୍ତ୍ତିକ ଶୁକ୍ଳ ତ୍ରୟୋଦଶୀ (ମଳ) ତା ୧୬-୧୧-୧୯୯୪ରେ ହୋଇଥିବା ଏହି ବେଶର ସମସ୍ତ ଖର୍ଚ୍ଚ ଶ୍ରୀମନ୍ଦିର ପ୍ରଶାସନ ବହନ କରିଥିଲେ । ସକାଳେ ଅବକାଶ ନୀତି ପରେ ନାଗାର୍ଜୁନ ବେଶ ହୋଇଥିଲା । ବେଶ ହେବା ପରେ ସକାଳ ଧୂପ ଓ ଅନ୍ୟାନ୍ୟ ନୀତି ହୋଇ ଭୋଗ ମଣ୍ଡପ ଧୂପ ପରେ ସର୍ବସାଧାରଣଙ୍କ ପାଇଁ ବେଶ ଦର୍ଶନର ବ୍ୟବସ୍ଥା କରାଯାଇଥିଲା ।

ନାଗାର୍ଜୁନ ବେଶ ଶୈବ ଓ ବୈଷ୍ଣବ ଭାବନାର ମିଶ୍ରିତ ପରିପ୍ରକାଶ । ବିଧର୍ମୀ ଆକ୍ରମଣକୁ ପ୍ରତିହତ କରାଇବାପାଇଁ ଓଡ଼ିଆ ଖଣ୍ଡାଏତ ଓ ପାଇକ ମନରେ ଐଶୀ ବିଶ୍ୱାସ ସହିତ ବୀରତ୍ୱ ଭାବ ଉଦ୍ରେକ କରାଇବା ହୁଏତ ଏହି ବେଶର ମୂଳ ଉଦ୍ଦେଶ୍ୟ ଥିଲା ।

## ୧୭. ଘୋଡ଼ଲାଗି ବେଶ

ମାର୍ଗଶିର ଶୁକ୍ଳ ଷଷ୍ଠୀ (ପ୍ରାବରଣ ଷଷ୍ଠୀ) ଦିନରୁ ଦିଅଁମାନଙ୍କୁ ଶୀତ ବସ୍ତ୍ର ବିଧିବିଧାନପୂର୍ବକ ଲାଗି କରାଯାଏ । ଶୀତ ବସ୍ତ୍ରକୁ 'ଘୋଡ଼' କୁହାଯାଏ । ଏହି ବସ୍ତ୍ରଦ୍ୱାରା ତିନିଠାକୁର ସଂପୂର୍ଣ୍ଣ ଘୋଡ଼ି

ହୋଇଯାଆନ୍ତି । ପ୍ରତ୍ୟେକ ବାରରେ ଭିନ୍ନ ଭିନ୍ନ ରଙ୍ଗର ଘୋଡ଼ ଲାଗି ହୁଏ । ଯଥାଃ ରବିବାର- ଲାଲ ରଙ୍ଗ, ସୋମବାର- କଳାଛିଟ ମିଶା ଶୁକ୍ଳରଙ୍ଗ, ମଙ୍ଗଳବାର- ବାରପଟିଆ (ପଞ୍ଚରଙ୍ଗ ମିଶା) ବୁଧବାର- ନୀଳରଙ୍ଗ, ଗୁରୁବାର- ବସନ୍ତ ରଙ୍ଗ, ଶୁକ୍ରବାର- ଶୁକ୍ଳରଙ୍ଗ, ଶନିବାର କଳା ରଙ୍ଗ ।

ଓଢ଼ଣ ଷଷ୍ଠୀଠାରୁ ମାଘ ଶୁକ୍ଳ ପଞ୍ଚମୀ (ବସନ୍ତ ପଞ୍ଚମୀ) ଯାଏ ଏହି ଘୋଡ଼ଲାଗି ବେଶ ହୁଏ । ଏହି ବେଶରେ ୮ ମୂର୍ତ୍ତି (ତ୍ରିଶାଖା-୨, କୁଣ୍ଡଳ-୪, ତଡ଼କୀ-୨) ସୁନା ଅଳଙ୍କାର ଲାଗି କରାଯାଏ । କିନ୍ତୁ ଏହି ବେଶରେ ଝୋବା କଣ୍ଠି ଲାଗେ ନାହିଁ । ଶୀତ ଋତୁ ଦ୍ୱିପ୍ରହର ସମୟରେ ଆମେ ଯେପରି କମ୍ ଶୀତବସ୍ତ୍ର ବ୍ୟବହାର କରୁ ଦିଅଁମାନେ ମଧ୍ୟ ସେପରି ଦ୍ୱି ପ୍ରହର ଧୂପ ସମୟରେ ଘୋଡ଼ଲାଗି ହୁଅନ୍ତି ନାହିଁ । ଏହି ଧୂପ ପୂଜାରେ ସିଂହାସନ ଉପରେ ବସି ପୂଜାପଣ୍ଡାମାନେ ପୂଜା କରନ୍ତି। ଅନ୍ୟ ଧୂପ ପୂଜା ବେଳେ, ଅର୍ଥାତ୍ ଘୋଡ଼ଲାଗି ସମୟର ପୂଜା ବେଳେ ସେମାନେ ସିଂହାସନ ତଳେ ବସି ପୂଜା କରନ୍ତି ।

ବସନ୍ତ ପଞ୍ଚମୀଠାରୁ ଫଗୁ ଦଶମୀ ଯାଏ ଦିଅଁମାନେ ଜାମା ବା ଠିଆଘୋଡ଼ ପରିଧାନ କରନ୍ତି । ଏହି ବେଶରେ ଶ୍ରୀଅଙ୍ଗ ସଂପୂର୍ଣ୍ଣ ଘୋଡ଼ାଇ ହୁଏ ନାହିଁ । ଜାମାଲାଗି ବେଶରେ ଦିଅଁମାନେ ୩୦ ମୂର୍ତ୍ତି ସୁନା ଅଳଙ୍କାର ପରିଧାନ କରନ୍ତି। ଘୋଡ଼ ବସ୍ତ୍ରମାନ ସାଧାରଣତଃ ମଖମଲ ଓ ସୂତା କପଡ଼ାରେ ତିଆରି ହୋଇଥାଏ ।

## ୧୮. ଚାଚେରୀ ବେଶ

ଫାଲଗୁନ ଶୁକ୍ଳ ଦଶମୀଠାରୁ ପୂର୍ଣ୍ଣିମା ଯାଏ ଏ ଆନନ୍ଦ, ଉଲ୍ଲାସ ଭରା ଦୋଳ ଉତ୍ସବ ଅବସରରେ ଦିଅଁମାନେ ନାଲିରଙ୍ଗର ପାଟବସ୍ତ୍ର ପିନ୍ଧନ୍ତି। ଏହା ଚାଚେରୀ ବେଶ । ଏହି ବେଶରେ ଚାଚେରୀ ଭୋଗ ଓ ସଂଧ୍ୟାଧୂପ ହୁଏ ।

## ୧୯. ପଦ୍ମ ବେଶ

ମାଘ ଅମାବାସ୍ୟାଠାରୁ ବସନ୍ତ ପଞ୍ଚମୀ ମଧ୍ୟରେ ଶନିବାର କିମ୍ବା ବୁଧବାରରେ ଏହି ବେଶ ହୁଏ । ବେଶର ସମସ୍ତ ଉପକରଣ ବଡ଼ଛତା ମଠ ଯୋଗାଏ । ଅର୍ଥାତ୍ ବଡ଼ଛତା ମଠ ତରଫରୁ ଏହି ବେଶ କରାଯାଏ । ରାତ୍ର ଚନ୍ଦନ ଲାଗି ପରେ ବଡ଼ସିଂହାରରେ ଏହି ବେଶ ହୁଏ ଓ ଏହି ବେଶରେ ହିଁ ପହୁଡ଼ ହୁଏ । ମଠ ତରଫରୁ ଖିରି ଅମାଲୁ ଭୋଗ ହୁଏ । ଏ ବେଶର ଅନ୍ୟ ନାମ ପଦ୍ମମୁଖ ବେଶ । ମୁଖ୍ୟତଃ ପଦ୍ମଫୁଲରେ ଏହି ବେଶ ହେବା କଥା । କିନ୍ତୁ ସୋଲ, ଜରି ଓ ପଦ୍ମଫୁଲରେ ଏହି ବେଶ କରାଯାଉଛି ।

## ୨୦. ଗଜଉଦ୍ଧାରଣ ବେଶ

ମାଘ ପୂର୍ଣ୍ଣିମାରେ ଏହି ବେଶ ହୁଏ । ମଧ୍ୟାହ୍ନ ଧୂପ ସରି ମୈଲମ ହେବା ପରେ ତିନିବାଡ଼ରେ ଗଜଉଦ୍ଧାରଣ ବେଶ ହୁଏ । କର୍ପୂର ଲାଗି ଓ ସଂଧ୍ୟା ଆଳତି ହୋଇ ଏହି ବେଶ ସକାଶେ ଆଉ ଏକ ଭୋଗ ମଣ୍ଡପ (ପଛ ଭୋଗ ମଣ୍ଡପ) ଭୋଗ ହୁଏ । ତା'ପରେ ସାହାଣମେଳା ବା ସର୍ବସାଧାରଣ

ଦର୍ଶନ ହୁଏ । ଏହି ବେଶରେ ମହାପ୍ରଭୁ ଶ୍ରୀଜଗନ୍ନାଥ ଶଙ୍ଖ, ଚକ୍ର, ଗଦା ଓ ପଦ୍ମ ଧାରଣ କରି ଗରୁଡ଼ ଉପରେ ବସନ୍ତି ଏବଂ ତାଙ୍କ କୋଳରେ ମହାଲକ୍ଷ୍ମୀ ବିରାଜମାନ କରନ୍ତି । ଚୂଳ, କିରୀଟ ଓ ଅଳଙ୍କାରମାନ ସୋଲ ଜରିରେ ନିର୍ମିତ ହୋଇ ଖଞ୍ଜାଯାଏ । ବଡ଼ଠାକୁର ବଳଭଦ୍ର ମଧ୍ୟ ଶଙ୍ଖ, ଚକ୍ର, ହଳ ଓ ମୂଷଳ ଧାରଣ କରନ୍ତି । ଦେବୀ ସୁଭଦ୍ରା ଛନ୍ଦାପାଦରେ ପଦ୍ମକଳିକା ଧାରଣ କରନ୍ତି । ସିଂହାସନ ତଳେ ପୋଖରିଆରେ ହାତୀ ଓ କୁମ୍ଭୀର ସଜ୍ଜା ହୋଇଥାଏ । କୁମ୍ଭୀର ଆକ୍ରମଣରୁ ରକ୍ଷାପାଇଁ ହାତୀଟି ଶୁଣ୍ଢରେ ପଦ୍ମ ଧରି ମହାପ୍ରଭୁଙ୍କୁ ପ୍ରାର୍ଥନା କରୁଥିବା ଭଙ୍ଗୀରେ ଥାଏ । ଏହି ରମଣୀୟ ବେଶ ଦର୍ଶନ ପାଇଁ ପ୍ରବଳ ଭିଡ଼ ହୁଏ । ବେଶରେ ଖିରି ଓ ଅମାଲୁ ଭୋଗ ହୁଏ । ଏହି ବେଶ ଏକ ଯଜମାନି ବେଶ । ଏହା ପ୍ରଥମେ ରାଣୀ ସାହେବା କରାଉଥିଲେ । ତା'ପରେ ଜନୈକ ବାସୁଦେବ ବାବାଜୀ କରାଇଲେ । ତା'ପରେ ରମେଶ ଚନ୍ଦ୍ର ମିତ୍ର କରାଇଲେ । କେତେବର୍ଷ ହେଲା ଶିଳ୍ପପତି ବଂଶୀଧର ପଣ୍ଡାଙ୍କ ଆର୍ଥିକ ସାହାଯ୍ୟରେ ଏହି ବେଶ ପ୍ରଶାସନ ତରଫରୁ ହେଉଛି ।

## ୨୧. ରଘୁନାଥ ବେଶ

ଏହି ବେଶ ପ୍ରତିବର୍ଷ ହୁଏ ନାହିଁ । ୧୯୦୫ ଖ୍ରୀଷ୍ଟାବ୍ଦ ପରଠାରୁ ହୋଇଥିବାର ପ୍ରମାଣ ମିଳୁ ନାହିଁ । ଏପ୍ରିଲ୍ ୨୭ ତାରିଖ ୧୯୦୫ରେ ଏହି ବେଶ ହୋଇଥିବାର ସମ୍ବାଦ 'ଉତ୍କଳଦୀପିକା'ରେ ପ୍ରକାଶିତ ହୋଇଥିଲା । ଶ୍ରୀଜଗନ୍ନାଥ ଶ୍ରୀରାମଚନ୍ଦ୍ର ବେଶ ଧାରଣ କରିଥିଲେ । ବାମପାର୍ଶ୍ୱରେ ଭରତ ଓ ଶତ୍ରୁଘ୍ନ ଚାମର ଓ ଛତ୍ର ଧରି ଠିଆ ହୋଇଥିଲେ । ଲକ୍ଷ୍ମଣଙ୍କ ଦକ୍ଷିଣରେ ବ୍ରହ୍ମା ଓ ବଶିଷ୍ଠ ଆଦି ଠିଆ ହୋଇଥିଲେ । ରାମଚନ୍ଦ୍ରଙ୍କ ବାମ ଜାନୁରେ ଲକ୍ଷ୍ମୀ ପ୍ରତିମା (ସୀତା) ବସିଥିଲେ । ରତ୍ନ ସିଂହାସନକୁ ଲାଗି କଳାହାଟ ଦ୍ୱାର ପର୍ଯ୍ୟନ୍ତ ସରୁପଟା ପଡ଼ିଥିଲା । ତା' ଉପରେ ଅଙ୍ଗଦ, ଜାମ୍ବବାନ, ବିଭୀଷଣ, ନଳ, ନୀଳ ପ୍ରଭୃତି ଥିଲେ । ୧୯୦୫ ମସିହାରେ ରାଜା ମୁକୁନ୍ଦ ଦେବ-୩ୟ ରାଜା-ସୁପରିନ୍‌ଟେଣ୍ଡେଣ୍ଟ୍ ଥିଲେ । ଏହି ବେଶରେ ବିବିଧ ରତ୍ନ ଅଳଙ୍କାର ଲାଗି ହୁଏ । ଏହା ସବୁ ବେଶଠାରୁ ବୃହତ୍ ଓ ଆକର୍ଷଣୀୟ ବେଶ ।

## ୨୨. ଚନ୍ଦନ ବେଶ

ଚନ୍ଦନ ଯାତ୍ରା ୪୨ ଦିନ ଯାକ ଭୋଗମଣ୍ଡପ ଧୂପ ପରେ ଆଲଟଲାଗି ଏବଂ ପରେ ଚନ୍ଦନଲାଗି ହୁଏ । ତା'ପରେ ଠାକୁରମାନଙ୍କୁ ଫୁଲରେ ବେଶ କରାଯାଏ । ଫୁଲର ଚଉସରା , ଅଳକା, ଚୂଳ, ଗଭା, ଗୁଣା, ଝୁମ୍ପା, ଅଧର ପ୍ରଭୃତି ଲାଗି କରାଯାଏ । ଏହାକୁ ଚନ୍ଦନ ବେଶ କହନ୍ତି ।

## ୨୩. ମକର ଚୌରାସୀ

ମକର ସଂକ୍ରାନ୍ତି ଦିନ ଚୂଳ (ତୁଳସୀ ମିଶା), ଛଅମୂର୍ତ୍ତି ଅଳଙ୍କାର ଲାଗି ହୋଇ ଏହି ବେଶ ହୁଏ । ଏହି ବେଶ ଥାଇ ମକର ବେଢ଼ା ହୁଏ ।

ଏହାଛଡ଼ା ରଥଯାତ୍ରା ସମୟରେ ବିଗ୍ରହମାନଙ୍କୁ ପହଣ୍ଡିରେ ନିଆଯିବା ବେଳେ ଠାକୁରମାନେ ଯେଉଁ ଦୃଢ଼ ପୋଷାକ ପରିଧାନ କରନ୍ତି ତାହାକୁ ସେନାପଟା ଲାଗି ଏବଂ ପହଣ୍ଡିବେଳେ ଯେଉଁ ଟାହିଆ ପିନ୍ଧନ୍ତି ତାହାକୁ ଟାହିଆଲାଗି ବେଶ ବୋଲି ଅନେକେ କହିଥାଆନ୍ତି । ତେବେ ଏସବୁ ସ୍ୱତନ୍ତ୍ର ନୀତି । ସେହିପରି ଅଣସର ପରେ ନବଯୌବନ ଦର୍ଶନ ଦିନ ଠାକୁରମାନେ ସ୍ୱତନ୍ତ୍ର ରୂପରେ ଦର୍ଶନ ଦିଅନ୍ତି । ମକର ସଂକ୍ରାନ୍ତି ପୂର୍ବଦିନ ବଡ଼ସିଂହାର ବେଶରେ ଶ୍ରୀଜଗନ୍ନାଥ ଓ ବଳଭଦ୍ର ସୋଲ ନିର୍ମିତ ମକର କୁଣ୍ଡଳ ଧାରଣ କରନ୍ତି । ଶ୍ରୀଜଗନ୍ନାଥ ଶଙ୍ଖ ଓ ଚକ୍ର ଏବଂ ଶ୍ରୀବଳଭଦ୍ର ହଳ ଓ ମୂଷଳ ଧାରଣ କରନ୍ତି । ଏହି ବେଶକୁ ଅନେକେ ନବାଙ୍କ ବେଶ କହିଥାନ୍ତି । ଝୁଲଣ ସମୟରେ ଓ ସଂଧ୍ୟାଧୂପରେ ଠାକୁରମାନଙ୍କର ଯେଉଁ ନୀତି ସମ୍ବନ୍ଧୀୟ ବେଶ ହୋଇଥାଏ ତାହାକୁ ମଧ୍ୟ ଅନେକେ ସ୍ୱତନ୍ତ୍ର ବେଶ ବୋଲି କହନ୍ତି ।





ହାତୀବେଶ ପ୍ରସ୍ତୁତି

# ବିଭିନ୍ନ ମଠ ଓ ଶ୍ରୀମନ୍ଦିର

**ପୁ**ରୁଷୋତ୍ତମ କ୍ଷେତ୍ର ବା ପୁରୀରେ ଏକଦା ୭୫୨ଟି ମଠ ଥିଲା ବୋଲି ପ୍ରବାଦ ଅଛି । କିନ୍ତୁ ବର୍ତ୍ତମାନ ଏ ସବୁ ମଠର ଅସ୍ତିତ୍ୱ ନାହିଁ । ଯେଉଁ କେତୋଟି ରହିଛି, ସେମାନଙ୍କ ଭିତରୁ ଅଧିକାଂଶ ଜରାଜୀର୍ଣ୍ଣ ବା ଭଗ୍ନ । ଏଠାରେ ଏତେ ସଂଖ୍ୟକ ମଠ ସ୍ଥାପନର ମୂଳ ଉଦ୍ଦେଶ୍ୟ ଥିଲା- ଜଗନ୍ନାଥ ଧର୍ମ ଓ ଦର୍ଶନର ପ୍ରଚାର ଓ ପ୍ରସାର । ଜଗନ୍ନାଥ ଦର୍ଶନପାଇଁ ଆସୁଥିବା ସାଧୁ ସନ୍ନ୍ୟାସୀ, ପଣ୍ଡିତ ଓ ତୀର୍ଥ ଯାତ୍ରୀମାନଙ୍କୁ ଆଶ୍ରୟ ପ୍ରଦାନ ଓ ଗରିବ ତଥା ମେଧାବୀ ଛାତ୍ରମାନଙ୍କୁ ଆର୍ଥିକ ସାହାଯ୍ୟ ସାଙ୍ଗକୁ ସେମାନଙ୍କ ରହଣି ବ୍ୟବସ୍ଥା ଥିଲା ଏହାର ଅନ୍ୟତମ ଉଦ୍ଦେଶ୍ୟ । ''ମଠର ଅର୍ଥ ଛାତ୍ରାବାସ । ଶିଷ୍ୟମାନେ ଯେଉଁଠି ରହି ଧର୍ମଶିକ୍ଷା ଓ ଧର୍ମଶାସ୍ତ୍ରାଲୋଚନା କରନ୍ତି ତାକୁ ମଠ କୁହାଯାଏ'' ବୋଲି ପ୍ରାବନ୍ଧିକ ଜଗବନ୍ଧୁ ସିଂହ ଲେଖିଛନ୍ତି । ପୁରୀ ଜିଲ୍ଲା ଗେଜେଟିୟରରେ ପୁରୀର ମଠମାନଙ୍କ ସମ୍ପର୍କରେ ଉଲ୍ଲେଖ ଅଛି- "Maths are monastic houses originally founded with the object of giving religious instructions to chelas or disciples and generally encouraging a religious life x x x" (Puri District Gazetteer, 1929 )

ଓଡ଼ିଶାର ଧର୍ମ ଓ ସଂସ୍କୃତିର ଇତିହାସରେ ଏହି ମଠମାନଙ୍କର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ହିନ୍ଦୁଧର୍ମର ବିଭିନ୍ନ ସଂପ୍ରଦାୟ ଓ ପନ୍ଥୀମାନଙ୍କର ମଠ ଏହି ଶ୍ରୀକ୍ଷେତ୍ରରେ ପ୍ରତିଷ୍ଠିତ । ସେଗୁଡ଼ିକ ହେଲା- ଅଦ୍ୱୈତ ପନ୍ଥୀ, ରାମାନନ୍ଦୀ ପନ୍ଥୀ, ରାମାନୁଜ ପନ୍ଥୀ, ଅଙ୍ଗିରା ପନ୍ଥୀ, ଅତିବଡି ପନ୍ଥୀ, ଗୌଡ଼ୀୟ ପନ୍ଥୀ, ଗୌଡ଼ ମାଧବ ପନ୍ଥୀ, ପଞ୍ଚରାମାନନ୍ଦୀ ପନ୍ଥୀ, ନାନକ ପନ୍ଥୀ, ନିମ୍ବାର୍କ ପନ୍ଥୀ, କବୀର ପନ୍ଥୀ, ଅଘୋର ପନ୍ଥୀ, ମାଧବାଚାର୍ଯ୍ୟ ପନ୍ଥୀ, ଉତ୍କଳ-ବୈଷ୍ଣବ ପନ୍ଥୀ, ଅନନ୍ତ ପନ୍ଥୀ, ପୁଷ୍ଟିମାର୍ଗୀ ପନ୍ଥୀ, ଦଶନାମୀ ପନ୍ଥୀ ଇତ୍ୟାଦି । କେତୋଟି ବିଶିଷ୍ଟ ମଠ ଓ ସେଗୁଡ଼ିକର ପ୍ରତିଷ୍ଠା ଏବଂ ପନ୍ଥା ସହିତ ସଂପୃକ୍ତ ବିଶିଷ୍ଟ ମହାପୁରୁଷଙ୍କ ନାମ ନିମ୍ନରେ ପ୍ରଦତ୍ତ ହେଲା-

ଗୋବର୍ଦ୍ଧନ ମଠ- ଶଙ୍କରଚାର୍ଯ୍ୟ, ଏମାର ମଠ- ରାମାନୁଜ, ବଳଭଦ୍ର ଛତା ମଠ- ମାଧବାଚାର୍ଯ୍ୟ, ରାଧାକାନ୍ତ ମଠ- ଚୈତନ୍ୟ, ରାଧାବଲ୍ଲଭ ମଠ- ନିମ୍ବାର୍କ, ମହାପ୍ରଭୁଙ୍କ ବୈଠକ- ବଲ୍ଲଭାଚାର୍ଯ୍ୟ, କବୀର ଚଉରା ମଠ- କବୀର, ନନ୍ଦିନୀ ମଠ- ମୀରାବାଈ, ମଙ୍ଗୁ ମଠ ଓ ବାଉଲ ମଠ- ନାନକ, ସିଦ୍ଧ ହନୁମାନ ମଠ- ତୁଳସୀ ଦାସ, ଦଶାବତାର ମଠ- ଜୟଦେବ, ସାତ ଲହଡ଼ି ମଠ ଓ ଓଡ଼ିଆ ମଠ- ଅତିବଡ଼ି ଜଗନ୍ନାଥ ଦାସ, ହରି ଦାସ ମଠ- ହରି ଦାସ, ରାମ ଦାସ ମଠ- ରାମ ଦାସ, ଜଗନ୍ନାଥବଲ୍ଲଭ ମଠ- ରାମାନୁଜ ପଟ୍ଟନାୟକ, ଶ୍ରୀନୀଳାଚଳ ଆଶ୍ରମ- ସୀତାରାମ ଦାସ ଓଁକାରନାଥ, ଘୁମୁସର ମଠ- ଉପେନ୍ଦ୍ରଭଞ୍ଜ ।

ନିମ୍ନରେ ବର୍ଣ୍ଣିତ କେତୋଟି ମଠ ସହିତ ଶ୍ରୀମନ୍ଦିରର ଦୈନନ୍ଦିନ ନୀତି ଓ ଯାନିଯାତ୍ରା ନୀତିର ସମ୍ପର୍କ ରହିଛି । ସେଗୁଡ଼ିକୁ ସଂକ୍ଷେପରେ ଉଲ୍ଲେଖ କରାଯାଉଛି ।

## ଜଗନ୍ନାଥବଲ୍ଲଭ ମଠ

ଏହି ମଠ ଶ୍ରୀଜଗନ୍ନାଥ ମନ୍ଦିରର ବଗିଚା ବୋଲି ବ୍ରିଟିଶ୍ ଅମଳର ନଥିପତ୍ରରେ ଉଲ୍ଲେଖ ଅଛି । ଶ୍ରୀଜଗନ୍ନାଥଙ୍କର ଏହା ପ୍ରମୋଦ ଉଦ୍ୟାନ । କିନ୍ତୁ ଏହି ମଠ ଶ୍ରୀମନ୍ଦିର ପ୍ରଶାସନର ଅଧୀନସ୍ଥ ନୁହେଁ, ଦେବୋତ୍ତର କମିଶନରଙ୍କ ନିୟନ୍ତ୍ରଣାଧୀନ । ଏହି ମଠର ଏକ ଟ୍ରଷ୍ଟବୋର୍ଡ ରହିଛି ।

ଶ୍ରୀଜଗନ୍ନାଥ ମନ୍ଦିରରେ ବିଜେ ପ୍ରତିମାମାନଙ୍କର ଏହି ମଠରେ କେତେକ ବିଶିଷ୍ଟ ତିଥି ଓ ଯାନିଯାତ୍ରାମାନଙ୍କରେ ନୀତି ହୁଏ; ଯଥା-ବସନ୍ତପଞ୍ଚମୀ ଦିନ ମଧ୍ୟାହ୍ନ ଧୂପ ସରି ଚାଚେରୀ ବେଶ ହେବା ପରେ ଓ ଫାଲ୍‌ଗୁନ ଶୁକ୍ଳପକ୍ଷ ପ୍ରତିପଦ, ଚତୁର୍ଥୀ, ପଞ୍ଚମୀ ଓ ଦ୍ୱାଦଶୀ ତିଥିରେ ମଙ୍ଗଳ ଆରତି ପରେ ଶ୍ରୀମନ୍ଦିରରୁ ଠାକୁର ବେଣ୍ଟ ବା ଶିକାର ପାଇଁ ଏହି ମଠକୁ ବିଜେ କରନ୍ତି । ଦୋଳଗୋବିନ୍ଦ ଠାକୁର ମଠରେ ବିଜେ ହେବା ପରେ ମଠ ତରଫରୁ ଶୀତଳ ଭୋଗ ହୁଏ । ମଠରେ ଥିବା ବେଣ୍ଟ ପୋଖରୀରେ ଶିକାର ନୀତି ହୁଏ । ଶ୍ରୀମନ୍ଦିରରେ ଦୈନିକ ଅବକାଶ ସମୟରେ ମଶାଲ, ବଲ୍ଲଭ ସମୟରେ ବଲ୍ଲଭ ଓ ବଡ଼ସିଂହାର ବେଶ ପାଇଁ ତିଳକଝୁମ୍ପା ଏହି ମଠ ଯୋଗାଏ । 'ବଣଭୋଜି ବେଶ' ପାଇଁ ପିଙ୍ଗଳ, 'କାଳୀୟଦଳନ' ଓ 'ପ୍ରଳମ୍ବାସୁରବଧ ବେଶରେ ଶ୍ରୀହସ୍ତ କୋରା, ଦୟଣାଚୋରି ନୀତିରେ ଦୟଣା, ବେଣ୍ଟ ନୀତିରେ ପଇଡ଼, ଚନ୍ଦନଯାତ୍ରା ଓ ଚାପରେ କର୍ପୂର ଓ ମଶାଲ ଯୋଗାଇବା ଏହି ମଠର ଦାୟିତ୍ୱ । ଶ୍ରୀମନ୍ଦିରରୁ ମଠର ମହାବୀରଙ୍କପାଇଁ ପ୍ରତିଦିନ ଶ୍ରୀଜୀଉଙ୍କର 'କରପଲ୍ଲବ' ପଠାଯାଏ । ମଠର ମହନ୍ତ ଶ୍ରୀମନ୍ଦିରରେ ଚାମର ସେବା କରିପାରିବେ । ଏବେ ମହନ୍ତ କେହି ନାହାନ୍ତି । ପୂର୍ବେ ମହନ୍ତଙ୍କୁ ଦୟଣା ଚୋରି ନୀତିରେ ପାଗ, ଶିରୋପା ଓ ରଥ ଦଉଡ଼ି ପ୍ରାପ୍ୟ ଶ୍ରୀମନ୍ଦିରରୁ ମିଳୁଥିଲା । ବର୍ତ୍ତମାନ ମଠର ଟ୍ରଷ୍ଟିଙ୍କୁ ଦୟଣାଚୋରି ନୀତି ପାଇଁ ଖଣ୍ଡୁଆ ପ୍ରଦାନ କରାଯାଉଛି । ପହିଲିଭୋଗ (ଧନୁ ମାସ) ସମୟରେ ଓ କେତେକ ନିର୍ଦ୍ଦିଷ୍ଟ ପର୍ବ ଦିନମାନଙ୍କରେ ଶ୍ରୀମନ୍ଦିରର କୋଠଭୋଗରୁ ଖେଇ ଏହି ମଠକୁ ପ୍ରଦାନ କରାଯାଏ ।

## ରାଘବ ଦାସ ମଠ

ଏହି ମଠ ଦେବୋତ୍ତର କମିଶନରଙ୍କ ନିୟନ୍ତ୍ରଣାଧୀନ । ମଠର ମହନ୍ତ ଉତ୍ତରପ୍ରଦେଶ ସରକାରଙ୍କର ଜଣେ ଆଇ.ଏ.ଏସ୍. ଅଫିସର ଥିଲେ । ମଠର ମହନ୍ତ ପ୍ରତିବର୍ଷ ସ୍ନାନ ପୂର୍ଣ୍ଣିମୀଦିନ ଶାଢ଼ି ବନ୍ଧାଇବା ବିଧି ଅଛି । ସେ ଚାମର ସେବା କରିପାରିବେ । କିନ୍ତୁ ମହନ୍ତ ଏ କାର୍ଯ୍ୟ ବର୍ତ୍ତମାନ କରୁନାହାନ୍ତି । ମହନ୍ତଙ୍କର ଚାମର ଓ ଆଲଟ ସେବା ଅଧିକାର ଅଛି ।

ଏହି ମଠ ଦୈନିକ ଶ୍ରୀମନ୍ଦିରକୁ ବଲ୍ଲଭ ଯୋଗାନ୍ତି । ସ୍ନାନପୂର୍ଣ୍ଣମୀ ଦିନ ଶ୍ରୀଜଗନ୍ନାଥଙ୍କ ବାଡ଼ ଓ ଦେବୀ ସୁଭଦ୍ରାଙ୍କ ବାଡ଼ରେ ହାତୀ ବେଶର ଉପକରଣ ବା ବେଶ ଦ୍ରବ୍ୟ ଯୋଗାନ୍ତି । ଶ୍ରୀମନ୍ଦିରର ମଣି ବିମାନର ମଣ୍ଡଣି ଓ ମରାମତିର ଦାୟିତ୍ୱ ଏହି ମଠର । ଚନ୍ଦନଯାତ୍ରାରେ ଚନ୍ଦନ ଚକଡ଼ାରେ ସର୍ବାଙ୍ଗ ନୀତି କରାନ୍ତି । ରଥଯାତ୍ରାବେଳେ ଭିତର ଚାର ବନ୍ଧା ହେବା ପାଇଁ ୧୪ ଖଣ୍ଡ ଚାରପଟା ଯୋଗାଇବା ଏମାନଙ୍କର ଦାୟିତ୍ୱ । ସ୍ନାନଯାତ୍ରା, ରଥଯାତ୍ରା, ବାହୁଡ଼ାଯାତ୍ରା ଓ ନୀଳାଦ୍ରି ବିଜେ ଦିନ ଠାକୁରଙ୍କ ପହଣ୍ଡି ବିଜେ ପାଇଁ ଟାହିଆ ଯୋଗାନ୍ତି । ଖଳିଲାଗି ଏକାଦଶୀ ଦିନ ସର୍ବାଙ୍ଗ ନୀତିପାଇଁ ସାଢ଼େ ସାତ ସେର ଚନ୍ଦନକାଠ ଯୋଗାନ୍ତି । ପହଣ୍ଡି ବିଜେ ପାଇଁ ତିନୋଟି ତୂଳୀ ଦିଅନ୍ତି । ବାହୁଡ଼ାଯାତ୍ରା ପରେ ରଥ ଉପରେ ଅଧରପଣା ଭୋଗ କରାନ୍ତି । ମକରସଂକ୍ରାନ୍ତି ପୂର୍ବ ଦିନ ନବାଙ୍କ ବେଢ଼ା ପାଇଁ ଏହି ମଠ ଫୁଲମାଳ (ଜଗନ୍ନାଥଙ୍କ ପାଇଁ ୬୪ ହାତ, ବଳଭଦ୍ରଙ୍କ ପାଇଁ ୫୬ ହାତ ଓ ସୁଭଦ୍ରାଙ୍କ ପାଇଁ ୪୮ ହାତର ଗେଣ୍ଡୁଫୁଲ) ଯୋଗାନ୍ତି । ଜ୍ୟେଷ୍ଠ ଏକାଦଶୀ, ଅକ୍ଷୟତୃତୀୟା ଓ ରୁକ୍ମିଣୀ ହରଣ ନୀତିମାନଙ୍କରେ ଶୀତଳ ଭୋଗ ଯୋଗାନ୍ତି । କାର୍ତ୍ତିକ ମାସରେ 'ବାଳଧୂପ' ଯୋଗାନ୍ତି । ଶ୍ରୀମନ୍ଦିରରୁ ବିଜେ ପ୍ରତିମାମାନଙ୍କର ବିଜେ ଦିନମାନଙ୍କରେ ଯଥା- କାଳୀୟଦଳନ, ରାଧାଷ୍ଟମୀ, ରାମାଭିଷେକ, ଗୁଣ୍ଡିଚା ଘରେ ରଥଯାତ୍ରା ବେଳେ ପନ୍ତି ଭୋଗ କରାନ୍ତି । ଅଣସର ସମୟରେ ଅଣସର ପିଣ୍ଡିରେ ଚକଟା ଭୋଗ କରାନ୍ତି । ଶ୍ରୀମନ୍ଦିର ରୋଷଘରେ ଏହି ମଠର ଚୁଲା ଅଛି । ଜଗନ୍ନାଥଙ୍କ ବିଜେ ପ୍ରତିମା 'ମଦନମୋହନ' ପ୍ରାୟ ଏକ ଶହ ବର୍ଷ ପୂର୍ବେ ଏହି ମଠ ତରଫରୁ ପ୍ରଦାନ କରାଯାଇଥିଲା । ଶ୍ରୀମନ୍ଦିର କୋଠଭୋଗରୁ ଦୈନିକ ଖେଇ ଏହି ମଠକୁ ପଠାଯାଏ । ଏହା ବ୍ୟତୀତ କେତେକ ଯାନିଯାତ୍ରା ଦିନରେ ସ୍ୱତନ୍ତ୍ର ଖେଇ ଖଞ୍ଜା ଅଛି ।

## ଓଡ଼ିଆ ମଠ

ଏହି ମଠ ଦେବୋତ୍ତର କମିଶନରଙ୍କ ନିୟନ୍ତ୍ରଣରେ ପରିଚାଳିତ । ମଠର ମହନ୍ତ ଶାଢ଼ି ବନ୍ଧାଇ ଉପଚାର ଚାମର ସେବା କରିପାରନ୍ତି । ମଠ ତରଫରୁ ପ୍ରତିଦିନ ବଲ୍ଲଭ ଭୋଗ ପାଇଁ ଭୋଗ ଦ୍ରବ୍ୟ ଯୋଗାଯାଏ । ରତ୍ନସିଂହାସନରେ ଉପରେ ବନ୍ଧାହେବା ପାଇଁ ପ୍ରତିବର୍ଷ ତ୍ରିମୁଣ୍ଡି ଚାନ୍ଦୁଆ ଓ ଚକାଅଫିସର ନୀତି ପାଇଁ ପାଟକନା ଯୋଗାଇ କନକମୁଣ୍ଡଇ ତିଆରି କରାନ୍ତି । ଫୁଲୁରୀଲାଗି ନୀତି ପାଇଁ ପାଞ୍ଚସେର ରାଶିତେଲ ଓ ଦେବ ଦୀପାବଳୀ ନୀତି ପାଇଁ ତେଲ, ଘିଅ, ଘୁଡ଼ିସରା ଇତ୍ୟାଦି ଯୋଗାନ୍ତି । କାର୍ତ୍ତିକ ମାସରେ ଜୟ ବିଜୟ ଦ୍ୱାରରେ ଅଖଣ୍ଡ ଦୀପ ଜଳାନ୍ତି । ଗୁଣ୍ଡିଚା ମନ୍ଦିରରେ ରଥଯାତ୍ରା ସମୟରେ ସର୍ବାଙ୍ଗ ଓ ଭୋଗ ଲଗାନ୍ତି । ଆଶ୍ୱିନ ଶୋଳପୂଜା ସମୟରେ ବିମଳା ମନ୍ଦିରରେ ଭୋଗ ପାଇଁ ଚାଉଳ, ପରିବା ଯୋଗାନ୍ତି ଓ ପଶୁବଳି ପାଇଁ ମଠ ତରଫରୁ ଏକ ମେଣ୍ଢା ଷ୍ଟେଟ୍ (ସରକାର)ଙ୍କ ଜରିଆରେ ଯୋଗାଯାଏ । ନୀଳାଦ୍ରିବିଜେ ଦିନ ମଠ ତରଫରୁ

ରତ୍ନସିଂହାସନ ମାଜଣା କରାଯାଏ ଓ ନୀଳଚକ୍ରରେ ଧ୍ୱଜା ବନ୍ଧାଯାଏ । ରତ୍ନସିଂହାସନ ମରାମତି ଏହି ମଠର ସେବା ଓ ଦାୟିତ୍ୱ । ବାହୁଡ଼ାଯାତ୍ରା ପରେ ରଥ ଉପରେ ଅଧରପଣା କରାନ୍ତି । ଦୈନିକ ଦ୍ୱାରଫିଟା ଓ ମଙ୍ଗଳ ଆରତିବେଳେ ମଠ ତରଫରୁ ମଶାଲ ଯୋଗାଇବା ବିଧି ଅଛି । ଅନବସର ସମୟରେ ଚକଟା ଭୋଗ ଓ ଅନବସର ପଞ୍ଚମୀ ଦିନ ରାଶିତେଲ ଯୋଗାନ୍ତି । ଚନ୍ଦନଯାତ୍ରା (୪୨ଦିନ)ରେ ପଣାଭୋଗ କରାନ୍ତି । ଶ୍ରୀଗୁଣ୍ଡିଚା ଯାତ୍ରାରେ 'ଆହୁଡ଼ା ବାହୁଡ଼ା' ପନ୍ତି ଓ ଖେଚେଡ଼ି ଭୋଗ ଲଗାନ୍ତି । ଶ୍ରୀମନ୍ଦିର ରୋଷଘରେ ଏହି ମଠର ସ୍ୱତନ୍ତ୍ର ଚୁଲା ଅଛି । ସରଘର ମଧ୍ୟ ଅଛି । ଦୈନିକ ଓ ପର୍ବଯାତ୍ରା ଖେଇ ଶ୍ରୀମନ୍ଦିରରୁ ଏହି ମଠ ପାଆନ୍ତି । ରାଧାଷ୍ଟମୀ ଦିନ ବାରଲାଗି ଖଣ୍ଡୁଆ ପାଆନ୍ତି ।

## ଶ୍ରୀରାମ ଦାସ (ଦକ୍ଷିଣପାର୍ଶ୍ୱ) ମଠ

ଶାଢ଼ି ବନ୍ଧାଇଲେ ମଠର ମହନ୍ତ ଶ୍ରୀମନ୍ଦିରରେ ଚାମର ଓ ଆଲଟ ସେବା କରିପାରିବେ । ଚନ୍ଦନଯାତ୍ରା ସମୟରେ ସର୍ବାଙ୍ଗ କରିବା ବିଧି ଥିଲେ ବି ଏବେ ଏହା କରୁନାହାନ୍ତି । ଠାକୁରମାନଙ୍କ ପାଇଁ ଘୋଡ (ଏକ ପ୍ରକାର ଶୀତବସ୍ତ୍ର) ଯୋଗାଇବା ଏହି ମଠର ସେବା ଥିଲେ ମଧ୍ୟ ଏବେ କରୁନାହାନ୍ତି । ପୂର୍ବେ ସକାଳ ଧୂପରେ ପ୍ରତ୍ୟହ ମହାଦେଈ ଭୋଗ ଏହି ମଠ ତରଫରୁ ହେଉଥିଲା, ଏବେ ହେଉ ନାହିଁ । ବଡ଼ସିଂହାର ବେଶ ପାଇଁ ଫୁଲରେ ତିଆରି କରପଲ୍ଲବ, ତଡ଼ପ କୁଣ୍ଡଳ ଯୋଗାନ୍ତି । ଦୈନିକ ବଲ୍ଲଭ ଯୋଗାନ୍ତି ଓ କାର୍ତ୍ତିକ ମାସରେ ବାଳଭୋଗ କରାନ୍ତି । ଚନ୍ଦନ ଯାତ୍ରାରେ ପଣାଭୋଗ କରାନ୍ତି । ଦିଅଁ ବିଜେ ସମୟରେ ପନ୍ତି ଭୋଗ କରାନ୍ତି । 'ଅମୃତମଣୋହି ଭୋଗ' କରିବା ପାଇଁ ଏମାନଙ୍କର ଶ୍ରୀମନ୍ଦିରରେ ସରଘର ଓ ଚୁଲା ଅଛି । ପୂର୍ବେ ରଥକାଠ ଆଣିବା ପାଇଁ ଏହି ମଠ ଶଗଡ଼ ଯୋଗାଉଥିଲେ । ଶ୍ରୀଜଗନ୍ନାଥଙ୍କ ଗୋପାଳବଲ୍ଲଭ ଭୋଗରୁ ଏକଓଳି ବଲ୍ଲଭ ଖଇ ଏହି ମଠକୁ ପ୍ରତ୍ୟହ ଖଞ୍ଜା ଅଛି ।

## ଏମାର ମଠ

ଦେବୋତ୍ତର କମିଶନରଙ୍କ ନିୟନ୍ତ୍ରଣରେ ପରିଚାଳିତ । ମହନ୍ତ ଶାଢ଼ି ବନ୍ଧାଇବା ପରେ ଶ୍ରୀମନ୍ଦିରରେ ଚାମର ଓ ଆଲଟ ସେବା କରିପାରିବେ । ଶ୍ରୀମନ୍ଦିରକୁ ଏହି ମଠ ତରଫରୁ ଦୈନିକ ବଲ୍ଲଭ ଯୋଗାଯାଏ । ବଡ଼ସିଂହାର ବେଶ ପାଇଁ ଫୁଲର ଚନ୍ଦ୍ରିକା ଓ ଚଉସରା ମାଳ ଯୋଗାଯାଏ । ମଶାଲ ଜଳାଇବା ବିଧି ଅଛି । ବର୍ତ୍ତମାନ ଅବକାଶ ନୀତିବେଳେ ମଶାଲ ଜାଳନ୍ତି । ଅନବସର ସମୟରେ 'ଚକଟା ଭୋଗ' ଓ କାର୍ତ୍ତିକ ମାସରେ 'ବାଳଭୋଗ' କରାନ୍ତି । ସ୍ନାନପୂର୍ଣ୍ଣିମୀ ଓ ରଥଯାତ୍ରାବେଳେ ଫୁଲ ଓ ଚନ୍ଦନ ଯୋଗାଇବା ଏହି ମଠର ଦାୟିତ୍ୱ । ଚନ୍ଦନଯାତ୍ରା ବେଳେ ପଣାଭୋଗ କରନ୍ତି । 'ନବାଙ୍କ' ନୀତିରେ ମାଳ ଓ ଚୂଳ ଯୋଗାନ୍ତି । ଦିଅଁ ବିଜେ ସମୟରେ ପନ୍ତିଭୋଗ କରାନ୍ତି । ବର୍ତ୍ତମାନ ଅନେକ ସେବା ମଠ ତରଫରୁ କରାଯାଉନାହିଁ । ଶ୍ରୀମନ୍ଦିରର କୋଠ ଭୋଗରୁ ପ୍ରତ୍ୟହ ଭୋଗ ଏହି ମଠ ପାଇଁ ଖଞ୍ଜା ଅଛି ।

## ଗୋପାଳ ତୀର୍ଥ ମଠ

ଦେବୋତ୍ତର ବିଭାଗ ଦ୍ୱାରା ନିୟନ୍ତ୍ରିତ । ଏହି ମଠ ମହନ୍ତଙ୍କର 'ମୁକ୍ତିମଣ୍ଡପ'ରେ ବସିବା ଅଧିକାର ଅଛି । ସ୍ନାନ ପୂର୍ଣ୍ଣମୀ ଦିନ ସ୍ନାନ ବେଦୀରେ ଶ୍ରୀବଳଭଦ୍ରଙ୍କ ବାଉର ହାତୀ ବେଶ ସାମଗ୍ରୀ ଯୋଗାନ୍ତି । ସ୍ନାନପୂର୍ଣ୍ଣମୀ ଓ ମକରସଂକ୍ରାନ୍ତି ଦିନ ମକରଚୂଳ ଏହି ମଠ ଯୋଗାନ୍ତି । ସ୍ନାନପାଦୁକ ଶ୍ରୀମନ୍ଦିରରୁ ଘଣ୍ଟ ଓ କାହାଳୀ ସହିତ ଏହି ମଠକୁ ପଠାଯାଏ । ଦିଅଁ ବାହାର ବିଜେରେ ମଠ ତରଫରୁ ପନ୍ତିଭୋଗ ହୁଏ । ଏହି ମଠର ପରିଚାଳନା ଦାୟିତ୍ୱ ଡିସେମ୍ବର ୨୦୧୩ଠାରୁ ଶ୍ରୀମନ୍ଦିର ପ୍ରଶାସନ ଉପରେ ନ୍ୟସ୍ତ ରହିଛି ।

## ଗୋବର୍ଦ୍ଧନ ମଠ

ଦେବୋତ୍ତର ବିଭାଗ ଦ୍ୱାରା ନିୟନ୍ତ୍ରିତ । ଏହି ମଠରେ ପୁରୀର ଶଙ୍କରାଚାର୍ଯ୍ୟ ରହନ୍ତି । ସେ ଏହି ମଠର ମୁଖ୍ୟ ତଥା 'ମୁକ୍ତିମଣ୍ଡପ'ର ସ୍ଥାୟୀ ସଭାପତି । ସେ ଶ୍ରୀମନ୍ଦିର ଭିତରକୁ 'ଦଣ୍ଡ' ଧରି ପ୍ରବେଶ କରିପାରିବେ ଓ ମନ୍ଦିର ଭିତରେ 'ଆସନ' ପକାଇ ବସିପାରିବେ । ଶ୍ରୀମନ୍ଦିରର ରୀତିନୀତି ଉପରେ ସେ ମତ ବା ପରାମର୍ଶ ଦିଅନ୍ତି । ଏ ବିଷୟରେ ସମସ୍ୟା ଉପୁଜିଲେ ତାଙ୍କୁ ପଚାରିବା ବିଧି ଅଛି । ପୂର୍ବେ ସେ ଶ୍ରୀମନ୍ଦିରର ପୂଜାପଣ୍ଡାମାନଙ୍କୁ ପୂଜାଜ୍ଞାନ ସମ୍ପର୍କରେ ପରୀକ୍ଷା କରି ସାର୍ଟିଫିକେଟ୍ ଦେଉଥିଲେ । ଏହା ପାଇବା ପରେ ସେମାନେ ପୂଜା କରିପାରୁଥିଲେ । ମଠପାଇଁ ଶ୍ରୀମନ୍ଦିରରୁ ଦୈନିକ ଓ ପର୍ବଯାତ୍ରା ଖେଇ ପଠାଯାଏ । ଏହି ମଠର ଅନ୍ୟନାମ ଭୋଗବର୍ଦ୍ଧନ ମଠ ।

## ବଡ଼ଛତା ମଠ

ଦେବୋତ୍ତର ବିଭାଗ ଦ୍ୱାରା ନିୟନ୍ତ୍ରିତ । ମଠ ତରଫରୁ ମଙ୍ଗଳ ଆରତି ଓ ପହୁଡ଼ ଆରତିରେ କୀର୍ତ୍ତନ କରାଯାଏ । ବାଳଧୂପ, ଚନ୍ଦନ ଓ ଦୋଳଯାତ୍ରା ସମୟରେ ମଧ୍ୟ କୀର୍ତ୍ତନ କରାଯିବା ବିଧି ଅଛି । ମଠ ତରଫରୁ ଶ୍ରୀମନ୍ଦିରରେ ତିନି ଠାକୁରଙ୍କ ପଦ୍ମବେଶ କରାଯାଏ । ମାଘ ଅମାବାସ୍ୟା ଠାରୁ ବସନ୍ତପଞ୍ଚମୀ ମଧ୍ୟରେ ଶନିବାର କିମ୍ବା ବୁଧବାରରେ ଏହି ବେଶ ହୁଏ । ବେଶ ଦିନ ମଠ ତରଫରୁ ଖିରି ଭୋଗ କରାଯାଏ ।

## ରାଧାକାନ୍ତ ମଠ

ଦେବୋତ୍ତର ବିଭାଗଦ୍ୱାରା ନିୟନ୍ତ୍ରିତ । ମଠର ମହନ୍ତ ଶାଢ଼ି ବନ୍ଧାଇ, ଉପଚାର ଚାମର ସେବା କରିପାରିବେ । ଶ୍ରୀମନ୍ଦିରରେ ମଠ ତରଫରୁ କୀର୍ତ୍ତନ କରାଯାଇ ପାରିବ । ଗୁଣ୍ଡିଚା ମନ୍ଦିରର ଭିତର ଓ ବାହାର ବେଢ଼ା ଏହି ମଠ ପରିଷ୍କାର କରାନ୍ତି । କାର୍ତ୍ତିକ ମାସରେ ଶ୍ରୀମନ୍ଦିରରେ ଅଖଣ୍ଡ ଜାଳନ୍ତି । ଶ୍ରୀମନ୍ଦିର ରୋଷଘରେ ମଠର ଚୁଲା ଅଛି । ଶ୍ରୀମନ୍ଦିର କୋଠଭୋଗରୁ ଦୈନିକ ଖେଇ ପାଆନ୍ତି ।

## ତ୍ରିମାଳୀ ମଠ

ଦେବୋତ୍ତର କମିଶନରଙ୍କ ନିୟନ୍ତ୍ରଣରେ ପରିଚାଳିତ । ମହନ୍ତ ଉପଚାର ଚାମର ଓ ଆଲଟ ସେବା କରିପାରିବେ । କିନ୍ତୁ ସେଥିପାଇଁ ଶାଢ଼ି ବନ୍ଧାଇବା ଆବଶ୍ୟକ । ଅବକାଶ ନୀତି ପାଇଁ ଦିହୁଡ଼ି ଯୋଗାନ୍ତି, ଦୈନିକ ବଲ୍ଲଭ ଯୋଗାନ୍ତି । ପୂର୍ବେ ମୋହନ ଭୋଗ କରୁଥିଲେ, ଏବେ କରୁନାହାନ୍ତି । ବିଜେ ଠାକୁରଙ୍କ ପନ୍ତିଭୋଗ କରାନ୍ତି ।

## ଉତ୍ତର ପାର୍ଶ୍ୱ ମଠ

ଦେବୋତ୍ତର କମିଶନରଙ୍କ ନିୟନ୍ତ୍ରଣାଧୀନ । ମହନ୍ତ ଶାଢ଼ି ବନ୍ଧାଇ 'ସୁନାବେଣ୍ଟ' ଚାମର ସେବା କରିପାରିବେ । ଆଲଟ ସେବା କରନ୍ତି । ଅଖଣ୍ଡ ଦୀପ ଜଳାନ୍ତି । ଦୈନିକ ଠାକୁରମାନଙ୍କର ମଣୋହି ପାଇଁ 'ମୋହନଭୋଗ' କରିବାକୁ ଏମାନଙ୍କର ଜମି ଖଞ୍ଜା ଥିଲା । ଏବେ ଏହି ଭୋଗ କରୁନାହାନ୍ତି । ମନ୍ଦିରରେ ଚୁଲା ଓ ସରଘର ଅଛି ।

## ମହୀପ୍ରକାଶ ମଠ

ଦେବୋତ୍ତର କମିଶନରଙ୍କ ନିୟନ୍ତ୍ରଣାଧୀନ । ଠାକୁରମାନଙ୍କର ଫୁଲ ଓ ବସ୍ତ୍ର ରଖାଯିବା ପାଇଁ ବାଉଁଶ ତିଆରି ବଡ଼ ତାଟ ଯୋଗାଇବା ବିଧି ଅଛି । ଅନବସର ସମୟରେ ଚକଟା ଭୋଗ କରାନ୍ତି । ଅବକାଶପାଇଁ ଦାନ୍ତକାଠି ଯୋଗାନ୍ତି । ଦୈନିକ ଶ୍ରୀମନ୍ଦିରରୁ କୋଠଭୋଗ ଖେଇ ପାଆନ୍ତି । ମଠର ସ୍ୱାମୀ ଦଣ୍ଡ ଧରି ଯାଇପାରିବେ ଓ ଆସନ ପକାଇ ବସି ପାରିବେ ।

## ସୁନା ଗୋସ୍ୱାମୀ ଓ ଦର୍ପନାରାୟଣ ମଠ

ମଠର ଅଧିକାରୀଙ୍କର ଚାମର ଓ ଆଲଟ ସେବା ଅଛି । ଦୈନିକ ଫୁଲଗୁଣ୍ଠାଇ ଯୋଗାନ୍ତି । ଚନ୍ଦନଯାତ୍ରା (୪୨ ଦିନ) ସମୟରେ ପ୍ରତ୍ୟେକ ଦିନ ଫୁଲର ଅଳକା ଓ ଚଉସରା ଯୋଗାନ୍ତି । ବନକଲାଗି ସମୟରେ ରତ୍ନସିଂହାସନ ମାର୍ଜନା କରାନ୍ତି । ସ୍ନାନ ପୂର୍ଣ୍ଣମୀରେ ଜଳ ଅଧିବାସ କରାନ୍ତି । ଅନବସର ବେଳେ ଦ୍ୱିପ୍ରହର ଧୂପରେ ମଇଳମଭୋଗ (ଧୁଆମୁଗ ଓ ନଡ଼ିଆଖଣ୍ଡ) ଯୋଗାନ୍ତି । ଅଗ୍ନି ଉତ୍ସବ ନୀତିରେ ଦୋଳଗୋବିନ୍ଦଙ୍କର ପନ୍ତିଭୋଗ କରାନ୍ତି । ଶ୍ରୀମନ୍ଦିର କୋଠଭୋଗ ଦୈନିକ ଓ ପର୍ବଯାତ୍ରା ଖେଇ ପାଆନ୍ତି । ଦେବୋତ୍ତର କମିଶନରଙ୍କ ପରିଚାଳନାଧୀନ ।

## ଚାଉଳିଆ ମଠ

ମହନ୍ତ ଉପଚାର ଚାମର ସେବା କରିପାରିବେ । ଠାକୁରମାନଙ୍କୁ 'ଚାଉଳିଆ' ଫଳ ଯୋଗାଉଥିଲେ । ଏବେ କେହି ମହନ୍ତ ନାହାନ୍ତି । ଏବେ ଏହି ମଠ ଶ୍ରୀମନ୍ଦିର ପ୍ରଶାସନ ଅଧୀନରେ ଅଛି ।

## ଶଙ୍କରାନନ୍ଦ ମଠ

ଦେବୋତ୍ତର କମିଶନରଙ୍କ ନିୟନ୍ତ୍ରଣାଧୀନ । ମହନ୍ତଙ୍କର କେତେକ ବ୍ୟକ୍ତିଗତ ସେବା ଅଧିକାର ଅଛି । ଏହି ମଠରେ ମହନ୍ତ ଶ୍ରୀଲୋକନାଥ ମନ୍ଦିରର ମ୍ୟାନେଜର ଦାୟିତ୍ୱରେ ଥିଲେ । ଶ୍ରୀମନ୍ଦିରରେ ଚୁଲା ଓ ସରଘର ଅଛି । ଦୈନିକ ଖେଇ ପାଆନ୍ତି । ମଠର ସ୍ୱାମୀ ବା ମହନ୍ତ ଦଣ୍ଡ ଧରି ଶ୍ରୀମନ୍ଦିରକୁ ଯାଇପାରିବେ ଓ ମନ୍ଦିର ବେଢ଼ାରେ ଆସନ ପକାଇ ବସିପାରିବେ । ମୁକ୍ତିମଣ୍ଡପରେ ମଧ୍ୟ ବସିପାରିବେ । ଭୁବନେଶ୍ୱରରେ ଏହି ମଠର ଏକ ଶାଖା ଅଛି ।

## ଗଙ୍ଗାମାତା ମଠ

ମଠର ମହନ୍ତ ଅଣସର ପିଣ୍ଡିରେ ଉପଚାର ଚାମର ସେବା କରିପାରିବେ । ଆଲଟ ସେବା ମଧ୍ୟ କରିପାରିବେ । କାର୍ତ୍ତିକ ମାସରେ ବାଳଭୋଗ କରାନ୍ତି । ଦୈନିକ ଓ ପର୍ବପର୍ବାଣିରେ ଖେଇ ପାଆନ୍ତି । ଦେବୋତ୍ତର କମିଶନରଙ୍କ ପରିଚାଳନାଧୀନ ।

## ମଙ୍ଗୁ ମଠ

ପୂର୍ବେ ଅମୃତମଣୋହି ଭୋଗ କରାଉଥିଲେ । ଏହି ମଠ ଦେବୋତ୍ତର ବିଭାଗ ନିୟନ୍ତ୍ରଣରେ ଅଛି । ମହାନବମୀ ରାତିରେ ବିମଳାଙ୍କ ଠାରେ ପଶୁବଳି ପାଇଁ ଗୋଟିଏ ମେଣ୍ଢା ଯୋଗାନ୍ତି ।

## ରାଧାବଲ୍ଲଭ ମଠ

ମହନ୍ତ ଉପଚାର ଚାମର ଓ ଆଲଟ ସେବା କରିପାରିବେ । ମଶାଲ ପାଆନ୍ତି । ଦେବୋତ୍ତର ବିଭାଗ ଅଧୀନସ୍ଥ ।

## ଲବଣିଖିଆ ମଠ

ଭାଦ୍ର ମାସ କାଳୀୟଦଳନ ଏକାଦଶୀ ଦିନ ଶ୍ରୀଜଗନ୍ନାଥଙ୍କ ବିଜେ ପ୍ରତିମା ମଦନମୋହନ ଏହି ମଠକୁ ବିଜେ ହୁଅନ୍ତି । ପନ୍ତିଭୋଗ କରାନ୍ତି ।

## ଛାଉଣୀ ମଠ

ମହନ୍ତଙ୍କର ଚାମର ଓ ଆଲଟ ସେବା ଅଛି । ବିଜୟାଦଶମୀ ଦିନ ନୀଳଚକ୍ରରେ ଏକ ବଡ଼ ପତାକା ବାନ୍ଧିବା ବିଧି ଥିଲେ ବି ଏବେ କରୁନାହାନ୍ତି ।

## ଝାଡୁ ମଠ

ଶ୍ରୀମନ୍ଦିରର ଜଗମୋହନ ପ୍ରତ୍ୟହ ଝାଡୁ କରାନ୍ତି । ପୂର୍ବେ ଏହି ମଠ ଶ୍ରୀମନ୍ଦିରରେ ପ୍ରତ୍ୟହ ସବୁ ଧୂପବେଳେ ଟେରା ପଡିଲେ ସର୍ବସାଧାରଣ ଓ ମଠମାନଙ୍କ ଅବଗତି ପାଇଁ ଝାଞ୍ଜ ବଜାଉଥିଲେ । ଝାଞ୍ଜ ଜଗମୋହନରୁ ବାହାରି ବଟଗଛ, ମୁକ୍ତିମଣ୍ଡପ, ବିମଳା ଓ ଲକ୍ଷ୍ମୀ ମନ୍ଦିର ଦେଇ ଗରୁଡ଼ ଖମ୍ବ ପାଖକୁ ଆସେ । ଏହି ମଠ ଝାଞ୍ଜପିଟା କରୁନାହାନ୍ତି ।

## ପାପୁଡ଼ିଆ ମଠ

ମହନ୍ତଙ୍କର ଆଲଟ ଚାମର ସେବା ଅଧିକାର ଅଛି । ଦୈନିକ ବଲ୍ଲଭରେ ପାପୁଡ଼ି ଭୋଗ କରିବା ବିଧି ଅଛି ।

## ରାଜଗୋପାଳାଚାରୀ, ଭେଙ୍କଟାଚାରୀ ଓ ନରସିଂହ ଆଚାରୀ ମଠ

ଏହି ମଠ ମହନ୍ତମାନଙ୍କର ଚାମର ସେବା ଅଧିକାର ଅଛି । ପୂର୍ବେ ଅମୃତମଣୋହି ଭୋଗ କରାଉଥିଲେ । ବିଜେ ପ୍ରତିମାମାନଙ୍କର ପନ୍ତିଭୋଗ କରାନ୍ତି ।

## ନେବଳ ଦାସ ମଠ

ମହନ୍ତ ଚାମର ସେବା କରିପାରିବେ । ବିଜେ ପ୍ରତିମାମାନଙ୍କର ପନ୍ତିଭୋଗ କରାନ୍ତି । ଅମୃତମଣୋହି ଭୋଗ କରାଇ ବ୍ରାହ୍ମଣ ପଣ୍ଡିତମାନଙ୍କୁ ଖଇରାତ (ବଣ୍ଟନ) କରନ୍ତି ।

## ଦେବଗିରି ମଠ

ମଠ ମହନ୍ତ ଅମୃତମଣୋହି ଭୋଗ କରାଇ ଖଇରାତ କରାନ୍ତି ।

## ପିପିଲି ସଦାବର୍ତ୍ତ ମଠ

ମହନ୍ତଙ୍କ ଚାମର ସେବା ଅଛି । ପୂର୍ବେ ମହାପ୍ରସାଦ ସଦାବର୍ତ୍ତ କରାଉଥିଲେ, ଏବେ କରୁନାହାନ୍ତି ।

## ସମାଧି ମଠ, ରାମଜୀ ମଠ, ରାମଚନ୍ଦ୍ର ବ୍ରହ୍ମଚାରୀ ମଠ, ବଳରାମ କୋଟ ମଠ, ସୁନ୍ଦରଦାସ ମଠ, ବଡ଼ସନ୍ଥ ମଠ, ସିଦ୍ଧ ବକୁଳ ମଠ :-

ଜଗନ୍ନାଥଙ୍କର ଅମୃତମଣୋହି ପାଇଁ ଏହି ମଠମାନଙ୍କର ଜମି ଖଞ୍ଜା ଅଛି । ବର୍ତ୍ତମାନ ଅମୃତମଣୋହି ଓ ସଦାବର୍ତ୍ତ କରୁନାହାନ୍ତି । ବଲ୍ଲଭ ଭୋଗ କରିବା ଓ ଚାମର ସେବା ବିଧି ଥିଲେ ବି ଏବେ କରୁନାହାନ୍ତି ।

## ସାନଛତା ମଠ, ନୂଆ ମଠ

ମଠରେ ମହନ୍ତମାନେ ଶ୍ରୀମନ୍ଦିରରେ ଚାମର ସେବା କରିପାରିବେ ।

**ମହାନନ୍ଦ ବନଗୋସ୍ୱାମୀ ମଠ, ରାମତାରକ ମହେଶ୍ୱରାନନ୍ଦ ମଠ, ମଧୁସୂଦନ ଦାସ ମଠ, କଣାସ ମଠ, ହରିଡ଼ାଖଣ୍ଡି ମଠ, ଦିଲ୍ଲୀ ବାଳକ ରାମ ଦାସ ମଠ, ଅଷ୍ଟଗ୍ରାସୀ ମଠ, କଉଶଲ୍ୟା ମଠ, ନିରାଲମ୍ବୀ ଆଖଡ଼ା ମଠ**

ମହନ୍ତମାନେ ଚାମର ସେବା ଓ ଅମୃତମଣୋହି ଭୋଗ କରିବା କଥା; କିନ୍ତୁ ଏବେ କରୁନାହାନ୍ତି । ଦିଲ୍ଲୀ ବାଳକ ରାମଦାସ ମଠ ଶ୍ରୀମନ୍ଦିର ପ୍ରଶାସନର ପ୍ରଦତ୍ତ ସମ୍ପତ୍ତି । ଏହାର କେହି ମହନ୍ତ ନାହାନ୍ତି ।

ଉପରେ ବର୍ଣ୍ଣିତ କେତୋଟି ମଠ ବ୍ୟତୀତ ନିମ୍ନଲିଖିତ କେତୋଟି ମଠ ତରଫରୁ ବିଜେ ଠାକୁରମାନଙ୍କର ପନ୍ତି କରାଯାଏ । ସେମାନେ ହେଲେ- ଜଟିଆ ବାବାଜି ମଠ, ଚିକିଟି ମଠ, କୋଠ ଭୋଗ ମଠ, ସଂକ୍ରାନ୍ତି ମଠ, କେନ୍ଦୁଝର ମଠ, ସୁନାର ଗୌରାଙ୍ଗ ମଠ, ଆଉଲା ମଠ, ଘୁମୁସର ମଠ, ଖଡାଖିଆ ମଠ, ନାଗା ମଠ, ଗୌରୀ ମଠ, ଦର୍ପଣୀ ମଠ ଇତ୍ୟାଦି ।

## ଝାଞ୍ଜପିଟା ମଠ

ଏହି ମଠ ତରଫରୁ ଭିତରବେଢ଼ା ଉତ୍ତର ଦ୍ୱାର ନିକଟସ୍ଥ ଗୌରାଙ୍ଗ ମହାପ୍ରଭୁଙ୍କର ପାଦପଦ୍ମ ସେବା କରାଯାଏ । ଝାଞ୍ଜପିଟା ମଠର ବାବାଜି ପ୍ରତ୍ୟହ ପାଦପଦ୍ମରେ ପାଣି ଦିଅନ୍ତି ।

ଏହି ମଠର ନାମକରଣରୁ ସନ୍ଦେହ ହୁଏ ଯେ ବୋଧହୁଏ ଅତୀତରେ ଶ୍ରୀମନ୍ଦିରର ବିଭିନ୍ନ ଧୂପ ଟେରା ପଡିଲେ ଏହି ମଠ ଝାଞ୍ଜପିଟା କରାଉଥିଲେ । ଶ୍ରୀଜଗନ୍ନାଥ ମନ୍ଦିର ସ୍ୱତ୍ୱଲିପି (ରେକର୍ଡ଼ ଅଫ୍ ରାଇଟ୍ସ୍)ରେ ଉଲ୍ଲେଖ ଅଛି ଯେ, ଝାଡୁ ମଠ ସବୁ ଧୂପରେ ଝାଞ୍ଜପିଟା କରାଏ । କିନ୍ତୁ ଏହା ଠିକ୍ ନୁହେଁ । ସଂପ୍ରତି ଜନୈକ ଭକ୍ତ ଭଜନି ଦାସ ବାବାଜି ଝାଞ୍ଜ ପିଟା କାର୍ଯ୍ୟ କରୁଛନ୍ତି ।

ଶ୍ରୀଜଗନ୍ନାଥ ମନ୍ଦିରର ସେବାପୂଜା ବା ନୀତି ସହିତ ସଂପୃକ୍ତ କୌଣସି ମଠ କିମ୍ବା ଅନୁଷ୍ଠାନରୁ ଜଣେ ପ୍ରତିନିଧି ଶ୍ରୀଜଗନ୍ନାଥ ମନ୍ଦିର ଆଇନ, ୧୯୫୫, ଧାରା ୬ ଅନୁଯାୟୀ ଶ୍ରୀଜଗନ୍ନାଥ ମନ୍ଦିର ପରିଚାଳନା କମିଟିର ସଭ୍ୟ ରୂପେ ରାଜ୍ୟସରକାରଙ୍କଦ୍ୱାରା ମନୋନୀତ ହୁଅନ୍ତି ।

ଶ୍ରୀମନ୍ଦିର ନୀତି ସହିତ ସଂପୃକ୍ତ ଅନେକ ମଠ ଏବେ ଆଉ ନିଷ୍ଠାପର ଭାବେ ସେବା ଦାୟିତ୍ୱ ତୁଲାଉ ନାହାନ୍ତି । ମଠର ମହନ୍ତମାନେ ମହାନାୟକ ଶାଢ଼ି ବନ୍ଧାଇବା ପରେ ଆଲଟ ଚାମର କରିବା ସେବା ନିୟମ ଅଛି । କିନ୍ତୁ ଅନେକ ମହନ୍ତ ଶାଢ଼ି ବନ୍ଧାଇ ନାହାନ୍ତି କିମ୍ବା ଏହି ସେବା କରୁ ନାହାନ୍ତି । ମହନ୍ତମାନଙ୍କ ପରଲୋକ ହେଲେ ଶ୍ରୀମନ୍ଦିର ରୋଷରୁ ବୈଷ୍ଣବାଗ୍ନି ପ୍ରଦାନ କରାଯାଏ ।

ପୂର୍ବେ ଶ୍ରୀମନ୍ଦିରରେ ଶ୍ରୀଜୀଉଙ୍କର ଅମୃତ ମଣୋହି ଭୋଗ ପାଇଁ ବିଭିନ୍ନ ମଠମାନଙ୍କୁ ରୋଷ ଚୁଲି ହସ୍ତାନ୍ତର କରାଯାଇଥିଲା । ବର୍ତ୍ତମାନ ଉକ୍ତ କାର୍ଯ୍ୟ କେତେକ ମଠ କରୁନାହାନ୍ତି । କେତେକ ମଠ ସେମାନଙ୍କର ନାମରେ ଥିବା ରୋଷ ଚୁଲିମାନ ଶ୍ରୀମନ୍ଦିର କର୍ତ୍ତୃପକ୍ଷଙ୍କ ବିନା ଅନୁମତିରେ ସୂପକାରମାନଙ୍କୁ ହସ୍ତାନ୍ତର କରିଛନ୍ତି ।

ଠାକୁରମାନଙ୍କର ଯାନିଯାତ୍ରାର ବ୍ୟୟ ନିର୍ବାହ ତଥା ଅମୃତ ମଣୋହି ନିମନ୍ତେ ପୂର୍ବେ ବହୁ ରାଜା, ଜମିଦାର ଓ ଧନୀବ୍ୟକ୍ତି ମଠମାନଙ୍କୁ ବହୁ ଭୂ-ସମ୍ପତ୍ତି ଦାନ କରିଥିଲେ । ଖୋର୍ଦ୍ଧାର ରାଜାମାନେ ବହୁ ଜମି ଦାନ କରିଥିଲେ । ଅମୃତମଣୋହି ଜମି ସଂପର୍କରେ ପୁରୀଜିଲ୍ଲା ଗେଜେଟିଅରରେ ଉଲ୍ଲେଖ ଅଛି-

"Both Saiva and Vaishnava Mathas exist in Puri. The lands of the latter are known as Amruta Manohi or (literary nectar food) because they were given with the intention that the proceeds thereof should be spent in offering bhoga before Jagannath and that the Mahaprasad thus obtained should be distributed among pilgrims, beggars and ascetics. They are distninct from the Amruta Manohi lands of the temple which are under the superintendence of the Raja x x x" (Puri District Gazetteer, 1929, Edited by L.S.S.O. Mallcy )

ଜମିଦାରୀ ଉଚ୍ଛେଦ ପରେ ମଠମାନଙ୍କର ଆର୍ଥିକ ପରିସ୍ଥିତିର ଅବନତି ହୋଇଛି ବୋଲି କୁହାଯାଏ। ପ୍ରତ୍ୟେକ ମଠର ସଂକ୍ଷିପ୍ତ ଇତିହାସ, ଆର୍ଥିକ ପରିସ୍ଥିତି ଓ ଧାର୍ମିକ ପରଂପରା ଆଦି ଆଲୋଚନା କଲେ ଏହି ପ୍ରବନ୍ଧର କଳେବର ଅତି ଦୀର୍ଘ ହୋଇଯିବ ।

ପୁରୀ ବାହାରେ ଥିବା ମଠମାନଙ୍କ ମଧ୍ୟରୁ କାକଟପୁର ମଙ୍ଗଳାଠାକୁରାଣୀଙ୍କ ନିକଟସ୍ଥ ଦେଉଳି ମଠର ଶ୍ରୀଜଗନ୍ନାଥଙ୍କର ଏକ ବିଶେଷ ନୀତି ସହିତ ନିବିଡ଼ ପାରମ୍ପରିକ ସଂପର୍କ ରହିଛି । ନବକଳେବର ବନଯାଗ ପାଇଁ ପୁରୀରୁ ଦଇତାପତି ଓଗେର ବାହାରି ଉକ୍ତ ମଠରେ କିଛିଦିନ ଅବସ୍ଥାନ କରନ୍ତି ।

ଏହି ସବୁ ମଠମାନଙ୍କ ପରି ଶ୍ରୀଜଗନ୍ନାଥ ମନ୍ଦିର ବେଢ଼ା ବାହାରେ ଥିବା ପୁରୀରେ ଓ ପୁରୀ ବାହାରେ ଅବସ୍ଥିତ କେତେକ ଆଶ୍ରମ ଓ ମନ୍ଦିରମାନଙ୍କରେ ଶ୍ରୀଜଗନ୍ନାଥଙ୍କ ଦୈନନ୍ଦିନ ଓ ଯାନିଯାତ୍ରା ନୀତି ସହ ପାରମ୍ପରିକ ସମ୍ପର୍କ ରହିଅଛି ।





ମା' ବିମଳା

# ଶ୍ରୀମନ୍ଦିର ପରିସରର ମନ୍ଦିର ଓ ଦେବଦେବୀ

**ମୁ**ଖ୍ୟମନ୍ଦିର ଛଡ଼ା ଶ୍ରୀମନ୍ଦିରର ଭିତର ବେଢ଼ା ବା କୁର୍ମବେଢ଼ା (୪୨୦ ଫୁଟ x ୩୧୫ ଫୁଟ) ଓ ବାହାର ବେଢ଼ା (୬୬୫ ଫୁଟ x ୬୪୦ ଫୁଟ) ଭିତରେ ସାନବଡ଼ ହୋଇ ଅନେକ ପାର୍ଶ୍ୱଦେବଦେବୀ ମନ୍ଦିର ଏବଂ ବିଜେସ୍ଥଳୀ ରହିଛି । ଏ ଦୁଇଟି ବେଢ଼ା ପ୍ରାଚୀରଦ୍ୱାରା ଆବଦ୍ଧ । ବାହାର ବେଢ଼ାର ପ୍ରାଚୀରକୁ ମେଘନାଦ ପ୍ରାଚୀର କୁହାଯାଏ । ଏହାର ଉଚ୍ଚତା ୨୦ ଫୁଟରୁ ୨୪ ଫୁଟ ଯାଏଁ ରହିଛି । ଭିତର ବେଢ଼ାର ଚାରି ଦିଗରେ ଦ୍ୱାର ରହିଛି । ଆଉ ଏକ ଦ୍ୱାର ଆନନ୍ଦବଜାରକୁ ଯିବାପାଇଁ ରହିଛି । ଭିତର ବେଢ଼ାରୁ ଏହି ଦ୍ୱାର ଦେଇ ପହଣ୍ଡି ବିଜେ ହୁଏ । ବାହାର ବେଢ଼ାର ପୂର୍ବ ଦ୍ୱାରକୁ ମୁଖ୍ୟଦ୍ୱାର ବା ସିଂହଦ୍ୱାର କୁହାଯାଏ । ପୂର୍ବ, ପଶ୍ଚିମ, ଉତ୍ତର ଓ ଦକ୍ଷିଣ ଦିଗସ୍ଥ ଦ୍ୱାରମାନଙ୍କୁ ଯଥାକ୍ରମେ ସିଂହଦ୍ୱାର, ବ୍ୟାଘ୍ରଦ୍ୱାର, ହସ୍ତୀଦ୍ୱାର ଓ ଅଶ୍ୱଦ୍ୱାର କୁହାଯାଏ, କାରଣ ଏହି ପଶୁମାନଙ୍କର ପ୍ରତିମା ଉକ୍ତ ଦ୍ୱାରମାନଙ୍କରେ ସ୍ଥାପନା କରାଯାଇଛି । କିନ୍ତୁ ଦୁଇଟି ହସ୍ତୀ ପ୍ରତିମା ବାହାର ଉତ୍ତର ଦ୍ୱାରରେ ନଥାଇ ଭିତର ବେଢ଼ାର ଉତ୍ତର ଦ୍ୱାରରେ ଅଛି । ସିଂହ, ହସ୍ତୀ, ବ୍ୟାଘ୍ର ଓ ଅଶ୍ୱ ଯଥାକ୍ରମେ ଧର୍ମ, ଅର୍ଥ, କାମ ଓ ମୋକ୍ଷର ପ୍ରତୀକ ମନେ କରାଯାଏ [୧]।

ସିଂହଦ୍ୱାର ବା ପ୍ରଧାନ ଦ୍ୱାର ସାମନାରେ ଅରୁଣସ୍ତମ୍ଭ ବିଦ୍ୟମାନ । ଏହି ସ୍ତମ୍ଭ ପୂର୍ବେ କୋଣାର୍କ ମନ୍ଦିର ସାମନାରେ ଥିଲା । ଏହାକୁ ଏଠାକୁ ଅଷ୍ଟାଦଶ ଶତାବ୍ଦୀରେ ଅଣାଯାଇ ସ୍ଥାପନା କରାଯାଇଛି । ଏହି ସ୍ତମ୍ଭ ଏକ ବୃହତ୍ ସ୍ତମ୍ଭାକାର ପଥର । ଏହାର ଷୋହଳଟି ପାର୍ଶ୍ୱ ରହିଛି । ସ୍ତମ୍ଭର ଶୀର୍ଷରେ ସୂର୍ଯ୍ୟଦେବଙ୍କ ସାରଥି ଅରୁଣ ବିରାଜମାନ । ସ୍ତମ୍ଭର ବେଦୀ ଠାରୁ ଶୀର୍ଷ ଯାଏଁ (ବେଦୀ ବା ଆସ୍ଥାନର ମୂଳରୁ) ଉଚ୍ଚତା ୩୩ ଫୁଟ ୮ ଇଞ୍ଚ । ସ୍ତମ୍ଭର ବ୍ୟାସ ୨ ଫୁଟ ଓ ପରିଧି ୬ ଫୁଟ ୩ ଇଞ୍ଚ । ଅରୁଣ ସ୍ତମ୍ଭ ଠାରୁ ସିଂହଦ୍ୱାର ଯାଏଁ ଅଞ୍ଚଳକୁ ଅରୁଣ ଚଉତରା ବା ଚକଡ଼ା କୁହାଯାଏ ।

ବଡ଼ଦାଣ୍ଡଠାରୁ ଶ୍ରୀମନ୍ଦିର ଅର୍ଥାତ୍ ମୁଖ୍ୟ ମନ୍ଦିରର ଉଚ୍ଚତା ୨୧୪ ଫୁଟ ରହିଥିବା ଜଣାଯାଏ । ଶ୍ରୀମନ୍ଦିରର ଭିତର ଓ ବାହାର ବେଢ଼ାର ମୋଟ କ୍ଷେତ୍ରଫଳ ପ୍ରାୟ ୧୦.୭ ଏକର [୨] ।

---

**୧. ବୌଦ୍ଧ ମତରେ ହସ୍ତୀ, ସିଂହ, ବୃଷ ଓ ଅଶ୍ୱ ଯଥାକ୍ରମେ ପୂର୍ବ, ଉତ୍ତର, ପଶ୍ଚିମ ଓ ଦକ୍ଷିଣ ଦିଗର ରକ୍ଷକ ।**

**୨. ଶ୍ରୀମନ୍ଦିରର ମୋଟ କ୍ଷେତ୍ରଫଳ (୧୯୯୦ ମସିହାର ସର୍ଭେ ଅନୁଯାୟୀ)**

**ମୌଜା = ବଡ଼ ଦେଉଳି ସାହି (ୟୁନିଟ୍ ୯ : ୯)**

**ମୌଜାର ମୋଟ ପ୍ଲଟ = ୨୬୮ , ମୌଜାର ମୋଟ ରକବା = ଏ ୧୩.୫୮୧ , (ପ୍ଲଟ୍ ନମ୍ବର ୧ରୁ ୧୩୮)**

**ମେଘନାଦ ପାଚେରୀ ଭିତରର ରକବା = ଏ ୧୦.୭୩୪**

**ମେଘନାଦ ପାଚେରୀ ବାହାରର ରକବା = ଏ ୨.୮୪୭, (ପ୍ଲଟ୍ ନମ୍ବର ୧୩୯ରୁ ୨୬୮)**

ସିଂହଦ୍ୱାର ଶୀର୍ଷରେ ଦଶାବତାର ମୂର୍ତ୍ତି ବିଦ୍ୟମାନ । ନବମ ସ୍ଥାନରେ ବୁଦ୍ଧଦେବଙ୍କ ସ୍ଥାନରେ ଶ୍ରୀଜଗନ୍ନାଥଙ୍କ ମୂର୍ତ୍ତି ରହିଛି । ଦ୍ୱାରର ଆହୁରି ଉପରେ ଲକ୍ଷ୍ମୀ ଠାକୁରାଣୀଙ୍କ ପ୍ରତିମା ଶୋଭାପାଉଛି । ଲକ୍ଷ୍ମୀଙ୍କ ଅନ୍ୟନାମ ଶ୍ରୀ । ତେଣୁ ହୁଏତ ଶ୍ରୀମନ୍ଦିରର ମୁଖ୍ୟଦ୍ୱାର ଶୀର୍ଷରେ ଲକ୍ଷ୍ମୀପ୍ରତିମା ବିରାଜିତା ।

ସିଂହଦ୍ୱାର ଅତିକ୍ରମ କଲା ପରେ ଏକ ମନ୍ଦିରାକୃତି ଦ୍ୱାରକକ୍ଷ ବା ଗୁମୁଟ ପଡ଼େ । ଏହାର ନାମ ସିଂହଦ୍ୱାର ଗୁମୁଟ ବା ବାହାର ଗୁମୁଟ । ଏଠାରେ ଆମର ବାମପଟ କାନ୍ଥରେ (ଅର୍ଥାତ୍ ଗୁମୁଟର ଦକ୍ଷିଣପଟ କାନ୍ଥରେ) ଫତେ ହନୁମାନ (ଫତେ ଅର୍ଥ ଜୟ), ରାଧାକୃଷ୍ଣ ଓ ଗଣେଶ (ଚିତ୍ର) ବିଦ୍ୟମାନ । ଆମର ଦକ୍ଷିଣପଟ କାନ୍ଥରେ ନରସିଂହ (ଦକ୍ଷିଣମୁଖୀ ବିଂଶଭୁଜବିଶିଷ୍ଟ । ଏହାଙ୍କୁ ମହାନରସିଂହ ବା ତାନ୍ତ୍ରିକ ନୃସିଂହ କୁହାଯାଏ), ହନୁମାନ (ମତାନ୍ତରେ ସୁଗ୍ରୀବ) ଓ ପତିତପାବନ ବିରାଜିତ । (ଏହା ଏକକ ଜଗନ୍ନାଥ ମୂର୍ତ୍ତି । କେତେକଙ୍କ ମତରେ ଭୋଇ ରାଜବଂଶର ରାଜା ରାମଚନ୍ଦ୍ର ଦେବ ୨ୟ ଜଣେ ମୁସଲମାନ ରମଣୀକୁ ଘଟଣାଚକ୍ରରେ ବିବାହ କଲା ପରେ ଜାତିଚ୍ୟୁତ ହେବାରୁ ମନ୍ଦିରକୁ ପ୍ରବେଶ କରି ପାରିଲେ ନାହିଁ । ତାଙ୍କର ଦର୍ଶନପାଇଁ ଏଠାରେ ଏକ ଜଗନ୍ନାଥ ମୂର୍ତ୍ତି ପତିତପାବନ ନାମରେ ସ୍ଥାପନା କରାଗଲା) ।

ସିଂହଦ୍ୱାର ଗୁମୁଟରୁ ଭିତର ବେଢ଼ାର ଗୁମୁଟ, ରୋଷଘର ଓ ଆନନ୍ଦବଜାର ଯିବାକୁ ହେଲେ ଏକ ପାବଛ ଶ୍ରେଣୀ ଅତିକ୍ରମ କରିବାକୁ ହୁଏ । ଏହା ବାଇଶ (ବାଇଶି) ପାହାଚ ନାମରେ ପରିଚିତ । କିନ୍ତୁ ଏହି ବାଇଶି ପାହାଚର ପାହାଚ ସଂଖ୍ୟା ପ୍ରକୃତରେ ବାଇଶି ନୁହେଁ; ଏହାର ସଂଖ୍ୟା ଅଠର । ହୁଏତ ଅତୀତରେ ପାହାଚମାନଙ୍କର ସଂପ୍ରସାରଣ ଫଳରେ ଏହାର ସଂଖ୍ୟା ଅଠରକୁ ହ୍ରାସ ପାଇଥିବ । ଆହୁରି ମଧ୍ୟ ଅନୁମାନ କରାଯାଏ ଯେ, ସିଂହାଦ୍ୱାର ପୂର୍ବକୁ ଚାରିଟି ପାହାଚ ଥିଲା, ତାହା ଅରୁଣ ଚକଡ଼ାରେ ପୋତି ହୋଇଯାଇଛି । କେହି କେହି ଭିତର ଗୁମୁଟକୁ ଯିବାକୁ ଥିବା ଦୁଇଟି ଛୋଟ ପାହାଚ ଓ ଆନନ୍ଦବଜାରକୁ ଯିବାକୁ ପଡ଼ିଥିବା ଦୁଇଟି ପାହାଚକୁ ମିଶାଇ ସର୍ବମୋଟ ପାହାଚ ସଂଖ୍ୟା ବାଇଶି କହନ୍ତି । ସେ ଯାହାହେଉ 'ବାଇଶିପାହାଚ' ନାମରେ ଏହି ପାହାଚ ଶ୍ରେଣୀ ପ୍ରଚଳିତ ଓ କଥିତ । କେଉଁ ରାଜାଙ୍କ ଅମଳରେ ବାଇଶି ପାହାଚ ନିର୍ମିତ ହୋଇଥିଲା ତାହାର ସୂଚନା ମାଦଳାପାଞ୍ଜି କିମ୍ବା ଓଡ଼ିଶା ଇତିହାସରୁ ମିଳେନାହିଁ । ମାଦଳାପାଞ୍ଜିରୁ ଜଣାଯାଏ ଯେ ସୂର୍ଯ୍ୟବଂଶର ରାଜା କପିଳେନ୍ଦ୍ର ଦେବ ବଡ଼ ଦେଉଳର ବାହାର ବେଢ଼ା ନିର୍ମାଣ କରିଥିଲେ । ଓଡ଼ିଶା ଇତିହାସ ଲେଖିଥିବା ଅଧିକାଂଶ ଐତିହାସିକଙ୍କ ମତରେ କପିଳେନ୍ଦ୍ର ଦେବଙ୍କ ରାଜତ୍ୱ କାଳ ଥିଲା ଖ୍ରୀ: ୧୪୩୫ରୁ ୧୪୬୮ ଯାଏଁ । ବାହାର ବେଢ଼ା ନିର୍ମାଣ ପୂର୍ବରୁ ନିଶ୍ଚୟ ବାଇଶିପାହାଚ ନିର୍ମିତ ହୋଇସାରିଥିବ ।

ବାଇଶିପାହାଚ ଚଢ଼ିବା ବେଳେ ଆମର ବାମ ଦିଗରେ ନିମ୍ନଲିଖିତ ଛୋଟ ଛୋଟ ମନ୍ଦିର ମାନ ଦେଖିବାକୁ ମିଳେ । ତାହା ହେଲା କାଶୀବିଶ୍ୱନାଥ ମନ୍ଦିର, ଶ୍ରୀରାମଚନ୍ଦ୍ର ମନ୍ଦିର (ରାମ, ସୀତା ଓ ଲକ୍ଷ୍ମଣ ଓଗେର), ଶ୍ରୀନରସିଂହ (ଅଭୟ ନୃସିଂହ), ରାଧାବଲ୍ଲଭ ମନ୍ଦିର, ଘଣ୍ଟେଶ୍ୱରୀ ଠାକୁରାଣୀ ଓ ଗଣେଶ ଚିତ୍ର ।

ଅରୁଣସ୍ତମ୍ଭ, ସିଂହଦ୍ୱାର, ସିଂହଦ୍ୱାର ଗୁମୁଟ ଓ ବାଇଶିପାହାଚ ଏସବୁ ବାହାରବେଢ଼ା ଅନ୍ତର୍ଗତ । ବାହାରବେଢ଼ାସ୍ଥ ସମସ୍ତ ମନ୍ଦିର ଓ ବିଜେସ୍ଥଳୀର ତାଲିକା ନିମ୍ନରେ ପ୍ରଦାନ କରାଗଲା ।

## ବାହାରବେଢ଼ା

| | ମନ୍ଦିର ଓ ବିଜେସ୍ଥଳୀ | ଦେବଦେବୀ |
|---|---|---|
| ୧ । | ଅରୁଣସ୍ତମ୍ଭ (ଏକ ମନ୍ଦିର ସ୍ୱରୂପ ମାନ୍ୟତାପ୍ରାପ୍ତ । ଚୂନରା ନିଯୋଗ ସେବା କରନ୍ତି ।) | ଅରୁଣ (ସୂର୍ଯ୍ୟଙ୍କ ସାରଥି) |
| ୨ । | ସିଂହଦ୍ୱାର | ଦ୍ୱାର ଉପରେ ଦଶାବତାର ଓ ଲକ୍ଷ୍ମୀ ପ୍ରତିମା |
| | ସିଂହଦ୍ୱାର ଗୁମୁଟ | ଫତେ ହନୁମାନ, ରାଧାକୃଷ୍ଣ, ଗଣେଶ(ଚିତ୍ର), ନରସିଂହ, ପତିତପାବନ ଓ ହନୁମାନ (ସୁଗ୍ରୀବ) । |
| ୩ । | କାଶୀବିଶ୍ୱନାଥ | ଶିବଲିଙ୍ଗ |
| ୪ । | ରାମଚନ୍ଦ୍ର ଦେବ | ରାମ, ସୀତା, ଲକ୍ଷ୍ମଣ, ଓଗେର |
| ୫ । | ଅଭୟ ନୃସିଂହ | ନୃସିଂହ |
| ୬ । | ଶ୍ରୀନରସିଂହ | ନରସିଂହ ବା ନୃସିଂହ |
| ୭ । | ରାଧାବଲ୍ଲଭ | ରାଧାକୃଷ୍ଣ |
| ୮ । | ଘଣ୍ଟେଶ୍ୱରୀ | ଘଣ୍ଟେଶ୍ୱରୀ ଠାକୁରାଣୀ ଓ ଗଣେଶ ଚିତ୍ର ପ୍ରତିମା |
| ୯ । | ଭେଟମଣ୍ଡପ (ଏଠାରେ ନୀଳାଦ୍ରିବିଜେ ଦିନ ଲକ୍ଷ୍ମୀ ବିଜେ କରନ୍ତି) | ----- |
| ୧୦ । | ଷଡ଼ଭୁଜ ଗୌରାଙ୍ଗ | ଗୌରାଙ୍ଗ ମୂର୍ତ୍ତି |
| ୧୧ । | ମହାବୀର (ସରଘର, ପ୍ଲଟ ନଂ.୨୧୩) | ହନୁମାନ |
| ୧୨ । | ମହାଦେବ | ଶିବ |
| ୧୩ । | ଦକ୍ଷିଣେଶ୍ୱର | ଶିବ |
| ୧୪ । | ଶ୍ରୀନୃସିଂହ | ନୃସିଂହ |
| ୧୫ । | ହନୁମାନ (ପାଣିଆଘର) | ହନୁମାନ |
| ୧୬ । | କଳ୍କି ଅବତାର ମୂର୍ତ୍ତି ଓ ପୁରାଣ ନୃସିଂହ | ନୃସିଂହ |
| ୧୭ । | ବସନ୍ତେଇ ବା ବୁଢ଼ୀମା ଠାକୁରାଣୀ (ପ୍ରତିଦିନ ତାଟ ମହାପ୍ରସାଦ ବିମଳାଙ୍କୁ ସମର୍ପଣ ହେବା ପରେ ଏହାଙ୍କୁ ସମର୍ପଣ ହୁଏ) | ବସନ୍ତ ଠାକୁରାଣୀ |

| | | |
|---|---|---|
| ୧୮। | ରୋଷ ଗଣେଶ | ଗଣେଶ |
| ୧୯। | ବାରଭାଇ ହନୁମାନ (ମହାବୀର) (ପ୍ଲଟ୍ ନଂ.୨୪୭) | ଦକ୍ଷିଣ ପାର୍ଶ୍ୱ ବାହାର ବେଢ଼ାରେ ଏକ ମନ୍ଦିରରେ ସ୍ଥାପିତ ବାରଜଣ ହନୁମାନ୍ (ବାରଭାଇ / ବାରଭାୟା) ସେମାନେ ହେଲେ :- ଜନ୍ମ ହନୁମାନ, ଗୟ, ଗବାକ୍ଷ, ସୁଷେଣ, ହନୁମାନ, ଜାମ୍ବବ, ତାରାକ୍ଷ, ଅଙ୍ଗଦ, ସୌରୀ, ସୁଗ୍ରୀବ, ନଳ, ନୀଳ |
| ୨୦। | ପଞ୍ଚମୁଖୀ ମହାବୀର | ମହାବୀର ହନୁମାନ |
| ୨୧। | ଦୁର୍ଗାମାଧବ | ଦୁର୍ଗା ଓ ମାଧବ |
| ୨୨। | ଶ୍ରୀସିଦ୍ଧେଶ୍ୱର ମହାଦେବ | ମହାଦେବ |
| ୨୩। | ଶ୍ରୀଚକ୍ର ନାରାୟଣ | ନାରାୟଣ |
| ୨୪। | ରାମେଶ୍ୱର ମହାଦେବ (ଚାରିଧାମ) | ଗୋକର୍ଣ୍ଣେଶ୍ୱର, ବଦ୍ରିନାଥ, ଦ୍ୱାରକାନାଥ ଓ ଜଗନ୍ନାଥ |
| ୨୫। | ଶ୍ରୀନୃସିଂହ (ସରଘର) | ନୃସିଂହ |
| ୨୬। | ପଶ୍ଚିମଦ୍ୱାର ମହାବୀର | ମହାବୀର ହନୁମାନ |
| ୨୭। | ଶ୍ରୀଧବଳେଶ୍ୱର | ଶିବ |
| ୨୮। | କୋଇଲି ବୈକୁଣ୍ଠ | ----- |
| ୨୯। | ବୈକୁଣ୍ଠ | ----- |
| ୩୦। | ଦାରୁଘର | ----- |
| ୩୧। | ବୈକୁଣ୍ଠ ମହାଦେବ (ସୂପକାର ନିଯୋଗ) | ଶିବ |
| ୩୨। | ରାଧାକୃଷ୍ଣ (ଅର୍ପଣ ଗୋପାଳ) (ବର୍ଦ୍ଧମାନ ରାଜା ମାର୍ଫତଦାର) | ରାଧାକୃଷ୍ଣ |
| ୩୩। | ତପସ୍ୱୀ ହନୁମାନ | ହନୁମାନ |
| ୩୪। | ଶ୍ରୀବାମନ | ବାମନ ଅବତାର |
| ୩୫। | ଶ୍ରୀଲକ୍ଷ୍ମୀ ନୃସିଂହ | ଲକ୍ଷ୍ମୀ ଓ ନୃସିଂହ |
| ୩୬। | ଶ୍ରୀଉତ୍ତରାୟଣୀ | ନାରାୟଣୀ |
| ୩୭। | ଶ୍ରୀଶୀତଳା ଠାକୁରାଣୀ | ଶୀତଳା ଦେବୀ |
| ୩୮। | ଝାଡେଶ୍ୱରୀ ଠାକୁରାଣୀ | ଝାଡେଶ୍ୱରୀ |
| ୩୯। | ଶିବ- ଅନ୍ନପୂର୍ଣ୍ଣା | ଶିବ ଓ ମହାଲକ୍ଷ୍ମୀ |
| ୪୦। | ଚାହାଣି ମଣ୍ଡପ (ଆନନ୍ଦବଜାର) | ----- |

୪୧ । ଦେବସ୍ନାନ ମଣ୍ଡପ (ଆନନ୍ଦବଜାର) -----
୪୨ । ଐଶାନେଶ୍ୱର ଶିବ
୪୩ । ଧବଳେଶ୍ୱର ଶିବ
୪୪ । କାଶୀନାଥ ଶିବ
୪୫ । ଶ୍ରୀଗଣେଶ ଗଣେଶ

## ଭିତରବେଢ଼ା

ଭିତରବେଢ଼ାର କେନ୍ଦ୍ରସ୍ଥଳରେ ମୁଖ୍ୟମନ୍ଦିର ଅବସ୍ଥିତ, ଯାହାର ଗର୍ଭଗୃହରେ ରତ୍ନବେଦୀରେ ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର ଓ ଦେବୀ ସୁଭଦ୍ରା ସମେତ ସପ୍ତବିଗ୍ରହ ବିରାଜିତ । ରତ୍ନ ବେଦୀର ଚତୁଃପାର୍ଶ୍ୱ ସ୍ଥାନକୁ ପୋଖରିଆ କୁହାଯାଏ । ସ୍ୱତ୍ୱଲିପିର ନକ୍ସା ଅନୁସାରେ ଏହା ପ୍ଲଟ୍ ନଂ.୨ର ଅନ୍ତର୍ଭୁକ୍ତ । ଭିତର ବେଢ଼ାରେ ଅବସ୍ଥିତ ମନ୍ଦିର, ବିଜେସ୍ଥଳୀ ଓ ଦେବଦେବୀଙ୍କ ତାଲିକା ନିମ୍ନରେ ଦର୍ଶାଯାଇଛି ।

| | ମନ୍ଦିର / ବିଜେସ୍ଥଳୀ | ଦେବଦେବୀ |
|---|---|---|
| ୧ । | ଗର୍ଭଗୃହ | ବଳଭଦ୍ର, ଜଗନ୍ନାଥ, ସୁଭଦ୍ରା, ସୁଦର୍ଶନ, ଭୂଦେବୀ, ଶ୍ରୀଦେବୀ, ନୀଳମାଧବ । |
| ୨ । | ଭଣ୍ଡାର ଘର (ପାଣିକୁଣ୍ଡର ଉପର ଭାଗ) | ଲୋକନାଥ (ବିଜେପ୍ରତିମା) ପହୁଡ଼ ଶୟନ ଠାକୁର ଓ ଦୁର୍ଗା ଠାକୁରାଣୀ |
| ୩ । | ରତ୍ନଭଣ୍ଡାର | ----- |
| ୪ । | ଠାକୁର ଶୟନ ଘର | ଶୟନ ଠାକୁର ଓ ଠାକୁରାଣୀ (୩ ମୂର୍ତ୍ତି) |
| ୫ । | ଜୟ ବିଜୟ ଦ୍ୱାର | ଜୟ ଓ ବିଜୟ (ଦ୍ୱାରପାଳ) |
| ୬ । | ଜଗମୋହନ | ଗରୁଡ଼ ସ୍ତମ୍ଭ, ଚର୍ଚ୍ଚାଗଣେଶ, ଖମ୍ବଗାୟତ୍ରୀ, ଖମ୍ବନୃସିଂହ, ଖମ୍ବଦକ୍ଷିଣକାଳୀ, ଖମ୍ବଶୀତଳା, ଚକ୍ରନାରାୟଣ, ଖମ୍ବବିମଳା, ସୁଗ୍ରୀବ, ବିଭୀଷଣ, ମଙ୍ଗଳା, ଚୈତନ୍ୟ, ଶ୍ରୀକୃଷ୍ଣ, ମହାବୀର,ପଞ୍ଚମୁଖୀ ମହାବୀର ବା ହନୁମାନ |
| ୭ । | ଭୋଗମଣ୍ଡପ | ଗଣେଶ, ବ୍ରହ୍ମା, ମହାଦେବ, କାଳିକା, ନୃସିଂହ (ଭୋଗ ଆସିବା ବାଟରେ) |
| ୮ । | ବଟବଳଭଦ୍ର | ବଳଭଦ୍ର ବା ବଳରାମ |
| ୯ । | ଇନ୍ଦ୍ରାଣୀ ଦେଉଳ | ଇନ୍ଦ୍ରାଣୀ ଠାକୁରାଣୀ |
| ୧୦ । | ପତିତପାବନ (ପୁରାଣ ପଣ୍ଡା ଘର) | ପତିତପାବନ ବା ଜଗନ୍ନାଥ |

| | | |
|---|---|---|
| ୧୧ । | ମାଜଣାମଣ୍ଡପ (ବିବାହ ବେଦୀ) | ----- |
| ୧୨ । | ଦକ୍ଷିଣ ଘର (ବିଜେ ପ୍ରତିମା ଘର) | ରାମ, ଲକ୍ଷ୍ମଣ, ସୀତା ଓ ହନୁମାନ (ଏମାନଙ୍କର ଚଳନ୍ତି ବିଗ୍ରହ), ଛୋଟ ରାମକୃଷ୍ଣ ଓ ନାରାୟଣ (ଏମାନଙ୍କର ଅଚଳନ୍ତି ବିଗ୍ରହ), ନାରାୟଣ (ଚଳନ୍ତି) ରାମକୃଷ୍ଣ ଓ ମଦନମୋହନ (ଚଳନ୍ତି), ଦେଳଗୋବିନ୍ଦ (ଚଳନ୍ତି), ବଦ୍ରିନାରାୟଣ, ଲଡୁଗୋପାଳ, ବାମନ, ଲକ୍ଷ୍ମୀ-ନାରାୟଣ ଓ ଶେଷଦେବ (ଏମାନେ ଅଚଳନ୍ତି), ପଞ୍ଚପାଣ୍ଡବ (ଏଥିରୁ ୩ ମୂର୍ତ୍ତି ଚଳନ୍ତି), ଶାଳଗ୍ରାମ (୧୮ ମୂର୍ତ୍ତି) । କାଛରେ ମହାଲକ୍ଷ୍ମୀ ମୂର୍ତ୍ତି ଓ ବୀରଭଦ୍ର ମୂର୍ତ୍ତି । ବାହାରେ ଥିବା ଚିତ୍ରମୂର୍ତ୍ତି-ଦଶଭୁଜା ଦୁର୍ଗା, ଗଣେଶ, କାର୍ତ୍ତିକେୟ, ହନୁମାନ, ଈଶ୍ୱର-ପାର୍ବତୀ, ଭୀମେଶ୍ୱରୀ, ହରଚଣ୍ଡୀ, ବେଢ଼ାଦୁର୍ଗା, ଦନ୍ତେଶ୍ୱରୀ ଓ ହନୁମାନ । |
| ୧୩ । | ବରାହ ମନ୍ଦିର | ବରାହ |
| ୧୪ । | ଏକାଦଶୀ ମନ୍ଦିର | ଏକାଦଶୀ ଦେବୀ |
| ୧୫ । | ନିଶାନୃସିଂହ ମନ୍ଦିର | ନୃସିଂହ |
| ୧୬ । | ବଳିବାମନ ମନ୍ଦିର | ବାମନ, ଗଣେଶ |
| ୧୭ । | ନାଭିକଟା ମଣ୍ଡପ | ହନୁମାନ |
| ୧୮ । | ଗାରଦ ଘର | ନାରାୟଣ ଓ ହନୁମାନ |
| ୧୯ । | ରାଧାକୃଷ୍ଣ ମନ୍ଦିର (ପ୍ଲଟ୍ ନଂ.୩୭) | ରାଧା ଓ କୃଷ୍ଣ |
| ୨୦ । | ରାଧାକୃଷ୍ଣ ମନ୍ଦିର (ପ୍ଲଟ୍ ନଂ.୩୮) | ରାଧା ଓ କୃଷ୍ଣ |
| ୨୧ । | ପାତାଳେଶ୍ୱର ମନ୍ଦିର | ଶିବ ଲିଙ୍ଗ (କୂର୍ମବେଢ଼ାର ଉତ୍ତର ଦ୍ୱାର ନିକଟରେ ଅବସ୍ଥିତ । ପୂର୍ବ ଆଡ଼କୁ ମନ୍ଦିରର ଦ୍ୱାର ଅଛି । ମନ୍ଦିରରେ ପ୍ରାଚୀନ ଶିଳାଲିପି ରହିଛି) |
| ୨୨ । | ହୟଗ୍ରୀବ (ପାତାଳେଶ୍ୱର ମନ୍ଦିରର ଏକ ଅଂଶରେ ଅଛନ୍ତି) | ହୟଗ୍ରୀବ |

| | | |
|---|---|---|
| ୨୩ । | ସରଘର (ପ୍ଲଟ୍ ନ.୪୨) | ତାଣ୍ଡବ ଈଶ୍ୱର, ଚିତ୍ର ଗଣେଶ, କାଳିନ୍ଦୀଶ୍ୱର |
| ୨୪ । | ଶ୍ରୀରାମଚନ୍ଦ୍ର ମନ୍ଦିର | ରାମଚନ୍ଦ୍ର |
| ୨୫ । | ଦଧିବାମନ | ଜଗନ୍ନାଥ |
| ୨୬ । | (କୋଣାର୍କ) ସୂର୍ଯ୍ୟନାରାୟଣ ମନ୍ଦିର | ସୂର୍ଯ୍ୟଦେବ (ବିଜେ ପ୍ରତିମା ମଧ୍ୟ ଅଛନ୍ତି) |
| ୨୭ । | ବର୍ଦ୍ଧମାନ ମନ୍ଦିର | ରାଧାବଲ୍ଲଭ ଓ ଲକ୍ଷ୍ମୀ ନାରାୟଣ |
| ୨୮ । | ନବଗ୍ରହ ମନ୍ଦିର | ନବଗ୍ରହ, ସମଲେଶ୍ୱରୀ, ରାମ, ସୀତା, ଲକ୍ଷ୍ମଣ ଓ ହନୁମାନ |
| ୨୯ । | ଲକ୍ଷ୍ମୀ ମନ୍ଦିରର ରୋଷଘର (ଏଠାରେ ବାହାର ଦେଉଳ ଭୋଗ ତିଆରି ହୁଏ) | ---- |
| ୩୦ । | ଲକ୍ଷ୍ମୀ ନାରାୟଣ ମନ୍ଦିର | ଲକ୍ଷ୍ମୀ ଓ ନାରାୟଣ |
| ୩୧ । | ଶ୍ରୀଲକ୍ଷ୍ମୀ ମନ୍ଦିର | ସିଂହାସନରେ ଶ୍ରୀଲକ୍ଷ୍ମୀଙ୍କ ପ୍ରତିମା ଅବସ୍ଥିତ । ଜଗମୋହନର କାନ୍ଥରେ ଗଣେଶ, ହନୁମାନ, ନୃସିଂହ, ବରାହ ଓ ଲକ୍ଷ୍ମୀ-ନୃସିଂହଙ୍କ ଚିତ୍ର ରହିଛି । ଲକ୍ଷ୍ମୀଙ୍କ ସମେତ ଏହି ଚିତ୍ର ଦିଅଁଙ୍କର ମଧ୍ୟ ପୂଜା ହୁଏ । |
| ୩୨ । | ବେଢ଼ାକାଳୀ ମନ୍ଦିର | କାଳୀ |
| ୩୩ । | ନୀଳମାଧବ ମନ୍ଦିର | ନୀଳମାଧବ (ଦଇତାପତି ନିଯୋଗ ସେବା କରନ୍ତି) |
| ୩୪ । | ଭୁବନେଶ୍ୱରୀ ମନ୍ଦିର | ଭିତର ବଖରାରେ ଭୁବନେଶ୍ୱରୀ ମୂର୍ତ୍ତି ଅଛନ୍ତି । ବାହାର ବଖରାରେ ସରସ୍ୱତୀ, ଷଷ୍ଠୀ, ସାବିତ୍ରୀ ଓ ଗାୟତ୍ରୀ ଅଛନ୍ତି । |
| ୩୫ । | କ୍ଷୀରଚୋରା ଗୋପୀନାଥ ମନ୍ଦିର | ରାଧା ଓ କୃଷ୍ଣ |
| ୩୬ । | କାଞ୍ଚି ଗଣେଶ (ଭଣ୍ଡଗଣେଶ) | ଗଣେଶ ବା ଉଚ୍ଛିଷ୍ଟ ଗଣପତି । ତାନ୍ତ୍ରିକ ଗଣେଶ (ଏହାଙ୍କ ମୂର୍ତ୍ତି ତାତ୍ତ୍ୱିକ ବୈଚିତ୍ର୍ୟ ହେତୁ ଭଣ୍ଡଗଣେଶ ଭାବରେ କଥିତ । ...ତାଙ୍କର ବାମ ଉପର ହସ୍ତରେ ପରଶୁ ଓ ବାମତଳ ହସ୍ତରେ ସିଦ୍ଧିଦେବୀଙ୍କୁ ...ଆଲିଙ୍ଗନ କରି ନିଜ ଲିଙ୍ଗ ମର୍ଦ୍ଦନ, ଦକ୍ଷିଣ ଉପର ହସ୍ତରେ ଭଗ୍ନଦନ୍ତ ଓ ତଳସ୍ତରରେ ଅକ୍ଷମାଳା ରହିଛି ('ପୁରୀ ବୋଲି') । ସୂର୍ଯ୍ୟବଂଶର ରାଜା ପୁରୁଷୋତ୍ତମ ଦେବ ଏହି ମୂର୍ତ୍ତିକୁ କାଞ୍ଚିରୁ ଆଣିଥିଲେ ବୋଲି କୁହାଯାଏ ।) |

| | | |
|---|---|---|
| ୩୭ । | ସାକ୍ଷୀଗୋପାଳ ମନ୍ଦିର | ରାଧାକୃଷ୍ଣ |
| ୩୮ । | ମଣ୍ଡଣି ଘର | ଗୋପେଶ୍ୱର ମହାଦେବ, ନନ୍ଦ, ଯଶୋଦା, ବସୁଦେବ, ଦେବକୀ, ଦାମ, ସୁଦାମ, ବଳରାମ, ଗୋପାଳ, ନୃସିଂହ, ରାମଚନ୍ଦ୍ର, ହନୁମାନ ଏବଂ ଅନବସର ତାଟ ଦିଅଁ । |
| ୩୯ । | ବେଣୁମାଧବ ମନ୍ଦିର | କୃଷ୍ଣ |
| ୪୦ । | ବିମଳା ମନ୍ଦିର | ବିମଳା ଠାକୁରାଣୀ (କାନ୍ଥରେ - ଦଶମହାବିଦ୍ୟା, ଗଣେଶ, କାର୍ତ୍ତିକେୟ, ଛାୟା ଓ ମାୟାଚିତ୍ର), ନାଟ ମନ୍ଦିରର କାନ୍ଥରେ ଉଲଗ୍ନ ଭୈରବୀ ମୂର୍ତ୍ତି । ଏହି ମନ୍ଦିର ଚୋଡଗଙ୍ଗଦେବଙ୍କ ସମୟରେ ନିର୍ମିତ ବୋଲି କୁହାଯାଏ । ବିମଳା ଠାକୁରାଣୀଙ୍କ ସମ୍ପର୍କରେ ମତ୍ସ୍ୟପୁରାଣ, କପିଳ ସଂହିତା, ସ୍କନ୍ଦ ପୁରାଣ, ତନ୍ତ୍ର ଚୂଡାମଣି, ଦେବୀ ଭାଗବତ ପ୍ରଭୃତି ଗ୍ରନ୍ଥରେ ଉଲ୍ଲେଖ ଅଛି । ବିମଳା ଓ ଜଗନ୍ନାଥ, ଭୈରବୀ ଓ ଭୈରବ ବୋଲି ତନ୍ତ୍ରଶାସ୍ତ୍ରରେ କୁହାଯାଇଛି । ଦେବୀ ସତୀଙ୍କ ଶରୀରାଂଶ ଏଠାରେ ପତିତ ହୋଇଛି । କିନ୍ତୁ ଶରୀରର କେଉଁଅଂଶ, ସେ ନେଇ ମତୈକ୍ୟର ଅଭାବ ପରିଲକ୍ଷିତ ହୁଏ । ଏହା ଭାରତର ଏକ ପ୍ରସିଦ୍ଧ ଶକ୍ତି ପୀଠ । ଜଗନ୍ନାଥଙ୍କ ପ୍ରସାଦ ବିମଳାଙ୍କୁ ସମର୍ପଣ ହୁଏ । ସମର୍ପଣ ପରେ ହିଁ ଏହା ମହାପ୍ରସାଦ ପଦବାଚ୍ୟ ହୁଏ ବୋଲି କେହି କେହି ମତ ଦେଇଛନ୍ତି । |
| ୪୧ । | ଚକ୍ର ନାରାୟଣ ବା ବଦ୍ରିନାରାୟଣ | ନାରାୟଣ |
| ୪୨ । | ଗୋଲୋକ ବିହାରୀ ଠାକୁର (ସରଘର) | କୃଷ୍ଣ |
| ୪୩ । | ରୋହିଣୀକୁଣ୍ଡ | ଚତୁର୍ଭୁଜ କାକ ଓ ବିଷ୍ଣୁ ପାଦପଦ୍ମ |
| ୪୪ । | ନାଟୁଆ ଗଣେଶ (କାଞ୍ଚିଖୁରି ଗଣେଶ) | ବିମଳା ମନ୍ଦିର ସାମନାରେ ଦକ୍ଷିଣ ଦିଗକୁ ମୁଖ ଥାଇ ମନ୍ଦିର । ମୁଗୁନି ପଥରରେ ନିର୍ମିତ ସୁନ୍ଦର ଗଣେଶ ବିଗ୍ରହ; ମୂଷିକ ବାହନ ଉପରେ ନୃତ୍ୟରତ ଅଷ୍ଟଭୁଜ ଗଣେଶ । |

| | | |
|---|---|---|
| ୪୫ । | ଶ୍ରୀନୃସିଂହ ମନ୍ଦିର (ମୁକ୍ତିମଣ୍ଡପ ପାର୍ଶ୍ୱରେ) | ନୃସିଂହ ଠାକୁର । ଏହାଙ୍କ ସେବକ ହେଉଛନ୍ତି ପତିମହାପାତ୍ର ,ଏବର ଶ୍ରୀମନ୍ଦିର ନିର୍ମାଣ ପୂର୍ବରୁ ଏହି ମନ୍ଦିର ନିର୍ମିତ ହୋଇଥିବା ଜଣାଯାଏ । ବାହାର କାନ୍ଥରେ ପ୍ରାଚୀନ ଶିଳାଲିପି ଅଛି । |
| ୪୬ । | ମୁକ୍ତିମଣ୍ଡପ (ବ୍ରହ୍ମାସନ) | ଗଣେଶ ଓ କାଳୀ<br>(ସ୍ୱତ୍ୱଲିପି ଅନୁଯାୟୀ ମୁକ୍ତିମଣ୍ଡପ ଉପରେ ପୁରୀ ଜିଲ୍ଲାର ରାହାଙ୍ଗ ପ୍ରଗଣାର ଦଶ ଶାସନ, ଲେମ୍ବୋଇର ଛଅ ଓ ସିରୋଇର ସାତ ଶାସନର ବ୍ରାହ୍ମଣମାନଙ୍କର ବସିବାର ଅଧିକାର ଅଛି । ଏମାନଙ୍କ ବ୍ୟତୀତ ଦଣ୍ଡୀ ସନ୍ନ୍ୟାସୀ, ରାଜଗୁରୁ, ରାୟଗୁରୁ ଓ ଦେଉଳ ପୁରୋହିତ ବସି ପାରିବେ । ଦେଉଳ ପୁରୋହିତ ମୁକ୍ତିମଣ୍ଡପର ଅଧିକାରୀ କିନ୍ତୁ ବର୍ତ୍ତମାନ ସମ୍ପାଦକଙ୍କ ଦ୍ୱାରା କାର୍ଯ୍ୟନିର୍ବାହ ହେଉଛି ବୋଲି ସ୍ୱତ୍ୱଲିପିରେ ଲେଖାଅଛି । ମୁକ୍ତିମଣ୍ଡପର ଗଣେଶଙ୍କୁ ପୂଜାପଣ୍ଡା ଭୋଗ କରନ୍ତି । ଏହି ମଣ୍ଡପର କାଳୀଙ୍କ ପାଶେ ଦୁଇଥାଳି ମହାପ୍ରସାଦ ଆସି ସମର୍ପଣ ହୁଏ । ସମର୍ପଣ ପରେ ମଣ୍ଡପର ବ୍ରାହ୍ମଣମାନେ ପାଆନ୍ତି ।<br>ମୁକ୍ତି ମଣ୍ଡପର ଲମ୍ବ ଓ ଓସାର ୩୮ ଫୁଟ x ୩୮ ଫୁଟ । ଏହାର ୧୬ଟି ଖମ୍ବ ରହିଛି । କେବେ ନିର୍ମିତ ସଠିକ୍ ଜଣାଯାଏ ନାହିଁ । ମାଦଳାପାଞ୍ଜିରେ ଉଲ୍ଲେଖ ଅଛି ଯେ ମୋଗଲ ସମ୍ରାଟ ଆକବରଙ୍କ ସେନାପତି ମାନସିଂହଙ୍କ ପତ୍ନୀ ଗୌରୀରାଣୀ ଏହାକୁ ନିର୍ମାଣ କରାଇଥିଲେ । ମତାନ୍ତରେ ଏହା ସୂର୍ଯ୍ୟବଂଶର ରାଜା ପ୍ରତାପରୁଦ୍ର ଦେବ ନିର୍ମାଣ କରାଇଥିଲେ ।) |
| ୪୭ । | ମୁକ୍ତେଶ୍ୱର | ଶିବ |
| ୪୮ । | ଅନନ୍ତ ବାସୁଦେବ ମନ୍ଦିର | କୃଷ୍ଣ |
| ୪୯ । | କ୍ଷେତ୍ରପାଳ | ମହାଦେବ |
| ୫୦ । | କୁତ୍ତାମ ଚଣ୍ଡୀ | ଚଣ୍ଡୀ<br>(କ୍ଷେତ୍ରପାଳ ମନ୍ଦିରର ପୂର୍ବପଟ କାନ୍ଥ ଦେହରେ |

| | | |
|---|---|---|
| | | କୁକୁର ଉପରେ ବିରାଜିତା ପଥରର ଏକ ଦେବୀମୂର୍ତ୍ତି । ଦେବୀ ଦ୍ୱିଭୁଜା; ଗୋଟିଏ ହାତରେ ଖଡ଼ଗ ଓ ଅନ୍ୟ ହାତରେ ଖର୍ପର । ମୂର୍ତ୍ତିଟି ଏକ ଛୋଟ ବଖରାରେ ରହିଛନ୍ତି । ଏହି ମୂର୍ତ୍ତିକୁ କୁତ୍ତାମଚଣ୍ଡୀ ବା କୁଟାମଚଣ୍ଡୀ କୁହାଯାଉଛି । ଅନନ୍ତ ବାସୁଦେବ ମନ୍ଦିରର ଉତ୍ତରପାର୍ଶ୍ୱ କାନ୍ଥ ଦେହରେ ଶ୍ରୀମନ୍ଦିରର (ଜଗମୋହନ ଆଡ଼କୁ ମୁହଁ କରି) ଏକ ପଥରର କୁକୁର ମୂର୍ତ୍ତି ବିଦ୍ୟମାନ । କୁକୁର ଉପରେ ବିରାଜିତା ଦେବୀମୂର୍ତ୍ତି କୁତ୍ତାମଚଣ୍ଡୀ କି ଏହି କୁକୁର ମୂର୍ତ୍ତି କୁତ୍ତାମଚଣ୍ଡୀ ତାହା ସଠିକ୍ ଜଣାପଡୁନାହିଁ । ଅନନ୍ତ ବାସୁଦେବ ମନ୍ଦିରର ପୂଜକ (ସେବକ) ଏହି ଉଭୟ ମୂର୍ତ୍ତିଙ୍କୁ ପୂଜା କରନ୍ତି । ପ୍ରତିଦିନ ବଳଭଦ୍ରଙ୍କ ବାଡ଼ର ଥାଳି ଖେଚୁଡ଼ି କୁତ୍ତାମଚଣ୍ଡୀଙ୍କୁ ସମର୍ପଣ କରାଯାଏ) । |
| ୫୧ । | ସୂର୍ଯ୍ୟଯନ୍ତ୍ର ମନ୍ଦିର | ସୂର୍ଯ୍ୟଙ୍କର ଯନ୍ତ୍ର (ପ୍ରତିଦିନ ଏଠାରେ ସୂର୍ଯ୍ୟପୂଜା ହୁଏ) |
| ୫୨ । | ପଞ୍ଚପାଣ୍ଡବ ମନ୍ଦିର (ପ୍ଲଟ୍ ନଂ.୯୦) | ମାର୍କଣ୍ଡେଶ୍ୱର, ଯମେଶ୍ୱର ଓ ଲୋକେଶ୍ୱର ଅଛନ୍ତି |
| ୫୩ । | ବଟକୃଷ୍ଣ (ପ୍ଲଟ୍ ନଂ.୯୨) | କୃଷ୍ଣ |
| ୫୪ । | ପଞ୍ଚପାଣ୍ଡବ (ପ୍ଲଟ୍ ନଂ.୯୧-କ) ଓ ପଞ୍ଚପାଣ୍ଡବ (ପ୍ଲଟ୍ ନଂ.୯୩) | ପଞ୍ଚଶିବ ଲିଙ୍ଗ (ଉଭୟ ସ୍ଥାନରେ) |
| ୫୫ । | ବରାହ ନାରାୟଣ (ପ୍ଲଟ ନଂ.୯୧) | ବରାହ ଅବତାର |
| ୫୬ । | ରାଧାକୃଷ୍ଣ (ପ୍ଲଟ୍ ନଂ.୯୪-କ) | ରାଧା ଓ କୃଷ୍ଣ |
| ୫୭ । | ବଟ ପତିତପାବନ (ବଟ ଅବକାଶ) ଏଠାରେ ସରଘର, ପାଣିକୁଣ୍ଡ ଅଛି । ପୁରାଣ ପଢ଼ାଯାଏ । | ଜଗନ୍ନାଥ |
| ୫୮ । | ବାଳମୁକୁନ୍ଦ | ବାଳକୃଷ୍ଣ |
| ୫୯ । | ବଟକୃଷ୍ଣ (ପ୍ଲଟ ନ.୯୯) | କୃଷ୍ଣ |
| ୬୦ । | ବଟମଙ୍ଗଳା ମନ୍ଦିର | ମଙ୍ଗଳା ଠାକୁରାଣୀ |

| | | |
|---|---|---|
| ୬୧ । | ପାଦପଦ୍ମ | କୃଷ୍ଣ ପାଦପଦ୍ମ |
| ୬୨ । | ହରି ସହଦେବ ମନ୍ଦିର | ଶିବଲିଙ୍ଗ |
| ୬୩ । | ମେର୍ଦ୍ଧା ରୋଷଘର (ପୁରୁଣା ରୋଷଘର । ସତ୍ୟନାରାୟଣ ମନ୍ଦିର ପଛପଟେ) | (କାନ୍ଥରେ) ଚିତ୍ର ଗଣେଶ, ମହାବୀର ଓ ସରସ୍ୱତୀ ମୂର୍ତ୍ତି |
| ୬୪ । | ବଟକୃଷ୍ଣ ମନ୍ଦିର (ପ୍ଲଟ୍ ନଂ.୧୧୧) | କୃଷ୍ଣ |
| ୬୫ । | ରାଧାକୃଷ୍ଣ (ରାଧାରମଣ) | ରାଧା ଓ କୃଷ୍ଣ |
| ୬୬ । | ସତ୍ୟନାରାୟଣ ମନ୍ଦିର (ପ୍ଲଟ୍ ନଂ.୧୧୩) | ନାରାୟଣ (ଚତୁର୍ଭୁଜ ମୂର୍ତ୍ତି । ଉପର ଡାହାଣ ହାତରେ ଚକ୍ର, ଉପର ବାମ ହାତରେ ଶଙ୍ଖ, ତଳ ଡାହାଣ ହାତରେ ଅଭୟ ମୁଦ୍ରା ଓ ତଳ ବାମ ହାତରେ ଗଦା ଧରିଛନ୍ତି । କର୍ଣ୍ଣରେ କୁଣ୍ଡଳ, ବେକରେ ହାର ଓ ହାତରେ ଖଡୁ ଅଛି । ଦୁଇ ଦିଗରେ ଜୟ ଓ ବିଜୟ; ତଳେ ନତଜାନୁ ହୋଇ ଗରୁଡ଼ । ମୁଗୁନି ପଥରର ବିଗ୍ରହ । ଉଚ୍ଚତା ପାଞ୍ଚଫୁଟ ହେବ । ମନ୍ଦିରର ମୁହଁ ଉତ୍ତର ଦିଗକୁ ।) |
| ୬୭ । | ଅଗ୍ନିଶ୍ୱର ମନ୍ଦିର | ଶିବଲିଙ୍ଗ (ଭୋଗ ମଣ୍ଡପ ଠାରୁ ପାକଶାଳା ପର୍ଯ୍ୟନ୍ତ ଯେଉଁ ରାସ୍ତା ଅଛି ତା'ପାଖରେ ଆଗ୍ନେୟ କୋଣରେ ଏହି ମନ୍ଦିର ଅଛି । ତାଙ୍କୁ ରୋଷଘରର ଅଗ୍ନିର ରକ୍ଷକ ମନେ କରାଯାଏ) |
| ୬୮ । | ବୃନ୍ଦାବନ ଚନ୍ଦ୍ର ମନ୍ଦିର (ସରଘର) | କୃଷ୍ଣ |
| ୬୯ । | ବଟଗଣେଶ (ଦକ୍ଷିଣକୁ ମୁଖ କରି ବଟ ଗଣେଶ ମନ୍ଦିର । ଆଗରେ ମୂଷିକ ଅବସ୍ଥିତ, କମନୀୟ ମୂର୍ତ୍ତି) | ଗଣେଶ |
| ୭୦ । | ସୀତା-ରଘୁନାଥ (ସରଘର) | ସୀତା ଓ ରଘୁନାଥ |
| ୭୧ । | ତ୍ରେତୟାଦେବ ମନ୍ଦିର | ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର ଓ ଦେବୀ ସୁଭଦ୍ରା |

| | | |
|---|---|---|
| ୭୨ । | ଚକାଗୋପାଳ ଠାକୁର (ସରଘର) | କୃଷ୍ଣ |
| ୭୩ । | ଚୈତନ୍ୟ ମନ୍ଦିର | ଚୈତନ୍ୟ |
| ୭୪ । | ଶୁଆଶାରୀ ଦେଉଳ | ରାମଚନ୍ଦ୍ର |
| ୭୫ । | ଶ୍ୟାମରାଈ (ପ୍ରତିହାରୀ ନିଯୋଗ କାର୍ଯ୍ୟାଳୟ) | ଶ୍ୟାମରାଈ ଓ ଅନନ୍ତ ବାସୁଦେବ |
| ୭୬ । | ବିମାନ ସରଘର | ମହାବୀର |
| ୭୭ । | ସତ୍ୟନାରାୟଣ (ପ୍ଲଟ ନଂ. ୧୩୦) | ନାରାୟଣ |
| ୭୮ । | ପାଦପଦ୍ମ ଓ ଚଉତରା | ଚୈତନ୍ୟ ପାଦପଦ୍ମ |
| ୭୯ । | ଗର୍ବ ଗଞ୍ଜନ ମହାବୀର (ଭିତର ବେଢ଼ା ଗୁମୁଟ) | ମହାବୀର (ହନୁମାନ) |

❒❒❒




# ଶ୍ରୀମନ୍ଦିର ବାହାରର ଅନ୍ୟାନ୍ୟ ପୀଠ

**ଶ୍ରୀ**ମନ୍ଦିର ପରିସର ବାହାରେ କେତେଗୁଡ଼ିଏ ମନ୍ଦିର ରହିଛି, ଯାହା ସହିତ ଶ୍ରୀମନ୍ଦିରର କର୍ମିକର୍ମାଣିର ସମ୍ପର୍କ ରହିଛି । ସେଗୁଡ଼ିକ ହେଲା :-

## ପଞ୍ଚପାଣ୍ଡବ (ପଞ୍ଚ ମହାଦେବ)

ପୁରୀରେ ଥିବା ଅନେକ ଶିବ ମନ୍ଦିର ମଧ୍ୟରୁ ପାଞ୍ଚଟି ଶିବ ମନ୍ଦିର ସହ ଶ୍ରୀମନ୍ଦିର ନୀତିର ସମ୍ପର୍କ ରହିଛି । ସେ ଗୁଡ଼ିକ ହେଲା (କ) ଶ୍ରୀଲୋକନାଥ (ଶ୍ରୀମନ୍ଦିରଠାରୁ ପ୍ରାୟ ଦୁଇ କିଲୋମିଟର ଦୂରରେ ଅବସ୍ଥିତ, ପଶ୍ଚିମ ଦିଗରେ) । ଶ୍ରୀକ୍ଷେତ୍ର ପୁରୀ ଅତୀତରେ ଏକ ପ୍ରଧାନ ଶୈବପୀଠ ଥିଲା ବୋଲି କୁହାଯାଏ । ଶ୍ରୀଲୋକନାଥ ଠାକୁରଙ୍କ 'ଲିଙ୍ଗ' ପ୍ରଭୁ ଶ୍ରୀରାମଚନ୍ଦ୍ର ପ୍ରତିଷ୍ଠା କରିଥିବା କିମ୍ବଦନ୍ତୀ କହେ । ଏହା ବର୍ଷତମାମ ଜଳରେ ବୁଡ଼ି ରହିଥାଏ । କେବଳ ଶିବରାତ୍ରି ପୂର୍ବରୁ ପଙ୍କୋଦ୍ଧାର ଏକାଦଶୀ ଦିନ ଜଳ ନିଷ୍କାସନ କରାଯାଏ । ଫଳରେ ହଜାର ହଜାର ଭକ୍ତ ଶିବଲିଙ୍ଗ ଦର୍ଶନର ସୁଯୋଗ ପାଆନ୍ତି ।

ଶ୍ରୀଲୋକନାଥଙ୍କ ବିଜେ ପ୍ରତିମା ଶ୍ରୀମନ୍ଦିରର ଭଣ୍ଡାର ଘରେ ରହନ୍ତି । ସେ ଶ୍ରୀମନ୍ଦିର ରତ୍ନଭଣ୍ଡାରର ରକ୍ଷକ (ଶ୍ରୀମନ୍ଦିର ସହିତ ଶ୍ରୀଲୋକନାଥ ମନ୍ଦିରର ପର୍ବପର୍ବାଣିଜନିତ ସମ୍ପର୍କପାଇଁ ଷଷ୍ଠ ଅଧ୍ୟାୟ ଦ୍ରଷ୍ଟବ୍ୟ ।) (ଖ) ଶ୍ରୀଯମେଶ୍ୱର, (ଗ) ଶ୍ରୀମାର୍କଣ୍ଡେୟ ବା ମାର୍କଣ୍ଡେଶ୍ୱର, (ଘ) ଶ୍ରୀକପାଳମୋଚନ, (ଙ) ଶ୍ରୀନୀଳକଣ୍ଠ । ଏହି ପଞ୍ଚ ମହାଦେବ ପୃଥକ ପୃଥକ ଭାବରେ ଶ୍ରୀମନ୍ଦିରର କେତେକ ନୀତି ଓ ପର୍ବ ସହିତ ସମ୍ପୃକ୍ତ । କିନ୍ତୁ ସାମୂହିକ ଭାବରେ ଶ୍ରୀମନ୍ଦିରର ଦୁଇଟି ପର୍ବ- ଚନ୍ଦନଯାତ୍ରା ଓ ଶୀତଳଷଷ୍ଠୀ ସହ ଯୁକ୍ତ । ଏହି ପଞ୍ଚ ମହାଦେବଙ୍କୁ ପଞ୍ଚପାଣ୍ଡବ ଭାବରେ  ନାମିତ କରାଯିବାରେ ତାତ୍ପର୍ଯ୍ୟ ରହିଛି । ଦ୍ୱାପର ଯୁଗରେ ଦ୍ୱାରକାରେ କୃଷ୍ଣ ଓ ବଳରାମ ସେମାନଙ୍କର ଆତ୍ମୀୟ ଯୁଧିଷ୍ଠିରଙ୍କ ସମେତ ଅନ୍ୟାନ୍ୟ ପାଣ୍ଡବଙ୍କୁ ସାଥିରେ ନେଇ ଚନ୍ଦନରାସ, ନୌକାବିହାର କରୁଥିଲେ । ଶ୍ରୀକ୍ଷେତ୍ରରେ ଶ୍ରୀଜଗନ୍ନାଥ କୃଷ୍ଣ-ବାସୁଦେବ ଭାବରେ ଉପାସିତ । ତାଙ୍କର କେତୋଟି ପର୍ବ, ବିଶେଷତଃ ଚନ୍ଦନ ଯାତ୍ରାରେ ପାଣ୍ଡବଙ୍କ ପରି ଯୋଗଦାନ କରି ସଖ୍ୟ ପ୍ରଦାନ କରିଥିବାରୁ ପଞ୍ଚମହାଦେବଙ୍କୁ ପଞ୍ଚପାଣ୍ଡବ ନାମିତ କରାଯାଇଥିବ । ଏହି ପଞ୍ଚୁପାଣ୍ଡବ କିଏ କେଉଁ ପାଣ୍ଡବ, ତାହା ନିମ୍ନରେ ଦର୍ଶାଗଲା :

ଶ୍ରୀ ଯମେଶ୍ୱର - ଯୁଧିଷ୍ଠିର

ଶ୍ରୀ ଲୋକନାଥ - ଭୀମ (ମତାନ୍ତରରେ ଅର୍ଜୁନ)

ଶ୍ରୀ ମାର୍କଣ୍ଡେୟ - ଅର୍ଜ୍ଜୁନ (ମତାନ୍ତରେ ଭୀମ)

ଶ୍ରୀ କପାଳମୋଚନ - ନକୁଳ

ଶ୍ରୀ ନୀଳକଣ୍ଠ - ସହଦେବ

ଶ୍ରୀଯମେଶ୍ୱର ହେଉଛନ୍ତି ଶ୍ରୀ ଜଗନ୍ନାଥଙ୍କର ହିସାବରକ୍ଷକ । ଶ୍ରୀକ୍ଷେତ୍ରରେ ଭଗବାନ ଶିବ ଯମଙ୍କ ଅଧିକାରକୁ ଖାରଜ କରିଦେଇଥିବାରୁ ତାଙ୍କର ନାମ ଯମେଶ୍ୱର ହୋଇଛି ବୋଲି କୁହାଯାଏ । ଶ୍ରୀକ୍ଷେତ୍ରରେ ଦେହତ୍ୟାଗ କଲେ ଯମଦଣ୍ଡ ମିଳେନାହିଁ ବୋଲି ବିଶ୍ୱାସ କରାଯାଏ । କିମ୍ବଦନ୍ତୀ ଅଛି ଯେ, ଶ୍ରୀକପାଳମୋଚନ ମନ୍ଦିରରେ ବିରାଜିତ ଶ୍ରୀଗଣେଶଙ୍କୁ ପୂଜା କରାଯାଇ ଶ୍ରୀଜଗନ୍ନାଥ ମନ୍ଦିରର ନିର୍ମାଣ କାର୍ଯ୍ୟ ଆରମ୍ଭ କରାଯାଇଥିଲା । କେତେଜଣ ଗବେଷକ ଅନୁମାନ କରନ୍ତି ଯେ, ଏହି ପଞ୍ଚ ମହାଦେବ ମନ୍ଦିରମାନଙ୍କରେ ଶିବଲିଙ୍ଗମାନ ଶ୍ରୀମନ୍ଦିର ନିର୍ମାଣ ପୂର୍ବରୁ ପ୍ରତିଷ୍ଠିତ ହୋଇଥିଲେ । ସେହି ମନ୍ଦିରମାନଙ୍କରେ ଶୈବ ତପସ୍ୱୀମାନେ ରହିଥିଲେ ।

ଦ୍ୱାଦଶ ଶତାବ୍ଦୀରେ ଗଙ୍ଗବଂଶର ଶ୍ରେଷ୍ଠ ରାଜା ଚୋଡ଼ଗଙ୍ଗ ଦେବ ଶିବ ଓ ବିଷ୍ଣୁଙ୍କର ଉପାସକ ଥିବା ଜଣାଯାଏ । ସେ ନିଜକୁ 'ପରମ ମାହେଶ୍ୱର' 'ପରମବୈଷ୍ଣବ' ଓ 'ପରମବ୍ରହ୍ମଣ୍ୟ' ଏପରି ତିନୋଟି ଉପାଧିରେ ଭୂଷିତ କରିଥିଲେ । ହୁଏତ ତାଙ୍କର ପ୍ରଚେଷ୍ଟାରେ ଓଡ଼ିଶାରେ 'ହରିହର' ଅର୍ଥାତ୍ ବିଷ୍ଣୁ ଓ ଶିବ ଉପାସନାର ପ୍ରସାରଣ କରାଯାଇଥିବ । ପୁରୀର ଶ୍ରୀ ଜଗନ୍ନାଥ ମନ୍ଦିର ଓ ଭୁବନେଶ୍ୱରର ଲିଙ୍ଗରାଜ ମନ୍ଦିରକୁ ହରିହର ଉପାସନାର ଦୁଇଟି ପ୍ରମୁଖ ପୀଠ କହିଲେ ଅତ୍ୟୁକ୍ତି ହେବନାହିଁ ।

## ଗୁଣ୍ଡିଚା ମନ୍ଦିର/ଗୁଣ୍ଡିଚା ଘର

ଏହା ଶ୍ରୀମନ୍ଦିରର ଏକ ନକଲ, କିନ୍ତୁ ଆୟତନରେ କମ୍ । ଶ୍ରୀମନ୍ଦିର ପ୍ରଶାସନର ପରିଚାଳନାଧୀନ । ଏଠାରେ ଗୁଣ୍ଡିଚା ଓ ବାହୁଡ଼ାକୁ ଛାଡ଼ିଦେଲେ ଦିଅଁମାନେ ସର୍ବାଧିକ ସାତଦିନ ଅବସ୍ଥାନ କରନ୍ତି । ଏହି ମନ୍ଦିରର ରତ୍ନବେଦୀକୁ 'ଆଡ଼ପମଣ୍ଡପ' କୁହାଯାଏ । ଆଷାଢ଼ ମାସ ଶୁକ୍ଳ ନବମୀ ଦିନ ଏହି ଆଡ଼ପ ମଣ୍ଡପରେ ଦିଅଁଙ୍କୁ ଦର୍ଶନ କରି (ସନ୍ଧ୍ୟା ଦର୍ଶନ) ମହାପ୍ରସାଦ ସେବନ କଲେ ମହାପୁଣ୍ୟ ଲାଭ ହୁଏ ବୋଲି ବିଶ୍ୱାସ କରାଯାଏ । ଏହି ମଣ୍ଡପକୁ ମଧ୍ୟ 'ରାସମଣ୍ଡପ' ଓ ଗୁଣ୍ଡିଚାଘରକୁ ମହାପ୍ରଭୁଙ୍କ 'ରାସସ୍ଥଳୀ' ମଧ୍ୟ କୁହାଯାଏ । ଏହି ମନ୍ଦିରର ମୋଟ କ୍ଷେତ୍ରଫଳ ୫.୪୦୨ ଏକର ।

## ଶ୍ରୀନୃସିଂହ ମନ୍ଦିର

ଶ୍ରୀଗୁଣ୍ଡିଚା ମନ୍ଦିରର ଉତ୍ତର-ପୂର୍ବ ବେଢ଼ା ପାର୍ଶ୍ୱରେ ଅବସ୍ଥିତ ନୃସିଂହ ମନ୍ଦିରକୁ ଯଜ୍ଞମଣ୍ଡପ କୁହାଯାଏ । କିମ୍ବଦନ୍ତୀ ପ୍ରକାରେ ଚତୁର୍ଦ୍ଧାମୂର୍ତ୍ତିଙ୍କ ଆବିର୍ଭାବପାଇଁ ରାଜା ଇନ୍ଦ୍ରଦ୍ୟୁମ୍ନ ଏହି ସ୍ଥାନରେ ନୃସିଂହଙ୍କୁ ପ୍ରତିଷ୍ଠା କରି ଅଶ୍ୱମେଧ ଯଜ୍ଞ କରିଥିଲେ ।

## ମାଉସୀ ମା' ବା ଅର୍ଦ୍ଧାଶନୀ

ଗୁଣ୍ଡିଚାଘର ଓ ବଡ଼ଦେଉଳ ମଝିରେ ବଳଗଣ୍ଡି ନିକଟରେ ବଡ଼ଦାଣ୍ଡର ପୂର୍ବଦିଗରେ ମାଉସୀମା'ଙ୍କର ଦେଉଳ ଅବସ୍ଥିତ । କିମ୍ବଦନ୍ତୀ କହେ ଯେ, ମହାପ୍ରଳୟ କାଳରେ ପ୍ରଳୟର ଅର୍ଦ୍ଧାଂଶ

ଜଳ ଏହି ଦେବୀ ଅଶନ (ଭକ୍ଷଣ) କରିଥିବାରୁ ଏହାଙ୍କ ନାମ ହେଲା ଅର୍ଦ୍ଧାଶନୀ । ବାହୁଡ଼ା ଯାତ୍ରା ଦିନ ଶ୍ରୀଜଗନ୍ନାଥଙ୍କ ନନ୍ଦିଘୋଷ ରଥ ଏଠାରେ କିଛି ସମୟ ଅଟକେ ଏବଂ ମାଉସୀ ମା’ ମନ୍ଦିର ତରଫରୁ ପୋଡ଼ପିଠା ଭୋଗ ହୁଏ ।

## ଆଲାମଚଣ୍ଡୀ ମନ୍ଦିର

ପୁରୀର କୁମ୍ଭାରପଡ଼ା ଅଞ୍ଚଳରେ ଅବସ୍ଥିତ । ମକର ସଂକ୍ରାନ୍ତି ଓ ସାତପୁରି ଅମାବାସ୍ୟା ଦିନ ଏହି ମନ୍ଦିରର ଠାକୁରାଣୀଙ୍କ ନିକଟକୁ ଘଣ୍ଟ, ଛତା, କାହାଳୀ ଯାଇ ତାଡ଼ମାନଙ୍କୁ ଅଣାଯାଏ । ନବକଳେବର ବେଳେ ଏହି ବାଟ ଦେଇ ଦାରୁ ଶଗଡ଼ି ନିଆଗଲେ, ଏଠାରେ ତାହା କିଛି ଘଣ୍ଟା ବିଶ୍ରାମ ନିଏ ।

## ଦକ୍ଷିଣକାଳୀ ମନ୍ଦିର

ଶ୍ରୀମନ୍ଦିରର ପୂର୍ବ ଦିଗରେ କାଳିକା ଦେବୀ ସାହିରେ ଦକ୍ଷିଣକାଳୀ ମନ୍ଦିର ଅବସ୍ଥିତ । ସାତପୁରି ଅମାବାସ୍ୟା ଦିନ ଶ୍ରୀଜଗନ୍ନାଥଙ୍କ ଆଜ୍ଞାମାଳ ଏହି ମନ୍ଦିରକୁ ଆସେ ।

## ନାରାୟଣୀ ମନ୍ଦିର

ଦୋଳମଣ୍ଡପ ସାହିରେ ଅବସ୍ଥିତ । ଆଶ୍ୱିନ ମାସ ଷୋଳପୂଜାରେ ଦୁର୍ଗା ଓ ମାଧବଙ୍କ ରୁଦ୍ଧା ମୂର୍ତ୍ତି ଶ୍ରୀମନ୍ଦିରରୁ ନାରାୟଣୀ ମନ୍ଦିରକୁ ବିଜେ କରନ୍ତି ।

## ଦରିଆ ମହାବୀର (ବେଡ଼ି ହନୁମାନ)

ବିଷୁବ ସଂକ୍ରାନ୍ତି ଦିନ ଶ୍ରୀ ଜୀଉଙ୍କ ଆଜ୍ଞାମାଳ ବିଧିବିଧାନପୂର୍ବକ ଏହି ମହାବୀରଙ୍କୁ ପ୍ରଦାନ କରାଯାଏ ।

## ଚର୍ଚ୍ଚିକା ମନ୍ଦିର

ବଡଦାଣ୍ଡ କଡ଼ରେ ଶ୍ରୀ ଜଗନ୍ନାଥ ମନ୍ଦିର ମୁଖ୍ୟ କାର୍ଯ୍ୟାଳୟ ପାର୍ଶ୍ୱରେ ଅବସ୍ଥିତ । ବଢ଼େଇ ଓ ଭୋଇ ସେବକମାନେ ଠାକୁରାଣୀଙ୍କୁ ରଥନିର୍ମାଣ ବେଳେ ପୂଜାର୍ଚ୍ଚନା କରନ୍ତି ।

## ଚକ୍ରତୀର୍ଥ ନାରାୟଣ

ଚକ୍ରତୀର୍ଥ ଅଞ୍ଚଳରେ ସମୁଦ୍ରକୂଳରେ ଅବସ୍ଥିତ । ବୈଶାଖ ଶୁକ୍ଳ ଚତୁର୍ଦ୍ଦଶୀ ଦିନ ଶ୍ରୀନୃସିଂହ ଜନ୍ମ ଅବସରରେ ଶ୍ରୀଜୀଉଙ୍କ ଆଜ୍ଞାମାଳ ଚକ୍ରତୀର୍ଥ ନାରାୟଣଙ୍କୁ ପ୍ରଦାନ କରାଯାଏ ।

## ଶ୍ୟାମାକାଳୀ ଠାକୁର

ପୁରୁଣା ବାଲିସାହି ନଅର ଅଞ୍ଚଳରେ ଅବସ୍ଥିତ । ପୁରୀ ରାଜାଙ୍କ ଆରାଧ୍ୟା ଠାକୁରାଣୀ । ଏହି ଅଞ୍ଚଳରେ ମଧ୍ୟ ପ୍ରସିଦ୍ଧ **ଅଷ୍ଟଶମ୍ଭୁ** ବିଦ୍ୟମାନ ।

## କନକଦୁର୍ଗା ଠାକୁରାଣୀ

ଗଜପତିଙ୍କ ନଅର ପରିସରରେ ଏହି ମନ୍ଦିର ଅବସ୍ଥିତ । ରାଜାଙ୍କ ଇଷ୍ଟଦେବୀ । ଠାକୁରାଣୀଙ୍କ ଭୋଗପାଇଁ ଦ୍ରବ୍ୟ ଶ୍ରୀମନ୍ଦିର ପ୍ରଶାସନ ତରଫରୁ ଯୋଗାଯାଏ ।

## ସିଦ୍ଧ ହନୁମାନ ମନ୍ଦିର

ଗୁଣ୍ଡିଚା ଘର ପଛପଟେ କିଛି ଦୂରରେ ଅବସ୍ଥିତ । ବିଶ୍ୱାସ କରାଯାଏ, ପ୍ରସିଦ୍ଧ କବି ତୁଳସୀ ଦାସ ଶ୍ରୀକ୍ଷେତ୍ର ଦର୍ଶନ କରିବାକୁ ଆସି ଏଠାରେ କେତେଦିନ କଟାଇଥିଲେ ।

## ଅନ୍ୟାନ୍ୟ ଠାକୁରାଣୀ ମନ୍ଦିର

ପୁରୀର ଆଉ କେତୋଟି ପ୍ରସିଦ୍ଧ ଠାକୁରାଣୀ ମନ୍ଦିର ହେଲା : ବାରାହି, ଗଛକାଳୀ (ବାଲିସାହି), ବାସେଳି (ବାସେଳି ସାହି), ବନଦୁର୍ଗା (ମଣିକର୍ଣ୍ଣିକା ସାହି), ରାମଚଣ୍ଡୀ (ରେଳଷ୍ଟେସନ ନିକଟ), ହରଚଣ୍ଡୀ (ହରଚଣ୍ଡୀସାହି), ଶ୍ମଶାନଚଣ୍ଡୀ (ସ୍ୱର୍ଗଦ୍ୱାର ନିକଟ), ସପ୍ତମାତୃକା (ମାର୍କଣ୍ଡେଶ୍ୱର ସାହି), ଜାଡୁଆଣି (କୁଣ୍ଡାଇବେଣ୍ଟ ସାହି), ଝାଡେଶ୍ୱରୀ (ଷ୍ଟେସନ୍ ରାସ୍ତା), ଉତ୍ତରକାଳୀ (ମାଟିମଣ୍ଡପ ସାହି), ମଙ୍ଗଳା (ବିମାନବଡୁ ସାହି) ।

ଶ୍ମଶାନଚଣ୍ଡୀ, ବାରାହି, ବାସେଳି, ହରଚଣ୍ଡୀ ଶ୍ରୀମନ୍ଦିରର କୋଠଭୋଗରୁ ଖେଇ ପାଇବା ବ୍ୟବସ୍ଥା ଅଛି ।

## ଜୟଦୁର୍ଗା ମନ୍ଦିର (ଭାରତୀ କୋଠା)

ବଡ଼ଦାଣ୍ଡ କଡ଼ରେ ନରେନ୍ଦ୍ର ପୋଖରୀ ନିକଟରେ ଅବସ୍ଥିତ । ଏହି ମନ୍ଦିରର ଦୈନିକ ଓ ପର୍ବଯାତ୍ରା ଭୋଗ ଶ୍ରୀମନ୍ଦିର ପ୍ରଶାସନ ତରଫରୁ ହୁଏ ।

## ତୋଟା ଗୋପୀନାଥ ମନ୍ଦିର

ଯମେଶ୍ୱର ମନ୍ଦିର ନିକଟରେ ଅବସ୍ଥିତ । ଏହା ରସିକାନନ୍ଦ ଗୋସ୍ୱାମୀଙ୍କର ଆଶ୍ରମ ଥିଲା । ଶ୍ରୀକୃଷ୍ଣ ଏଠାରେ ମୁଖ୍ୟ ଆରାଧିତ ଠାକୁର ।

## ସୁନାର ଗୌରାଙ୍ଗ ମନ୍ଦିର

ଚକ୍ରତୀର୍ଥ ଅଞ୍ଚଳରେ ଅବସ୍ଥିତ । ଏକ ରମଣୀୟ ଶ୍ରୀଗୌରକୃଷ୍ଣ (ଗୋପାଳକୃଷ୍ଣ)ଙ୍କର ଅଷ୍ଟଧାତୁର ମୂର୍ତ୍ତି ସହିତ ଅନ୍ୟାନ୍ୟ ଦେବମୂର୍ତ୍ତି ଏଠାରେ ପୂଜା ପାଉଛନ୍ତି ।

## ପଞ୍ଚତୀର୍ଥ

ବନାରସରେ ଯେପରି ପାଞ୍ଚଟି ଗୁରୁତ୍ୱପୂର୍ଣ୍ଣ ତୀର୍ଥ ଅଛି ପୁରୀରେ ମଧ୍ୟ ସେହିପରି ପାଞ୍ଚଟି ତୀର୍ଥ ଅଛି । ଏହାକୁ 'ପଞ୍ଚତୀର୍ଥ' କୁହାଯାଏ । 'ବ୍ରହ୍ମପୁରାଣ'ରେ ଏହି ପଞ୍ଚତୀର୍ଥ ହେଲା- ମାର୍କଣ୍ଡେୟ ପୁଷ୍କରିଣୀ, ବଟମନ୍ଦିର କୃଷ୍ଣ (ଅର୍ଥାତ୍ ଜଗନ୍ନାଥ), ରୋହିଣେୟ (ବଳଭଦ୍ର), ମହୋଦଧି ଓ ଇନ୍ଦ୍ରଦ୍ୟୁମ୍ନ ପୁଷ୍କରିଣୀ । ଏହି ରୋହିଣେୟ 'ରୋହିଣୀକୁଣ୍ଡ' ମଧ୍ୟ ହୋଇପାରେ । 'ସ୍କନ୍ଦ ପୁରାଣ'ରେ ଲେଖାଅଛି- ମାର୍କଣ୍ଡେୟ, କଳ୍ପବୃକ୍ଷ, ଦାରୁବ୍ରହ୍ମ, ମହୋଦଧି ଓ ଇନ୍ଦ୍ରଦ୍ୟୁମ୍ନ ସରୋବର । 'ମୁକ୍ତି ଚିନ୍ତାମଣି' ଓ ହଳଧରକୃତ 'ସ୍ମୃତି ଦର୍ପଣ' ଅନୁସାରେ ପଞ୍ଚତୀର୍ଥ ହେଲା- ମାର୍କଣ୍ଡେୟ ପୁଷ୍କରିଣୀ, ଶ୍ୱେତଗଙ୍ଗା, ରୋହିଣୀକୁଣ୍ଡ, ମହୋଦଧି ଓ ଇନ୍ଦ୍ରଦ୍ୟୁମ୍ନ ସରୋବର । ସାରଳା ଦାସଙ୍କ ମହାଭାରତ (ବନପର୍ବ)ରେ ଉଲ୍ଲେଖ ପ୍ରକାରେ ପଞ୍ଚତୀର୍ଥ ହେଉଛି- ମହୋଦଧି, ରୋହିଣୀକୁଣ୍ଡ, ଶ୍ୱେତଗଙ୍ଗା, ଇନ୍ଦ୍ରଦ୍ୟୁମ୍ନ ଓ ମାର୍କଣ୍ଡେୟ ସରୋବର ।

ଶ୍ରୀମନ୍ଦିର ସ୍ୱତ୍ୱଲିପିରେ ମାର୍କଣ୍ଡେୟ, ଶ୍ୱେତଗଙ୍ଗା, ସମୁଦ୍ର ସ୍ୱର୍ଗଦ୍ୱାର, ଚକ୍ରତୀର୍ଥ ଓ ଇନ୍ଦ୍ରଦ୍ୟୁମ୍ନ ପୁଷ୍କରିଣୀକୁ ପଞ୍ଚତୀର୍ଥ କୁହାଯାଇଛି ।

ପଞ୍ଚତୀର୍ଥ ବ୍ରତର ସଂକଳ୍ପ କରାଯାଇ ଜ୍ୟେଷ୍ଠମାସର ଶୁକ୍ଳ ଦଶମୀଠାରୁ ଆରମ୍ଭ କରି ଦେବସ୍ନାନ ପୂର୍ଣ୍ଣିମା ଦିନ ଉଦ୍‌ଯାପନ କରାଯାଏ । ଆଉ କେତେକ କାର୍ତ୍ତିକମାସ ଶୁକ୍ଳପକ୍ଷ ଦଶମୀ ଠାରୁ ପୂର୍ଣ୍ଣିମା ଯାଏଁ ଏହି ବ୍ରତ ପାଳନ କରନ୍ତି । ପଞ୍ଚତୀର୍ଥରେ ପିଣ୍ଡଦାନ ଓ ମାନସିକ ମୁଣ୍ଡନକ୍ରିୟା (ବାଳପକା) କରାଯାଏ (ରୋହିଣୀକୁଣ୍ଡକୁ ବାଦ୍ ଦେଇ) ।

ମାର୍କଣ୍ଡେୟ ପୁଷ୍କରିଣୀ ଶ୍ରୀମନ୍ଦିରର ଉତ୍ତର-ପଶ୍ଚିମ ଦିଗରେ ଅବସ୍ଥିତ । ଉତ୍ତର, ପୂର୍ବ, ଦକ୍ଷିଣ ଓ ପଶ୍ଚିମ ପାର୍ଶ୍ୱରେ ପୁଷ୍କରିଣୀର ଦୈର୍ଘ୍ୟ ଯଥାକ୍ରମେ ୩୫୦, ୫୦୫, ୩୮୫ ଓ ୫୪୨ ଫୁଟ । ପୁଷ୍କରିଣୀ ତଟରେ ମାର୍କଣ୍ଡେଶ୍ୱର ମନ୍ଦିର, ମୃତ୍ୟୁଞ୍ଜୟ ଲିଙ୍ଗ, ପଞ୍ଚପାଣ୍ଡବ ଓ କାଳୀୟଦଳନ ବିଗ୍ରହ ଅବସ୍ଥିତ । ଏହାର ତଟରେ ସପ୍ତମାତୃକା ମନ୍ଦିର ରହିଛି । ମାଦଳାପାଞ୍ଜି (ସଂ-ଆର୍ତ୍ତବଲ୍ଲଭ)ରେ ଉଲ୍ଲେଖ ଅଛି ଯେ ରାଜା କୋଶଳ କେଶରୀ ମାର୍କଣ୍ଡେଶ୍ୱର ଦେଉଳ ତୋଳାଇଥିଲେ ଓ ପୋଖରୀ ପଶ୍ଚିମ ପଟ ପଥର ପାଚେରୀ କଲେ । (ଆନୁମାନିକ ୮୧୧ରୁ ୮୨୯ ଖ୍ରୀଷ୍ଟାବ୍ଦ ମଧ୍ୟରେ) । ସପ୍ତମାତୃକା ମନ୍ଦିରଟିକୁ ଭୀମକେଶରୀ ନିର୍ମାଣ କରିଥିଲେ ବୋଲି ଉକ୍ତ ପାଞ୍ଜିରେ ଉଲ୍ଲେଖ ଅଛି । ଆନୁମାନିକ ୧୧୦୭ରୁ ୧୧୧୫ ଖ୍ରୀଷ୍ଟାବ୍ଦ ଭିତରେ ଏହି ନିର୍ମାଣ କାର୍ଯ୍ୟ ହୋଇଥିବ ।

ଶ୍ୱେତଗଙ୍ଗା ଶ୍ରୀମନ୍ଦିରର ଦକ୍ଷିଣ-ପୂର୍ବ ଦିଗର ବାଲିସାହିରେ ଅବସ୍ଥିତ । ପୁଷ୍କରିଣୀର ଦୈର୍ଘ୍ୟ ଓ ପ୍ରସ୍ଥ ୨୫୪ ଫୁଟ ଓ ୧୮୦ ଫୁଟ । ତଟରେ ଶ୍ୱେତମାଧବ ଓ ମତ୍ସ୍ୟମାଧବ ନାମକ ନାରାୟଣ ବିଗ୍ରହ ଦ୍ୱୟ ବିରାଜିତ । ମାଦଳାପାଞ୍ଜି ଅନୁସାରେ ରାଜା ଗୋବିନ୍ଦ କେଶରୀ ଏହି ଦୁଇ ଠାକୁରଙ୍କ ପାଇଁ ଦେଉଳ ତିଆରି କରାଇଥିଲେ (ଆନୁମାନିକ ଖ୍ରୀ: ୧୦୦୦ ବେଳକୁ) ।

ଇନ୍ଦ୍ରଦ୍ୟୁମ୍ନ ପୁଷ୍କରିଣୀର ଦୈର୍ଘ୍ୟ ଓ ପ୍ରସ୍ଥ ଯଥାକ୍ରମେ ୪୮୫ ଫୁଟ ଓ ୩୯୬ ଫୁଟ । କିମ୍ବଦନ୍ତୀ କହେ ଯେ ରାଜା ଇନ୍ଦ୍ରଦ୍ୟୁମ୍ନ ଅଶ୍ୱମେଧ ଯଜ୍ଞ କଲାବେଳେ ଅସଂଖ୍ୟ ଗୋରୁଦାନ କରିଥିଲେ । ଏହି ଗୋରୁମାନଙ୍କ ଖୁରା ବାଜି ଭୂମି ଖୋଳି ହୋଇଯାଇ ଏହି ପୁଷ୍କରିଣୀଟି ହୋଇଗଲା । ମନ୍ଦିର ନିର୍ମାଣ ବେଳେ ବଡ଼ ବଡ଼ ପଥର ପିଠିରେ ବୋହି ଯେଉଁ ଲୋକମାନେ ଆଣିଥିଲେ ସେମାନେ କୂର୍ମ ପାଲଟି ଯାଇଥିଲେ । ରାଜା ଇନ୍ଦ୍ରଦ୍ୟୁମ୍ନ ଓ ଗାଳମାଧବଙ୍କ ମଧ୍ୟରେ ମନ୍ଦିର ନିର୍ମାଣ ନେଇ ବିବାଦ ଉପୁଜିବାରୁ ଏହି କୂର୍ମମାନେ, ଯେଉଁମାନେ କି ପୁଷ୍କରିଣୀରେ ରହୁଥିଲେ, ରାଜା ଇନ୍ଦ୍ରଦ୍ୟୁମ୍ନଙ୍କ ସପକ୍ଷରେ ସାକ୍ଷ୍ୟ ପ୍ରଦାନ କରିଥିଲେ ।

ପୁଷ୍କରିଣୀ ତୀରରେ ନୀଳକଣ୍ଠେଶ୍ୱର, ରାଜା ଇନ୍ଦ୍ରଦ୍ୟୁମ୍ନ, ରାଣୀ ଗୁଣ୍ଡିଚା ଓ ଗାଳମାଧବଙ୍କ ବିଗ୍ରହ ରହିଛି । ମାଦଳାପାଞ୍ଜିରେ ଲେଖାଅଛି ଯେ ରାଜା ପଦ୍ମକେଶରୀ ଇନ୍ଦ୍ରଦ୍ୟୁମ୍ନ ଚାରିପାଖେ ପାହାଚ ଓ ନୀଳକଣ୍ଠେଶ୍ୱର ଦେଉଳ ତୋଳାଇଥିଲେ । (ଆନୁମାନିକ ଖ୍ରୀ: ୭୨୬ରୁ ୭୪୫ ମଧ୍ୟରେ ଏହା ନିର୍ମିତ ହୋଇଥିବ) ।

ପ୍ରତିବର୍ଷ ନବଦିନ ଯାତ୍ରା ବା ଶ୍ରୀଗୁଣ୍ଡିଚା ଯାତ୍ରା ସମୟରେ ବହୁ ଶ୍ରଦ୍ଧାଳୁ ନରନାରୀ ଇନ୍ଦ୍ରଦ୍ୟୁମ୍ନ ସରୋବରେ ସ୍ନାନ, ଯଜ୍ଞ ନୃସିଂହଙ୍କୁ ଦର୍ଶନ ଓ ଆଡପମଣ୍ଡପ (ଗୁଣ୍ଡିଚା ମନ୍ଦିର)ରେ ମହାପ୍ରଭୁଙ୍କୁ ଦର୍ଶନ ଏବଂ ମହାପ୍ରସାଦ ସେବନ କରି 'ଗୁଣ୍ଡିଚା ବ୍ରତ' ପାଳନ କରନ୍ତି ।

ପଞ୍ଚତୀର୍ଥ ମଧ୍ୟରେ ପରିଗଣିତ ହେଉନଥିଲେ ମଧ୍ୟ ନରେନ୍ଦ୍ର ପୁଷ୍କରିଣୀ ନିଶ୍ଚିତ ଭାବରେ ଏକ ତୀର୍ଥର ମାନ୍ୟତା ପାଇବା ଉଚିତ । ଏଠାରେ ପ୍ରତିବର୍ଷ ୨୧ ଦିନ ବ୍ୟାପି ଚନ୍ଦନଯାତ୍ରା ପାଳନ କରାଯାଏ ।

## ମହୋଦଧି ଓ ସ୍ୱର୍ଗଦ୍ୱାର

ଶ୍ରୀକ୍ଷେତ୍ରର ସମୁଦ୍ର ମହୋଦଧି ନାମରେ ପ୍ରସିଦ୍ଧ । ବ୍ରହ୍ମପୁରାଣ, ସ୍କନ୍ଦପୁରାଣ, ବାମଦେବ ସଂହିତା, କପିଳ ସଂହିତା ଆଦି ଗ୍ରନ୍ଥରେ ମହୋଦଧିର ମାହାତ୍ମ୍ୟ ଉଲ୍ଲେଖ ଅଛି । ଏହି ସାଗରରେ ବିଷ୍ଣୁଙ୍କର ପ୍ରଥମ ଅବତାର ଅର୍ଥାତ୍ ମତ୍ସ୍ୟ ଅବତାର ପ୍ରକଟ ହୋଇଥିଲା ବୋଲି କୁହାଯାଇଛି । ଏଠାରେ ପିଣ୍ଡଦାନ ଓ ବୁଡ଼ ପକାଇଲେ ମୁକ୍ତି ମିଳେ ବୋଲି କଥିତ । ଶ୍ରୀମନ୍ଦିରର କଳ୍ପବୃକ୍ଷଠାରୁ ମହୋଦଧି ପର୍ଯ୍ୟନ୍ତ ସ୍ଥାନ 'ଅନ୍ତର୍ବେଦୀ ନାମରେ କଥିତ । ଏହି ସ୍ଥାନରେ ଦେହତ୍ୟାଗ କଲେ ମୋକ୍ଷ ଗତି ହୁଏ । ମହୋଦଧିର ଗୋଟିଏ ଘାଟ ବା ସ୍ଥାନ ସ୍ୱର୍ଗଦ୍ୱାର । ଏଠାରେ ଦାହସଂସ୍କାର କାର୍ଯ୍ୟକଲେ ସ୍ୱର୍ଗପ୍ରାପ୍ତି ହୁଏ ବୋଲି ବିଶ୍ୱାସ କରାଯାଏ । ଶ୍ରୀଜଗନ୍ନାଥଙ୍କର ସାଗରବିଜେ ବା ଅମାବାସ୍ୟା ନୀତି ଏହି ସ୍ୱର୍ଗଦ୍ୱାର ଅଞ୍ଚଳରେ ପାଳନ କରାଯାଏ ।

## ଅଠରନଳା

ଏହା ଏକ ପ୍ରାଚୀନ ପୋଲ; ପ୍ରାଚୀନ କୀର୍ତ୍ତି । ପୁରୀ ସହରର ମୁଖ୍ୟ ପ୍ରବେଶ ପଥରେ ଏହା ଏକ ଅଠରନଳା ବିଶିଷ୍ଟ (ପ୍ରକୃତରେ ୧୯) ସେତୁ । କେତେବର୍ଷ ହେଲା ଏହାର ପାର୍ଶ୍ୱରେ ଆଉ

ଏକ ପୋଲ (ଚାରିନଳା) ନିର୍ମିତ ହୋଇଅଛି । ଯେଉଁ ନଦୀ ବା ନାଳ ଉପରେ ଅଠରନଳା ନିର୍ମିତ ତାର ବିଭିନ୍ନ ନାମ - ଗଙ୍ଗୁଆ/ମାଟିଆ/ମଧୁପୁର ଅଛି । ଏହି ପୋଲ କେବେ ନିର୍ମାଣ କରାଯାଇଥିଲା ସେ ନେଇ ସଠିକ୍ ତଥ୍ୟ ଉପଲବଧ ନୁହେଁ । ମାଦଳପାଞ୍ଜି (ସଂ-ଆର୍ତ୍ତବଲ୍ଲଭ)ରେ ମଛ(ମତ୍ସ୍ୟ) କେଶରୀ 'ଗଙ୍ଗୁଆ ନଦୀରେ ଅଠରନଳା' କଲେ । ଅନ୍ୟତ୍ର ଲେଖା ଅଛି ଯେ ମତ୍ସ୍ୟ କେଶରୀଙ୍କ ପରେ ବରାହ କେଶରୀ 'ଗଙ୍ଗୁଆ ନଦୀରେ ଅଠରନଳା ବସାଇଲେ' । ଦୁଇଟି ଯାକ ମତକୁ ବିଚାରକୁ ନେଲେ ଏହି ସେତୁ ୧୦୫୦ ଖ୍ରୀଷ୍ଟାବ୍ଦ ବେଳକୁ କିମ୍ବା ୧୦୭୧ ଖ୍ରୀଷ୍ଟାବ୍ଦ ବେଳକୁ ନିର୍ମାଣ କରାଯାଇଥିବ । ରାଜେନ୍ଦ୍ରଲାଲ ମିତ୍ର ଲେଖିଛନ୍ତ ଯେ ଏହା ଖ୍ରୀ: ୧୦୫୦ରେ ନିର୍ମିତ ହୋଇଥିଲା । ମାଦଳାପାଞ୍ଜିରେ ପୁନଶ୍ଚ ଅନ୍ୟତ୍ର ଉଲ୍ଲେଖ ଅଛି ଯେ, ରାଜା କବି ନରସିଂହଦେବ ''ଅଠରନଳା ବନ୍ଧ ପକାଇଲେ'' । ସେ ମଧ୍ୟ ନରେନ୍ଦ୍ର ସରୋବର ଖୋଳାଇଥିଲେ । ପୁଣି ଅନ୍ୟତ୍ର ଲେଖାଅଛି ଯେ, ବୀର ନରସିଂହ ଦେବ ''ଅଠରନଳା ବନ୍ଧାଇଲେ'' । କବି ନରସିଂହ ଦେବ ୧୨୨୯ ଶକାବ୍ଦ, ଅର୍ଥାତ୍ ଖ୍ରୀ: ୧୩୦୭ ଯାଏଁ ରାଜତ୍ୱ କରିଥିଲେ । ଯଦି ସେ ନିର୍ମାତା, ତେବେ ଖ୍ରୀ: ୧୩୦୭ ବେଳକୁ ଅଠରନଳା ସେତୁ ନିର୍ମିତ ହୋଇଥିବ । ଶ୍ରୀକ୍ଷେତ୍ରର ମୁଖ୍ୟପ୍ରବେଶ ପଥକୁ 'ଅଠରନଳା ଘାଟ' କୁହାଯାଉଥିଲା । ପୂର୍ବକାଳରେ ଅଠରଟି ସନ୍ତାନର ଜନନୀ ଅଠରନଳା ପୋଲ ସହିତ ସଙ୍ଗୀତ ବସୁଥିଲେ । ଏହି ସେତୁର ଦୈର୍ଘ୍ୟ ୨୦୦ ଫୁଟ (ମତାନ୍ତରେ ୨୯୦ ଫୁଟ) ।

## ବାଟମଙ୍ଗଳା ମନ୍ଦିର

ପୁରୀ-ଭୁବନେଶ୍ୱର ରାସ୍ତାକଡ଼ରେ ଅଠରନଳା ସେତୁଠାରୁ ଅଳ୍ପଦୂରରେ ବାଟ ମଙ୍ଗଳା ଠାକୁରାଣୀଙ୍କ ମନ୍ଦିର ଅବସ୍ଥିତ । ପୁରୀକୁ ଆସୁଥିବା ଏବଂ ପୁରୀରୁ ଫେରୁଥିବା ଯାତ୍ରୀମାନେ ଏହି ଠାକୁରାଣୀଙ୍କୁ ପୂଜାର୍ଚ୍ଚନା କରନ୍ତି ।

## କାକୁଡ଼ିଖାଇ ମନ୍ଦିର

ଶ୍ରୀମନ୍ଦିରର ମେଘନାଦ ପାଚେରୀ ବାହାରେ ପୂର୍ବ ଦିଗରେ ପେଜନଳା ପାଖରେ କାକୁଡ଼ିଖାଇ ଠାକୁରାଣୀଙ୍କ ମନ୍ଦିର ଅବସ୍ଥିତ । ଏଠାରେ ଦେବୀ ଦୁର୍ଗା 'ମହିଷମର୍ଦ୍ଦିନୀ' ରୂପେ ପୂଜା ପାଉଛନ୍ତି । ଆଶ୍ୱିନ ମାସ ଷୋଳ ପୂଜା ସମୟରେ ବିମଳାଙ୍କ ପାଖରେ ମାନସିକ କରିଥିବା ଲୋକଙ୍କ ଛେଦ (ବଳି) କାକୁଡ଼ିଖାଇଙ୍କ ନିକଟରେ ପଡ଼େ ।

ପୁରୀ ବାହାରେ ଥିବା କେତେକ ଦେବଦେବୀ ପୀଠ ସହିତ ଶ୍ରୀମନ୍ଦିରର ସମ୍ପର୍କ ରହିଛି ।

## ଅଲାରନାଥ ମନ୍ଦିର

ବ୍ରହ୍ମଗିରିରେ ଅବସ୍ଥିତ । ଚତୁର୍ଭୁଜ ବିଷ୍ଣୁ ପ୍ରତିମା ପୂଜା ପାଉଛନ୍ତି । ଏଠାରେ ମଧ୍ୟ ଶ୍ରୀଚୈତନ୍ୟଙ୍କ ସ୍ମୃତିଚିହ୍ନ ରହିଛି । ଅନବସର ସମୟରେ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ ବନ୍ଦଥିବାରୁ ବହୁ ସଂଖ୍ୟକ ଭକ୍ତ ଏଠାକୁ ଆସି ଅଲାରନାଥଙ୍କୁ ଦର୍ଶନ କରି ଜଗନ୍ନାଥ ଦର୍ଶନର ପୁଣ୍ୟଫଳ ପାଆନ୍ତି ।

## ବାଲିହରଚଣ୍ଡୀ ମନ୍ଦିର

ବ୍ରହ୍ମଗିରି ନିକଟରେ ଅବସ୍ଥିତ । ଏହା ଏକ ତନ୍ତ୍ର ପୀଠ ରୂପେ ବିଖ୍ୟାତ । ଏଠାରେ ଆଶ୍ୱିନ ମାସ ମହାନବମୀର ଏକ ନୀତି ସହିତ ଶ୍ରୀମନ୍ଦିର ପ୍ରଶାସନର ସମ୍ପର୍କ ଅଛି ।

## ମଣିନାଗ ଠାକୁରାଣୀ (ରଣପୁର ଅଞ୍ଚଳ)

ପ୍ରତିବର୍ଷ ରଣପୁର ଜଙ୍ଗଲରୁ ରଥନିର୍ମାଣପାଇଁ ଆବଶ୍ୟକ କଞ୍ଚାକାଠ (green timber) କଟାଯିବା ପୂର୍ବରୁ ଏହି ଠାକୁରାଣୀଙ୍କ ନିକଟରେ ଶ୍ରୀମନ୍ଦିର ପ୍ରଶାସନ ତରଫରୁ ସ୍ୱତନ୍ତ୍ର ପୂଜାର୍ଚ୍ଚନା କରାଯାଏ ।

## ବଡ଼ରାଉଳାଈ ଠାକୁରାଣୀ (ବରମୂଳ-ଗଣିଆ)

ପ୍ରତିବର୍ଷ ଶ୍ରୀଜଗନ୍ନାଥଙ୍କ ଧଣ୍ଡା ଓ ମହାପ୍ରସାଦ ବେଠିଆ ସାହି ମୌଜାରେ ଥିବା ବଡ଼ରାଉଳୀ ଠାକୁରାଣୀଙ୍କ ପାଖରେ ଲାଗିହୋଇ ରଥନିର୍ମାଣ ପାଇଁ କଟାଯାଇଥିବା କାଠ ପରିବହନ କରାଯାଇ ପୁରୀକୁ ଆସେ । (ଏହି ଠାକୁରାଣୀଙ୍କ ବିଜେସ୍ଥଳୀର କେତେକ ନିର୍ମାଣ କାର୍ଯ୍ୟପାଇଁ ଶ୍ରୀମନ୍ଦିର ପ୍ରଶାସନ ତରଫରୁ ଜାନୁଆରି, ୧୯୮୭ ମସିହାରେ ଟ୫୦୦୦ଙ୍କା ମଞ୍ଜୁର କରାଯାଇଥିଲା) ।

## ରାମଚଣ୍ଡୀ ଠାକୁରାଣୀ (ଗଡ଼ମାଣତ୍ରି)

ଗଡ଼ମାଣତ୍ରି ଗ୍ରାମରେ ବିଜେ ରାମଚଣ୍ଡୀ ଠାକୁରାଣୀଙ୍କ ମହାସପ୍ତମୀ ଓ ମହାଷ୍ଟମୀରେ ଭୋଗ ଖର୍ଚ୍ଚପାଇଁ ଶ୍ରୀମନ୍ଦିର ପ୍ରଶାସନ ଆର୍ଥିକ ସାହାଯ୍ୟ ପ୍ରଦାନ କରନ୍ତି ।

## କପିଳେଶ୍ୱର ଦେବ (ନିରାକାରପୁର ନିକଟ ଡିଆଗ୍ରାମ)

ପ୍ରତିବର୍ଷ ଅଶୋକାଷ୍ଟମୀ ରଥଯାତ୍ରା ସକାଶେ ଡିଆ ଗ୍ରାମରେ ବିଜେ କପିଳେଶ୍ୱର ଦେବଙ୍କ ପୂଜା ନିମନ୍ତେ, ଶ୍ରୀମନ୍ଦିର ପ୍ରଶାସନ ତରଫରୁ ଏକ ଖଣ୍ଡ ପତନି, ଏକ ଖଣ୍ଡ ଚନ୍ଦନକାଠ ଓ କିଛି ଅର୍ଥ ପ୍ରଦାନ କରାଯାଏ ।

## କାଳିଆ ଗୋପୀନାଥ ଦେବ

ସତାଇଶ ହଜାର ମାହାଲ ଅନ୍ତର୍ଗତ କପିଳେଶ୍ୱର ଗ୍ରାମରେ ପ୍ରତିବର୍ଷ ଚୈତ୍ର ଶୁକ୍ଳ ଚତୁର୍ଦ୍ଦଶୀରେ କାଳିଆ ଗୋପୀନାଥ ଦେବଙ୍କ ମେଳଣ ଯାତ୍ରାରେ ଶ୍ରୀମନ୍ଦିର ପ୍ରଶାସନ ତରଫରୁ ପନ୍ତି ଭୋଗ ପାଇଁ କିଛି ଅର୍ଥ ମେଳଣ କମିଟିକୁ ପ୍ରଦାନ କରାଯାଏ ।

## ଯୋଡ଼ାଲିଙ୍ଗ (ବଘାଗ୍ରାମ)

ପୁରୀ ନିକଟବର୍ତ୍ତୀ ବଘା ଗ୍ରାମର ଯୋଡାଲିଙ୍ଗ ଠାକୁରଙ୍କ ନବରାତ୍ର ନୀତିପାଇଁ ଶ୍ରୀମନ୍ଦିର ପ୍ରଶାସନ କିଛି ଅର୍ଥ ସାହାଯ୍ୟ ଦିଅନ୍ତି ।

## ଭାରତୀକୋଠା ମଠ (କଟକ)

ଓଡ଼ିଶା ହାଇକୋର୍ଟ ଛକ ପାଖରେ ଅବସ୍ଥିତ । ଏହା ଶ୍ରୀମନ୍ଦିରର ଏକ ପ୍ରଦତ୍ତ ସମ୍ପତ୍ତି (endowed property) । ଏଠାରେ ଥିବା ମନ୍ଦିରର ଦେବଦେବୀଙ୍କ ପୂଜାପାଇଁ ଶ୍ରୀମନ୍ଦିର ପ୍ରଶାସନ ପୂଜକ ନିଯୁକ୍ତି କରିଛନ୍ତି ।

## ମା'ମଙ୍ଗଳା ଠାକୁରାଣୀ (କାକଟପୁର)

ଶ୍ରୀମନ୍ଦିର ସହିତ କାକଟପୁର ମଙ୍ଗଳା ମନ୍ଦିରର ଘନିଷ୍ଠ ସମ୍ପର୍କ ରହିଛି । ନବକଳେବର ବେଳେ ଦାରୁ ଅନ୍ୱେଷଣପାଇଁ ପରମ୍ପରାନୁସାରେ ଅନୁକୂଳ କରି ଶ୍ରୀମନ୍ଦିରରୁ ଦଇତାପତି, ରାଜଗୁରୁ, ଦେଉଳ ପୁରୋହିତ, ଦେଉଳକରଣ, ତଡାଉକରଣ, ଲେଙ୍କା, ବିଶ୍ୱକର୍ମା ସେବକମାନେ ବାହାରି କାକଟପୁର ମଙ୍ଗଳା ଠାକୁରାଣୀଙ୍କ ନିକଟକୁ ଯାଇ ସେଠାର ଦେଉଳି ମଠରେ ଅବସ୍ଥାନ କରନ୍ତି । ପହଞ୍ଚିବା ପରବର୍ତ୍ତୀ ଦିନ ପୂର୍ବାହ୍ନରେ କାକଟପୁର ମଙ୍ଗଳା ମନ୍ଦିରର ପୂଜକ ଓ କର୍ମକର୍ତ୍ତାମାନେ ଘଣ୍ଟଛତି ଇତ୍ୟାଦି ସହିତ ଏକ ବର୍ଣ୍ଣାଢ଼୍ୟ ଶୋଭାଯାତ୍ରାରେ ଦେଉଳି ମଠକୁ ଆସି ଦଇତାପତି, ବ୍ରାହ୍ମଣ ଓଗେର ସେବକମାନଙ୍କୁ ସମ୍ବର୍ଦ୍ଧନା ସହକାରେ ପଟୁଆର କରି ଠାକୁରାଣୀ ମନ୍ଦିରକୁ ପାଛୋଟି ନିଅନ୍ତି । ତତ୍‌ପରେ ସେଠାରେ ବିଧି ମୁତାବକ ମା' ମଙ୍ଗଳାଙ୍କ ମାର୍ଜନା କାର୍ଯ୍ୟ କରାଯାଏ । ମାର୍ଜନା ପରେ ଠାକୁରାଣୀଙ୍କୁ ଶ୍ରୀମନ୍ଦିର ପ୍ରଶାସନ ତରଫରୁ ପ୍ରଦତ୍ତ ଶାଢ଼ୀ ଲାଗି କରାଯାଏ ଓ ମହାପ୍ରସାଦ ସମର୍ପଣ କରାଯାଏ । ଯଥା ସମୟରେ ଉପଯୁକ୍ତ ଦାରୁର ସନ୍ଧାନ ପାଇବାକୁ ମଙ୍ଗଳା ଠାକୁରାଣୀଙ୍କର କୃପା ଭିକ୍ଷା କରାଯାଏ । ଏଥିପାଇଁ ସଂପୃକ୍ତ ସେବକଙ୍କୁ ସ୍ୱପ୍ନାବତୀ ମନ୍ତ୍ର ଜପ କରିବାକୁ ହୁଏ ।

## ଶ୍ରୀଲିଙ୍ଗରାଜ ମନ୍ଦିର (ଭୁବନେଶ୍ୱର )

ପ୍ରତିବର୍ଷ ମହାଶିବରାତ୍ରୀରେ ଶ୍ରୀମନ୍ଦିରର ଜଣେ ରାଜଗୁରୁ ସେବକ ଆସି 'ଅଷ୍ଟ ପ୍ରହରୀ' ପୂଜାନୀତି ସମ୍ପାଦନ କରନ୍ତି ।

## ଶ୍ରୀବଳଦେବ ଜୀଉ ମନ୍ଦିର (କେନ୍ଦ୍ରାପଡ଼ା )

ପରମ୍ପରାର ପୁନଃପ୍ରଚଳନ କରାଯାଇ ଶ୍ରୀବଳଦେବଙ୍କ ପ୍ରଳମ୍ବାସୁରବଧ ବେଶ ନିମନ୍ତେ ଶ୍ରୀମନ୍ଦିର ପ୍ରଶାସନ ତରଫରୁ ହଳଦିଆ, ନୀଳ ଓ ଲାଲ୍ ରଙ୍ଗର ତିନିଗୋଟି ନୂତନ ପାଟ ଶାଢ଼ି ତାଃ ୨୨/୧୧/୨୦୧୨ରେ ପ୍ରଦାନ କରାଯାଇଥିଲା ।




ଊନବିଂଶ ଶତାବ୍ଦୀର ଶ୍ରୀମନ୍ଦିର

# ଶ୍ରୀମନ୍ଦିର ପରିଚାଳନା

**ଓ**ଡ଼ିଶାରେ ଗଙ୍ଗ ରାଜବଂଶର ଶ୍ରେଷ୍ଠ ରାଜା ଅନନ୍ତ ବର୍ମନ୍ ଚୋଡ଼ଗଙ୍ଗ ଦେବ (ଖ୍ରୀଃ ୧୦୭୮-୧୧୪୭) ଏବର ପରିଦୃଶ୍ୟମାନ ଶ୍ରୀଜଗନ୍ନାଥ ମନ୍ଦିରର ନିର୍ମାତା ଭାବରେ ସ୍ୱୀକୃତ । ସେ କେବଳ ନିର୍ମାତା ନଥିଲେ, ସେ ଏହାର ମୁଖ୍ୟ ପୃଷ୍ଠପୋଷକ ଥିଲେ । ପ୍ରାରମ୍ଭରେ ଶୈବ ଥିଲେ କିନ୍ତୁ ପରବର୍ତ୍ତୀ କାଳରେ ସେ ବୈଷ୍ଣବ ଧର୍ମ ପ୍ରତି ଆକୃଷ୍ଟ ହୋଇ ତାର ପୃଷ୍ଠପୋଷକତା କରିଥିଲେ । କେତେକଙ୍କ ମତରେ ବୈଷ୍ଣବ ଧର୍ମର ପ୍ରବର୍ତ୍ତକ ଶ୍ରୀ ରାମାନୁଜଙ୍କ ପ୍ରଭାବରେ ସେ ବୈଷ୍ଣବ ଧର୍ମ ଗ୍ରହଣ କରିଥିଲେ । ତାଙ୍କ ପୂର୍ବରୁ ଶ୍ରୀକ୍ଷେତ୍ର ପୁରୀ ଏକ ଶ୍ରେଷ୍ଠ ତୀର୍ଥକ୍ଷେତ୍ର ରୂପେ ଖ୍ୟାତି ଲାଭ କରିସାରିଥିଲା । ଚୋଡ଼ଗଙ୍ଗଦେବ ପୁରୀଠାରେ ଏକ ବିଶାଳକାୟ ପୁରୁଷୋତ୍ତମ ଜଗନ୍ନାଥ ମନ୍ଦିର ନିର୍ମାଣ କରିଥିଲେ । କେବଳ ପୁରୀଠାରେ ନୁହେଁ ମୁଖଲିଙ୍ଗମ୍, ଶ୍ରୀକାକୁଲମ୍ ଓ ସୀମାଚଳମ୍‌ଠାରେ ମଧ୍ୟ ସେ ବିଷ୍ଣୁମନ୍ଦିର ନିର୍ମାଣ କରିଥିଲେ । ଏକାଧାରରେ ସେ ଥିଲେ ଶୈବ, ବ୍ରାହ୍ମଣ୍ୟ ଓ ବୈଷ୍ଣବ । ତେଣୁ ସେ ଏହିସବୁ ଧର୍ମସୂଚକ ଉପାଧି- 'ପରମ ମାହେଶ୍ୱର', 'ପରମ ବ୍ରହ୍ମଣ୍ୟ' ଓ 'ପରମ ବୈଷ୍ଣବ' ଧାରଣ କରିଥିଲେ ।

ମାଦଳାପାଞ୍ଜିରୁ ସୂଚନା ମିଳେ ଯେ, ଶ୍ରୀଜଗନ୍ନାଥ (ପୁରୁଷୋତ୍ତମ) ଚୋଡଗଙ୍ଗ ଦେବଙ୍କ ବହୁପୂର୍ବରୁ 'ଓଡ଼ିଶା ରାଜାର ପ୍ରଭୁ' ବା ରାଜାଙ୍କ କୁଳଦେବତା ଭାବରେ ବିବେଚିତ ଓ ଉପାସିତ ହେଉଥିଲେ । 'ପ୍ରଥମ ପାଟ ଯଯାତିକେଶରୀ' ତାଙ୍କର ୧୧ଅଙ୍କରେ ସନ୍ୟାସୀ, ବ୍ରହ୍ମଚାରୀ ଓ ବ୍ରାହ୍ମଣମାନଙ୍କୁ ପଚାରିଲେ, ଓଡ଼ିଶା ରାଜାର ପ୍ରଭୁ ଯେ ଶ୍ରୀ ଜଗନ୍ନାଥ ମହାପ୍ରଭୁ ସେ କାହିଁଛନ୍ତି ? ସେମାନଙ୍କ ଠାରୁ ଯଯାତି ଜାଣିବାକୁ ପାଇଲେ ଯେ ମହାପ୍ରଭୁ ସୋନପୁରରେ ପାତାଳି ହୋଇଛନ୍ତି । ରାଜା ଯଯାତି ମହାପ୍ରଭୁଙ୍କୁ ସେଠାରୁ ମାଟିତଳୁ ଉଦ୍ଧାର କରି, ନୂତନ ଦାରୁମୂର୍ତ୍ତି ଗଢ଼ାଇ, ଶଙ୍ଖକ୍ଷେତ୍ର (ପୁରୀ)ରେ ୩୮ ହାତ ଉଚ୍ଚତାର ପଟୋଳ ଗୋଟିଏ ତୋଳାଇ ପ୍ରତିଷ୍ଠା କରାଇ ମହାପ୍ରଭୁଙ୍କୁ ସେଥିରେ ବିଜେ କରାଇଲେ ।

ଏହି ରାଜା, ପ୍ରଥମ ଯଯାତି କେଶରୀ କି ଦ୍ୱିତୀୟ ଯଯାତି କେଶରୀ, ଏ ନେଇ ଐତିହାସିକମାନଙ୍କ ମଧ୍ୟରେ ମତ ପାର୍ଥକ୍ୟ ଦେଖାଯାଏ । ସେ ଯାହାହେଉ, ଚୋଡ଼ଗଙ୍ଗ ଦେବଙ୍କ ଦ୍ୱାରା ଓଡ଼ିଶା ଅଧିକାର, ଏଠାରେ ଗଙ୍ଗ ରାଜବଂଶର ପ୍ରତିଷ୍ଠା ଏବଂ ଶ୍ରୀକ୍ଷେତ୍ରରେ ଅନ୍ୟ ଏକ ବୃହତ୍ ଜଗନ୍ନାଥ ମନ୍ଦିର ନିର୍ମାଣ ପରେ, ପୁରୁଷୋତ୍ତମ ଉପାସନା ବା ଜଗନ୍ନାଥ ଉପାସନା ରାଜକୀୟ ପୃଷ୍ଠପୋଷକତା ଲାଭ କରି ରାଷ୍ଟ୍ରୀୟ ବା ସାମ୍ରାଜ୍ୟ ସ୍ତରକୁ ଉନ୍ନୀତ ହୋଇପାରିଥିଲା ।

ବିଶିଷ୍ଟ ଗବେଷକ ଡଃ ସତ୍ୟନାରାୟଣ ରାଜଗୁରୁ ଲେଖିଛନ୍ତି ଯେ, ରାଜା ଯଯାତି(୨ୟ)ଙ୍କ ସମୟରେ ହିନ୍ଦୁଧର୍ମର ପୁନଃ ପ୍ରତିଷ୍ଠା କରାଯାଇଥିଲା । ଓଡ଼ିଶାର ବିଭିନ୍ନ ସ୍ଥାନରେ ପୂଜା ପାଉଥିବା ପ୍ରଧାନ ହିନ୍ଦୁ ଦେବଦେବୀଙ୍କୁ ଏକତ୍ର ଏକ ସ୍ଥାନରେ ପୂଜା କରାଯିବାପାଇଁ ଉଦ୍ୟମ କରାଗଲା । ପଶ୍ଚିମ ଓଡ଼ିଶାର ସ୍ତମ୍ଭେଶ୍ୱରୀ ବା ଏକାନଂସା ସୁଭଦ୍ରା, ତୋଷାଳି (ଉତ୍ତର ଓଡ଼ିଶା)ର ବଳଦେବ ବା ନାଗରାଜ ଏବଂ କଳିଙ୍ଗ-କଙ୍ଗୋଦର ପୁରୁଷୋତ୍ତମ-ଜଗନ୍ନାଥ, ମିଳିତ ତ୍ରିକଳିଙ୍ଗ ସାମ୍ରାଜ୍ୟର ରାଷ୍ଟ୍ର ଦେବତା ଭାବରେ ପୁରୀଠାରେ ପୂଜା ପାଇଲେ ।

କିନ୍ତୁ ପ୍ରଶ୍ନ ଉଠେ, ସେତେବେଳେ ମହାପ୍ରଭୁ ଜଗନ୍ନାଥଙ୍କୁ ଓଡ଼ିଶା ରାଜ୍ୟର ରାଷ୍ଟ୍ରଦେବତା ଭାବରେ ରାଜକୀୟ ଘୋଷଣା କରାଯାଇଥିଲା କି ? ଐତିହାସିକ ନବୀନଚନ୍ଦ୍ର ସାହୁ ଲେଖିଛନ୍ତି ଯେ, ଚୋଡ଼ଗଙ୍ଗଦେବଙ୍କ ଠାରୁ ଆରମ୍ଭ କରି ଗଙ୍ଗବଂଶର ପ୍ରତ୍ୟେକ ରାଜା ପୁରୁଷୋତ୍ତମ-ଜଗନ୍ନାଥଙ୍କୁ ଉତ୍କଳର ରାଷ୍ଟ୍ରଦେବତା ଭାବରେ ପୂଜା କରି ଆସିଥିଲେ । ସେତେବେଳେ ଶ୍ରୀଜଗନ୍ନାଥ ଉପାସନା ସାର୍ବଜନିକ ଭାବରେ ଜନସାଧାରଣଙ୍କ ମନରେ ପ୍ରଭାବ ବିସ୍ତାର କରିଥିଲା । ଖ୍ରୀ. ୧୪୩୫ରେ ସେନାଧ୍ୟକ୍ଷ କପିଳେଶ୍ୱର (କପିଳେନ୍ଦ୍ର) ଦେବ ସିଂହାସନ ଆରୋହଣ କରି ଓଡ଼ିଶାର ଇତିହାସ ଓ ସଂସ୍କୃତିରେ ଏକ ନୂତନ ଯୁଗର ସୂତ୍ରପାତ କରିଥିଲେ । ତାଙ୍କ ସମୟରୁ ରାଜ୍ୟ ଓଡ଼ିଶା ଭାବରେ ବିଦିତ ହେଲା ଏବଂ ସଂସ୍କୃତ ପରିବର୍ତ୍ତେ ଓଡ଼ିଆ ହେଲା ରାଜ୍ୟଭାଷା । ସିଂହାସନ ଆରୋହଣ ପରେ ଗଜପତି କପିଳେଶ୍ୱର ଦେବ ଏକ ରାଜକୀୟ ଘୋଷଣା ଓଡ଼ିଆ ଭାଷାରେ ଲିପିବଦ୍ଧ କରାଇ ଜଣାଇଦେଲେ ଯେ, ରାଜ୍ୟ ନାମ 'ଓଡ଼ିଶା ରାଜ୍ୟ' ଏବଂ ରାଷ୍ଟ୍ରଦେବତା ହେଉଛନ୍ତି, 'ଜଗନ୍ନାଥ' ।

ଅନ୍ୟତମ ଐତିହାସିକ ତଥା ଗବେଷକ ଡଃ କୈଳାସ ଚନ୍ଦ୍ର ଦାଶ ଲେଖିଛନ୍ତି ଯେ, ସମ୍ରାଟ ଅନଙ୍ଗ ଭୀମଦେବ (୩ୟ) ବୃହତ୍ ଗଙ୍ଗ ସାମ୍ରାଜ୍ୟର ପୂର୍ଣ୍ଣାଙ୍ଗ ରୂପ ଆଣିଥିଲେ ଓ ଗଙ୍ଗ ସାମ୍ରାଜ୍ୟକୁ ଅଖଣ୍ଡ ରଖିବାକୁ ଉଦ୍ୟମ କରିଥିଲେ । ତେଣୁ ପୁରୁଷୋତ୍ତମଙ୍କୁ ଗଙ୍ଗ ସାମ୍ରାଜ୍ୟର ଅଧୀଶ୍ୱର ବୋଲି ଘୋଷଣା କରାଗଲା ଓ ଗଙ୍ଗରାଜା ନିଜକୁ ଜଣେ ରାଉତ/ସାମନ୍ତ ବୋଲି ପ୍ରକାଶ କଲେ । ସେତେବେଳକୁ ପୁରୁଷୋତ୍ତମ ନାମ ଏତେ ବ୍ୟାପକ ହୋଇନଥିବାରୁ ଏହି ନାମର ପରିବର୍ତ୍ତନ ସମ୍ଭବତଃ ଏହି ସମୟରେ ଘଟିଥିଲା । ସେତେବେଳକୁ ବ୍ରାହ୍ମଣ୍ୟ ଶକ୍ତି ଜଗନ୍ନାଥ ନାମକୁ ଗ୍ରହଣ କରିଥିଲେ । ଜଗନ୍ନାଥ ନାମ ଅତି ବ୍ୟାପକ ଓ ଜଗନ୍ନାଥ ଚେତନା ଅତି ପୁରାତନ । ଏହି ନାମକୁ ବିଭିନ୍ନ ଧର୍ମ ସଂପ୍ରଦାୟ ଆପଣାର ଇଷ୍ଟଦେବତାଙ୍କ ପାଇଁ ବ୍ୟବହାର କରିଛନ୍ତି । ଏଣୁ ଅନଙ୍ଗଭୀମ ଦେବ (୩ୟ)ଙ୍କ ସମୟ(ଖ୍ରୀ. ୧୨୧୧-୧୨୩୮)ରେ ହୋଇଥିବା ଅଧିକ ସମ୍ଭବ । ତାଙ୍କ ସମୟରେ କୂର୍ମେଶ୍ୱର ଶିଳାଲିପି (ଖ୍ରୀ. ୧୨୩୦)ରେ ପ୍ରଥମେ ଜଗନ୍ନାଥଙ୍କ ନାମ ଉଲ୍ଲେଖ ଅଛି ।

ଚୋଡ଼ଗଙ୍ଗ ଦେବଙ୍କ ସାମ୍ରାଜ୍ୟ ଦକ୍ଷିଣରେ ଗୋଦାବରୀ ନଦୀଠାରୁ ଉତ୍ତରରେ ଗଙ୍ଗାନଦୀ ପର୍ଯ୍ୟନ୍ତ ବିସ୍ତୃତ ଥିଲା । ସେ ତାଙ୍କର ସାମ୍ରାଜ୍ୟର ରାଜଧାନୀ (ଆନ୍ଧ୍ର ପ୍ରଦେଶର ଶ୍ରୀକାକୁଲମ୍ ଜିଲ୍ଲାରେ ଥିବା ମୁଖଲିଙ୍ଗମ୍)ରୁ ମହାନଦୀ କୂଳର ଯଯାତିନଗରକୁ ଘୁଞ୍ଚାଇ ଆଣିଥିଲେ । ଚୋଡଗଙ୍ଗଦେବଙ୍କ ପ୍ରପୌତ୍ର ଅନଙ୍ଗଭୀମ ଦେବ (୩ୟ) ଅଭିନବ ବାରାଣସୀ କଟକ ନାମରେ ନୂତନ ରାଜଧାନୀ

ପ୍ରତିଷ୍ଠା କରିଥିଲେ । ଖ୍ରୀ: ୧୨୩୦ ବେଳକୁ ଏହି ନୂତନ ରାଜଧାନୀ ପ୍ରତିଷ୍ଠା ପରେ ଅନଙ୍ଗଭୀମଦେବ ତାଙ୍କର ସାମ୍ରାଜ୍ୟକୁ ପୁରୁଷୋତ୍ତମ ଜଗନ୍ନାଥଙ୍କୁ ଉତ୍ସର୍ଗ କରିଥିଲେ ଏବଂ ମହାପ୍ରଭୁ ହିଁ ସାମ୍ରାଜ୍ୟର ଅଧୀଶ୍ୱର ବୋଲି ଘୋଷଣା କରିଥିଲେ । 'ମାଦଳାପାଞ୍ଜି'ରେ ଉଲ୍ଲେଖ ଅଛି ଯେ ଅନଙ୍ଗଭୀମ ଦେବ ''ନଗର କଟକେ ଥାଇ ଶ୍ରୀ ପୁରୁଷୋତ୍ତମ ଶ୍ରୀଜଗନ୍ନାଥ ଦେବଙ୍କୁ ସମସ୍ତ ସମର୍ପି ରାଉତପଣେ ଥାଆନ୍ତି । .....ଅନଙ୍ଗଭୀମ ଦେବ ଓ ପୁରୁଷୋତ୍ତମ ଦେବ ମଧ୍ୟ ରାଜ୍ୟ ୨ଅଙ୍କ ଅଭିଷେକ ନହେଲେ । ଓଡ଼ିଶା ରାଜ୍ୟ ରାଜା ଶ୍ରୀଜଗନ୍ନାଥ ମହାପ୍ରଭୁ ଏମନ୍ତ କହି ଅଭିଷେକ ନୋହିଲେ ।''

ବିଶିଷ୍ଟ ବୈଦେଶିକ ଗବେଷକ କୁଲ୍‌କେ ମତ ଦିଅନ୍ତି ଯେ, ରାଜା ଅନଙ୍ଗ ଭୀମଦେବ (୩ୟ)ଙ୍କ ଅମଳରେ ହିଁ ମହାପ୍ରଭୁ ପୁରୁଷୋତ୍ତମ ଗଙ୍ଗ ସାମ୍ରାଜ୍ୟର ରାଷ୍ଟ୍ରଦେବତା ରୂପେ ପରିଗଣିତ ହୋଇଥିଲେ । ତାଙ୍କ ରାଜତ୍ୱର ଷଷ୍ଠ ବର୍ଷରେ (ଖ୍ରୀ: ୧୨୧୬) ଦ୍ରାକ୍ଷାରାମ ଶିଳାଲିପିରେ ସେ ନିଜକୁ ପୁରୁଷୋତ୍ତମ, ରୁଦ୍ର ଓ ଦୁର୍ଗାଙ୍କର 'ରାଉତ' ଓ 'ପୁତ୍ର' ବୋଲି ପରିଚିତ କରାଇଥିଲେ । ଖ୍ରୀ: ୧୨୩୦ରେ ଭୁବନେଶ୍ୱର ଶିଳାଲିପିରେ ପ୍ରଥମ କରି ଜଗନ୍ନାଥଙ୍କ ନାମ ଉଲ୍ଲେଖ ହୋଇଥିଲା ବୋଲି ଡଃ କୈଳାସ ଚନ୍ଦ୍ର ଦାଶ ଲେଖିଛନ୍ତି । ଡଃ ଭଗବାନ ପଣ୍ଡା କିନ୍ତୁ ଲେଖିଛନ୍ତି ଯେ ଭାନୁଦେବ (୨ୟ)ଙ୍କ ରାଜତ୍ୱ କାଳ (ଖ୍ରୀ. ୧୩୦୮ ରୁ ୧୩୨୭)ରେ ଜଗନ୍ନାଥଙ୍କ ନାମ ପ୍ରଥମ କରି ଶିଳାଲିପିରେ ଖୋଦିତ ହୋଇଥିଲା । ପୁରୀର ପଞ୍ଜାବୀ ମଠରୁ ପ୍ରାପ୍ତ ଭାନୁଦେବଙ୍କ ଏକ ତାମ୍ର ଅନୁଶାସନ (ଆନୁମାନିକ ଡିସେମ୍ବର, ୧୩୧୧ ଖ୍ରୀଷ୍ଟାବ୍ଦ)ରୁ ଜଣାଯାଏ ଯେ, ଭାନୁଦେବ ମଧ୍ୟ ତାଙ୍କର ସାମ୍ରାଜ୍ୟ ଜଗନ୍ନାଥଙ୍କ ପାଦପଦ୍ମରେ ଅର୍ପଣ କରି ନିଜେ ମହାପ୍ରଭୁଙ୍କର ସେବକ ଅର୍ଥାତ୍ 'ରାଉତ' ଉପାଧି ଗ୍ରହଣ କରିଥିଲେ । ସେହି କାଳରେ ଶ୍ରୀଜଗନ୍ନାଥଙ୍କ ନାମରେ 'ଅଙ୍କ' (ଶ୍ରାହି) ପ୍ରବର୍ତ୍ତନ କରାଗଲା । ଶ୍ରୀଜଗନ୍ନାଥଙ୍କ ନାମରେ ଅଙ୍କ କାଟିବା ପ୍ରଥା ଭାନୁଦେବଙ୍କ ଜୀବନକାଳ ଯାଏଁ ପ୍ରଚଳିତ ଥିଲା । କିନ୍ତୁ ତାଙ୍କର ପୁତ୍ର ନରସିଂହ ଦେବ (୩ୟ) ଖ୍ରୀ: ୧୩୨୭/୧୩୨୮ରେ ସିଂହାସନ ଆରୋହଣ କଲା ପରେ ହିଁ ରାଜାଙ୍କ ନାମରେ ଶ୍ରାହି ପ୍ରଚଳନ କରାଗଲା । ଡଃ ରାଜଗୁରୁ କହନ୍ତି, ସୁତରାଂ ଖ୍ରୀ: ୧୩୦୮-୧୩୨୮ ମଧ୍ୟବର୍ତ୍ତୀ ୨୦ବର୍ଷ ପର୍ଯ୍ୟନ୍ତ ଶ୍ରୀପୁରୁଷୋତ୍ତମ- ଜଗନ୍ନାଥଙ୍କ ଅଙ୍କ ବ୍ୟବହୃତ ହୋଇ ପରବର୍ତ୍ତୀ କାଳରେ ତାହା ପରିହାର କରାଗଲା । ପରେ ପରେ ରାଜା କପିଳେନ୍ଦ୍ର ଦେବ ଓ୍ୱାରଙ୍ଗଲ ଶିଳାଲିପିରେ ନିଜକୁ ଶିବ, ଦୁର୍ଗା ଓ ପୁରୁଷୋତ୍ତମଙ୍କ ପୁତ୍ର ବୋଲି ଉଲ୍ଲେଖ କରିଛନ୍ତି । ଜଗନ୍ନାଥଙ୍କ ମୂର୍ତ୍ତି କଳ୍ପନାରେ ଏହି ତିନି ଦିଅଁ (ବଳଭଦ୍ର, ସୁଭଦ୍ରା ଓ ଜଗନ୍ନାଥ)ଙ୍କୁ ନିର୍ଣ୍ଣୟ କରାଯାଇ ଧର୍ମ ଓ ମତବାଦ ମଧ୍ୟରେ ଐକ୍ୟଭାବର ପ୍ରତିଷ୍ଠା କରାଯାଇଛି ।

ଗଙ୍ଗବଂଶର ଶାସନକାଳରେ ଶ୍ରୀଜଗନ୍ନାଥଙ୍କୁ କେନ୍ଦ୍ର କରି ଓଡ଼ିଶାରେ ବୈଷ୍ଣବଧର୍ମର ବିକାଶ ଘଟିଥିଲା । ପରବର୍ତ୍ତୀ ସୂର୍ଯ୍ୟବଂଶୀ ଶାସନ କାଳରେ ରାୟ ରାମାନନ୍ଦ ଓ ପଞ୍ଚସଖାଙ୍କ ଉଦ୍ୟମରେ ତଥା ଶ୍ରୀ ଚୈତନ୍ୟଙ୍କ ସକ୍ରିୟ ନେତୃତ୍ୱରେ ଓଡ଼ିଶାରେ ବୈଷ୍ଣବଧର୍ମ ଅଧିକ ଦୃଢ଼ୀଭୂତ ଓ ଲୋକପ୍ରିୟ ହୋଇ ପାରିଥିଲା ବୋଲି ଗଜପତି ରାଜାମାନେ ଶ୍ରୀଜଗନ୍ନାଥଙ୍କୁ ରାଷ୍ଟ୍ରଦେବତା

ଭାବେ ଭକ୍ତି କରୁଥିଲେ ଏବଂ ସେମାନେ ନିଜ ନିଜକୁ ତାଙ୍କର ସେବକ ଓ ପ୍ରତିନିଧି ବୋଲି ପରିଚୟ ଦେଉଥିଲେ । ସେମାନେ ଶ୍ରୀଜଗନ୍ନାଥଙ୍କ ଶ୍ରୀମନ୍ଦିରକୁ ବହୁ ଧନରତ୍ନ ଓ ଭୂସମ୍ପତ୍ତି ଦାନ କରିଥିଲେ । ଶ୍ରୀଜଗନ୍ନାଥଙ୍କୁ ରାଷ୍ଟ୍ରମୁଖ୍ୟ ଭାବେ ଏବଂ ନିଜକୁ ତାଙ୍କର ସେବକ ବୋଲି ପରିଚୟ ଦେବାର ମୂଳରେ ଏକ ରାଜନୈତିକ ଉଦ୍ଦେଶ୍ୟ ବିଦ୍ୟମାନ ଥିଲା (ଓଡ଼ିଶା ଇତିହାସ-ଡଃ ଦଣ୍ଡପାଣି ବେହେରା) ।

ଓଡ଼ିଶାର ଶେଷ ସ୍ୱାଧୀନ ହିନ୍ଦୁରାଜା ମୁକୁନ୍ଦ ହରିଚନ୍ଦନଙ୍କ ମୃତ୍ୟୁ (ଖ୍ରୀଃ ୧୫୬୮ ) ଯାଏଁ ରାଜକୀୟ ପୃଷ୍ଟପୋଷକତାରେ ଶ୍ରୀଜଗନ୍ନାଥ ମନ୍ଦିରର ବହୁ ଉନ୍ନତି ବିଧାନ ହୋଇଥିଲା । ୧୫୬୮ ଖ୍ରୀଷ୍ଟାବ୍ଦ ଯାଏଁ ଓଡ଼ିଶାର ସାମ୍ରାଜ୍ୟ ଗଙ୍ଗାଠାରୁ ଗୋଦାବରୀ ଯାଏଁ ବ୍ୟାପ୍ତ ହୋଇଥିଲା । ଓଡ଼ିଶାର ଏହି ଶେଷ ହିନ୍ଦୁରାଜା ମୁକୁନ୍ଦଦେବ (ରାଜତ୍ୱ କାଳ ୧୫୫୯-୧୫୬୮ ଖ୍ରୀଷ୍ଟାବ୍ଦ), ବଙ୍ଗ ସୁଲତାନଙ୍କ ବିରୁଦ୍ଧରେ ଦିଲ୍ଲୀର ମୋଗଲ ସମ୍ରାଟ ଆକବରଙ୍କ ସହିତ ବନ୍ଧୁତାର ସୂତ୍ରରେ ମୈତ୍ରୀ କରିଥିଲେ । ଯେତେବେଳେ ଆକବର ଚିତୋର ଆକ୍ରମଣରେ ଲିପ୍ତ ହୋଇଥିଲେ ସେହି ସମୟରେ ବଙ୍ଗଳାର ଆଫଗାନ୍ ସୁଲତାନ୍ ସୁଲେମାନ୍ କରରାଣୀ ଓଡ଼ିଶା ଆକ୍ରମଣ କରି ମୁକୁନ୍ଦଦେବଙ୍କୁ ପରାଜିତ କଲେ । ମୁକୁନ୍ଦଦେବ ପରାସ୍ତ ହେବା ପରେ ଖ୍ରୀଃ ୧୫୬୮ରେ ଓଡ଼ିଶା ବଙ୍ଗଳାର ଆଫଗାନ୍ ଶାସନାଧୀନ ହେଲା ଏବଂ ସେଥି ସହିତ ଓଡ଼ିଶା ସାମ୍ରାଜ୍ୟର ପତନ ଘଟିଥିଲା ।

ଆଫଗାନ୍ ସେନାପତି କଳାପାହାଡ଼, ଜଣେ ଘୋର ହିନ୍ଦୁ ବିରୋଧୀ । ସେ ବହୁ ହିନ୍ଦୁ ମନ୍ଦିର ଓ ଦେବଦେବୀ ମୂର୍ତ୍ତିର ଧ୍ୱଂସ ସାଧନ କରିଥିଲା । କୋଣାର୍କ ମନ୍ଦିରକୁ ଧ୍ୱଂସ କଲା ପରେ ପୁରୀ ଶ୍ରୀମନ୍ଦିର ଆକ୍ରମଣ କରି ଅନେକ ଧନରତ୍ନ ଲୁଣ୍ଠନ କରିବା ସଙ୍ଗେ ସଙ୍ଗେ ମନ୍ଦିରର କେତେକାଂଶ ନଷ୍ଟ କରି ଦେଇଥିଲା । କଳାପାହାଡ଼ ଶ୍ରୀଜଗନ୍ନାଥଙ୍କ ବିଗ୍ରହକୁ ନେଇଯାଇ ଗଙ୍ଗାକୂଳରେ ଜାଳିଦେଲା ବୋଲି ମାଦଳାପାଞ୍ଜିରେ ଉଲ୍ଲେଖ ଅଛି । ଆଉ ଏକ ମତରେ କଳାପାହାଡ଼ର ଆକ୍ରମଣରୁ ବିଗ୍ରହଙ୍କୁ ରକ୍ଷା କରିବାପାଇଁ ଶ୍ରୀମନ୍ଦିରର ସେବକମାନେ ତାଙ୍କୁ ନେଇ ଚିଲିକାକୂଳରେ ପାରିକୁଦଠାରେ ଲୁଚାଇ ରଖିଥିଲେ । 'ମାଦଳାପାଞ୍ଜି'ରେ ଗୋଟିଏ ବିଗ୍ରହ କଥା ଉଲ୍ଲେଖ ଅଛିଃ ''ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କୁ ଗଙ୍ଗାକୂଳ ତଣ୍ଡାଯାଏ ନେଲା । କାଠ କୁଢ଼ାଇ ଅଗ୍ନିରେ ପୂରେଇ ଜାଳି ଦେଲା ।''

'ମାଦଳାପାଞ୍ଜି', ଆବୁଲ୍‌ଫଜଲଙ୍କ 'ଆଇନ-ଇ-ଆକବରି' ପ୍ରଭୃତି ଗ୍ରନ୍ଥରେ କଳାପାହାଡ଼ ନାମ ଉଲ୍ଲେଖ ଥିଲେ ମଧ୍ୟ କଳାପାହାଡ଼ ଏକ ଐତିହାସିକ ଚରିତ୍ର ବୋଲି ଅନେକ ବିଶିଷ୍ଟ ଐତିହାସିକ ଗ୍ରହଣ କରୁନାହାନ୍ତି । ଐତିହାସିକ ଡଃ ନବୀନ କୁମାର ସାହୁ ଓଗେର ଲେଖିଛନ୍ତି ଃ

Many scholars, however, do not believe in the historicity of this episode and they discard Kalapahada as a legendary figure. The destruction of many Hindu temples and images during the Muslim invasion of Orissa in A.D.1568, however cannot be denied. (History of Orissa-Dr.N.K. Sahu, Dr. P.K. Mishra and Dr. J.K. Sahu, Nalanda, 2001,

Cuttack) । କଳାପାହାଡ଼ ଏକ ଐତିହାସିକ ଚରିତ୍ର ହୋଇଥାଉ କିମ୍ବା ନ ହୋଇଥାଉ, ସେହି ସମୟରେ ଯେ ଓଡ଼ିଶାର ଅସଂଖ୍ୟ ହିନ୍ଦୁଧର୍ମ କୀର୍ତ୍ତି ଓ ସ୍ଥାପତ୍ୟକୁ ଧ୍ୱସ୍ତ, ବିଧ୍ୱସ୍ତ କରାଯାଇଥିଲା, ଏହା ନିଶ୍ଚିତ ଐତିହାସିକ ସତ୍ୟ !

ଓଡ଼ିଶାର ଏହି ଦୁର୍ଦ୍ଦିନରେ ଜନାର୍ଦ୍ଦନ ବିଦ୍ୟାଧର (ଦନେଇ ବିଦ୍ୟାଧର)ଙ୍କ ପୁତ୍ର ରାମଚନ୍ଦ୍ର ଦେବ ଓଡ଼ିଶାର କେତେଜଣ ସାମନ୍ତ ରାଜାଙ୍କ ସମର୍ଥନରେ ଖ୍ରୀ: ୧୫୭୧-୭୨ରେ ଖୁରୁଧା ରାଜ୍ୟ ପ୍ରତିଷ୍ଠା କଲେ । ଓଡ଼ିଶା ଇତିହାସରେ ଏହା ଭୋଇ ରାଜବଂଶ ନାମରେ ପରିଚିତ । 'ମାଦଳାପଞ୍ଜି'ରେ 'ଯଦୁବଂଶ' କୁହାଯାଇଛି । ''ଯଦୁବଂଶ ରାଜାଏ ଏଣେ ଉଦିତ ହୋଇଲେ । ଦନେଇ ବିଦ୍ୟାଧରଙ୍କ ପୁଅ କୋଟମୀଗଡ଼ରେ ଥିଲେ । ରାମଚନ୍ଦ୍ର ଦେବ ରାଜା ହୋଇଲେ । ଖୁରୁଧା ମାରଦାରେ ଜଗନ୍ନାଥପୁରେ କଟକ କରି ରହିଲେ ବରୁଣାଇ ପର୍ବତ ତଳେ ।''

ବିଚକ୍ଷଣ ରାଜା ରାମଚନ୍ଦ୍ର ଦେବ ସମ୍ରାଟ ଆକବରଙ୍କ ସହିତ ସୁସମ୍ପର୍କ ରକ୍ଷା କରିଥିଲେ । ଫଳରେ ତାଙ୍କୁ ଖୋର୍ଦ୍ଧାର ରାଜା ରୂପେ ମାନ୍ୟତା ପ୍ରଦାନ କରାଗଲା ଏବଂ ତାଙ୍କୁ ଶ୍ରୀଜଗନ୍ନାଥ ମନ୍ଦିରର ତତ୍ତ୍ୱାବଧାରକ ରୂପେ ମଧ୍ୟ ସ୍ୱୀକୃତି ମିଳିଲା । ରାମଚନ୍ଦ୍ର ଦେବଙ୍କୁ 'ମହାରାଜା' ଉପାଧି ମିଳିବା ସଙ୍ଗେ ସଙ୍ଗେ ତିନି ହଜାର ପଦାତିକ ସୈନ୍ୟ ଓ ପାଞ୍ଚ ଶହ ଅଶ୍ୱାରୋହୀ ସୈନ୍ୟଙ୍କର ସେନାପତି ପଦବୀ (rank of Mansabdar) ମିଳିଲା । ସେ ସମ୍ରାଟ ଆକବରଙ୍କୁ ତାଙ୍କର ସର୍ବମୟ ଅଧିକାରୀ (suzerainty) ମାନି, ମୋଗଲ ଦରବାରକୁ ବାର୍ଷିକ ପେସ୍‌କସ୍ (କର) ପଠାଇବାକୁ ଅଙ୍ଗୀକାର ବଦ୍ଧ ହେଲେ । ସମ୍ରାଟ ଆକବରଙ୍କ ଶାସନରେ ରାଜା ମାନସିଂହ ବଂଗର ସୁବାଦାର ଭାବେ ଓଡ଼ିଶାର ଶାସନ ପରିଚାଳନା କରୁଥିଲେ । ସେ ପ୍ରଥମେ ରାମଚନ୍ଦ୍ର ଦେବଙ୍କୁ ସମର୍ଥନ କରୁନଥିଲେ ମଧ୍ୟ ପରେ ଆକବରଙ୍କ ନିର୍ଦ୍ଦେଶରେ ତାଙ୍କୁ ସମର୍ଥନ କରିଥିଲେ । ମାନସିଂହଙ୍କ ନେତୃତ୍ୱରେ ଓଡ଼ିଶାରେ ଆଫଗାନ ଶାସନର ବିଲୟ ଘଟିଥିଲା । ଏକ ଚୁକ୍ତି ବଳରେ ଆଫଗାନମାନଙ୍କୁ ସମ୍ରାଟ ଆକବରଙ୍କ ସାର୍ବଭୌମତ୍ୱ ମାନିବାକୁ ପଡ଼ିଥିଲା ।

ଖୋର୍ଦ୍ଧାରେ ରାଜବଂଶ ପ୍ରତିଷ୍ଠା ପରେ ରାମଚନ୍ଦ୍ର ଦେବ ପୁରୀରେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କୁ ପୁନଃ ସଂସ୍ଥାପନ ପାଇଁ ଉଦ୍ୟମ କରିଥିଲେ । 'ମାଦଳାପାଞ୍ଜି' ପ୍ରକାରେ କଳାପାହାଡ଼ ଗଙ୍ଗାକୂଳରେ ବିଗ୍ରହକୁ ଅଗ୍ନିରେ ଦହନ କଲାବେଳେ ''ପଠାଣର ଦେହ ଖଣ୍ଡ ଖଣ୍ଡ ହୋଇ ଫାଟିଲା । କାନ୍ଦି କହିଲା ଓଡ଼ିଶାର ଦେବତା ଜଳାଇ ଦେଲୁ ତେଣୁ କରି ତୋହର ଦେହ ଫାଟିଲା । ଏହା ଶୁଣି ତାହାର ପୁଅ ପରମେଶ୍ୱରଙ୍କୁ ଗଙ୍ଗାରେ ମେଲି ଦେଲା । ସେ ଦାରୁ ଭାସି ଆସନ୍ତେ ଅମୁରା ଗୋଟିଏ ଜାଳିକାଠ ବୋଲି ଧରି ତାହା ବାରିରେ ପକାଇଲା । ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କୁ ନେବାବେଳେ ବିଶର ମହାନ୍ତି ଯାଇଥିଲା । ବୈଷ୍ଣବ ହୋଇ ସାଙ୍ଗେ ଗୋଡ଼ାଇଥିଲା । ଆଠମାସ ରହି ବାଦ୍ୟପଣ କରି ଦାରୁ ମାଗିଲା । ବ୍ରହ୍ମ ଖୋଳ କରି ମୃଦଙ୍ଗେ ପୂରାଇ ଘେନି ଅଇଲା । କୁଜଙ୍ଗ ଗଡ଼ରେ ଆଣି ପ୍ରବେଶ କଲା । ଖଣ୍ଡାଇତ ଓଳିଆ ଉପରେ ଦୁଇ ଠାକୁରେ ରହିଲେ ।''

ରାମଚନ୍ଦ୍ର ଦେବ କୁଜଙ୍ଗ ଗଡ଼ରୁ 'ବ୍ରହ୍ମ' ଅଣାଇ ବିଧି ମୁତାବକ ଦାରୁମୂର୍ତ୍ତି ଗଢ଼ାଇ ବ୍ରହ୍ମ ସେଥିରେ ସଂସ୍ଥାପନ କରାଇଥିଲେ । ତାଙ୍କର ୧୧ ଅଙ୍କରେ ଶ୍ରାବଣ ଶୁକ୍ଳ ନବମୀ ଦିନ

ଶ୍ରୀପୁରୁଷୋତ୍ତମ (ଜଗନ୍ନାଥ)ଙ୍କୁ ବଡ଼ଦେଉଳ ରତ୍ନ ସିଂହାସନରେ ବିଜେ କରାଇଲେ । ଏହି ବିଜେ ୧୭-୭-୧୫୭୫ ତାରିଖରେ ହୋଇଥିଲା ବୋଲି ଐତିହାସିକ କେଦାରନାଥଙ୍କ ମତ (ଖୁରୁଧା ଇତିହାସ) । ରାମଚନ୍ଦ୍ର ଦେବଙ୍କ ଏହି ମହତ କାର୍ଯ୍ୟ ଯୋଗୁଁ ସମଗ୍ର ହିନ୍ଦୁ ସମାଜରେ ଆନନ୍ଦ, ଉତ୍ସାହର ଢ଼େଉ ଖେଳି ଯାଇଥିଲା । ସମସ୍ତ ସନ୍ୟାସୀ, ବ୍ରହ୍ମଚାରୀ ଓ ସାମନ୍ତ ବ୍ରାହ୍ମଣମାନେ ରାଜାଙ୍କୁ ଦ୍ୱିତୀୟ ଇନ୍ଦ୍ରଦ୍ୟୁମ୍ନ ଓ ଅଭିନବ ଇନ୍ଦ୍ରଦ୍ୟୁମ୍ନ ଆଖ୍ୟା ଦେଇ ସମ୍ମାନିତ କରିଥିଲେ । ନୂତନ ବିଗ୍ରହ ପ୍ରତିଷ୍ଠା ଓ ମହାପ୍ରସାଦର ପୁନଃ ପ୍ରଚଳନ ପରେ ପ୍ରାୟ ଆଠ ବର୍ଷ ଯାଏଁ ବନ୍ଦ ହୋଇଯାଇଥିବା ରଥଯାତ୍ରା ପୁନର୍ବାର କରାଯାଇଥିଲା ।

ବ୍ରହ୍ମ ଆଣିଥିବା ବିଶର ମହାନ୍ତିଙ୍କୁ ରାଜା 'ପୋର ନାୟକ' ଉପାଧି ଦେଇଥିଲେ । ଏହି ରାଜାଙ୍କ ଅମଳରେ ରାଜା ମାନସିଂହଙ୍କ ପତ୍ନୀ ଗୌରୀରାଣୀ ମୁକ୍ତିମଣ୍ଡପ ନିର୍ମାଣ କରାଇଥିଲେ ବୋଲି ମାଦଳାପାଞ୍ଜିରେ ଲେଖାଅଛି । ରାଜା ମାନସିଂହ ୧୫୯୩ ଖ୍ରୀଷ୍ଟାବ୍ଦରେ କରାଇଥିବା ବନ୍ଦୋବସ୍ତଦ୍ୱାରା ମୋଗଲ ବାଦଶାହାଙ୍କୁ ପେସକସ୍ ଦେବା ସର୍ତ୍ତରେ ଉପଭୋଗ କରୁଥିବା ଜମିଦାରୀଗୁଡ଼ିକର ବିବରଣୀ ମିଳେ । ସେଥି ମଧ୍ୟରୁ ଖୁରୁଧା ସମ୍ପର୍କୀୟ ବିବରଣରୁ ଜଣାଯାଏ ଯେ, ରାଜା ରାମଚନ୍ଦ୍ର ଦେବ ୩୫୦୦ ସୈନ୍ୟର 'ମାନସବାଦାର' ଥିଲେ; ଅର୍ଥାତ ୩୫୦୦ ସୈନ୍ୟ ରଖିବାପାଇଁ ତାଙ୍କର ଅଧିକାର ଥିଲା । ତାଙ୍କର ପ୍ରତ୍ୟକ୍ଷ ଶାସନରେ ଖୁରୁଧା ରାଜ୍ୟ ମଧ୍ୟରେ ୭୧ଟି କିଲ୍ଲା ବା ଗଡ଼ ଥିଲା । ଏହା ବ୍ୟତୀତ ତାଙ୍କ ଅଧୀନସ୍ଥ ୩୧ଟି ଜମିଦାରୀରେ ୧୨୯ଟି କିଲ୍ଲା ବା ଗଡ଼ ଥିଲା । ଆଧୁନିକ ପୁରୀ ଜିଲ୍ଲାର କୋଠଦେଶ ବ୍ୟତୀତ ସମସ୍ତ ଅଞ୍ଚଳ, ଗଞ୍ଜାମ ଜିଲ୍ଲାର କେତେକାଂଶ, କଟକ ଜିଲ୍ଲାର ବାଙ୍କୀ ଓ ଆଠଗଡ଼ ସବ୍-ଡିଭିଜନ୍ ଓ ଢ଼େଙ୍କାନାଳ ଜିଲ୍ଲାର ଅଧିକାଂଶ ରାମଚନ୍ଦ୍ର ଦେବଙ୍କ ଅଧିକାର ଭୁକ୍ତ ଥିଲା । ଏହାର ଆନୁମାନିକ କ୍ଷେତ୍ରଫଳ ପ୍ରାୟ ଦଶହଜାର ବର୍ଗମାଇଲ ବା ବର୍ତ୍ତମାନ ଓଡ଼ିଶାର ଏକ ଷଷ୍ଠାଂଶ (ଦ୍ରଷ୍ଟବ୍ୟ 'ଖୁରୁଧା ଇତିହାସ'-କେଦାରନାଥ ମହାପାତ୍ର) ।

ଗଜପତି ରାମଚନ୍ଦ୍ର ଦେବଙ୍କ ପରେ ତାଙ୍କ ପୁତ୍ର ପୁରୁଷୋତ୍ତମ ଦେବ ଖୁରୁଧା ରାଜା ହେଲେ ଖ୍ରୀ: ୧୬୦୦ରେ । ସମ୍ରାଟ ଆକବରଙ୍କ ମୃତ୍ୟୁ ହୁଏ ଖ୍ରୀ: ୧୬୦୫ରେ । ତାଙ୍କ ପରେ ତାଙ୍କ ଜ୍ୟେଷ୍ଠ ପୁତ୍ର ଜାହାଙ୍ଗୀର ସମ୍ରାଟ ହେଲେ । ସେ ପିତାଙ୍କ ପରି ଅନ୍ୟ ଧର୍ମ ପ୍ରତି ଉଦାର ନଥିଲେ । ମାନସିଂହ ବଙ୍ଗ, ବିହାର ଓ ଓଡ଼ିଶାର ଗଭର୍ଣ୍ଣର ଭାବେ ଖ୍ରୀ: ୧୬୦୬ ଯାଏଁ ରହିଥିଲେ । ଖ୍ରୀ: ୧୬୦୭ରେ ଓଡ଼ିଶା ଏକ ସ୍ୱତନ୍ତ୍ର ସୁବାରେ ପରିଣତ ହେଲା ଓ କଟକ ହେଲା ମୋଗଲ ସୁବାଦାରମାନଙ୍କର ରାଜଧାନୀ । ହାସିମ୍ ଖାଁ ଓଡ଼ିଶାର ପ୍ରଥମ ସୁବାଦାର ନିଯୁକ୍ତ ହେଲେ । ପ୍ରତ୍ୟେକ ମୋଗଲ ସୁବାଦାର ମୋଗଲ ସମ୍ରାଟଙ୍କ ସନ୍ତୋଷବିଧାନ ଓ ଅନୁଗ୍ରହ ଲାଭପାଇଁ ହିନ୍ଦୁଧର୍ମବିରୋଧୀ କାର୍ଯ୍ୟକଳାପରେ ଲିପ୍ତ ରହିଲେ । ହାସିମ୍ ଖାଁଙ୍କ ଅଧୀନରେ କେଶୋଦାସ ମାରୁ ନାମକ ଜଣେ ରାଜପୁତ ଜାଗିରଦାର ଥିଲେ । ହିନ୍ଦୁ ହୋଇ ମଧ୍ୟ ନିଜର ସୁବାଦାରଙ୍କ ସନ୍ତୋଷ ପାଇଁ ରଥଯାତ୍ରା ସମୟରେ ପୁରୀ ମନ୍ଦିର ଉପରେ ଆକ୍ରମଣ କଲେ । ଗୁଣ୍ଡିଚା ଯାତ୍ରାଯୋଗୁଁ ଦିଅଁମାନେ ଗୁଣ୍ଡିଚା ଘରେ ଥିବାରୁ ସମସ୍ତଙ୍କ ଦୃଷ୍ଟି ସେଠାରେ ନିବଦ୍ଧ ଥିଲା ।

କେଶୋଦାସ ଜଗନ୍ନାଥ ମନ୍ଦିର ଦର୍ଶନ କରିବା ଛଳନାରେ ବହୁ ଛଦ୍ମବେଶୀ ରାଜପୁତ ସୈନ୍ୟଙ୍କ ସହ ମନ୍ଦିରରେ ପ୍ରବେଶ କରି ଭଣ୍ଡାରରୁ ଅନେକ ଧନରତ୍ନ ଲୁଣ୍ଠନ କରିନେଇଥିଲା । ଲୁଣ୍ଠନ ସହିତ ତିନୋଟି ରଥକୁ ଜାଳିପୋଡ଼ି ଦେଇଥିଲା । ରାଜା ବାଧ୍ୟ ହୋଇ ତାହା ସହିତ ଏକ ଅପମାନଜନକ ସନ୍ଧି କରିଥିବା ଇତିହାସରୁ ଜଣାଯାଏ ।

ହାସିମ୍ ଖାଁଙ୍କ ପରେ ଜଣେ ହିନ୍ଦୁ ରାଜା ତୋଡରମଲ୍ଲଙ୍କ ପୁତ୍ର କଲ୍ୟାଣମଲ୍ଲ ଓଡ଼ିଶାର ସୁବାଦାର ହେଲେ (ଖ୍ରୀଃ ୧୬୧୧-୧୬୧୭) । କେଶୋଦାସ ପରି କଲ୍ୟାଣ ମଲ୍ଲ ହିନ୍ଦୁ ହୋଇ ମଧ୍ୟ ହିନ୍ଦୁଧର୍ମ ବିରୋଧୀ କାର୍ଯ୍ୟ କରିବାକୁ ପଛେଇ ନଥିଲେ । ସେ ଖୋର୍ଦ୍ଧା ଆକ୍ରମଣ କରି ଲୁଣ୍ଠନ କାର୍ଯ୍ୟ କରିଥିଲେ । ତାଙ୍କ ସମ୍ପର୍କରେ ସଠିକ୍ ବିବରଣୀ ମିଳୁନାହିଁ । ତାଙ୍କର ଆକ୍ରମଣ ପୂର୍ବରୁ ସେବକମାନେ ବିଗ୍ରହମାନଙ୍କୁ ଶ୍ରୀମନ୍ଦିରରୁ ନେଇଯାଇ ଚିଲିକାର ଏକ ଦ୍ୱୀପାଞ୍ଚଳରେ ଲୁଚାଇ ରଖିଥିଲେ । 'ମାଦଳାପାଞ୍ଜି'ରେ ଏହି ସ୍ଥାନକୁ 'ଗୁରୁବାଦାଇ' କୁହାଯାଇଛି । କଲ୍ୟାଣଙ୍କୁ ଅପସାରଣ କରାଯାଇ ମକରମ ଖାଁଙ୍କୁ ସୁବାଦାର ନିଯୁକ୍ତ କରାଗଲା ଖ୍ରୀଃ ୧୬୧୭ ଅଗଷ୍ଟରେ । ସେ ସେହିବର୍ଷ ଖୋର୍ଦ୍ଧାଗଡ଼ ଆକ୍ରମଣ କଲେ । ରାଜା ପୁରୁଷୋତ୍ତମ ଦେବ ଗଡ଼ମାଣିତ୍ରୀରେ ଯାଇ ଆତ୍ମଗୋପନ କଲେ । ତାଙ୍କ ସାଥିରେ ସେବକ (ପୂଜକ) ମାନେ ଥିଲେ । ଠାକୁରଙ୍କୁ ଗୁରୁବାଦାଇ ଠାରୁ ନେଇ ବାଣପୁର ଅଞ୍ଚଳରେ ରଖା ଯାଇଥିଲା । ମାଦଳା ପାଞ୍ଜିରେ ଉଲ୍ଲେଖ ଅଛି- ''ପରମେଶ୍ୱର ଗୁରୁବାଇଠାରୁ ଯାଇ ବାଣପୁର ସୀମା ଗବପଦର ଠାଇ ନଈ ଭିତରେ ଚାପରେ ବିଜେ କରିଥିଲେ ।'' ମକରମ ଖାଁଙ୍କ ଅଧୀନରେ ଖୋର୍ଦ୍ଧା ଏକବର୍ଷ କାଳ ରହିଥିଲା । ଖ୍ରୀଃ ୧୬୨୦ରେ ମକରମ ଖାଁଙ୍କ ପରେ ଚଜଲାଇର ଖାଁଙ୍କୁ (ମତାନ୍ତରେ ହୁସେନ୍ ଅଲ୍ଲୀ ଖାଁ) ଓଡ଼ିଶାର ସୁବାଦାର ଓ ତାଙ୍କ ପରେ ନୁରଜାହାନଙ୍କ ପୁତୁରା ଅହମଦ୍ ବେଗ-କୁ ନିଯୁକ୍ତ କରାଗଲା । ସେ ଖ୍ରୀଃ ୧୬୨୩ରେ କାର୍ଯ୍ୟଭାର ଗ୍ରହଣ କରିଥିଲେ । ଏହି ସମୟରେ ଯୁବରାଜ ସାହାଜାହାନ ପିତା ଜାହାଙ୍ଗୀର ଓ ମାତା ନୁରଜାହାନଙ୍କ ବିରୁଦ୍ଧରେ ବିଦ୍ରୋହ କଲେ । ସେ ନିଜର ସମର୍ଥକ ସୈନ୍ୟଦଳ ସହ ଗୋଲକୁଣ୍ଡା ଦେଇ ଓଡ଼ିଶାରେ ପ୍ରବେଶ କରିବାକୁ ଉଦ୍ୟମ କରୁଥିବା ଜାଣିପାରି ଅହମଦ୍ ବେଗ୍ ବଙ୍ଗଳାକୁ ପଳାୟନ କଲେ । ଇତି ମଧ୍ୟରେ ରାଜା ପୁରୁଷୋତ୍ତମ ଦେବଙ୍କ ମୃତ୍ୟୁ ହୋଇ ସାରିଥିଲା ଓ ତାଙ୍କର ପୁତ୍ର ଗଜପତି ନରସିଂହ ଦେବ ଖୁରୁଧାର ରାଜା ହୋଇ ସାରିଥିଲେ । (ରାଜତ୍ୱକାଳ ଖ୍ରୀଃ ୧୬୨୧-୧୬୪୭) । ନରସିଂହ ଦେବ ସାହାଜାହାନଙ୍କୁ ଭେଟି ନିଜର ଆନୁଗତ୍ୟ ପ୍ରକାଶ କରିଥିଲେ । ସାହାଜାହାନ୍ ବିନା ଅସୁବିଧାରେ ଓଡ଼ିଶା ଦଖଲ କଲେ ଏବଂ ରାଜା ନରସିଂହ ଦେବଙ୍କୁ ଅନୁମତି ଦେଲେ ଶ୍ରୀଜଗନ୍ନାଥଙ୍କୁ ପୁରୀ ମନ୍ଦିରରେ ପୁନଃ ସଂସ୍ଥାପନ କରିବାକୁ । ସାହାଜାହାନ ବଙ୍ଗ ସୁବାଦାରଙ୍କୁ ପରାସ୍ତ କଲା ପରେ ସେଠାରେ ବଙ୍ଗ, ବିହାର ଓ ଓଡ଼ିଶାର ଅଧୀଶ୍ୱର ହୋଇ ରହିଲେ । ପରେ ସେ ତାଙ୍କର ଆନୁଗତ୍ୟ ପ୍ରଦର୍ଶନ କରିଥିଲେ ଓ ପିତାଙ୍କ ମୃତ୍ୟୁ ପରେ ଦିଲ୍ଲୀ ସିଂହାସନ ଖ୍ରୀଃ ୧୬୨୭ରେ ଆରୋହଣ କରିଥିଲେ ।

ଶ୍ରୀମନ୍ଦିରରେ ବିଗ୍ରହମାନଙ୍କୁ ପୁନଃ ସ୍ଥାପନ କଲା ପରେ ନରସିଂହ ଦେବ କେତେକ ନୂତନ ଯାନିଯାତ୍ରା ଯଥା 'ବସନ୍ତ ଗୁଣ୍ଡିଚା' ଯାତ୍ରା ଆରମ୍ଭ କରିଥିଲେ । ସାହାଜାହାନଙ୍କ ଦାକ୍ଷିଣାତ୍ୟ

ପ୍ରତ୍ୟାବର୍ତ୍ତନ ସମୟ (ଖ୍ରୀ: ୧୬୨୫)ରୁ ନରସିଂହ ଦେବଙ୍କ ମୃତ୍ୟୁ (୧୬୪୭) ଯାଏଁ କୌଣସି ସୁବାଦାର ଖୁରୁଧା ରାଜ୍ୟ କିମ୍ବା ପୁରୀ ଜଗନ୍ନାଥ ମନ୍ଦିର ଆକ୍ରମଣ କରିନଥିଲେ । ଐତିହାସିକ କେଦାରନାଥ ଲେଖିଛନ୍ତି, ଯେ ରାଜା ନରସିଂହ ଦେବଙ୍କ ରାଜତ୍ୱର ଅଧିକ ଭାଗ ଅପେକ୍ଷାକୃତ ସୁଖଶାନ୍ତିରେ କଟିଥିବାରୁ ରାଜା ଲୁଣି ଖାଇଯାଇଥିବା ଜଗନ୍ନାଥ ମନ୍ଦିର ଦେହରେ ପ୍ରଥମ କରି ପଲସ୍ତରା କରିଥିଲେ । ବାରମ୍ବାର ମୁସଲମାନ ସେନାର ଆକ୍ରମଣ ଓ ଆକ୍ରମଣଜନିତ ଅବହେଳାଯୋଗୁଁ ଏହାର ବାହାର କାନ୍ଥ ଖଣ୍ଡିଆ ଖାବରା ହୋଇ ଗଛପତ୍ର ଉଠି ଯାଇଥିଲା । ତେଣୁ ଏହି ଚୂନ କାମ, ତା୨୧.୧୨.୧୬୩୬ ଠାରୁ ତା୨୪.୧୨.୧୬୩୭ ପ୍ରାୟ ଏକବର୍ଷରେ ଶେଷ ହୋଇଥିଲା ।

ମହମ୍ମଦ ଜମାନ୍‌ଙ୍କ ପରେ ମୁତାକ୍ୱାଦ ଖାଁ ଦ୍ୱିତୀୟ ବାର ଓଡ଼ିଶାର ସୁବାଦାର ହୋଇଥିଲେ । ରାଜାଙ୍କ ୩୨ ଅଙ୍କରେ ମିଥୁନ ସାତ ଦିନ (ଖ୍ରୀ: ୧୬୪୭ ଜୁନ୍ ମାସ ୫ ତାରିଖ)ରେ ସୁବାଦାରଙ୍କ ନିର୍ଦ୍ଦେଶରେ ଫତେ ଖାଁ ନରସିଂହ ଦେବଙ୍କୁ ହତ୍ୟା କରିବା ସଙ୍ଗେ ସଙ୍ଗେ ରାଜନଅରର ଧନଦ୍ରବ୍ୟ ଓ ମହାପ୍ରଭୁଙ୍କ ଭଣ୍ଡାର ଲୁଣ୍ଠନ କରିଥିବା ଜଣାଯାଏ । ଏହି ହତ୍ୟାକାଣ୍ଡପାଇଁ ଫତେ ଖାଁ ଅପେକ୍ଷା ରାଜାଙ୍କ ଆତ୍ମୀୟ ଅନିରୁଦ୍ଧ ରାୟ ଅଧିକ ଦାୟୀ ବୋଲି ଜଣାଯାଏ । ନରସିଂହ ଦେବ ଅପୁତ୍ରିକ ଥିବାରୁ ତାଙ୍କ ପରେ କିଏ ରାଜା ହେବ ଏ ନେଇ ତାଙ୍କର ବଡ଼ଭାଇ ବଳଭଦ୍ର ରାୟ ଓ ପୁତୁରା (ସାନଭାଇ ଗୋକୁଳ ରାୟଙ୍କ ପୁତ୍ର) ଗଙ୍ଗାଧରଙ୍କ ମଧ୍ୟରେ ବିବାଦ ଲାଗିଲା । ନରସିଂହଙ୍କ ପରେ ଗଙ୍ଗାଧର ଦେବ ରାଜା ହେଲେ । ସେ ମାତ୍ର ୩ ମାସ ୨୧ ଦିନ ରାଜଗାଦିରେ ବସିଥିବା ଜଣାଯାଏ । ତାଙ୍କୁ ତାଙ୍କର ପିତୃବ୍ୟ ବଳଭଦ୍ର ରାୟ ହତ୍ୟାକରାଇ ରାଜା ହେଲେ । ବଳଭଦ୍ର ରାୟ (ଦେବ)ଙ୍କ ରାଜତ୍ୱ କାଳ ଖ୍ରୀ: ୧୬୪୭-୧୬୫୭ ବୋଲି ଖୁରୁଧା ଇତିହାସରେ ଦର୍ଶାଯାଇଛି ।

ବଳଭଦ୍ର ଦେବଙ୍କ ପରେ ତାଙ୍କର ପୁତ୍ର ମୁକୁନ୍ଦ ଦେବ(୧ମ) ଖୁରୁଧା ସିଂହାସନ ଆରୋହଣ କଲେ । ଭୋଇବଂଶ ରାଜତ୍ୱର ଏ ହେଉଛନ୍ତି ମୁକୁନ୍ଦ ଦେବ ନାମଧାରୀ ପ୍ରଥମ ରାଜା । ଏକ ଐତିହାସିକ ବିବରଣୀରୁ ଜଣାଯାଏ ଯେ, ୧୬୬୦ ଖ୍ରୀଷ୍ଟାବ୍ଦରେ ଖାନ୍-ଇ-ଦୁରାନ୍ କଟକରେ ଓଡ଼ିଶା ସୁବାଦାର ଦାୟିତ୍ୱ ନେବାବେଳେ ମୁକୁନ୍ଦଦେବ ଖୁରୁଧାର ରାଜା ଥିଲେ । ସେ ଓଡ଼ିଶାର ଶ୍ରେଷ୍ଠ ଜମିଦାର ଥିଲେ । ଅନ୍ୟାନ୍ୟ ସମସ୍ତ ଜମିଦାର ତାଙ୍କର ଆଦେଶ ପାଳନ କରୁଥିଲେ ଏବଂ ତାଙ୍କୁ ଦେବତା ରୂପେ ପୂଜା କରୁଥିଲେ । ତାଙ୍କର ଆଦେଶ ଲଙ୍ଘନ ମହାପାପ କାର୍ଯ୍ୟ ରୂପେ ବିବେଚିତ ହେଉଥିଲା ।

ଏହି ସୁବାଦାର କିଛିମାସ ଅସୁସ୍ଥ ହୋଇ ପଡ଼ିବାରୁ ତାର ସୁଯୋଗ ନେଇ ଖୋର୍ଦ୍ଧା ରାଜ୍ୟର ଜମିଦାରମାନେ ବିଦ୍ରୋହ କରିଥିଲେ । ରାଜା ମୁକୁନ୍ଦ ଦେବ ମଧ୍ୟ ଏହି ବିଦ୍ରୋହରେ ସାମିଲ ହୋଇଥିଲେ । ସୁବାଦାର ଦୁରାନ୍ ସୁସ୍ଥ ହେବା ପରେ ତାଙ୍କର ନେତୃତ୍ୱରେ ବିଦ୍ରୋହ ଦମନ କରିଥିଲେ । ଖୋର୍ଦ୍ଧାର ସାତଟି ଦୁର୍ଗ ମୋଗଲ ସେନାଙ୍କ ଦ୍ୱାରା ଅଧିକୃତ ହେଲା । ସେ ଖୋର୍ଦ୍ଧା ଦୁର୍ଗ ଅଧିକାର କରି ମୁକୁନ୍ଦ ଦେବଙ୍କ ସାନଭାଇ ଭ୍ରମରବରଙ୍କୁ ସିଂହାସନରେ ବସାଇଲେ । ସେ ମାତ୍ର ୧ମାସ ୧୨ ଦିନ ରାଜା ହୋଇଥିଲେ । ମୁକୁନ୍ଦ ଦେବ ପୁନର୍ବାର ସିଂହାସନ ଅଧିକାର କରି ସାନଭାଇ

କପିଳ ଭ୍ରମରବରଙ୍କୁ ବନ୍ଦୀ କରିଥିଲେ । ସେ ଯେ ପ୍ରବଳ ଯୁଦ୍ଧ କରି ଖୋର୍ଦ୍ଧାରାଜ୍ୟ ପୁନଃ ଅଧିକାର କରିଥିଲେ ଏଥିରେ ସନ୍ଦେହ ନାହିଁ । ମୁକୁନ୍ଦ ଦେବଙ୍କ ସମୟରେ ସୁବାଦାର ସାୟସ୍ତ ଖାଁଙ୍କ ପୁଅ ନସର ଖାଁ ମୋଗଲ ସମ୍ରାଟଙ୍କୁ ସନ୍ତୁଷ୍ଟ କରିବା ପାଇଁ ଅନେକ ହିନ୍ଦୁ ମନ୍ଦିର ଭାଙ୍ଗିଥିଲେ ଓ କେତେକ ଭଗ୍ନ ମନ୍ଦିର ସ୍ଥାନରେ ମସଜିଦ୍ ତୋଳାଇଥିବା ଖୁରୁଧା ଇତିହାସରୁ ଜଣାଯାଏ । ସେ ମଧ୍ୟ ମୁକୁନ୍ଦଦେବଙ୍କ ୩୮ ଅଙ୍କରେ ପୁରୀ ମନ୍ଦିରର କ୍ଷତି କରିବା ଅଭିପ୍ରାୟରେ ପିପିଲି ଯାଏଁ ଆସିଥିଲା । କିନ୍ତୁ ପିପିଲି ଠାରେ ଚଡକ ପଡ଼ିବାରୁ କଟକ ବାହୁଡ଼ି ଗଲା ବୋଲି ମାଦଳାପାଞ୍ଜିରେ ଉଲ୍ଲେଖ ଅଛି । ପିପିଲି ଠାରେ ଚଡ଼କ ପଡ଼ିବାରୁ ସେ ଏହାକୁ ଦୈବୀଚଡ଼କ ଓ ଜଗନ୍ନାଥଙ୍କ ମହିମା ମନେ କରି ଭୀତତ୍ରସ୍ତ ହୋଇ ଫେରିଯାଇଥିବା ବିଶ୍ୱାସ କରାଯାଏ ।

ମୁକୁନ୍ଦଦେବ (୧ମ)ଙ୍କ ପରେ ତାଙ୍କ ପୁତ୍ର ଦିବ୍ୟସିଂହ ଦେବ(୧ମ) ତା-୨୨.୧୧.୧୬୮୮ରେ ଖୁରୁଧା ସିଂହାସନ ଆରୋହଣ କରିଥିଲେ । କୌଣସି କାରଣରୁ ତାଙ୍କର ଅଭିଷେକ ଖୋର୍ଦ୍ଧାରେ ନହୋଇ ରଥୀପୁର ଗଡ଼ରେ ହୋଇଥିଲା ।

ସୁବାଦାର ନବାବ ଏକରାମ ଖାଁ ସମ୍ରାଟ ଆଉରଙ୍ଗଜେବଙ୍କ ଆଦେଶରେ ୧୬୯୨ରେ ଶ୍ରୀମନ୍ଦିର ଉପରେ ଆକ୍ରମଣ ଯୋଜନା କଲେ । ରାଜା ଦିବ୍ୟସିଂହ ଦେବ କୌଶଳ କ୍ରମେ ନବାବଙ୍କ ସହିତ ସମ୍ପର୍କ ରକ୍ଷାକରି ନବାବଙ୍କ ଇଚ୍ଛା ମୁତାବକ ଜଗନ୍ନାଥ ବିଗ୍ରହଙ୍କୁ ତାଙ୍କୁ ହସ୍ତାନ୍ତର କରିଦେବେ ବୋଲି ପ୍ରତିଶ୍ରୁତି ଦେଲେ । ମୋଗଲ ବିବରଣ ଅନୁସାରେ ରାଜା ଦେଉଳ ଭାଙ୍ଗିବା ଜବାବ ଦେଇ ସିଂହଦ୍ୱାରରେ ଥିବା ଏକ ରାକ୍ଷସ ମୂର୍ତ୍ତି ଓ ଗୁମୁଟ ଭାଙ୍ଗିଦେଲେ ଏବଂ ଚନ୍ଦନକାଠରେ ତିଆରି ରତ୍ନଖଚିତ ନେତ୍ରଥିବା ଏକ ଜଗନ୍ନାଥ ମୂର୍ତ୍ତିକୁ ମୋଗଲ ସେନାପତିକୁ ଦେଲେ । ସେନାପତି ଏହାକୁ ବାଦଶାହଙ୍କ ବିଜାପୁର ମୁକାମକୁ ପଠାଇଦେଲେ । ବିଗ୍ରହଟି କୁଆଡ଼େ ଏକ ମସଜିଦ୍‌ର ପାହାଚ ତଳେ ପକାଯାଇଥିଲା ।

ମାଦଳାପାଞ୍ଜି ଓ ଚକଡ଼ା ପୋଥିରେ ଏକରାମ ଖାଁଙ୍କ ଆଦେଶରେ ଶ୍ରୀମନ୍ଦିର ଉପରେ ଆକ୍ରମଣ ଘଟଣା ମୋଗଲ ବିବରଣ ଦ୍ୱାରା ସମର୍ଥିତ ହେଉଅଛି । ମାଦଳାପାଞ୍ଜିରେ ଲେଖାଅଛି, ସିଂହଦ୍ୱାର ଗୁମୁଟି ଭଙ୍ଗାଗଲା, ଭୋଗମଣ୍ଡପରୁ ଚକ୍ର ନେଲେ, ଜଗନ୍ନାଥ ମୂର୍ତ୍ତିକୁ ମୋଗଲ ସେନାପତିଙ୍କୁ ହସ୍ତାନ୍ତର କରାଗଲା । ପ୍ରକୃତ ବିଗ୍ରହଙ୍କୁ ପ୍ରଥମେ ବିମଳା ପଛପଟ ବେଢ଼ାରେ ଲୁଚାଇ ରଖାଯାଇଥିଲା, ଯାହାଙ୍କୁ ପରେ ସ୍ଥାନାନ୍ତରିତ କରାଗଲା । ଦେଉଳ ସିଂହଦ୍ୱାର ଓ ଦକ୍ଷିଣଦ୍ୱାର ମୁଦାଗଲା । ଦକ୍ଷିଣ ଘରୁ ବିଜେ ପ୍ରତିମାମାନ କୋକଳଗଡ଼କୁ ପଠାଗଲା । ନବାବଙ୍କ ଭାଇ ରତ୍ନସିଂହାସନ ଉପରେ ଚଢ଼ିଥିଲା (ପ୍ରକୃତରେ ନବାବଙ୍କ ଜଣେ କର୍ମଚାରୀ ମୀର ସୟଦ ମହମ୍ମଦ ଚଢ଼ିଥିଲା ବୋଲି କେଦାରନାଥ ଲେଖିଛନ୍ତି) । ''ପ୍ରବଳ ପରାକ୍ରାନ୍ତ ଅତି ନିର୍ମମ ଆକ୍ରମଣକାରୀ ସମଗ୍ର ଭାରତର ଏକଛତ୍ର ଶାସକ ବାଦଶାହ ଔରଙ୍ଗଜେବଙ୍କ ବିରୁଦ୍ଧରେ ଅସ୍ତ୍ରଧାରଣ କରିବାକୁ ଅସମର୍ଥ ଥିବାରୁ ଦିବ୍ୟସିଂହଦେବ ହିନ୍ଦୁ ସମାଜର ପ୍ରଧାନ ଆରାଧ୍ୟ ଦେବତାଙ୍କ ପ୍ରତି ଏପରି ତୀବ୍ର ଅପମାନ ଅମ୍ଳାନ ବଦନରେ ସହ୍ୟ କରିବା ପାଇଁ ବାଧ୍ୟ ହୋଇଥିଲେ । ତାଙ୍କର ଏହି ସହିଷ୍ଣୁତା ଫଳରେ ଜଗନ୍ନାଥ ମନ୍ଦିର ନିଶ୍ଚିତ ଧ୍ୱଂସ ମୁଖରୁ ରକ୍ଷାପାଇଗଲା ।'' (ଖୁରୁଧା ଇତିହାସ) ।

ଗବେଷକ ଶ୍ରୀ ଫକୀର ହରିଚନ୍ଦନ ଲେଖିଛନ୍ତି ଯେ ଜଗନ୍ନାଥ ବିଦ୍ୟାଧର ମହାପାତ୍ର ମୋଗଲ ସୁବାର ସେନାପତି ହୋଇଥିଲେ । ତେଣୁ ମୋଗଲ ପ୍ରଦତ୍ତ ବକ୍ସିବାଡ଼ ଜାଗିରି ବୃତ୍ତି ଭୋଗୀ ଭାବେ ଖୋର୍ଦ୍ଧାର ରାଜାଙ୍କ ଅପେକ୍ଷା କଟକର ମୋଗଲ ସୁବାଦାରଙ୍କ ପ୍ରତି ତାଙ୍କର ଆନୁଗତ୍ୟ ଅଧିକ ଥିଲା । ସେହି କାରଣରୁ ଏକରାମ ଖାଁର ପୁରୀମନ୍ଦିର ଆକ୍ରମଣକୁ ପ୍ରତିହତ ନକରି ଆଉରଙ୍ଗଜେବ୍‌ଙ୍କୁ ସନ୍ତୁଷ୍ଟ କରିବା ଲକ୍ଷ୍ୟରେ ଏକରାମ ଖାଁଙ୍କ ସମ୍ମୁଖରେ ମନ୍ଦିର ଗୁମୁଟର କିଛି ଅଂଶ ଭଙ୍ଗାଇ ତା' ହାତରେ ଚନ୍ଦନ କାଠ ନିର୍ମିତ ନକଲି ଜଗନ୍ନାଥ ମୂର୍ତ୍ତି ଧରାଇ ଦେଇଥିଲେ । ସମ୍ଭବତଃ ତାଙ୍କ ଉଆସ ଉପରେ (ଜଗନ୍ନାଥ ବିଦ୍ୟାଧରଙ୍କ) ଏକରାମ ଖାଁ କଦାପି ଆକ୍ରମଣ କରିବ ନାହିଁ ବୋଲି ଦିବ୍ୟସିଂହ ଦେବ ନିଶ୍ଚିତ ହୋଇ ତାଙ୍କରି ଉଆସରେ ଲୁଚି ରହିଲେ (ଖୋର୍ଦ୍ଧା ଇତିହାସର ଅନ୍ତରାଳେ) ।

ଏହି ଆକ୍ରମଣ ପରେ ଚତୁର୍ଦ୍ଧାମୂର୍ତ୍ତି ଓ ବିଜେ ପ୍ରତିମାମାନଙ୍କୁ ମନ୍ଦିରରୁ ଅପସାରଣ କରାଯାଇଥିଲା ଓ ମନ୍ଦିର ମୁହଁ ମୁଦ କରାଯାଇଥିବା ଜଣାଯାଏ । ଦେଉଳର ସମସ୍ତ ନୀତି ବନ୍ଦ ହୋଇ ଯାଇଥିଲା । ଦିଅଁମାନେ କେଉଁସ୍ଥାନରେ ସଂରକ୍ଷିତ ହୋଇ ରହିଲେ ଓ କେତେବର୍ଷ ରହିଲେ ତା'ର ଉଲ୍ଲେଖ ମାଦଳାପାଞ୍ଜିରେ କିମ୍ବା ଚକଡ଼ା ପୋଥିରେ ନାହିଁ । କିନ୍ତୁ ଜଗନ୍ନାଥ ବିଦ୍ୟାଧର ମହାପାତ୍ରଙ୍କ ପୁତ୍ର ଲୋକନାଥ ମହାପାତ୍ରଙ୍କ ରଚିତ 'ସର୍ବାଙ୍ଗ ସୁନ୍ଦରୀ' କାବ୍ୟରୁ ଜଣାଯାଏ ଯେ ଚତୁର୍ଦ୍ଧା ମୂର୍ତ୍ତିଙ୍କୁ ବାଣପୁର ରାଜ୍ୟରେ ଦୁର୍ଭେଦ୍ୟ ବଙ୍କାଡ଼ ଗଡ଼ ନିକଟବର୍ତ୍ତୀ ଏକ ସ୍ଥାନରେ ରଖାଯାଇ ପୂଜା କରାଯାଉଥିଲା । ପରେ ଏହି ସ୍ଥାନର ନାମ ହେଲା 'ନୀଳାଦ୍ରି ପ୍ରସାଦ' ।

ପନ୍ଦର ବର୍ଷ ପରେ ଖ୍ରୀː ୧୭୦୭ରେ ଆଉରଙ୍ଗଜେବଙ୍କ ମୃତ୍ୟୁ ପରେ ଚତୁର୍ଦ୍ଧାମୂର୍ତ୍ତିଙ୍କୁ ଶ୍ରୀମନ୍ଦିରରେ ପୁନଃ ସଂସ୍ଥାପନ କରାଯାଇ ସମସ୍ତ ଦେବନୀତି ଓ ଯାତ୍ରା ପୁନଃ ପ୍ରଚଳନ କରାଯାଇଥିଲା । ମାଦଳାପାଞ୍ଜିରେ ଉଲ୍ଲେଖ ଅଛି- ''୨୫ ଅଙ୍କ କନ୍ୟା ୧୦ ଦିନ କୃଷ୍ଣ ଏକାଦଶୀ ଗୁରୁବାର ଏ ମହାରାଜାଙ୍କ ଆଗ୍ୟାଂ ପ୍ରମାଣେ ୧୮ ଗଡ଼ ଖଣ୍ଡାଏତଙ୍କୁ ଘେନାଇ ଅରାରାମ ପିତାମହ ଆସି ବଡ଼ ଦେଉଳ ସିଂହଦ୍ୱାର ଫିଟାଇ ଦେଲା ।'' ଏହି ଅରାରାମ ପିତାମହ କିଏ ମାଦଳାପାଞ୍ଜିରୁ ଜଣାଯାଏ ନାହିଁ । ଗବେଷକ ଫକୀର ହରିଚନ୍ଦନଙ୍କ ମତରେ ଏ ହେଉଛନ୍ତି ଅରୀରାୟ ପିତାମ ବା ଅଭିରାୟ ପିତାମ । ସେ ଅନ୍ଧାରୀ ବା କୋକଲଗଡ଼ର ଖଣ୍ଡାଏତ । ସେ ୧୮ ଗଡ଼ର ଖଣ୍ଡାଏତଙ୍କୁ ନେଇ ବଡ଼ ଦେଉଳ ସିଂହଦ୍ୱାର ଫିଟାଇଥିବା ସମ୍ଭବପର । ମାଦଳାପାଞ୍ଜିରେ ପ୍ରଦତ୍ତ ଉକ୍ତ ଦିନ, ବାର ଓ ତିଥି ୧୭୦୭ ଖ୍ରୀଷ୍ଟାବ୍ଦ ସେପ୍ଟେମ୍ବର ମାସ ୧୧ ତାରିଖ ସହିତ ମିଳିଯାଉଛି ବୋଲି ଐତିହାସିକ କେଦାରନାଥ ଲେଖିଛନ୍ତି । ଖ୍ରୀː ୧୭୦୩ରୁ ୧୭୧୦ ଯାଏଁ ମୁର୍ଶିଦ କୁଲିଜାଫର ଖାଁ ଓଡ଼ିଶାର ସୁବାଦାର ଥିଲେ । ତାଙ୍କର ନିରପେକ୍ଷ ଉଦାର ନୀତିଯୋଗୁଁ ଏହି କାର୍ଯ୍ୟ ସମ୍ଭବପର ହୋଇଥିଲା । ପରବର୍ତ୍ତୀ ଦୁଇ ସୁବାଦାର ଥିଲେ ଖାନ୍-ଇ-ଆଲାନ୍ ଓ ମୁର୍ଶିଦା କୁଲି ଖାଁ (୧୭୨୭ ଖ୍ରୀଷ୍ଟାବ୍ଦ ଯାଏଁ) । ଏହି ସମୟରେ ଲୋକମାନେ ଶାନ୍ତିରେ ରହିଥିଲେ ।

ଦିବ୍ୟସିଂହ ଦେବଙ୍କ ୯ମ ଅଙ୍କରେ ଅର୍ଥାତ୍ ୧୬୯୪ ମସିହାରେ ପ୍ରବଳ ଝଡ଼ ତୋଫାନ୍‌ରେ ବଡ଼ଦେଉଳ ଉପରୁ ନୀଳଚକ୍ର ଉପୁଡ଼ି ପଡ଼ି ଭଣ୍ଡ ଗଣେଶ ମନ୍ଦିର ଆଗରେ ପଡ଼ିଥିଲା । ସବୁ ଦେଉଳରୁ ପଥରର ଚକ୍ରମାନ ଉପୁଡ଼ି ପଡ଼ିଥିଲା । ଦିବ୍ୟସିଂହ ଦେବଙ୍କ ରାଜତ୍ୱର ୩୩ ଅଙ୍କରେ ମନ୍ଦିର ଶିଖରରେ ନୀଳଚକ୍ର ପୁନଃ ପ୍ରତିଷ୍ଠିତ ହେଲା । ଗଣନା ଅନୁସାରେ ଏହି ସ୍ମରଣୀୟ ଘଟଣା ଘଟିଥିଲା ୧୭୧୫ ମସିହା ଜାନୁୟାରି ମାସ ୨୬ ତାରିଖରେ । ପରମାନନ୍ଦ ପଟ୍ଟନାୟକଙ୍କ ପୁଅ ଧରମୁ ହରିଚନ୍ଦନ ମହାପାତ୍ର ନବନିର୍ମିତ ଅଷ୍ଟଧାତୁର ନୀଳଚକ୍ରକୁ ବଡ଼ଦେଉଳ ଉପରେ ବସାଇଥିଲେ । ଦୀର୍ଘ ପ୍ରାୟ ୨୦ ବର୍ଷ ଧରି ନୀଳଚକ୍ର ବଡ଼ଦେଉଳ ଉପରେ ନଥିଲା । ପରବର୍ଷ ଅର୍ଥାତ୍ ୧୭୧୬ ମସିହାରେ ରାଜା ଦିବ୍ୟସିଂହ ଦେବ ପୁରୀଠାରେ ଦେହତ୍ୟାଗ କରିଥିଲେ ।

ଦିବ୍ୟସିଂହ ଦେବଙ୍କ ପରେ ତାଙ୍କର ସାନଭାଇ ହରକୃଷ୍ଣ ଦେବ ରାଜା ହେଲେ । ତାଙ୍କର ଅଭିଷେକ ୯.୫.୧୭୧୬ତାରିଖରେ ହୋଇଥିବା ଜଣାଯାଏ । ତାଙ୍କ ରାଜତ୍ୱ କାଳରେ କୌଣସି ମୋଗଲ ଆକ୍ରମଣ ହୋଇନାହିଁ । ଏହି ସମୟରେ ବୈଦିକ ଧର୍ମର ପୁନରୁତ୍‌ଥାନପାଇଁ ପ୍ରବଳ ଉଦ୍ୟମ ହୋଇଥିଲା ବୋଲି 'ଖୁରୁଧା ଇତିହାସ'ରେ ଲେଖାଅଛି । ତାଙ୍କ ସମୟରେ ହଳଧର ରାଜଗୁରୁ ବହୁ କାଳରୁ ଲୁପ୍ତ ହୋଇଥିବା ଶାରଦ ବାଜପେୟ ଯଜ୍ଞ ସଂପନ୍ନ କରିଥିଲେ । ରାଜାଙ୍କ ନାମରେ ପୁରୀ ନିକଟରେ ବୀର ହରେକୃଷ୍ଣପୁର ଶାସନ ବସାଯାଇଥିଲା । ରାଜା ବଡ଼ ଦେଉଳକୁ ଚୂନ ଦେଇଥିଲେ । ସେ ଜଗନ୍ନାଥ ମନ୍ଦିରର ଜୀର୍ଣ୍ଣ ସଂସ୍କାର ଓ ଅନ୍ୟାନ୍ୟ କୀର୍ତ୍ତିର ନିର୍ମାତା ଥିଲେ । ୧୭.୩.୧୭୨୦ ତାରିଖରେ ତାଙ୍କର ମୃତ୍ୟୁ ହୋଇଥିଲା । (ଏହି ରାଜାଙ୍କ ନାମ ପ୍ରକୃତରେ 'ହରିକୃଷ୍ଣ', 'ହରେକୃଷ୍ଣ' ନୁହେଁ ବୋଲି ଚକ୍ରଧର ମହାପାତ୍ର ତାଙ୍କର 'ଉତ୍‌କଳ ଇତିହାସର ଏକ ଅଜ୍ଞାତ ଅଧ୍ୟାୟ' ପୁସ୍ତକରେ ଲେଖିଛନ୍ତି ।)

ହରେକୃଷ୍ଣ ଦେବଙ୍କ ପରେ ତାଙ୍କର ପୁତ୍ର ଗୋପୀନାଥ ରାୟ ଗୋପୀନାଥ ଦେବ ନାମ ଧାରଣ କରି ରାଜା ହେଲେ । ସେ ରାଜା ହେବା ପରେ କରଣ ଦେଓ୍ୱାନଙ୍କ ସ୍ଥାନରେ ଜଣେ ମୋଗଲ ମିର୍ଜା ସୟଦ୍ ବେଗ୍‌ଙ୍କୁ ଦେଓ୍ୱାନ୍ ପଦରେ ନିଯୁକ୍ତ କରିଥିଲେ । ମିର୍ଜା ସୟଦ୍ ବିଧର୍ମୀ ହେଲେ ହେଁ ଭଦ୍ର ଓ ବିଶ୍ୱସ୍ତ ଥିଲେ । ପାର୍ଶିଭାଷା ଭଲ ଭାବେ ଜାଣିଥିବାରୁ ସେତେବେଳେ ଶାସନ କାର୍ଯ୍ୟରେ ଓଡ଼ିଆ ସହିତ ପାର୍ଶି ଭାଷା ଚଳୁଥିବାରୁ ମୋଗଲ ସୁବା ପ୍ରଶାସନ ସହିତ ସମନ୍ୱୟ ରକ୍ଷା କରିବା ସହଜ ହୋଇଥିଲା ।

'ଏ ରାଜା ଗୋପୀନାଥପୁର ଶାସନ କଲେ' ବୋଲି ମାଦଳା ପାଞ୍ଜିରେ ଲେଖାଅଛି । ଗବେଷକ ଫକୀର ହରିଚନ୍ଦନ ଲେଖିଛନ୍ତି- ''ବିଡମ୍ବନା ଯେ, ଗୋପୀନାଥ ଦେବଙ୍କ ଚରିତ୍ରଦୋଷ ହେତୁ ତାଙ୍କରିଦ୍ୱାରା ନିଯୁକ୍ତ ଦେଓ୍ୱାନ ମିର୍ଜା ସୟଦ ବେଗ୍, ବେନୁ ଭ୍ରମରବର ରାଏ ଓ ଖୋଜା ବକ୍ସି କୃଷ୍ଣନରେନ୍ଦ୍ର ତାଙ୍କୁ ହତ୍ୟା କଲେ ।'' ଏ ତିନିଜଣ ଖୋର୍ଦ୍ଧା ନଅରରେ ପଶି ରାଜାଙ୍କୁ ମାରି ପକାଇଲେ ବୋଲି ମାଦଳାପାଞ୍ଜିରେ ଉଲ୍ଲେଖ ଅଛି । ଐତିହାସିକ କେଦାରନାଥ ଲେଖିଛନ୍ତି ଯେ, ସିଂହାସନ

ଅଧିକାରପାଇଁ ଷଡଯନ୍ତ୍ର ଫଳରେ ଏହି ନୃଶଂସ ହତ୍ୟାକାଣ୍ଡ ଘଟିଥିବା ସମ୍ଭବପର । ତା୨୬.୪.୧୭୨୭ରେ ଗୋପୀନାଥ ଦେବଙ୍କୁ ହତ୍ୟା କରାଯାଇଥିଲା ।

ଗୋପୀନାଥ ଦେବଙ୍କ ହତ୍ୟା ଦିବସରେ ହିଁ ତାଙ୍କ ସାନ ଭାଇ କେଶବ ରାଏ ରାଜା ଭାବରେ ଅଭିଷିକ୍ତ ହେଲେ ଓ ତାଙ୍କର ନାମ ହେଲା ରାମଚନ୍ଦ୍ର ଦେବ (୨ୟ) । ତାଙ୍କ ଅଭିଷେକର ଦୁଇମାସ ପରେ ମୁର୍ଷିଦ କୁଲି ଜାଫର ଖାଁଙ୍କ ମୃତ୍ୟୁ ହେଲା । ତାଙ୍କ ଜାମାତା ସୁଜାଉଦ୍ଦିନ ପୂର୍ବରୁ ଓଡ଼ିଶାର ନାଏବ ନାଜିମ ଭାବରେ କିଛି ବର୍ଷ କାମ କରିଥିଲେ । ସେ ଜଣେ ନୈଷ୍ଠିକ ମୁସଲମାନ ଓ ହିନ୍ଦୁଧର୍ମର ବିରୋଧୀ ଥିଲେ । ସୁଜାଉଦ୍ଦିନ୍ ବଙ୍ଗ ଓ ଓଡ଼ିଶାର ସୁବାଦାର ହେବା ପରେ ନିଜର ରକ୍ଷିତା ସ୍ତ୍ରୀର ପୁତ୍ର ମହମ୍ମଦ ତକି ଖାଁଙ୍କୁ କଟକର ନାଏବ ନାଜିମ୍ ରୂପେ ନିଯୁକ୍ତ କରିଥିଲେ । ତକି ଖାଁ ପିତାଙ୍କ ଅପେକ୍ଷା ଅଧିକ ହିନ୍ଦୁବିଦ୍ୱେଷୀ ଥିଲେ ।

ସେହି ସମୟରେ ଜଳେଶ୍ୱରର କେତୋଟି ପ୍ରଗଣାକୁ ବଙ୍ଗ ସହିତ ସାମିଲ କରାଗଲା । ସୁବର୍ଣ୍ଣରେଖା ନଦୀକୁ ଓଡ଼ିଶାର ଉତ୍ତର ସୀମାରେଖା କରାଗଲା । ତେଣେ ଦକ୍ଷିଣରେ ହାଇଦ୍ରାବାଦର ନିଜାମ ଓଡ଼ିଶା ଆକ୍ରମଣ କରି ସମଗ୍ର ଗଞ୍ଜାମକୁ ଖୋର୍ଦ୍ଧା ରାଜ୍ୟରୁ ଜୟ କରି ନେଇଗଲେ । ତକି ଖାଁ ହାଇଦ୍ରାବାଦ ନିଜାମଙ୍କ ଆକ୍ରମଣ ବେଳେ ରାଜା ରାମଚନ୍ଦ୍ର ଦେବ(୨ୟ)ଙ୍କୁ ସାହାଯ୍ୟ କଲେ ନାହିଁ । ଏହି ଘଟଣା ପରେ କ୍ଷୁବ୍‌ଧ ରାମଚନ୍ଦ୍ର ଦେବ ନିଜର ରାଜ୍ୟ ବାହାରେ ମୋଗଲବନ୍ଦୀ ଅଞ୍ଚଳରୁ କିଛି ଅଂଶ ଦଖଲପାଇଁ ସୈନ୍ୟଚାଳନା କରିଥିଲେ । ପ୍ରଥମେ ପ୍ରଥମେ ସେ ସଫଳ ହୋଇଥିଲେ ହେଁ ତାଙ୍କର ସୈନ୍ୟମାନଙ୍କ ଭିତରେ ବିଦ୍ରୋହ ଦେଖାଯାଇଥିଲା । ଏହାର ସୁଯୋଗ ନେଇ ତକି ଖାଁ କୌଶଳ କରି ରାମଚନ୍ଦ୍ର ଦେବଙ୍କୁ କଟକରେ ଅଟକ ବନ୍ଦୀ କରି ରଖିଥିଲା । ମାଦଳାପାଞ୍ଜିରେ ଉଲ୍ଲେଖ ଅଛି ଯେ, ଏହି ରାଜାଙ୍କ ୮ ଅଙ୍କରେ ତକି ଖାଁ 'ନସକର ଘେନି ଶିଶୁପାଳଗଡ଼ ଖୋଳାଇ ଦେଲା । ଧଉଳିଗଡ଼ ବୋନି ରଥିପୁର ଘେନିଲା' । ଗବେଷକ ଶ୍ରୀ ହରିଚନ୍ଦନ ଲେଖିଛନ୍ତି ଯେ ଗଞ୍ଜାମର ଆଠଗୋଟି ବଡ଼ ବଡ଼ ଜମିଦାରୀ ମାହାଲକୁ ୧୭୩୦ ଖ୍ରୀଷ୍ଟାବ୍ଦରେ ମୋଗଲମାନେ ଖୋର୍ଦ୍ଧା ରାଜାଙ୍କ ଅଧିକାରରୁ କାଢ଼ି ନେଇ ହାଇଦରାବାଦର ନିଜାମଙ୍କ ଅଧିକାରଭୁକ୍ତ କରିଦେଲେ । ତା'ପରେ ମୋଗଲ ଓ ମରହଟ୍ଟାମାନଙ୍କ ମଧ୍ୟରେ ଦୀର୍ଘ ଦଶ ବର୍ଷ କାଳ ଓଡ଼ିଶା ଅଧିକାରକୁ ନେଇ ଲାଗି ରହିଥିବା ଯୁଦ୍ଧ ବିଭୀଷିକା ଫଳରେ ଖୋର୍ଦ୍ଧାରାଜ୍ୟରେ ଗୁରୁତର ଅଶାନ୍ତି ଉପୁଜିଥିଲା ।

ରାମଚନ୍ଦ୍ର ଦେବ କଟକର ବାରବାଟୀ ଦୁର୍ଗରେ ବନ୍ଦୀ ହେବା ପରେ ଉତ୍‌କ୍ଷିପ୍ତ ହୋଇ ତାଙ୍କର ପୁତ୍ର, ନାତି ଓ ଅନୁଗତମାନେ ତକି ଖାଁଙ୍କ ବିରୁଦ୍ଧରେ ଯୁଦ୍ଧ ଘୋଷଣା କଲେ । ତକି ଖାଁ ବିଦ୍ରୋହୀମାନଙ୍କ ଖୋର୍ଦ୍ଧାଗଡ଼ ଅଧିକାର କରିନେଲା । ରାଜକୁମାରମାନେ କୋଦଳା ଆଠଗଡ଼ ରାଜ୍ୟକୁ ପଳାଇଯାଇ ସେଠାର ରାଜାଙ୍କ ଆଶ୍ରୟ ଗ୍ରହଣ କଲେ ।

ରାମଚନ୍ଦ୍ର ଦେବଙ୍କ ପୁତ୍ର ଭାଗୀରଥି କୁମାର ଆଠଗଡ଼ ରାଜାଙ୍କଠାରୁ ସୈନ୍ୟ ସାହାଯ୍ୟ ପାଇ ପୁରୀ ଓ ଖୋର୍ଦ୍ଧାରୁ ମୋଗଲ ଫୌଜକୁ ତଡ଼ି ଦେଇଥିଲେ । ସେ ନିଜକୁ ଖୋର୍ଦ୍ଧାର ରାଜା ଘୋଷଣା

କରିବାରୁ ତକି ଖାଁ ବନ୍ଦୀ ରାଜା ରାମଚନ୍ଦ୍ରଙ୍କୁ ସଙ୍ଗରେ ଆଣି ଭାଗୀରଥି କୁମାରଙ୍କ ସହିତ ଲଢ଼େଇ କଲେ । ଭାଗୀରଥି ପରାସ୍ତ ହୋଇ ଦଶପଲ୍ଲା ରାଜ୍ୟକୁ ପଳାଇଗଲେ । ତକି ଖାଁ ରାମଚନ୍ଦ୍ର ଦେବଙ୍କୁ ଖୋର୍ଦ୍ଧାରେ ନଜରବନ୍ଦୀରେ ରଖାଇ କଟକ ଫେରିଗଲା । ନଜରବନ୍ଦୀ ଅବସ୍ଥାରେ ରାଜା ରାମଚନ୍ଦ୍ର ପୁରୀ ଯାଇ ଗୁଣ୍ଡିଚା ଯାତ୍ରା ବ୍ୟବସ୍ଥା କରି ଖୋର୍ଦ୍ଧା ଫେରି ଆସିଥିଲେ । ଖୋର୍ଦ୍ଧାରେ ନଜରବନ୍ଦୀ ଅବସ୍ଥାରେ ରାମଚନ୍ଦ୍ର ଦେବ ସର୍ବଦା ଜଗନ୍ନାଥ ମନ୍ଦିର ପ୍ରତି ମୋଗଲ ଆକ୍ରମଣର ଆଶଙ୍କା କରୁଥିଲେ । ତାଙ୍କର ଦୁଇଜଣ ବିଶ୍ୱସ୍ତ କର୍ମଚାରୀ ବଡ଼ପରୀକ୍ଷା ପରମାନନ୍ଦ କୁଅଁର ମହାପାତ୍ର ଓ ସାନପରୀକ୍ଷା ବିଷ୍ଣୁ ପଶ୍ଚିମକବାଟ ରାଜାଙ୍କ ନିର୍ଦ୍ଦେଶରେ ଶ୍ରୀଜଗନ୍ନାଥ ସମେତ ଚତୁର୍ଦ୍ଧା ମୂର୍ତ୍ତିଙ୍କୁ ଚଉଦୋଳାରେ ବସାଇ ଦୋବନ୍ଧାଠାକୁ ନେଲେ ଏବଂ ସେଠାରୁ ଚାପରେ ବସାଇ ଚିଲିକା ପାର କରାଇଲେ । ତାପରେ ବାଣପୁରର ନଈରି ହରୀଶ୍ୱର ମଣ୍ଡପରେ ବିଜେ କରାଇଲେ ।

ଦିଅଁମାନଙ୍କର ଗୋପନ ସ୍ଥାନାନ୍ତର ସମ୍ବାଦ ପାଇ ତକି ଖାଁ ପୁନର୍ବାର ୧୭୩୩ ମସିହାରେ ଖୋର୍ଦ୍ଧା ଆକ୍ରମଣ କରିବାରୁ ରାମଚନ୍ଦ୍ର ଦେବ ଖୋର୍ଦ୍ଧାରୁ ପଳାଇଯାଇ ପ୍ରଥମେ ନୟାଗଡ଼, ପରେ ଖଣ୍ଡପଡ଼ା ଓ ବୋଲଗଡ଼ରେ ଆଶ୍ରୟ ନେଇଥିଲେ । ଦିଅଁମାନଙ୍କୁ ଅଧିକ ନିରାପଦରେ ରଖିବା ଉଦ୍ଦେଶ୍ୟରେ ହରୀଶ୍ୱର ମଣ୍ଡପରୁ ଖଲିକୋଟ ସୀମା ଟିକିଲିଠାକୁ ସ୍ଥାନାନ୍ତର କରାଗଲା । ତକି ଖାଁ ଭାଗୀରଥି କୁମାରଙ୍କୁ ସମର୍ଥନପୂର୍ବକ ଦଶପଲ୍ଲାରୁ ଆଣି ଖୋର୍ଦ୍ଧାର ରାଜା କରାଇଲା । କିନ୍ତୁ ଏହି ରାଜପୁତ୍ରଙ୍କ ପ୍ରତି ରାଜ ପରିବାର କିମ୍ବା ପ୍ରଜାମାନଙ୍କର ଆନ୍ତରିକ ସମର୍ଥନ ନଥିଲା । ୧୭୩୩ ମସିହାରେ ଯୋଡ଼ା ଆଷାଢ଼ ମାସ ପଡିବାରୁ ନବକଳେବରପାଇଁ ଦାରୁ ଆଣିବା ବ୍ୟବସ୍ଥା ଭାଗୀରଥି କୁମାର କରିଥିଲେ । କିନ୍ତୁ ପୁରାତନ ବିଗ୍ରହ ମାନଙ୍କରୁ 'ବ୍ରହ୍ମ' ନୂତନ ବିଗ୍ରହମାନଙ୍କୁ ସ୍ଥାନାନ୍ତର ହେବା ଆବଶ୍ୟକ । ଏହି ସୁଯୋଗ ନେଇ ରାମଚନ୍ଦ୍ର ଦେବ ପୁରାତନ ବିଗ୍ରହମାନଙ୍କୁ ପୁରୀ ଅଣାଇଲେ । ରାମଚନ୍ଦ୍ରଦେବ ପୁନରାୟ ଖୋର୍ଦ୍ଧା ସିଂହାସନ ଫେରି ପାଇଲେ ।

ପୁନଶ୍ଚ ତକି ଖାଁର ସୈନିକମାନେ ଖୋର୍ଦ୍ଧା ଆକ୍ରମଣପାଇଁ ଯୋଜନା କଲେ । ରାମଚନ୍ଦ୍ର ଦେବ ଖୋର୍ଦ୍ଧା ରାଜ୍ୟ ଛାଡ଼ି ସମୀପସ୍ଥ ଜଙ୍ଗଲରେ ରହି ଯୁଦ୍ଧ ଆୟୋଜନ କଲେ । ପୁରୀରୁ ସେବକମାନେ ଠାକୁରମାନଙ୍କୁ ଗୋପନରେ ନେଇ ଚିଲିକା ହ୍ରଦଦେଇ ଖଲିକୋଟ ନେଲେ । ସେଠା ନିକଟ କୃଷ୍ଣଗିରି ପାହାଡ଼ରେ ସେମାନଙ୍କୁ କିଛି ସମୟ ରଖାଯାଇ ଆଠଗଡ଼ ରାଜ୍ୟକୁ ନିଆଗଲା । ଆଠଗଡ଼ ରାଜା ଜଗନ୍ନାଥ ହରିଚନ୍ଦନ ଜଗଦ୍ଦେବ ମାରଦା ନାମକ ଏକ ନିଭୃତ ସ୍ଥାନରେ ଏକ ମନ୍ଦିର ନିର୍ମାଣ କରାଇ ତ୍ରିମୂର୍ତ୍ତିଙ୍କୁ ଅଧିଷ୍ଠିତ କରାଇଥିଲେ । ମଥୁରା ଗ୍ରାମର ଶିଳ୍ପୀମାନେ ଦିନରାତି କାର୍ଯ୍ୟକରି ଦୁଇମାସ ମଧ୍ୟରେ ଏହି ମନ୍ଦିର ନିର୍ମାଣ କରିଥିଲେ । ମାରଦାରେ ତ୍ରିମୂର୍ତ୍ତିଙ୍କୁ ୧୧ଅଙ୍କ ଧନୁ ୨୯ ଦିନ ବା ତା୨୯.୧୨.୧୭୩୩ ଠାରୁ ସୁରକ୍ଷିତ ରଖାଗଲା ।

ମେ ମାସ ୧୭୩୩ରୁ ମେ ମାସ ୧୭୩୪ ମଧ୍ୟରେ ତକି ଖାଁର ମୃତ୍ୟୁ ଘଟିଥିଲା । ତାପରେ ଢ଼ାକାର ଶାସକ ମୁର୍ଶିଦ କୁଲି ଖାଁ(୨ୟ) ନାଏବ ନାଜିମ ହେଲେ । ପ୍ରଶାସନରେ ତାଙ୍କୁ ସାହାଯ୍ୟ କରିବାପାଇଁ ମିର ହବିବ୍‌କୁ ନିଯୁକ୍ତ କରାଗଲା । ମୁର୍ଶିଦ କୁଲି ଖାଁ ମିର ହବିବର ସାହାଯ୍ୟରେ

ଖୋର୍ଦ୍ଧା ଆକ୍ରମଣ କରି ଦଖଲ କରିନେଲା । ରାମଚନ୍ଦ୍ର ଦେବ ଖୋର୍ଦ୍ଧା ଉଦ୍ଧାର କରିବାରେ ବିଫଳ ହୋଇ ଆଠଗଡ଼ ରାଜ୍ୟର ରୁମାଗଡ଼ ନାମକ ସ୍ଥାନରେ ଆଶ୍ରୟ ଘେନିଥିଲେ ।

ପୁରୀ ଶ୍ରୀମନ୍ଦିରରୁ ବିଗ୍ରହମାନେ ଅପସାରିତ ହେବା ଫଳରେ ସମସ୍ତ ନୀତି, ଯାନିଯାତ୍ରା ବନ୍ଦ ହୋଇଯାଇଥିଲା । ଓଡ଼ିଶା ତଥା ଭାରତର ବିଭିନ୍ନ ଅଞ୍ଚଳରୁ ଲକ୍ଷ ଲକ୍ଷ ଯାତ୍ରୀ ପୁରୀ ଆସିବା ବନ୍ଦ ହୋଇଯିବାରୁ ଏ ବାବଦରେ ମିଳୁଥିବା ବାର୍ଷିକ ପ୍ରାୟ ନଅଲକ୍ଷ ଟଙ୍କା ମୋଗଲ ସରକାରଙ୍କୁ ହରାଇବାକୁ ପଡ଼ିଲା । ତେଣୁ ବିଜ୍ଞ ରାଜସ୍ୱ ସଚିବ ମିର୍ ହବିବର ପରାମର୍ଶରେ ମୁର୍ଶିଦ କୁଲିଖାଁ ବିଗ୍ରହମାନଙ୍କୁ ଶ୍ରୀମନ୍ଦିରକୁ ଫେରାଇ ଆଣିବାପାଇଁ ଆଦେଶ ଦେଲେ । ରାମଚନ୍ଦ୍ର ଦେବଙ୍କ ୧୩ ଅଙ୍କ ବୃଷ ୫ ଦିନ ପର୍ଯ୍ୟନ୍ତ, ପ୍ରାୟ ୨ ବର୍ଷ ୪ ମାସ ପର୍ଯ୍ୟନ୍ତ ଦିଅଁମାନେ ଶ୍ରୀମନ୍ଦିରରେ ଅନୁପସ୍ଥିତ ଥିଲେ । ରାମଚନ୍ଦ୍ର ଦେବ ଅଜ୍ଞାତ ଆଶ୍ରୟ ସ୍ଥାନରୁ ଫେରି ଶ୍ରୀମନ୍ଦିରରେ ବିଗ୍ରହମାନଙ୍କୁ ଅଧିଷ୍ଠିତ କରାଇଥିଲେ । ତତ୍‌ପରେ ଯାତ୍ରୀ ସମାଗମଯୋଗୁଁ ଯଥେଷ୍ଟ ମାତ୍ରାରେ ଯାତ୍ରୀକର ସଂଗ୍ରହ ହୋଇପାରିଲା ।

ମାଦଳାପାଞ୍ଜିରେ ଉଲ୍ଲେଖ ଅଛି ଯେ, ରାମଚନ୍ଦ୍ର ଦେବ କଟକରେ ଅବସ୍ଥାନ କରିଥିବା ବେଳେ 'ନବାବଙ୍କ ଝିଅକୁ ହାରିଲେ । ଜାତିଭ୍ରଷ୍ଟ ହେଲେ । ପଠାଣଙ୍କ ସଙ୍ଗେ ଆତଯାତ ହେଲେ ।' କିନ୍ତୁ ସେ ଇସଲାମ ଧର୍ମ ଗ୍ରହଣ କରିଥିବାର କିମ୍ବା ମୁସଲମାନ ନାମ ଗ୍ରହଣ କରିଥିବାର ପ୍ରମାଣ ମିଳେନାହିଁ । ସେ ଅଗତ୍ୟା ଯବନୀ-ପ୍ରେମ ପାଶରେ ଆବଦ୍ଧ ହୋଇଥିଲେ ମଧ୍ୟ ମୁସଲମାନୀୟ ନାମ ଗ୍ରହଣ କରିନଥିଲେ ବୋଲି ଐତିହାସିକ କେଦାରନାଥ ଲେଖିଛନ୍ତି । ଐତିହାସିକ ନବୀନ କୁମାର ସାହୁ ଓଗେର ଅନୁମାନ କରନ୍ତି ଯେ, ରାମଚନ୍ଦ୍ର ଦେବଙ୍କୁ ହୁଏତ ବଳପୂର୍ବକ ମୁସଲମାନ ଧର୍ମରେ ଦୀକ୍ଷିତ କରାଯାଇଥିବ । କିନ୍ତୁ ତା' ସତ୍ତ୍ୱେ ସେ ମୁସଲମାନ ନାମ ଗ୍ରହଣ କରିନଥିଲେ କି ହିନ୍ଦୁଧର୍ମ ପ୍ରତି ଆନୁଗତ୍ୟ ହରାଇନଥିଲେ । ମତାନ୍ତରେ କୁହାଯାଇଛି ଯେ, କଟକର କଦମରସୁଲ ପୀଠରେ ତକି ଖାଁ ଓ ମୁସଲମାନ ଧର୍ମର ଧ୍ୱଜାଧାରୀମାନଙ୍କର ସମୂହ ଉପସ୍ଥିତିରେ ଗଜପତି ରାମଚନ୍ଦ୍ର ଦେବ ହାଫିଜ୍ କାଦର ବେଗ ନାମ ଧାରଣ କରି ରେଜିୟାଙ୍କ ସହିତ ପରିଣୟ ସୂତ୍ରରେ ଆବଦ୍ଧ ହେଲେ ('ବିଡମ୍ବିତ ଗଜପତିର ଗାଥା'-ଧର୍ମପଦ, 'ସଚିତ୍ର ବିଜୟା', ମେ, ୨୦୦୩) । ପୁଣି କୁହାଯାଇଛି ''ହିନ୍ଦୁ ରୀତିରେ ବିବାହ ହେଲା ସତ, କିନ୍ତୁ ପ୍ରଚାର ହେଲା ତାଙ୍କର ପରିବାର ମୁସଲମାନ ଧର୍ମ ଗ୍ରହଣ ନ କଲେ ସେ କନ୍ୟାକୁ ଦେବେ ନାହିଁ, ଅଡ଼ି ବସିଲେ । ତେଣୁ ମିର୍ଜା ମହମ୍ମଦ ଓ ମୁରାଦ ଖାଁ ଏବଂ ରାଣୀ ଲଳିତା ଦେବୀଙ୍କ ମଧ୍ୟସ୍ଥତାରେ ରଥିପୁର ଉଆସରେ ରାମଚନ୍ଦ୍ର ଦେବ ଏହି ସୌନ୍ଦର୍ଯ୍ୟ ପ୍ରଲୋଭନରେ ପଠାଣ ହେଲେ । ମିଛ ହେଉ, ସତ ହେଉ ତାଙ୍କ ନାମ ହାଫିଜ୍ କାଦର ବୋଲି ଗୋପନରେ ସ୍ଥିର ହୋଇଗଲା ।'' (ଉତ୍କଳ ଇତିହାସର ଏକ ଅଜ୍ଞାତ ଅଧ୍ୟାୟ- ଚକ୍ରଧର ମହାପାତ୍ର) ।

ରାମଚନ୍ଦ୍ର ଦେବଙ୍କର କଳାବତୀ (ମତାନ୍ତରେ ଚିତ୍ରକଳା/ଭାନୁମତୀ) ଓ ଲଳିତା ନାମରେ ଦୁଇ ରାଣୀ ଥିଲେ । ଯବନକନ୍ୟା ବିବାହ ପରେ ଲଳିତା ଦେବୀ 'ସ୍ୱାମୀଙ୍କ ପକ୍ଷରେ ସଦମ୍ଭରେ ଛିଡ଼ା ହେଲେ' । କିନ୍ତୁ ପାଟ ମହାଦେଈ କଳାବତୀ ନିଜର ସ୍ୱାମୀ ଓ ସପତ୍ନୀମାନଙ୍କଠାରୁ ବିଚ୍ଛିନ୍ନ ହୋଇ ତିନି ପୁଅଙ୍କ ସହ ମାଣତ୍ରୀଗଡ଼ରେ ଶେଷ ଜୀବନ ବିତାଇଥିଲେ ।

ନାଏବ ନବାବ ମୁର୍ଶିଦା କୁଲି ଖାଁଙ୍କ ଝିଅ ଯାହାକୁ ରାମଚନ୍ଦ୍ର ଦେବ ବିବାହ କରିଥିଲେ ତାଙ୍କର ପ୍ରକୃତ ନାମ କ'ଣ ଜାଣି ହେଉନାହିଁ । ତାଙ୍କର ନାମ ସୌରିୟା (ମତାନ୍ତରେ ରେଜିଆ) କୁହାଯାଇଛି । ବିବାହ ପରେ ତାଙ୍କର ନାମାନ୍ତର ହେଲା ସୂର୍ଯ୍ୟମଣି ମହାଦେଈ ।

ଏହି ବିବାହ ପରେ ମଧ୍ୟ କେତେକ ଦାନପତ୍ରରେ ରାମଚନ୍ଦ୍ର ଦେବଙ୍କ ନାମ ବ୍ୟବହୃତ ହୋଇଥିବାରୁ ରାମଚନ୍ଦ୍ର ଦେବ ମୁସଲମାନ ନାମ ଗ୍ରହଣ କରିଥିବା ସନ୍ଦେହଜନକ ମନେ କରାଯାଇଛି । ସେ ଧର୍ମ ପରିବର୍ତ୍ତନ କରିଥିବାଯୋଗୁଁ ଶ୍ରୀଜଗନ୍ନାଥ ମନ୍ଦିର ଭିତରକୁ ଯାଇ ଦର୍ଶନରୁ ବଞ୍ଚିତ ହେବାଯୋଗୁଁ ସିଂହଦ୍ୱାର ଗୁମୁଟରେ ପତିତପାବନ ମୂର୍ତ୍ତି ପ୍ରତିଷ୍ଠା କରାଯାଇଥିଲା; ଯାହାଙ୍କୁ ସେ ଦର୍ଶନ କରୁଥିଲେ ବୋଲି କୁହାଯାଇଛି । କିନ୍ତୁ ପତିତପାବନ ମୂର୍ତ୍ତି ରାମଚନ୍ଦ୍ର ଦେବ (୨ୟ)ଙ୍କ ପ୍ରାୟ ଏକଶତ ବର୍ଷ ପୂର୍ବରୁ ସେଠାରେ ସ୍ଥାପିତ ହୋଇଥିଲା ବୋଲି ପ୍ରଫେସର ଗଗନେନ୍ଦ୍ର ନାଥ ଦାଶ ମତ ଦେଇଛନ୍ତି ।

ରାମଚନ୍ଦ୍ର ଦେବ ଆଠଗଡ଼ରୁ ଫେରିଆସି କେତେମାସ ଖୋର୍ଦ୍ଧା ସିଂହାସନରେ ବସିଥିବା ଜଣାଯାଏ । ପରେ ମୀର ହବିବ ପଟିଆର ରାଜା ପଦ୍ମନାଭ ଦେବଙ୍କୁ ରାମଚନ୍ଦ୍ର ଦେବଙ୍କ ପରିବର୍ତ୍ତେ ଖୋର୍ଦ୍ଧା ରାଜଗାଦିରେ ବସାଇଥିଲେ । ରାମଚନ୍ଦ୍ର ଦେବ ରାଜ୍ୟଭ୍ରଷ୍ଟ ହୋଇ ସାମନ୍ତ ରାଜା ନରସିଂହପୁର ରାଜାଙ୍କ ରାଜ୍ୟରେ ଆଶ୍ରୟ ନେଇଥିଲେ । ନରସିଂହପୁରର ସାମନ୍ତ ରାଜାଙ୍କ ନାମ ଥିଲା ମନ୍ଦରଧର ମାନସିଂହ ହରିଚନ୍ଦନ ମହାପାତ୍ର । ରାମଚନ୍ଦ୍ର ଦେବ ତାଙ୍କର ପତ୍ନୀ ସୂର୍ଯ୍ୟମଣି ସହିତ ସେଠାକୁ ଯାଇଥିଲେ (ମତାନ୍ତରେ ଏକାକୀ) । ସେଠାରେ ଗୁରୁତର ବ୍ୟାଧିରେ ପଡ଼ି ତାଙ୍କର ଦେହାନ୍ତ ହୋଇଥିଲା (ମତାନ୍ତରେ ରାଜା ଓ ରାଣୀ ସୂର୍ଯ୍ୟମଣି ଉଭୟେ ବିଷପାନ କରି ଆତ୍ମହତ୍ୟା କରିଥିଲେ) । ନରସିଂହପୁର ପାଏକପଡ଼ା ଗଡ଼ଠାରୁ କ୍ରୋଶମାତ୍ର ଦୂର ଲକ୍ଷପଡ଼ା ଗ୍ରାମରେ ବିଷପାନ କରି ଆତ୍ମହତ୍ୟା କରିଥବା କୁହାଯାଏ । ଖ୍ରୀ: ୧୭୩୭ ଡିସେମ୍ବର କିମ୍ବା ୧୭୩୮ ଜାନୁଆରିରେ ଏହି ଘଟଣା ଘଟିଥିଲା । ସେମାନଙ୍କର ଶବଦାହ (ମତାନ୍ତରେ ସମାଧିସ୍ଥ) ନରସିଂହପୁରର ଘୋରାଡ଼ିଆ ଗ୍ରାମ ନିକଟସ୍ଥ ଅରଣ୍ୟରେ ହୋଇଥିଲା । ଏହି ଅରଣ୍ୟ ମହାଶ୍ମଶାନ ନାମରେ ପରିଚିତ ।

ମୀର ହବିବ ପଟିଆ ରାଜା ପଦ୍ମନାଭଙ୍କୁ ୩.୫.୧୭୩୬ ତାରିଖରୁ ଖୋର୍ଦ୍ଧା ସିଂହାସନରେ ବସାଇଥିଲେ । ସିଂହାସନର ନ୍ୟାଯ୍ୟ ଅଧିକାରୀ ରାମଚନ୍ଦ୍ର ଦେବଙ୍କ ପୁତ୍ର ବୀରକେଶରୀ ଦେବ ଘୁମସରର ଚକାପାଦମାଳ ଓ ଅନୁଗୁଳ ମାଳରେ ଆଶ୍ରୟ ନେଇଥିଲେ । ଘୁମୁସରର ରାଜା ଘନଭଞ୍ଜ ବୀରକେଶରୀଙ୍କୁ ଖୋର୍ଦ୍ଧା ରାଜ୍ୟ ଅଧିକାରପାଇଁ ସୈନ୍ୟ ସାହାଯ୍ୟ ଦେଇଥିଲେ । ତେଣୁ ବୀରକେଶରୀ ରାଜା ଘନଭଞ୍ଜଙ୍କୁ 'କ୍ଷତ୍ରିୟ ବର' ଉପାଧି ପ୍ରଦାନ କରିଥିଲେ । ଅନୁଗୁଳ ରାଜା ମଧ୍ୟ ସୈନ୍ୟ ସାହାଯ୍ୟ ଦେଇଥିଲେ । ଖୋର୍ଦ୍ଧା ରାଜ୍ୟ ଆକ୍ରମଣପାଇଁ ବୀରକେଶରୀ ପ୍ରସ୍ତୁତ ହେଉଥିବା ସମୟରେ ବଡ଼ମ୍ବା ସୀମା ବୈଦ୍ୟେଶ୍ୱରଠାରେ ତାଙ୍କୁ ମୁର୍ଶିଦ କୁଲି ଖାଁ 'ଟୀକା ଶିରୋପା' ଦେଇ ଖୋର୍ଦ୍ଧା ଶ୍ରୀନଅରରେ ବିଜେ କରାଇଲେ ଅର୍ଥାତ୍ ରାଜା କରାଇଲେ । ପଦ୍ମନାଭ ଦେବ ପଳାଇଯାଇ ପଟିଆରେ ରହିଲେ । ପଦ୍ମନାଭ ଦେବ ଭୋଗକଲେ ୩ ବର୍ଷ । ପଟିଆ ପଦ୍ମନାଭ ଦେବ

୩.୫.୧୭୩୬ ଠାରୁ ୩୦.୩.୧୭୩୯ ତାରିଖ ଯାଏଁ ଖୋର୍ଦ୍ଧା ସିଂହାସନ ଅଧିକାର କରିଥିଲେ (ଖୁରୁଧା ଇତିହାସ) । ତଥାପି ବୀରକେଶରୀ ଦେବ (୧ମ)ଙ୍କ ରାଜତ୍ୱକାଳ ଖ୍ରୀ: ୧୭୩୭ରୁ ୧୭୯୩ ଧରାଯାଉଛି । ଖୋର୍ଦ୍ଧା ସିଂହାସନରେ ବସିବା ପରେ ବୀରକେଶରୀ ଦେବ ଚାରିବର୍ଷର ଯାତ୍ରୀ ହାସିଲ (କର) ବାବଦକୁ ଅଠରଲକ୍ଷ ଟଙ୍କା ମୁର୍ଶିଦ କୁଲି ଖାଁଙ୍କ ନିକଟକୁ ପଠାଇଥିଲେ ।

୧୭୩୯ ଖ୍ରୀଷ୍ଟାବ୍ଦରେ ବଙ୍ଗ,ବିହାର ଓ ଓଡ଼ିଶାର ନବାବ ସୁଜାଉଦ୍ଦିନ୍‌ଙ୍କର ମୃତ୍ୟୁ ହେବାରୁ ତାଙ୍କ ପୁତ୍ର ସରଫ୍‌ରାଜ ନବାବ ହେଲେ । ସୁଜାଉଦ୍ଦିନଙ୍କର ଚାରିଜଣ ବିଶ୍ୱସ୍ତ ଉପଦେଷ୍ଟା ଥିଲେ ହାଜି ଅହମଦ୍, ଅଲିବର୍ଦ୍ଦି ଖାଁ, ଆଲାମ ଚାନ୍ଦ ଓ ଫତେଚାନ୍ଦ । କିନ୍ତୁ ସୁଜା ଉଦ୍ଦିନ୍‌ଙ୍କ ମୃତ୍ୟୁ ପରେ ତାଙ୍କର ପୁତ୍ରର ଶତ୍ରୁ ପାଲଟି ଗଲେ ଏବଂ ଚକ୍ରାନ୍ତ କରି ତାଙ୍କୁ ହତ୍ୟା କଲେ । ତାପରେ ଅଲିବର୍ଦ୍ଦି ଖାଁ ବଙ୍ଗ, ବିହାର ଓ ଓଡ଼ିଶାର ନାଜିମ୍ ହେଲେ । ହାଜି ଅହମ୍ମଦ୍‌ର ପୁତ୍ର ସୟିଦ୍ ଅହମ୍ମଦ୍‌କୁ ଓଡ଼ିଶାର ନାଏବ ନାଜିମ ନିଯୁକ୍ତ କରାଗଲା । ଫଳରେ ମୁର୍ଶିଦ କୁଲି ଖାଁଙ୍କ ସହିତ ତାର ଯୁଦ୍ଧ ହେଲା । ମୁର୍ଶିଦ କୁଲି ଖାଁ ପରାସ୍ତ ହୋଇ ମସଲିପଟମ୍‌କୁ ପଳାୟନ କଲେ । ସୟିଦ୍ ଅହମଦ୍ ଓଡ଼ିଶାର ନବାବ ହେଲେ । ରାଜା ବୀରକେଶରୀ ମୁର୍ଶିଦ୍ କୁଲି ଖାଁ (୨ୟ)ଙ୍କ ପରିବାରକୁ ସୁରକ୍ଷା ଦେଇ ମସଲିପଟମ୍‌କୁ ପଠାଇଦେଲେ ।

ସୟିଦ ଅହମଦ୍ ଓଡ଼ିଶାର ନବାବ (ନାଏବ ନାଜିମ୍) ହେବା ପରେ ରାଜ୍ୟରେ ଅତ୍ୟାଚାର ଓ ଉତ୍ପୀଡନର କୁଶାସନ ପ୍ରବର୍ତ୍ତନ ହେଲା । ତାଙ୍କ ବିରୁଦ୍ଧରେ ଜନ ଆନ୍ଦୋଳନ ହେଲା । ରାଜା ବୀରକେଶରୀ ମଧ୍ୟ ଏହି ନାଏବ ନାଜିମ୍‌ଙ୍କ ବିରୋଧରେ ନେତୃତ୍ୱ ନେଇଥିଲେ । ଇତି ମଧ୍ୟରେ ମୁର୍ଶିଦ କୁଲି ଖାଁ (୨ୟ)ଙ୍କର ବିଶ୍ୱସ୍ତ ସହଯୋଗୀ ମିର ହବିବ୍ ନାଗପୁରରେ ଶାସକ ରଘୁଜୀ ଭୋନ୍‌ସଲାଙ୍କ ଦରବାରରେ ଆଶ୍ରୟ ନେଇଥିଲେ । ଭୋନ୍‌ସଲାଙ୍କୁ ସେ ଓଡ଼ିଶା ଆକ୍ରମଣ କରିବାକୁ ପ୍ରବର୍ତ୍ତାଇଲେ ।

୧୭୪୨ ଖ୍ରୀଷ୍ଟାବ୍ଦରେ ରଘୁଜୀ ଭୋନ୍‌ସଲାଙ୍କର ପ୍ରଧାନମନ୍ତ୍ରୀ ଭାସ୍କର ପଣ୍ଡିତ ଓଡ଼ିଶା ଆକ୍ରମଣ କଲେ । ଏହା ହେଉଛି ଓଡ଼ିଶା ଉପରେ ସର୍ବପ୍ରଥମ ମରହଟ୍ଟା ଆକ୍ରମଣ । ବଙ୍ଗ ଓ ଓଡ଼ିଶାରୁ ଚୌଥ ଆଦାୟ କରିବା ଥିଲା ମରହଟ୍ଟା ଆକ୍ରମଣର ଉଦ୍ଦେଶ୍ୟ । ବାରମ୍ବାର ମୋଗଲ ଓ ମରହଟ୍ଟାଙ୍କ ମଧ୍ୟରେ ସଂଘର୍ଷ ଲାଗି ରହିଲା । ମିର ହବିବିଙ୍କ ନେତୃତ୍ୱରେ ମରହଟ୍ଟା ସୈନ୍ୟମାନେ କଟକ ସହରକୁ ନିଜ ଆଧିପତ୍ୟକୁ ନେଇ ଆସିଲେ ଓ ନାଏବ ନାଜିମ୍ ଶୋଭନ ଖାଁଙ୍କୁ ବନ୍ଦୀ କଲେ । ୧୭୫୧ ଖ୍ରୀଷ୍ଟାବ୍ଦରେ ଭୋନ୍‌ସଲାଙ୍କ ସହିତ ଅଲିବର୍ଦ୍ଦି ଖାଁଙ୍କର ଏକ ଆପୋଷ ଶାନ୍ତି ଚୁକ୍ତି ସ୍ୱାକ୍ଷରିତ ହେଲା । ମିର ହବିବଙ୍କୁ ଭୋନ୍‌ସଲାଙ୍କ ପ୍ରତିନିଧି ହିସାବରେ ଓଡ଼ିଶାର ସୁବାଦାର ଭାବେ ସ୍ୱୀକାର କରାଗଲା । ଭୋନ୍‌ସଲା ରାଜାଙ୍କୁ ବଙ୍ଗର ରାଜସ୍ୱରୁ ବର୍ଷକୁ ବାରଲକ୍ଷ ଟଙ୍କା ଚୌଥ ଭାବେ ଦେବାପାଇଁ ବଙ୍ଗ ନବାବ ଅଙ୍ଗୀକାରବଦ୍ଧ ହେଲେ । ସୁବର୍ଣ୍ଣରେଖା ନଦୀକୁ ବଙ୍ଗ ଓ ଓଡ଼ିଶାର ବିଭକ୍ତ ରେଖା ଭାବେ ସର୍ବସମ୍ମତି କ୍ରମେ ସ୍ଥିର କରାଗଲା । ଏହି ଚୁକ୍ତି ବଳରେ ମରହଟ୍ଟାମାନେ ଓଡ଼ିଶାର ସର୍ବମୟ ଶାସକ ଓ ପ୍ରାଶାସନିକ କର୍ତ୍ତୃପକ୍ଷ ବିବେଚିତ ହେଲେ ।

ମିର ହବିବଙ୍କୁ ବଙ୍ଗନବାବଙ୍କଠାରୁ ବାରଲକ୍ଷ ଟଙ୍କାର ଚୌଥ (ରାଜସ୍ୱ) ଆଦାୟ କରି ଭୋନ୍‌ସଲାଙ୍କଠାରେ ପୈଠ କରିବାର ଗୁରୁ ଦାୟିତ୍ୱ ଅର୍ପଣ କରାଯାଇଥିଲା । ଏହା ବ୍ୟତୀତ ଓଡ଼ିଶାର ରାଜସ୍ୱରୁ ବାର୍ଷିକ ଚାରି ଲକ୍ଷ ଟଙ୍କା ଭୋନ୍‌ସଲାଙ୍କୁ ଦେବାପାଇଁ ତାଙ୍କ ଉପରେ ଦାୟିତ୍ୱ ନ୍ୟସ୍ତ ଥିଲା । କିଛି ମାସ ପରେ ମିରହବିବ୍‌ଙ୍କ ଉପରେ ରଘୁଜୀ ଭୋନ୍‌ସଲା କ୍ଷୁବ୍‌ଧ ହେଲେ । କାରଣ ମିରହବିବ ଓଡ଼ିଶାରୁ ରାଜସ୍ୱ ପଠାଇବାରେ ଅବହେଳା କଲେ । ରଘୁଜୀଙ୍କ ପୁତ୍ର ଭାନୁଜୀ ଓଡ଼ିଶା ଆସି ତଦନ୍ତ କଲେ । ଭାନୁଜୀ ଓ ମିରହବିବଙ୍କ ସମର୍ଥକ ସୈନ୍ୟମାନଙ୍କ ମଧ୍ୟରେ ସଂଘର୍ଷ ଉପୁଜିଲା । ମିରହବିବ୍‌ଙ୍କୁ ଖ୍ରୀ: ୧୭୫୨ରେ ହତ୍ୟା କରାଯାଇଥିଲା ।

ମିର ହବିବ୍‌ଙ୍କ ପରେ ମିର୍ଜା ସାଲେ ଓଡ଼ିଶାର ସୁବାଦାର ହେଲେ (ଖ୍ରୀ: ୧୭୫୨-୧୭୫୯) । ସେ ଇଂରେଜମାନଙ୍କ ସହିତ ନିଜର ବ୍ୟକ୍ତିଗତ ଫାଇଦାପାଇଁ ସୁସଂପର୍କ ରଖିଲେ । ସେ ମଧ୍ୟ ଭୋନ୍‌ସଲାଙ୍କୁ ରାଜସ୍ୱ ଦେବାରେ ଅବହେଳା କରିବାରୁ ଗାଦିଚ୍ୟୁତ ହେଲେ । ଶେଓ ଭଟ୍ଟ ସୁବାଦାର ହେଲେ । ସେ ସୁବାଦାର (ଖ୍ରୀ: ୧୭୫୯ରୁ ୧୭୬୪) ହେବା ପରେ ଓଡ଼ିଶା ଉପରେ ବଙ୍ଗ ନବାବଙ୍କ କର୍ତ୍ତୃତ୍ୱ ରହିଲା ନାହିଁ । ଭୋନ୍‌ସଲା ହିଁ ଓଡ଼ିଶାର ସର୍ବୋଚ୍ଚ ପ୍ରାଶାସନିକ କର୍ତ୍ତୃପକ୍ଷ ଭାବେ ସ୍ୱୀକୃତ ହେଲେ । ତାଙ୍କ ସମୟରେ ପାରଳାଖେମୁଣ୍ଡିର ଗଙ୍ଗବଂଶୀୟ ରାଜା ଗଜପତି ଜଗନ୍ନାଥ ନାରାୟଣ ଦେବ ନିଜକୁ ଓଡ଼ିଶାର ବଙ୍ଗ ବଂଶର ପ୍ରକୃତ ଉତ୍ତରାଧିକାରୀ ଭାବେ ଘୋଷଣା କରି ଖୋର୍ଦ୍ଧା ରାଜବଂଶର ଆଧିପତ୍ୟକୁ ଅସ୍ୱୀକାର କରିଥିଲେ ଏବଂ ବୀରକେଶରୀଙ୍କ ଦୁର୍ବଳତାର ସୁଯୋଗ ନେଇ ଖୋର୍ଦ୍ଧା ସିଂହାସନ ଦାବି କରିଥିଲେ । ୧୭୬୦ ଖ୍ରୀଷ୍ଟାବ୍ଦରେ ସେ ବାଣପୁର ବାଟେ ଖୋର୍ଦ୍ଧା ଆକ୍ରମଣ କରିଥିଲେ । ଯୁଦ୍ଧରେ ବୀରକେଶରୀ ଦେବ ପରାସ୍ତ ହୋଇ ମରହଟ୍ଟା ସୁବାଦାର ଶେଓ ଭଟ୍ଟଙ୍କ ଶରଣାପନ୍ନ ହେଲେ । ମରହଟ୍ଟା ସୁବାଦାର ପାରଳାଖେମୁଣ୍ଡି ରାଜାଙ୍କୁ ପରାସ୍ତ ଓ ଖୋର୍ଦ୍ଧାରୁ ବିତାଡ଼ନ କରିଥିଲେ । କିନ୍ତୁ ବୀରକେଶରୀ ଦେବ ଚୁକ୍ତି ଅନୁଯାୟୀ ଯୁଦ୍ଧ ବ୍ୟୟ ସମ୍ପର୍କରେ ଟଙ୍କା ପରିଶୋଧ କରିନପାରିବାରୁ ତାଙ୍କ ରାଜ୍ୟର ଉତ୍କୃଷ୍ଟ ଅଂଗ ରାହାଙ୍ଗ, ଲେମ୍ବାଇ ଓ ପୁରୁଷୋତ୍ତମ କ୍ଷେତ୍ର ଅର୍ଥାତ୍ ଦୟାନଦୀ, ସମୁଦ୍ର, ଜଗନ୍ନାଥ ସଡ଼କ ଓ ଚିଲିକା ମଧ୍ୟବର୍ତ୍ତୀ ଅଞ୍ଚଳ ଏବଂ ଏ ପର୍ଯ୍ୟନ୍ତ ରାଜାଙ୍କ ଅଧୀନରେ ଥିବା ଚଉଦଟି ଗଡ଼ଜାତ ରାଜ୍ୟରୁ ରାଜସ୍ୱ ଆଦାୟ କ୍ଷମତା ସାମୟିକ ଭାବରେ ମରହଟ୍ଟା ସୁବାଦାରଙ୍କୁ ଛାଡ଼ି ଦେଲେ । ମରହଟ୍ଟାମାନେ ଉକ୍ତ ଅଧିକାର ଆଉ ଛାଡିନଥିଲେ । ଏହି ଚୁକ୍ତି ଫଳରେ ଖୋର୍ଦ୍ଧା ରାଜ୍ୟର ଆୟତନ ଓ ଆୟ ଯଥେଷ୍ଟ ହ୍ରାସ ପାଇଥିଲା (ଖୁରୁଧା ଇତିହାସ) । ଶ୍ରୀମନ୍ଦିର ପରିଚାଳନାରେ ରାଜାଙ୍କ କର୍ତ୍ତୃତ୍ୱ ରହିଲା ନାହିଁ ।

ଜର୍ମାନ ଗବେଷକ କୁଲ୍‌କେ ଲେଖିଛନ୍ତି- ‘‘The Rajas of Khurda seem to have retained only a nominal position as Gajapaties in the Jagannath Cult..... the control over the Jagannath cult had passed completely into the hands of a group of temple administrators which were appointed by the Marathas."

ମରହଟ୍ଟା ସୁବାଦାର ରାଜାରାମ ପଣ୍ଡିତ (୧୭୭୮-୧୭୯୩ ଖ୍ରୀଷ୍ଟାବ୍ଦ)ଙ୍କ ରାଜତ୍ୱରେ ରାଜା ବୀରକେଶରୀ ଦେବ ପାଗଳ ହୋଇଯାଇ ନିଜର ଚାରିଟି ପୁତ୍ରଙ୍କୁ ହତ୍ୟା କରିଥିଲେ । ଏହି ଦୁଃଖଦ ଘଟଣା ସାରା ରାଜ୍ୟରେ ଚହଳ ପକାଇଦେଲା । ରାଜାରାମ ପଣ୍ଡିତ ବୀରକେଶରୀଙ୍କୁ ଧରିନେଇ ବାରବାଟୀ ଦୁର୍ଗରେ ବନ୍ଦୀ କରିଦେଲେ । ତାଙ୍କର ନାତି ଦିବ୍ୟସିଂହ ଦେବ (୨ୟ) ମରହଟ୍ଟା ଶାସକଙ୍କୁ ବାର୍ଷିକ ଦଶହଜାର ଟଙ୍କା ପେସ୍‌କସ ଦେବାକୁ ଚୁକ୍ତି କରିବାରୁ ତାଙ୍କୁ ଖୋର୍ଦ୍ଧାର ରାଜା କରାଗଲା । ରାଜା ବୀରକେଶରୀଙ୍କ ରାଜତ୍ୱର ଅଙ୍କ ଗଣନା ତାଙ୍କର ମୃତ୍ୟୁ ପର୍ଯ୍ୟନ୍ତ (୧୭୯୩ ଖ୍ରୀଷ୍ଟାବ୍ଦ) ଚାଲିଥିଲା, ଯଦିଓ ଦିବ୍ୟସିଂହ ଦେବ ପ୍ରକୃତରେ ୧୭୮୧ ଖ୍ରୀଷ୍ଟାବ୍ଦରେ ରାଜା ହୋଇଥିଲେ ।

ମୁସଲମାନ ଆଧିପତ୍ୟ ଓ ଅତ୍ୟାଚାର ବନ୍ଦ ହୋଇଯିବା ଫଳରେ ରାଜା ବୀରକେଶରୀଙ୍କ ରାଜତ୍ୱ କାଳରେ ଅନେକ ନୂତନ ମନ୍ଦିର ନିର୍ମାଣ ଓ ପୁରାତନ ମନ୍ଦିରର ଜୀର୍ଣ୍ଣସଂସ୍କାର କାର୍ଯ୍ୟ ହୋଇପାରିଥିଲା । ମରହଟ୍ଟା ସୁବାଦାରମାନେ କେତେଗୁଡ଼ିଏ ହିନ୍ଦୁ କୀର୍ତ୍ତି ନିର୍ମାଣ କରିଥିଲେ । 'ମାଦଳାପାଞ୍ଜି'ରେ ବୀରକେଶରୀଙ୍କ କୀର୍ତ୍ତିକଳାପ ସମ୍ପର୍କରେ ସୂଚନା ମିଳେ । ବୀରକେଶରୀ ଶ୍ରୀମନ୍ଦିରର ରତ୍ନସିଂହାସନ ପୁନଃନିର୍ମାଣ କରିଥିଲେ । ରତ୍ନ ସିଂହାସନ ମୂଳରେ ପୂର୍ବ ପାର୍ଶ୍ୱରେ ବୀରକେଶରୀ ଦେବ ଓ ତାଙ୍କର ଠାକୁର ମା'ଙ୍କର କ୍ଷୁଦ୍ର ପ୍ରତିମା ଖୋଦିତ ହୋଇଅଛି । ପ୍ରତିମା ଦ୍ୱୟ ତଳେ କେବଳ ରାଜା ବୀରକେଶରୀ ଦେବଙ୍କ ନାମ ଉଲ୍ଲେଖ ଅଛି । କିନ୍ତୁ ତାଙ୍କର ଠାକୁର ମା'ଙ୍କର ନାମ ଉଲ୍ଲେଖ ନଥାଇ କେବଳ ଠାକୁର ମା' ଉଲ୍ଲେଖ ଅଛି । ରାଜାଙ୍କ ପ୍ରତିମା ତଳେ 'ବିରକେସରି ଦେବ' ଲେଖା ଅଛି । ଅନୁମାନ କରାଯାଏ ଯେ, ଠାକୁର ମା' (ଅର୍ଥାତ୍ ହରେକୃଷ୍ଣ ଦେବଙ୍କ ପାଟରାଣୀ)ଙ୍କ ନିର୍ଦ୍ଦେଶରେ ରତ୍ନସିଂହାସନ ପୁନଃ ନିର୍ମାଣ କରାଯାଇଥିଲା । ବୀରକେଶରୀଙ୍କ ଠାକୁର ମା' (ଜେଜେ ମା') କେବଳ ରତ୍ନ ସିଂହାସନ ନିର୍ମାଣ କରାଇନଥିଲେ, ସେ ମଧ୍ୟ ଶ୍ରୀମନ୍ଦିର ଭୋଗମଣ୍ଡପର ଜୀର୍ଣ୍ଣୋଦ୍ଧାର ଓ ପଥର ଚଟାଣ ନିର୍ମାଣ କରାଇଥିଲେ । ଏହି କାର୍ଯ୍ୟ ରାଜାଙ୍କ ୩୩ ଅଙ୍କରେ ହୋଇଥିଲା । ବୀରକେଶରୀଙ୍କ ଠାକୁର ମା', ମାତା ଓ ପତ୍ନୀଙ୍କ ନାମରେ ଅନେକ ନିର୍ମାଣ କାର୍ଯ୍ୟ ହୋଇଥିଲା । ରାଜାଙ୍କ ପାଟମହାଦେଈ ବଡ଼ଦେଉଳକୁ ଚୂନ ଦେଲେ । ଠାକୁର ମା' ମଧ୍ୟ ଦୋଳଯାତ୍ରା ମଣ୍ଡପ ଜୀର୍ଣ୍ଣ ହେବାରୁ ଦୋଳମଣ୍ଡପ କରାଇଲେ । ଉତ୍ତରଦ୍ୱାର ଗୁମୁଟ, ଖଟ ଶେଯ ଘର, ଶୟନ ଠାକୁର ଘର, ଚାଙ୍ଗଡ଼ାଘର ପ୍ରଭୃତି ନିର୍ମାଣ କରାଯାଇଥିଲା । ବୀରକେଶରୀଙ୍କ ମାତା ଲଳିତା ପାଟମହାଦେଈଙ୍କ ନାମରେ ଲଳିତା ପାଟପୁର ଶାସନ ପ୍ରତିଷ୍ଠା କରାଯାଇଥିଲା । ସେହି ଶାସନରେ ଏକ ବିଷ୍ଣୁ ମନ୍ଦିର ବୀରକେଶରୀଙ୍କ ୩୯ ଅଙ୍କରେ ନିର୍ମିତ ହୋଇଥିଲା ।

ବୀରକେଶରୀ ଦେବଙ୍କ ଦୀର୍ଘ ରାଜତ୍ୱ କାଳରେ ଓଡ଼ିଆ ଓ ସଂସ୍କୃତ ଭାଷାରେ ଅନେକ ଉପାଦେୟ ଗ୍ରନ୍ଥ ରଚିତ ହୋଇଥିଲା । ବୀର କେଶରୀଦେବଙ୍କଦ୍ୱାରା ରଚିତ କିମ୍ବା ତାଙ୍କ ନାମରେ ଭଣିତ ଅନେକ ପ୍ରସିଦ୍ଧ ଭଜନ, ଜଣାଣ ରହିଛି ।

ଦିବ୍ୟ ସିଂହଦେବ (୨ୟ)ଙ୍କ ରାଜତ୍ୱ କାଳ ଖ୍ରୀ: ୧୭୮୧ରୁ ୧୭୯୮ ଯାଏଁ । କିନ୍ତୁ ଅଙ୍କ ଗଣନାନୁସାରେ ଖ୍ରୀ: ୧୭୯୩ରୁ ୧୭୯୮ ଧରାଯାଏ । ରାଜା ହେବା ପୂର୍ବରୁ ଏହାଙ୍କ ନାମ ଥିଲା

ଜଗନ୍ନାଥ ରାଏ । ଦିବ୍ୟସିଂହଙ୍କ ରାଜତ୍ୱ କାଳରେ ବଡ଼ଦେଉଳକୁ ପୁଣି ଚୂନ ପଲସ୍ତରା କରାଗଲା । କୋଣାର୍କ କ୍ଷେତ୍ରରୁ ଅରୁଣ ସ୍ତମ୍ଭକୁ ଆଣି ଶ୍ରୀମନ୍ଦିରର ଅରୁଣଚକଡ଼ାରେ ସ୍ଥାପନ କରାଗଲା । ଶ୍ରୀମନ୍ଦିର ରତ୍ନବେଦୀର ପଛପଟେ ପଥରକାନ୍ଥ ବସାଗଲା । ସିଂହାସନ ଉପରେ ଥିବା ଶଙ୍କରାଚାର୍ଯ୍ୟ ଓ ପଦ୍ମପାଦ ମୂର୍ତ୍ତିମାନ ବାହାର କରାଯାଇ ଭଣ୍ଡାରଘରେ ରଖାଗଲା । ପରେ ପୁନଶ୍ଚ ମୂର୍ତ୍ତିଦ୍ୱୟଙ୍କୁ ସିଂହାସନ ଉପରେ ସ୍ଥାପନା କରାଯିବାରୁ ବୈଷ୍ଣବମାନେ ପ୍ରତିବାଦ କରି ତାହା ଭାଙ୍ଗିଦେଲେ । ମରହଟ୍ଟାଙ୍କ ଗୁରୁ ବ୍ରହ୍ମଚାରୀ ଗୋସାଇଁ ସୁବର୍ଣ୍ଣରେ ଲକ୍ଷ୍ମୀ ଠାକୁରାଣୀ (ଶ୍ରୀଦେବୀ) ନିର୍ମାଣ କରାଇଥିଲେ । ପୂର୍ବରୁ ବିରାଜମାନ କରିଥିବା ଲକ୍ଷ୍ମୀ ପ୍ରତିମାଙ୍କୁ କୌଣସି କାରଣରୁ ଅପସାରିତ କରାଯାଇ ଭଣ୍ଡାରଘରେ ରଖାଯାଇଥିଲା । ଏତଦ୍‌ବ୍ୟତୀତ, ଅମାବାସ୍ୟା ନାରାୟଣ ପ୍ରତିମା ରୁପାରେ ଓ ଶୟନ ପ୍ରତିମା ସୁନାରେ ନିର୍ମାଣ କରାଯାଇଥିଲା । ଇନ୍ଦ୍ରଦ୍ୟୁମ୍ନ ସରୋବରରେ ପଥର ବନ୍ଧା ଯାଇଥିଲା । ପଶ୍ଚିମ ଦ୍ୱାର ଖୋଲା ଯାଇଥିଲା । (ହୁଏତ କୌଣସି କାରଣରୁ ବାହାର ବେଢ଼ାର ପଶ୍ଚିମଦ୍ୱାର ବନ୍ଦ ହୋଇଯାଇଥିଲା କିମ୍ବା ନୂତନ ଭାବରେ ପୁନଃନିର୍ମାଣ କରାଯାଇଥିଲା) । ଦିବ୍ୟସିଂହଦେବଙ୍କ ସମୟର ଏକ ଆକର୍ଷଣୀୟ ଘଟଣା ଥିଲା, ପ୍ରଥମ କରି ଶ୍ରୀମନ୍ଦିରରେ ଝୁଲଣଯାତ୍ରାର ପ୍ରଚଳନ ।

ମରହଟ୍ଟା ଶାସକମାନେ ହିନ୍ଦୁ ଧର୍ମାବଲମ୍ବୀ ହୋଇଥିବାଯୋଗୁଁ ସେମାନେ ପୁରୀର ଶ୍ରୀଜଗନ୍ନାଥ ମନ୍ଦିର, ଅନ୍ୟାନ୍ୟ ମନ୍ଦିର ଓ ମଠମାନଙ୍କର ପରିଚାଳନା ଓ ସୁରକ୍ଷା ନିମନ୍ତେ ତତ୍ପର ଥିଲେ । ମରହଟ୍ଟା ସୁବାଦାର ଶେଓ ଭଟ୍ଟ ସାଠେ ସ୍ୱୟଂ ଶ୍ରୀମନ୍ଦିରର ପରିଚାଳନା ଦାୟିତ୍ୱ ନେଇଥିଲେ । ସେ ଶ୍ରୀମନ୍ଦିରର ପାରମ୍ପରିକ ସେବାପୂଜାରେ ହସ୍ତକ୍ଷେପ କରିନଥିଲେ । ମନ୍ଦିରର ରକ୍ଷଣାବେକ୍ଷଣ ପାଇଁ ବହୁ ନିଷ୍କର ଭୂମି ଓ ଗ୍ରାମ ଦାନ କରିଥିଲେ । ଯାତ୍ରୀମାନଙ୍କଠାରୁ ତୀର୍ଥଯାତ୍ରୀକର ଆଦାୟ କରାଯାଉଥିଲା । ଯାତ୍ରୀମାନେ ମନ୍ଦିର ମଧ୍ୟରେ ଯାହା ଦାନ ଦେଉଥିଲେ ତାହା ମନ୍ଦିରର ପରିଚାଳନାରେ ବ୍ୟୟ କରାଯାଉଥିଲା । ପୁରୀଠାରେ କେତୋଟି ନୂତନ ମଠ ଓ ମନ୍ଦିର ସ୍ଥାପନ କରାଯାଇ ସେ ଗୁଡ଼ିକର ରକ୍ଷଣାବେକ୍ଷଣପାଇଁ ଭୂସମ୍ପତ୍ତି ଦାନ କରାଯାଇଥିଲା । ମରହଟ୍ଟା ଶାସନ ସମୟରେ ଇନ୍ଦୋରର ରାଣୀ ଅହଲ୍ୟାବାଈ ପୁରୀକୁ ଆସି ଧର୍ମଶାଳା ଓ ମଠ ଆଦି ନିର୍ମାଣପାଇଁ ବିପୁଳ ଅର୍ଥ ଦାନ କରିଥିବା ଜଣାଯାଏ । ମରହଟ୍ଟା ଶାସନ କାଳରେ ଶ୍ରୀମନ୍ଦିର ଆୟର ବିଭିନ୍ନ ଉତ୍ସ ଥିଲା- (୧) ସତାଇଶ ହଜାରୀ ମାହାଲ, (୨) ସହର ଶୁଳ୍କ, (୩) ବୃତ୍ତିକର, (୪) ମହାପ୍ରସାଦ ବିକ୍ରୟରୁ ଲବ୍‌ଧ ଧନ । (୫) କୋଟ ଖଂଜା (Kot Khanja) ବା ଭୂରାଜସ୍ୱ ନିୟୋଜନ । ଯାତ୍ରୀମାନଙ୍କଠାରୁ ଫି ଆଦାୟପାଇଁ ଅନୁମତି ପ୍ରାପ୍ତ ପ୍ରତିହାରୀମାନଙ୍କ ଉପରେ କରଧାର୍ଯ୍ୟ କରାଯାଇଥିଲା । କେତେକ ଶ୍ରେଣୀର ତୀର୍ଥଯାତ୍ରୀଙ୍କଠାରୁ ତୀର୍ଥଯାତ୍ରୀ ଟିକସ (Pilgrim Tax) ଆଦାୟ କରାଯାଉନଥିଲା । ସେମାନେ ହେଲେ 'ସନ୍ୟାସୀ', 'ଦେଶୀ' (ଯେଉଁମାନେ ବୈତରଣୀ ଓ ଋଷିକୂଲ୍ୟା ନଦୀ ଦ୍ୱୟ ମଧ୍ୟରେ ଥିବା ଭୂମିର ଅଧିବାସୀ) ଓ କାଙ୍ଗାଳ ବା ଦରିଦ୍ର ।

ମରହଟ୍ଟା ଶାସନ ସମୟରେ ଶ୍ରୀମନ୍ଦିରର ଦୈନନ୍ଦିନ ପରିଚାଳନା ଦାୟିତ୍ୱ ତିନିଜଣ ପରିଚ୍ଛାଙ୍କ ଉପରେ ନ୍ୟସ୍ତ ଥିଲା । ଏକଦା ଚାରିଜଣ ପରିଚ୍ଛା ଥିଲେ । ପୁରୀର ଇଂରାଜୀ କଲେକ୍ଟର

ଚାର୍ଲସ ଗ୍ରୋମ୍‌ଙ୍କ ରିପୋର୍ଟ (ତା.୧୦.୬.୧୮୦୫)ରେ ଉଲ୍ଲେଖ ଥିବା ତିନିଜଣ ମରହଟ୍ଟା ପରିଚ୍ଛାଙ୍କ ନାମ ହେଲା-ମୋରାର (ମୁରାରୀ) ପଣ୍ଡିତ, (ମୁଖ୍ୟ ପରିଚ୍ଛା), ଜଗନ୍ନାଥ ରାଜଗୁରୁ (ଦ୍ୱିତୀୟ ପରିଚ୍ଛା) ଓ ଶେଓ୍ୱାଜି ଅନ୍‌ଗିଟସ୍ (ବାଜୀ ଆଙ୍ଗଟିସ୍) ତୃତୀୟ ପରିଚ୍ଛା ।

ମରହଟ୍ଟା ଶାସନରେ ଓଡ଼ିଶା ମୁଖ୍ୟତଃ ଦୁଇ ଭାଗରେ ବିଭକ୍ତ ଥିଲା; ଯଥା- (୧) ଗଡ଼ଜାତ ରାଜନ୍ୟ ମଣ୍ଡଳୀ ଅଞ୍ଚଳ ଓ (୨) ମୋଗଲବନ୍ଦୀ ଅଞ୍ଚଳ । ଗଡଜାତ ରାଜ୍ୟମାନ ଜଙ୍ଗଲ ଓ ପର୍ବତ ଆବୃତ୍ତ ଥାଇ, ଅର୍ଦ୍ଧ ସ୍ୱାଧୀନ ରାଜ୍ୟ ଭାବରେ କାର୍ଯ୍ୟ କରୁଥିଲେ । ସମୁଦ୍ର କୂଳବର୍ତ୍ତୀ ବିସ୍ତୀର୍ଣ୍ଣ ସମତଳ ଅଞ୍ଚଳ ଥିଲା 'ମୋଗଲବନ୍ଦୀ', ଯାହାକି ମରହଟ୍ଟାମାନଙ୍କର ପ୍ରତ୍ୟକ୍ଷ ଶାସନାଧୀନ ଥିଲା । ଗଡ଼ଜାତ ରାଜ୍ୟମାନଙ୍କ ମଧ୍ୟରେ ଖୋର୍ଦ୍ଧାରାଜ୍ୟ ଥିଲା ସର୍ବପ୍ରଧାନ । ଖୋର୍ଦ୍ଧାରାଜା ଓଡ଼ିଶାର ରାଜା ଭାବେ ମାନ୍ୟତା ପାଉଥିଲେ । ଖୋର୍ଦ୍ଧାରାଜା କେତେଜଣ ସାମନ୍ତ ବା ଦଳବେହେରାଙ୍କ ସାହାଯ୍ୟରେ ଶାସନ ପରିଚାଳନା କରୁଥିଲେ । ଏହି ଦଳ ବେହେରା ପଦବୀ ପୁରୁଷାନୁକ୍ରମିକ ଥିଲା । ସେମାନଙ୍କ ଅଧୀନରେ 'ଦଳେଇ' ଉପାଧିଧାରୀ ସୈନ୍ୟମାନେ ଗଡ଼ ବା ଦୁର୍ଗରକ୍ଷକ ଭାବେ କାର୍ଯ୍ୟ କରୁଥିଲେ । ଦଳେଇ ପଦବୀ ମଧ୍ୟ ପୁରୁଷାନୁକ୍ରମିକ ଥିଲା । ଦଳେଇମାନଙ୍କ ରକ୍ଷଣାବେକ୍ଷଣପାଇଁ ଇନାମ ଭୂମିର ବ୍ୟବସ୍ଥା କରାଯାଇଥିଲା । ସେମାନଙ୍କୁ ମଧ୍ୟ ପାଇକ କୁହାଯାଉଥିଲା । ଯୁଦ୍ଧ ସମୟରେ ସୈନିକ କାମ କରିବା ସଙ୍ଗେ ସଙ୍ଗେ ଶାନ୍ତି ସମୟରେ ସେମାନେ କୃଷକ ଭାବରେ କୃଷିକର୍ମରେ ପ୍ରବୃତ୍ତ ହେଉଥିଲେ । ନିଜର କିମ୍ବା ମାଲିକଙ୍କର ଜମି କର୍ଷଣ କରୁଥିଲେ ।

'ମୋଗଲବନ୍ଦୀ' ଅଞ୍ଚଳ ଉତ୍ତରରେ ସୁବର୍ଣ୍ଣରେଖା ନଦୀ ଅଞ୍ଚଳଠାରୁ ଦକ୍ଷିଣରେ ଖୋର୍ଦ୍ଧା ସୀମା ଯାଏଁ ବିସ୍ତୃତ ଥିଲା । ପ୍ରାଶାସନିକ ସୁବିଧା ଦୃଷ୍ଟିରୁ ମୋଗଲବନ୍ଦୀ ଅଞ୍ଚଳକୁ ୧୫୦ଟି 'ପ୍ରଗଣା'ରେ ବିଭକ୍ତ କରାଯାଇଥିଲା । ପ୍ରତ୍ୟେକ ପ୍ରଗଣାକୁ କେତୋଟି 'ମାହାଲ'ରେ ବିଭକ୍ତ କରାଯାଇଥିଲା । ରାଜସ୍ୱ ଆଦାୟ ଦାୟିତ୍ୱରେ ଥିବା ସର୍ବୋଚ୍ଚ କର୍ମଚାରୀଙ୍କୁ 'ଅମିଲ' କୁହାଯାଉଥିଲା । ଚୌଧୁରୀ, କାନୁନ୍‌ଗୋ ଓ ତାଲୁକଦାରମାନେ ରାଜସ୍ୱ ଆଦାୟ କରିବାରେ ସାହାଯ୍ୟ କରୁଥିଲେ । ରାଜସ୍ୱ କର୍ମଚାରୀମାନଙ୍କୁ ମାସିକ ଦରମା ପ୍ରଦାନର ବ୍ୟବସ୍ଥା ନଥିଲା । ସେମାନେ ପାରିଶ୍ରମିକ ଭାବେ କରବିହୀନ ଜମି ବା ନିଷ୍କର ଜମି ଭୋଗ ଦଖଲ କରୁଥିଲେ । ଦୁର୍ଭିକ୍ଷ ଓ ଖାଦ୍ୟାଭାବ ସମୟରେ ମରହଟ୍ଟା ଶାସକମାନେ ଲୋକଙ୍କ ଉପରୁ ଖଜଣା ଛାଡ଼ କରିଦେଉଥିଲେ । ୧୭୨୫ ଖ୍ରୀଷ୍ଟାବ୍ଦରେ କଟକ ଜିଲ୍ଲାରେ ଫସଲହାନି ଓ ଦୁର୍ଭିକ୍ଷ ପଡ଼ିଥିବା ହେତୁ ମରହଟ୍ଟା ଶାସକ ସାତ ଲକ୍ଷ ଟଙ୍କାର ରାଜସ୍ୱ ଛାଡ଼ କରିଥିଲେ । (ଦ୍ରଷ୍ଟବ୍ୟ- ଓଡ଼ିଶା ଇତିହାସ-ଡଃ ଦଣ୍ଡପାଣି ବେହେରା) ।

ଓଡ଼ିଶାର ସର୍ବୋଚ୍ଚ ମରହଟ୍ଟା ପ୍ରଶାସକଙ୍କୁ ସୁବାଦାର କୁହାଯାଉଥିଲା (ପ୍ରଦେଶର ଗଭର୍ଣ୍ଣର) । ତାଙ୍କର ମୁଖ୍ୟ କାର୍ଯ୍ୟାଳୟ ବାରବାଟୀ ଦୁର୍ଗରେ ଥିଲା । ଏହି ଦୁର୍ଗର ରକ୍ଷଣାବେକ୍ଷଣ ଦାୟିତ୍ୱରେ ଥିଲେ ଜଣେ କିଲାଦାର । ସୁବାଦରଙ୍କ ଅଧୀନରେ କେତେଜଣ ଫୌଜଦାର ଥିଲେ । ବିଭିନ୍ନ ସାମରିକ ଘାଟିର ରକ୍ଷଣାବେକ୍ଷଣ, ସଂପୃକ୍ତ ଅଞ୍ଚଳରେ ଶାନ୍ତି ଶୃଙ୍ଖଳା ରକ୍ଷା, ସେହି ଅଞ୍ଚଳରୁ ଖଜଣା, ବାଣିଜ୍ୟ

ଶୁଳ୍କ ଓ ଅନ୍ୟାନ୍ୟ କର ଆଦାୟ ଦାୟିତ୍ୱ ଏମାନଙ୍କ ଉପରେ ନ୍ୟସ୍ତ ଥିଲା । ଫୌଜଦାରମାନଙ୍କୁ ମାସିକ ଦରମା ପରିବର୍ତ୍ତେ ସେଥିବାବଦକୁ ଭୂସମ୍ପତ୍ତି ପ୍ରଦାନ କରାଯାଇଥିଲା । ଫୌଜଦାରଙ୍କ ଅଧୀନରେ ବହୁ ଅମିଲ ନିଯୁକ୍ତ ହୋଇଥିଲେ । ସେମାନେ ଉଭୟ ଦେଓ୍ୱାନୀ ଓ ଫୌଜଦାରୀ ମାମଲା ବିଚାର କରୁଥିଲେ । ସୁବାଦାର ନିଜେ ଗୁରୁତର ମାମଲାର ବିଚାର କରୁଥିଲେ ।

ମରହଟ୍ଟା ଶାସନରେ ବନ୍ୟା ଆତଙ୍କରୁ ରକ୍ଷା ନିମନ୍ତେ କେତୋଟି ନଦୀବନ୍ଧ ପ୍ରକଳ୍ପ କାର୍ଯ୍ୟକାରୀ କରାଯାଇଥିଲା । ମୁଖ୍ୟ ନଦୀମାନଙ୍କରେ ଫେରିଘାଟ ନିର୍ମାଣ କରାଯାଇଥିଲା । କଲିକତା ଓ ପୁରୀକୁ ସଂଯୋଗ କରି ଏକ ସଡକ ନିର୍ମାଣ କରାଯାଇଥିଲା । ଏହି ସଡକ 'ଜଗନ୍ନାଥ ସଡ଼କ' ନାମରେ ପରିଚିତ । ପ୍ରଥମ କରି ଓଡ଼ିଶାରେ ସେମାନେ ଡାକ ବ୍ୟବସ୍ଥା ପ୍ରବର୍ତ୍ତନ କରିଥିଲେ । ରୟତମାନଙ୍କ ଉପକାରପାଇଁ ତକାବୀ ଋଣ ପ୍ରଦାନ ବ୍ୟବସ୍ଥା କରାଯାଇଥିଲା । ମରହଟ୍ଟାମାନେ ରାଜସ୍ୱ ଓ ଚୌଥ କଡ଼ାକଡ଼ି ଭାବେ ଆଦାୟ କରୁଥିଲେ । ଆବଶ୍ୟକତା ମତେ ଏହି ଆଦାୟ ଏଭଳି ଦୃଢ଼ତାର ସହିତ କରାଯାଉଥିଲା ଯେ ତାହା ସାଧାରଣତଃ ଲୁଣ୍ଠନର ରୂପ ନେଉଥିଲା । ଏଭଳି କାର୍ଯ୍ୟ ମରହଟ୍ଟା ବର୍ଗୀ କରୁଥିଲେ । ତେଣୁ ଇଂରେଜମାନେ ମରହଟ୍ଟାମାନଙ୍କୁ ଲୁଣ୍ଠନକାରୀ ଓ ବର୍ବର ଆଖ୍ୟା ଦେଇଛନ୍ତି । ଏଥିନିମନ୍ତେ କ୍ରମାଗତ ଇଂରେଜ ଓ ମରହଟ୍ଟାଙ୍କ ମଧ୍ୟରେ ଥିବା ଦ୍ୱେଷ ଓ ଶତ୍ରୁଭାବକୁ ଦାୟୀ କରାଯାଏ । ଐତିହାସିକ ଡଃ ବେହେରା ଲେଖିଛନ୍ତି- ''ଏହା ସବୁ ସତ୍ତ୍ୱେ, ମରହଟ୍ଟା ଶାସନ ପୂର୍ବବର୍ତ୍ତୀ ମୋଗଲ ଶାସନ ଓ ପରବର୍ତ୍ତୀ ଇଂରେଜ ଶାସନଠାରୁ ଅପେକ୍ଷାକୃତ ଭାବେ ଅତ୍ୟଧିକ ଜନହିତକର ତଥା ଶ୍ରେଷ୍ଠତର ଥିଲା କହିଲେ ଆଦୌ ସତ୍ୟର ଅପଳାପ ହେବନାହିଁ ।''

## ଗଜପତି ମୁକୁନ୍ଦ ଦେବ (୨ୟ) (ଖ୍ରୀ: ୧୭୯୮-୧୮୧୭)

ଦିବ୍ୟସିଂହ ଦେବ (୨ୟ)ଙ୍କ ପରେ ତାଙ୍କ ପୁତ୍ର ମୁକୁନ୍ଦଦେବ ଖୋର୍ଦ୍ଧା ସିଂହାସନରେ ବସିଲେ । ତାଙ୍କର ରାଜତ୍ୱ କାଳର ମୁଖ୍ୟ ଘଟଣା ହେଲା, ଓଡ଼ିଶାରେ ଇଂରେଜ ଶାସନ ଓ ପାଇକ ବିଦ୍ରୋହ ।

ଖ୍ରୀ: ୧୭୫୭ରେ ପଲାସୀ ଯୁଦ୍ଧରେ ଜୟଲାଭ କରିବା ପରେ ସମଗ୍ର ବଙ୍ଗ ପ୍ରଦେଶରେ ଇଂରେଜ (ଇଷ୍ଟ ଇଣ୍ଡିଆ କମ୍ପାନୀ)ର ପ୍ରଭୁତ୍ୱ ପ୍ରତିଷ୍ଠିତ ହେଲା । ବଙ୍ଗର ନବାବ ଇଂରେଜମାନଙ୍କ ହାତରେ ପୁତ୍ତଳିକା ପରାୟେ କାର୍ଯ୍ୟ କଲେ । ଖ୍ରୀ: ୧୭୭୦ରେ ବଙ୍ଗ ନବାବ ମିରକାଶିମ୍ ଇଂରେଜ ମାନଙ୍କୁ ଏକ ଚୁକ୍ତିବଳରେ ଚିଟାଗଙ୍ଗ, ବର୍ଦ୍ଧମାନ ଓ ମେଦିନୀପୁର ଜିଲ୍ଲାଗୁଡିକୁ ହସ୍ତାନ୍ତର କଲେ । ଖ୍ରୀ: ୧୭୬୫ରେ ଇଂରେଜମାନେ ସିଧାସଳଖ ମୋଗଲ ସମ୍ରାଟଙ୍କ ଠାରୁ ବଂଗ, ବିହାର ଓ ଓଡ଼ିଶାର ଦେଓ୍ୱାନୀ (Revenue Diwani) ଅର୍ଥାତ୍ ରାଜସ୍ୱ ଆଦାୟ କରିବାର ଘୋଷଣାନାମା ଲାଭ କଲେ । ଫଳରେ ଇଂରେଜମାନେ ସମଗ୍ର ଓଡ଼ିଶାରେ ସେମାନଙ୍କର ଆଇନସମ୍ମତ ଓ ସାମ୍ବିଧାନିକ ଅଧିକାର ରହିଛି ବୋଲି ତର୍ଜମା କଲେ । କିନ୍ତୁ ସେତିକିବେଳେ ସୁବର୍ଣ୍ଣରେଖା ନଦୀର ଦକ୍ଷିଣ ପାର୍ଶ୍ୱରେ ଅବସ୍ଥିତ ବାଲେଶ୍ୱର, କଟକ ଓ ପୁରୀ ଜିଲ୍ଲା ମରହଟ୍ଟା ମାନଙ୍କର କର୍ତ୍ତୃତ୍ୱରେ ଥିଲା । ବଙ୍ଗ, ବିହାର ଓ ଓଡ଼ିଶା ଦୀର୍ଘକାଳ ମୋଗଲ ସମ୍ରାଟଙ୍କ ଅଧୀନରେ ରହିଆସିଥିବାଯୋଗୁଁ ଓଡ଼ିଶା ଉପରେ ମୋଗଲ କର୍ତ୍ତୃତ୍ୱ

ତଥାପି ରହିଛି ବୋଲି ମୋଗଲ ସମ୍ରାଟଙ୍କର ଧାରଣା ଥିବା ହେତୁ ଉଲ୍ଲିଖିତ 'ଦେଓ୍ୱାନୀ' ପ୍ରଦାନ କରାଯାଇଥିଲା । ମରହଟ୍ଟାମାନଙ୍କଠାରୁ ଉପରୋକ୍ତ ଓଡ଼ିଶାକୁ କୌଣସି ପ୍ରକାରେ ଆଣି ନିଜର ଅଧିକାରଭୁକ୍ତ କରିବାପାଇଁ ଇଂରେଜମାନେ ସଂକଳ୍ପବଦ୍ଧ ହେଲେ । ପ୍ରଥମେ ବଳପ୍ରୟୋଗ ପରିବର୍ତ୍ତେ ଶାନ୍ତିପୂର୍ବକ ତଥା କୂଟନୀତି ମାର୍ଗରେ ଉତ୍ତର ଓଡ଼ିଶା ଦଖଲପାଇଁ ଉଦ୍ୟମ କରାଗଲା । ମରହଟ୍ଟାମାନଙ୍କଠାରୁ କ୍ରୟ ସୂତ୍ରରେ ଦଖଲପାଇଁ ଉଦ୍ୟମ ବିଫଳ ହେଲା । ନାଗପୁରର ଭୋନ୍‌ସଲା ଶାସକମାନେ ଇଂରେଜମାନଙ୍କ ସହିତ ଉତ୍ତମ ସମ୍ପର୍କ ରକ୍ଷା କରିବାକୁ ଚାହୁଁଥିଲେ ମଧ୍ୟ କେବେହେଲେ ଓଡ଼ିଶାକୁ ହାତଛଡ଼ା କରିବାକୁ ଚାହିଁନଥିଲେ । ଫଳରେ ବିନା ଯୁଦ୍ଧରେ ଅଧିକାର ଅସମ୍ଭବ ବୋଲି ଇଂରେଜମାନେ ମନେକଲେ । ଲର୍ଡ ଓ୍ୱେଲସେଲୀ ଓଡ଼ିଶାରୁ ମରହଟ୍ଟାମାନଙ୍କୁ ହଟେଇବା ନିମନ୍ତେ ଏକ ସାମରିକ ଯୋଜନା ପ୍ରସ୍ତୁତ କଲେ । କଟକରେ ଇଂରେଜ ରେସିଡେଣ୍ଟଙ୍କର କାର୍ଯ୍ୟାଳୟ ଥିଲା ଏବଂ ବାଲେଶ୍ୱରରେ ଇଂରେଜମାନଙ୍କର ଏକ ବାଣିଜ୍ୟିକ କେନ୍ଦ୍ର ବା କୋଠି ଥିଲା । ଏହି ଦୁଇଟି ସ୍ଥାନରୁ ଇଂରେଜମାନେ ମରହଟ୍ଟାମାନଙ୍କର ପ୍ରକୃତ ସାମରିକ ଶକ୍ତି, ସେମାନଙ୍କ ପ୍ରତି ଓଡ଼ିଶାର ରାଜା-ମହାରାଜା ମାନଙ୍କର ମନୋଭାବ, ସଂଖ୍ୟାଗରିଷ୍ଠ ହିନ୍ଦୁ ଜନସାଧାରଣଙ୍କର ମନୋଭାବ ସମ୍ପର୍କରେ ଗୁପ୍ତ ତଥ୍ୟାଦି ସଂଗ୍ରହ କରାଗଲା । ଜଗନ୍ନାଥ ମନ୍ଦିରର ପ୍ରଶସ୍ତି ଓ ମନ୍ଦିରର ସୁରକ୍ଷା ସକାଶେ ବ୍ରିଟିଶ ସରକାରଙ୍କ ନିଷ୍ପତ୍ତି ଘୋଷଣା କରାଗଲା । ଇଂରେଜ ସପକ୍ଷବାଦୀ ଓ ଜଗନ୍ନାଥଙ୍କ ତୀର୍ଥଯାତ୍ରୀମାନଙ୍କୁ ସବୁ ପ୍ରକାରେ ସାହାଯ୍ୟ ଦେବାକୁ ଏବଂ ଦେବତା, ବ୍ରାହ୍ମଣ, ମଠ, ମନ୍ଦିର ପ୍ରଭୃତିରେ କୌଣସି ହସ୍ତକ୍ଷେପ ନକରିବାପାଇଁ ଇଂରେଜ ସେନାପତି ଲେ. କର୍ଣ୍ଣେଲ କ୍ୟାମ୍ପବେଲଙ୍କୁ କମ୍ପାନୀ ତରଫରୁ ଗୁପ୍ତ ନିର୍ଦ୍ଦେଶ ମିଳିଥିଲା । ଖ୍ରୀ: ୧୮୦୩ ଅଗଷ୍ଟ ମାସ ୩ ତାରିଖରେ ଲର୍ଡ ଓ୍ୱେଲ୍‌ସେଲୀ (Lord Welselly), ବ୍ରିଟିଶ୍ ଗଭର୍ଣ୍ଣର ଜେନେରାଲ ମରହଟ୍ଟାମାନଙ୍କ ବିରୁଦ୍ଧରେ ଯୁଦ୍ଧ ଘୋଷଣା କଲେ । ସେ ଓଡ଼ିଶାକୁ ତିନି ଦିଗରୁ ଆକ୍ରମଣ ଯୋଜନା କଲେ । ବ୍ରିଟିଶ୍ ଦୁର୍ଗ ଗଞ୍ଜାମରୁ ଲେ. କର୍ଣ୍ଣେଲ କ୍ୟାମ୍ପବେଲ୍ ପୁରୀ ଓ କଟକ ଜିଲ୍ଲା ଅଭିମୁଖେ ଯୁଦ୍ଧାଭିଯାନର ନେତୃତ୍ୱ ନେଇଥିଲେ । ଲର୍ଡ ଓ୍ୱେଲ୍‌ସେଲୀ ସେନାଧ୍ୟକ୍ଷ କ୍ୟାମ୍ପବେଲ୍‌ଙ୍କୁ ପୁରୀ ମନ୍ଦିର, ସେବକ ଓ ଜନସାଧାରଣଙ୍କ ପ୍ରତି କିପରି ବ୍ୟବହାର କରାଯିବ ସେଥିପାଇଁ ନିର୍ଦ୍ଦେଶ ଦେଇଥିଲେ । ତାଙ୍କର ନିର୍ଦ୍ଦେଶ ଥିଲା :

"On your arrival at Jaggemaut, you will employ every possible precautions to preserve the respect due to the pagoda and to the religious prejudices of the Brahmins and pilgrims.

You will furnish the Brahmins with such guards as shall afford perfect security to their persons, rites and ceremonies and to the sanctity to the religious edifices and you will enjoin these under your command to observe your orders on this important subject with the utmost degree of accuracy and vigilance."

ଲେ. କର୍ଣ୍ଣେଲ କାମ୍ପବେଲ୍ ହଠାତ୍ ଗୁରୁତର ଭାବରେ ଅସୁସ୍ଥ ହେବାରୁ ଲେ. କର୍ଣ୍ଣେଲ ହାରକୋର୍ଟ ତାଙ୍କଠାରୁ ଦାୟିତ୍ୱ ନେଲେ । ଇଂରେଜମାନଙ୍କ ଖୋର୍ଦ୍ଧା ଆକ୍ରମଣ ସମୟରେ ଖୋର୍ଦ୍ଧା ରାଜା ମୁକୁନ୍ଦଦେବ (୨ୟ) ନାବାଳକ ଥିବାରୁ ଜୟକୃଷ୍ଣ ରାଜଗୁରୁ ରାଜ୍ୟର ସର୍ବେସର୍ବା ଥିଲେ । ହାରକୋର୍ଟ ଖୋର୍ଦ୍ଧାରାଜାଙ୍କ ପାଖକୁ ଏକ ଗୁପ୍ତ ପତ୍ର ପଠାଇ ଖୋର୍ଦ୍ଧାରାଜ୍ୟ ମଧ୍ୟରେ ବ୍ରିଟିଶ ସୈନ୍ୟ ଚାଳନା ପାଇଁ ଅନୁମତି ମାଗିଥିଲେ ଓ ମରହଟ୍ଟା ପରିବର୍ତ୍ତେ ବ୍ରିଟିଶମାନଙ୍କ ପ୍ରତି ଆନୁଗତ୍ୟ ସ୍ୱୀକାର ପାଇଁ ତାଙ୍କୁ ଅନୁରୋଧ କରିଥିଲେ । ଜୟକୃଷ୍ଣ ରାଜଗୁରୁ (ଜୟୀରାଜଗୁରୁ) ଯଦିଓ ମରହଟ୍ଟାଙ୍କ ପ୍ରତି ଅନୁଗତ ଥିଲେ, ତଥାପି ରାଜାଙ୍କ ତରଫରୁ ଏହି ପ୍ରସ୍ତାବକୁ କେତେକ ସର୍ତ୍ତରେ ସ୍ୱୀକାର କଲେ । ସର୍ତ୍ତମାନ ହେଲା, ଖୋର୍ଦ୍ଧାରାଜାଙ୍କ ସାମରିକ ସହଯୋଗ ପାଇଁ ବ୍ରିଟିଶ୍‌ମାନେ ତାଙ୍କୁ ଏକ ଲକ୍ଷ ଟଙ୍କା ନଗଦ ପ୍ରଦାନ କରିବେ ଏବଂ ମରହଟ୍ଟା ସରକାର ରାଜା ବୀରକେଶରୀ ଦେବଙ୍କ ଠାରୁ ନେଇଯାଇଥିବା ପୁରୁଷୋତ୍ତମ, ରାହାଙ୍ଗ, ଲେମ୍ବାଇ, ସିରାଇ ଓ ଚବିଶକୁଦ ପ୍ରଗଣାର ଅଧିକାର ଖୋର୍ଦ୍ଧାରାଜାଙ୍କୁ ପ୍ରତ୍ୟର୍ପଣ କରିବେ । କର୍ଣ୍ଣେଲ ହାଇକୋର୍ଟ ଏ ସର୍ତ୍ତମାନ ପୂରଣ କରିବାକୁ ପ୍ରତିଶ୍ରୁତି ଦେଲେ । ହାରକୋର୍ଟ ଗଞ୍ଜାମ ଆଡୁ ତା ୧୧.୯.୧୮୦୩ରେ ସାମରିକ ଅଭିଯାନ ଚଳାଇ ସମୁଦ୍ର କୂଳେ କୂଳେ ଚିଲିକା ଦେଇ ମାଣିକ ପାଟଣାରେ ପହଞ୍ଚିଲେ । ସେହି ମାସ ୧୫ ତାରିଖରେ ପଥ ମଧ୍ୟରେ ବ୍ରିଟିଶ ଓ ମରହଟ୍ଟା ସୈନ୍ୟ ମଧ୍ୟରେ ଲଢ଼େଇ ହେଲା । ମରହଟ୍ଟା ସୈନ୍ୟବାହିନୀଙ୍କ ପରାଜୟ ପରେ ବ୍ରିଟିଶ ସୈନ୍ୟ ପୁରୀ ଆଡକୁ ଅଗ୍ରସର ହୋଇ ପୁରୀ ଅଧିକାର କରିନେଲେ । ୧୮ ତାରିଖରେ ପୁରୀ ଅଧିକୃତ ହେଲା ।

ପୁରୀ ସହରର ପ୍ରତିରକ୍ଷା ଦାୟିତ୍ୱ ମେଜର ଫ୍ଲେଚରଙ୍କ ହସ୍ତରେ ଅର୍ପଣ କରି କର୍ଣ୍ଣେଲ ହାରକୋର୍ଟ ଜଗନ୍ନାଥ ସଡ଼କରେ କଟକ ଅଭିମୁଖେ ସାମରିକ ଅଭିଯାନ ଚଳାଇଲେ । ପଥରେ ଠାଏଁ ଠାଏଁ ମରହଟ୍ଟା ସୈନ୍ୟମାନଙ୍କ ସହିତ ଖଣ୍ଡଯୁଦ୍ଧ ହେଲା । ସେମାନେ ପରାଜିତ ହୋଇ ପୃଷ୍ଠଭଂଗ ଦେଲେ । ଅକ୍ଟୋବର ୧୪ ତାରିଖରେ ଇଂରେଜମାନେ କଟକର ବାରବାଟୀ ଦୁର୍ଗ ଅଧିକାର କରିନେଲେ । କିଛି ଦିନ ପରେ ସେମାନେ ବାଲେଶ୍ୱର ଓ ସୋରୋ ଅଧିକାର କଲେ । ବାରବାଟୀର ପତନ ପରେ ଅବଶିଷ୍ଟ ମରହଟ୍ଟା ସୈନ୍ୟ ସ୍ୱଦେଶକୁ ପଳାୟନ କରିଥିଲେ ।

ପୁନଶ୍ଚ ମରହଟ୍ଟା ଆକ୍ରମଣର ପ୍ରତିରୋଧ ନିମନ୍ତେ ଏବଂ ପଳାତକ ମରହଟ୍ଟା ସୈନ୍ୟମାନଙ୍କୁ ଅବରୋଧ କରିବା ନିମନ୍ତେ ହାରକୋର୍ଟଙ୍କ ନିର୍ଦ୍ଦେଶରେ ମେଜର ଫୋରବିସ୍ ବଉଦର ବଡ଼ମୂଳ ଘାଟି ଜଗିବାପାଇଁ ଗଲେ । ଏହି ଘାଟି ଅବରୋଧଯୋଗୁଁ ମରହଟ୍ଟା ସୈନ୍ୟମାନେ ଏହାକୁ ଅତିକ୍ରମ କରି ପ୍ରତିଆକ୍ରମଣର ଆଶଙ୍କା ରହିଲା ନାହିଁ । ଗଡ଼ଜାତ ରାଜ୍ୟ ବଉଦ ଓ ସୋନପୁରର ରାଜପ୍ରତିନିଧିମାନେ ସେଠାରେ ମେଜର ଫୋରବିସ୍‌ଙ୍କୁ ସାକ୍ଷାତ କରି ଇଂରେଜମାନଙ୍କ ପ୍ରତି ନିଜ ନିଜ ରାଜ୍ୟର ଆନୁଗତ୍ୟ ଜଣାଇଥିଲେ । ମରହଟ୍ଟା ଶାସକ ରଘୁଜୀ ଭୋନ୍‌ସଲା ଡିସେମ୍ବର ୧୮୦୩ରେ ଇଂରେଜମାନଙ୍କ ସହ ପ୍ରଖ୍ୟାତ 'ଦେଓଗାଁ ସନ୍ଧି' ସ୍ୱାକ୍ଷର କଲେ, ଯେଉଁଥିରେ କି ଇଂରେଜମାନଙ୍କର ଓଡ଼ିଶା (ଉପକୂଳ ଓଡ଼ିଶା) ଦଖଲକୁ ସ୍ୱୀକୃତି ପ୍ରଦାନ କରାଯାଇଥିଲା । କିନ୍ତୁ ଏହି ସନ୍ଧିରେ ପଶ୍ଚିମ ଓଡ଼ିଶା ମରହଟ୍ଟା ଶାସନ ଅଧୀନରେ ରଖାଯାଇଥିଲା । ଖ୍ରୀ: ୧୮୧୭ରେ

ସମ୍ବଲପୁର ଅଞ୍ଚଳରେ ଇଂରେଜ ଆଧିପତ୍ୟ ପ୍ରତିଷ୍ଠିତ ହୋଇଥିଲା । ଖ୍ରୀ: ୧୮୪୯ରେ ସମ୍ବଲପୁରର ଶେଷ ରାଜା ନାରାୟଣ ସିଂହଙ୍କର ମୃତ୍ୟୁ ପରେ ସେହି ରାଜ୍ୟ ମଧ୍ୟ ରାଜସ୍ୱତ୍ୱଲୋପ ନୀତି ଅନୁସାରେ ବ୍ରିଟିଶ୍ ସାମ୍ରାଜ୍ୟର ଅଙ୍ଗ ହେଲା ।

ଅଣହିନ୍ଦୁ ବା ଖ୍ରୀଷ୍ଟିଆନ ଇଂରେଜମାନେ ପୁରୀ ଦଖଲ କରିନେବାଦ୍ୱାରା ହିନ୍ଦୁଧର୍ମ ତଥା ପୁରୀର ଠାକୁର ରାଜାଙ୍କ ପ୍ରତି ଅପମାନ ଓ ବିପଦର ଆଶଙ୍କା ଉପୁଜିଲା ବୋଲି ରକ୍ଷଣଶୀଳ ହିନ୍ଦୁସମାଜର ନେତା ଜୟୀ ରାଜଗୁରୁ ମନେ କଲେ । ନାଗପୁରର ଭୋନ୍‌ସଲା ପୁନର୍ବାର ଓଡ଼ିଶା ଦଖଲପାଇଁ ଷଡଯନ୍ତ୍ର ଚଳାଇଲେ ଏବଂ ଜଣେ ଗୁପ୍ତଚରକୁ ଜୟୀ ରାଜଗୁରୁଙ୍କ ପାଖକୁ ପଠାଇଲେ । ଏହି ଗୁପ୍ତଚର ଫେରିବା ବେଳେ ଧରାପଡିଯିବାରୁ ସେ ରାଜଗୁରୁଙ୍କ ସହିତ ତାର ସାକ୍ଷାତ ହୋଇଥିଲା ବୋଲି କହିଦେଲା । ଇଂରେଜମାନେ ରାଜଗୁରୁଙ୍କ ପ୍ରତି ସନ୍ଦେହ ପୋଷଣ କରି ତାଙ୍କୁ ଶାସ୍ତି ଦେବା ସୁଯୋଗ ଅପେକ୍ଷାରେ ରହିଲେ । ଇଂରେଜମାନେ ଓଡ଼ିଶା ଦଖଲ ପରେ ନିଜର ସ୍ଥିତି ସୁଦୃଢ଼ କରିବା ଉଦ୍ଦେଶ୍ୟରେ ଖୋର୍ଦ୍ଧା, ମୟୂରଭଞ୍ଜ, ଅନୁଗୁଳ ପ୍ରଭୃତି ଦେଶୀୟ ରାଜାର ଅଧିପତିମାନଙ୍କୁ ଏକ ଚୁକ୍ତିରେ ଆବଦ୍ଧ କରିବା ଯୋଜନା କଲେ । ଚୁକ୍ତିର ସର୍ତ୍ତାନୁଯାୟୀ ସେମାନେ ବ୍ରିଟିଶ ଆଧିପତ୍ୟକୁ ସ୍ୱୀକାର କରି ବାର୍ଷିକ ନିର୍ଦ୍ଦିଷ୍ଟ ପରିମାଣର ପେସ୍‌କସ୍ ଦେବେ; ଆବଶ୍ୟକ ହେଲେ ଇଷ୍ଟ ଇଣ୍ଡିଆ କମ୍ପାନୀକୁ ସାହାଯ୍ୟ କରିବାପାଇଁ ସୈନ୍ୟ ପଠାଇବେ ଓ ରାଜସ୍ୱ ଆଦାୟରେ ସହଯୋଗ କରିବେ । ଏହି ପ୍ରସ୍ତାବିତ ଚୁକ୍ତିରେ ଦସ୍ତଖତ କଲେ ରାଜାଙ୍କ ସମସ୍ତ କ୍ଷମତା ଲୋପ ହେବାର ଆଶଙ୍କା କରି ଜୟୀ ରାଜଗୁରୁ ଏହି ଚୁକ୍ତି ଗ୍ରହଣ ନକରିବାପାଇଁ ରାଜାଙ୍କୁ ପରାମର୍ଶ ଦେଲେ ।

ପୂର୍ବର ଗୁପ୍ତଚୁକ୍ତି ଅନୁଯାୟୀ ଇଂରେଜ ସରକାର ଖୋର୍ଦ୍ଧାରାଜାଙ୍କୁ ଦେବାକୁ ଥିବା ଏକ ଲକ୍ଷ ଟଙ୍କାରୁ ଦୁଇଟି କିସ୍ତିରେ ସତୁରୀ ହଜାର ଟଙ୍କା ଦେଇଥିଲେ ହେଁ ବଳକା ଟଙ୍କା ଦେବାରେ କାଳକ୍ଷେପଣ ନୀତି ଧରିଲେ । ଏତଦ୍‌ବ୍ୟତୀତ, ଖୋର୍ଦ୍ଧାରାଜାଙ୍କୁ ଫେରାଇବାକୁ ଥିବା ରାହାଙ୍ଗ, ଲେମ୍ବାଇ ପ୍ରଭୃତି ପ୍ରଗଣାମାନ ଫେରାଇବାକୁ ରୋକ୍‌ଠୋକ୍ ମନା କରିଦେଲେ । ଏହି କାରଣରୁ ଜୟୀ ରାଜଗୁରୁ ଓ ରାଜା ଉତକ୍ଷିପ୍ତ ହୋଇ ଉକ୍ତ ପ୍ରଗଣାମାନଙ୍କରୁ ଖଜଣା ଆଦାୟପାଇଁ ଲୋକ ପଠାଇଲେ । ଖ୍ରୀ: ୧୮୦୪ରେ ଖୋର୍ଦ୍ଧା ରାଜାଙ୍କ କେତେଜଣ ପାଇକ ବ୍ରିଟିଶ ଅଧିକୃତ ପିପିଲି ଉପରେ ଆକ୍ରମଣ କଲେ । ମରହଟ୍ଟାମାନଙ୍କ ସାହାଯ୍ୟରେ ଏହି ବିଦ୍ରୋହ ହେଉଥିବା ଜାଣିବା ପରେ କର୍ଣ୍ଣେଲ ହାରକୋର୍ଟ ବିଦ୍ରୋହକୁ ଦୃଢ଼ ହସ୍ତରେ ଦମନ କରିବାପାଇଁ ନେତୃତ୍ୱ ନେଲେ ଓ ଡିସେମ୍ବର ୧୮୦୪ରେ ଖୋର୍ଦ୍ଧା ଦୁର୍ଗ ଉପରେ ଆକ୍ରମଣ କରି ତାହାକୁ ଧ୍ୱଂସ କଲେ । ସେ ରାଜା ମୁକୁନ୍ଦଦେବଙ୍କୁ ବନ୍ଦୀ କରି ବାରବାଟୀ ଦୁର୍ଗରେ କିଛିକାଳ ରଖିବା ପରେ ମେଦିନାପୁର ଜେଲକୁ ସ୍ଥାନାନ୍ତର କଲେ । ବିପ୍ଳବର ପ୍ରଧାନ ପୁରୋଧା ଜୟୀ ରାଜଗୁରୁଙ୍କୁ ଧରିନେଇ ମିଦନାପୁର ବା ମେଦିନାପୁରରେ ସର୍ବସାଧାରଣଙ୍କ ସମ୍ମୁଖରେ ଏକ ବରଗଛରେ ଫାଶୀ ଦେଇଦେଲେ । ଓଡ଼ିଶା ଇତିହାସରେ ସହୀଦ ଜୟୀ ରାଜଗୁରୁଙ୍କ ଦେଶଭକ୍ତିର ପଟାନ୍ତର ନାହିଁ ।

ଓଡ଼ିଶା ଇଂରେଜ ଶାସନାଧୀନ ହେବା ପରେ ଇଷ୍ଟଇଣ୍ଡିଆ କମ୍ପାନୀ ସରକାର ଶ୍ରୀମନ୍ଦିର ପରିଚାଳନା ପ୍ରତି ସ୍ୱତନ୍ତ୍ର ଦୃଷ୍ଟି ଓ ଗୁରୁତ୍ୱ ଦେଇଥିଲେ । ସେମାନେ ଜାଣିଥିଲେ ଯେ, ଓଡ଼ିଶାବାସୀଙ୍କର ନୈତିକ ସମର୍ଥନ ଲାଭ କରିବାକୁ ହେଲେ ସେମାନଙ୍କୁ ପ୍ରଥମେ ଜଗନ୍ନାଥଙ୍କ ପ୍ରତି ସମ୍ମାନ ଓ ସ୍ୱତନ୍ତ୍ର ଧ୍ୟାନ ଦେବାକୁ ହେବ । ଖୋର୍ଦ୍ଧାରାଜାଙ୍କୁ ସେମାନେ ଜଗନ୍ନାଥ ମନ୍ଦିରର ପରିଚାଳକ ଭାବେ ନିଯୁକ୍ତ କରିଥିଲେ ଯଦିଓ ପୂର୍ବରୁ ମରହଟ୍ଟା ସୁବାଦାର ଶେଓ ଭଟ୍ଟ ଖୋର୍ଦ୍ଧା ରାଜାଙ୍କୁ ପରିଚାଳନା ଦାୟିତ୍ୱରୁ ବାହାର କରି ମନ୍ଦିର ପରିଚାଳନା ଦାୟିତ୍ୱ ନିଜେ ବହନ କରିଥିଲେ । ଇଂରେଜ ବା କମ୍ପାନୀ ଖ୍ରୀଷ୍ଟିଆନ୍ ହୋଇଥିବାରୁ ମନ୍ଦିର ପରିଚାଳନାରେ ପ୍ରତ୍ୟକ୍ଷ ହସ୍ତକ୍ଷେପ କଲେନାହିଁ । ରାଜା ବନ୍ଦୀ ହୋଇ ଯିବା ପରେ କିଛି ସମୟପାଇଁ ମନ୍ଦିର ପରିଚାଳନା ଦାୟିତ୍ୱ ବ୍ରାହ୍ମଣ ପଣ୍ଡିତମାନଙ୍କର ଏକ ସଭା ଉପରେ ନ୍ୟସ୍ତ କରାଯାଇଥିଲା । କିନ୍ତୁ ଏହି ବ୍ୟବସ୍ଥା ସନ୍ତୋଷଜନକ ଭାବେ କାର୍ଯ୍ୟକାରୀ ହୋଇ ପାରିନଥିଲା । ଶେଷରେ କମ୍ପାନୀ ସରକାର ମେଦିନୀପୁର ଜେଲରୁ ଖ୍ରୀ: ୧୮୦୭ରେ ମୁକୁନ୍ଦଦେବଙ୍କୁ ମୁକ୍ତ କରି ପୁରୀରେ ତାଙ୍କର ବାଲି ସାହି ନଅରରେ ରହିବାକୁ ନିର୍ଦ୍ଦେଶ ଦେଲେ । ଖୋର୍ଦ୍ଧାରାଜ୍ୟର ରାଜାଙ୍କ ପଦବୀର ହ୍ରାସ ଘଟି ନାମକୁ ମାତ୍ର ପୁରୀ ରାଜା ଭାବେ ପରିଚିତ ହେଲେ । ୧୮୦୯ର ୪ ନମ୍ବର ରେଗୁଲେସନ୍‌ଦ୍ୱାରା ତାଙ୍କୁ ପୁରୀ ଜଗନ୍ନାଥମନ୍ଦିରର ସୁପରିନ୍‌ଟେଣ୍ଡେଣ୍ଟ ବା ପରିଚାଳକ ନିଯୁକ୍ତ କରାଗଲା । କିନ୍ତୁ ତାଙ୍କର କ୍ଷମତା ଉପରେ କେତେକ କଟକଣା ଲାଗୁ କରାଯାଇଥିଲା । ମନ୍ଦିରର ପରିଚ୍ଛାମାନଙ୍କର ନିଯୁକ୍ତି ଓ ବହିଷ୍କାର କ୍ଷମତା ସରକାରଙ୍କ ହାତରେ ରହିଲା । ସରକାର ଯାତ୍ରୀକର ଆଦାୟ, ମନ୍ଦିରର ହିସାବପତ୍ର ଯାଞ୍ଚ କ୍ଷମତା ନିଜ ହାତରେ ରଖିଲେ ।

ଖୋର୍ଦ୍ଧାଗଡର ପତନ ପରେ ଖୋର୍ଦ୍ଧା ରାଜ୍ୟ ଇଂରେଜମାନଙ୍କର 'ଖାସ୍ ମାହାଲ'ରେ ପରିଣତ ହେଲା । ମେଜର ଫ୍ଲେଚରଙ୍କ ଉପରେ ଖୋର୍ଦ୍ଧା ଖାସମାହାଲ ପରିଚାଳନା ଦାୟିତ୍ୱ ନ୍ୟସ୍ତ ହେଲା । ଫ୍ଲେଚର ଖୋର୍ଦ୍ଧାରେ ସରକାରୀ କଚେରି ନିର୍ମାଣ କଲେ । ଖୋର୍ଦ୍ଧାରେ ରାଜସ୍ୱ-ଭୂବନ୍ଦୋବସ୍ତ କରାଇ ଖୋର୍ଦ୍ଧା ପାଇକମାନଙ୍କର ନିଷ୍କର ଜମି ଉଚ୍ଛେଦ କରାଇନେଇ ଖାସ ମାହାଲରେ ସାମିଲ କଲେ ଓ ସେହି ଜମିରେ ଉଚ୍ଚ ହାରରେ ଖଜଣା ଧାର୍ଯ୍ୟ କରାଇଲେ । ଖୋର୍ଦ୍ଧା ସରକାରଙ୍କ ପ୍ରତ୍ୟକ୍ଷ ଶାସନାଧୀନ ରହିବା ହେତୁ ପାଇକମାନଙ୍କର ପାରମ୍ପରିକ ସାମରିକ ବୃତ୍ତି ସହିତ ନିଷ୍କର ଜମି ଉଚ୍ଛେଦ ହୋଇଯିବା ଫଳରେ ପାଇକମାନେ ମଜୁରିଆ ଶ୍ରମିକ ଶ୍ରେଣୀରେ ପରିଣତ ହୋଇଗଲେ । ସ୍ୱଳ୍ପ ମିଆଦୀ ଭୂବନ୍ଦୋବସ୍ତଯୋଗୁଁ ଅଧିକ ରାଜସ୍ୱ ବୋଝ ସାଧାରଣ ଚାଷୀ ଓ ରୟତଙ୍କ ଉପରେ ପଡ଼ିଲା । ସେମାନଙ୍କର ଆର୍ଥିକ ସ୍ଥିତି ଶୋଚନୀୟ ହୋଇଗଲା । ଶସ୍ୟହାନି ସତ୍ତ୍ୱେ ଜୋରଜବରଦସ୍ତ ରାଜସ୍ୱ ଆଦାୟ କରାଗଲା । ସରକାରଙ୍କ କଠୋର ଲୁଣକର ନୀତି, କଉଡ଼ି ମୁଦ୍ରାର ମୂଲ୍ୟହ୍ରାସ, ଅମଲାମାନଙ୍କର ଦୁର୍ନୀତି, ସରକାରଙ୍କ ପକ୍ଷପାତ ନୀତି, ଅଣଓଡ଼ିଆ କର୍ମଚାରୀମାନଙ୍କର ଓଡ଼ିଆଙ୍କ ପ୍ରତି କପଟ ମନୋଭାବ, ସର୍ବରାକାରମାନଙ୍କ ଚକ୍ରାନ୍ତ ଇତ୍ୟାଦି ଅନେକ କାରଣଯୋଗୁଁ ପାଇକ, ରୟତ, ସାମନ୍ତ ଓ ସମାଜର ସବୁ ବର୍ଗର ଲୋକମାନେ ଅତ୍ୟାଚାରିତ, ଶୋଷିତ ଓ ଲାଞ୍ଛିତ ହେଲେ ।

ଫଳରେ ଏକ ସ୍ୱତଃ ସଂଘଟିତ ଜନବିଦ୍ରୋହ ଦେଖାଦେଲା, ଯା'ର ନେତୃତ୍ୱ ନେଲେ ଖୋର୍ଦ୍ଧାରାଜାଙ୍କ ବକ୍ସି ବା ସେନାପତି ଜଗବନ୍ଧୁ ବିଦ୍ୟାଧର ମହାପାତ୍ର । ସେ ନିଜେ ମଧ୍ୟ ଅତ୍ୟାଚାରର ଶିକାର ହୋଇଥିଲେ । ସେ ପୁରୁଷାନୁକ୍ରମେ ଚିଲିକା ନିକଟବର୍ତ୍ତୀ ରୋଡଙ୍ଗ ଜିଲ୍ଲାର ମାଲିକ ଥିଲେ । ଏକଦା ରାଜାଙ୍କ ପରେ ସେ ଥିଲେ ସର୍ବାଧିକ ପ୍ରତିପତ୍ତି ଓ ପ୍ରଭାବଶାଳୀ ବ୍ୟକ୍ତି । ଖୋର୍ଦ୍ଧା ଖାସ୍‌ମାହାଲ ହେବା ପରେ ସେ ତାଙ୍କର ସମସ୍ତ ପାରିବାରିକ ଓ ପାରମ୍ପରିକ ଅଧିକାର, ସୁବିଧା ସୁଯୋଗ ହରାଇବସିଲେ । ତାଙ୍କର ସମସ୍ତ ନିଷ୍କର ଜମି ସରକାରଙ୍କ ହାତକୁ ଚାଲିଗଲା । ଜନୈକ ଅଣ ଓଡ଼ିଆ ଦେଓ୍ୱାନ କୃଷ୍ଣଚନ୍ଦ୍ର ସିଂହଙ୍କ ଚକ୍ରାନ୍ତରେ ସେ ପୁରୁଷାନୁକ୍ରମିକ ଭାବେ ଭୋଗ କରି ଆସୁଥିବା ରୋଡ଼ଙ୍ଗ ଜମିଦାରୀକୁ ହରାଇଲେ । ସେ ସରକାରଙ୍କଠାରେ ଆପତ୍ତି ଅଭିଯୋଗ କଲେ ମଧ୍ୟ ନ୍ୟାୟ ବିଚାର ପାଇଲେ ନାହିଁ ।

ଓଡ଼ିଶା ଇତିହାସରେ ଏହି ବିଦ୍ରୋହ 'ପାଇକ ବିଦ୍ରୋହ' ନାମରେ ପରିଚିତ । ମାର୍ଚ୍ଚ ୧୮୧୭ରେ ଇଂରେଜମାନଙ୍କୁ ଖୋର୍ଦ୍ଧାରୁ ହଟାଇବାପାଇଁ ବକ୍‌ସି ଜଗବନ୍ଧୁଙ୍କ ନେତୃତ୍ୱରେ ସଶସ୍ତ୍ର ବିଦ୍ରୋହ ଆରମ୍ଭ ହେଲା । ତାଙ୍କର ପ୍ରଧାନ ସହଯୋଗୀ ଥିଲେ କୃଷ୍ଣଚନ୍ଦ୍ର ଭ୍ରମରବର ରାୟ, ଯେ କି ହେଲେ ସଂଗଠିତ ପାଇକ ବାହିନୀର ସେନାପତି ।

ତେଣେ ଗଞ୍ଜାମ ଜିଲ୍ଲାରେ ଇଂରେଜ ଶାସନ ବିରୁଦ୍ଧରେ ଜନ ଅସନ୍ତୋଷ ବ୍ୟାପିଥିଲା । ମହୁରୀ ଜମିଦାରୀର ଅନ୍ୟାୟ ନିଲାମ ଓ ଘୁମୁସୁରର ରାଜା ଧନଞ୍ଜୟ ଭଂଜଙ୍କ ଖ୍ରୀ: ୧୮୧୨ରେ କାରାବାସ ପରେ ଧନଞ୍ଜୟଙ୍କ ପିତା ଶ୍ରୀକର ଭଂଜ ବିଦ୍ରୋହର ନେତା ଥିଲେ । ଖ୍ରୀ: ୧୮୧୭ ମସିହା ମାର୍ଚ୍ଚମାସରେ ଘୁମୁସର ରାଜ୍ୟର ପରିଚାଳକ କମଳ ଲୋଚନ ଦୋରା ବିଷୋୟୀ ଖୋର୍ଦ୍ଧା ପାଇକ ବିଦ୍ରୋହକୁ ସାହାଯ୍ୟ କରିବାକୁ ଚାରି ଶହ କନ୍ଧ ପାଇକଙ୍କୁ ଖୋର୍ଦ୍ଧା ରାଜ୍ୟର ବାଣପୁର ଇଲାକାକୁ ପଠାଇଲେ । ସେମାନେ ତାଙ୍କର ପାରମ୍ପରିକ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ଥିଲେ । ସେମାନେ ବାଣପୁରରେ ପ୍ରବେଶ କରି ସରକାରୀ ଖଜଣାଖାନା ଲୁଟ କରିବା ସଙ୍ଗେ ସଙ୍ଗେ ସରକାରୀ ଦପ୍ତରମାନଙ୍କୁ ଧ୍ୱସ୍ତବିଧ୍ୱସ୍ତ କରିଦେଲେ । ଏହା ପରେ ସେମାନେ ଖୋର୍ଦ୍ଧା ଅଭିମୁଖେ ଯାତ୍ରା କଲେ । ବାଟରେ ବହୁ ସଂଖ୍ୟାରେ ପାଇକ ସେମାନଙ୍କ ସହିତ ଯୋଗଦେଲେ । ଖୋର୍ଦ୍ଧାରେ କନ୍ଧ ଓ ପାଇକ ମାନଙ୍କର ମିଳିତ ବାହିନୀ ବକ୍ସି ଜଗବନ୍ଧୁଙ୍କ ନେତୃତ୍ୱରେ ସରକାରୀ ଅଫିସ୍ ଗୃହ, ସରକାରୀ କୋଠାବାଡ଼ି, କୋଷାଗାର ଆକ୍ରମଣ ତଥା ଲୁଣ୍ଠନ କରି ସେଥିରେ ଅଗ୍ନିସଂଯୋଗ କରିଦେଲେ । ଖୋର୍ଦ୍ଧାରେ ବିଦ୍ରୋହକୁ ଦମନ କରିବାପାଇଁ କଟକରୁ ତତକ୍ଷଣାତ୍ ବହୁ ସଂଖ୍ୟାରେ ସୈନ୍ୟ ପହଞ୍ଚିଥିଲେ ମଧ୍ୟ ବିଦ୍ରୋହକୁ ଆୟତ୍ତାଧୀନ କରିବା କଷ୍ଟକର ହୋଇପଡ଼ିଲା । ବିଦ୍ରୋହୀମାନେ ଲେମ୍ବାଇ ପ୍ରଗଣାର ରଥିପୁର ଗ୍ରାମରେ ଅତ୍ୟାଚାରୀ ସର୍ବରାକାର ଚରଣ ପଟ୍ଟନାୟକଙ୍କୁ ହତ୍ୟା କଲେ । ସେହି ବର୍ଷ ଏପ୍ରିଲ ୧୨ ତାରିଖରେ ଓ ପରେ ଏପ୍ରିଲ ୧୪ ତାରିଖରେ ୫୦୦ରୁ ଅଧିକ ସଶସ୍ତ୍ର ପାଇକ ଓ କନ୍ଧମାନେ ପୁରୀରେ ପ୍ରବେଶ କରିଥିଲେ । ପୁରୀ ମନ୍ଦିରର ପୂଜକମାନେ ଓ ସାଧାରଣ ଲୋକମାନେ ବିଦ୍ରୋହୀମାନଙ୍କୁ ସହଯୋଗ କରିଥିଲେ । ବିଦ୍ରୋହୀମାନେ ସରକାରୀ

କୋଷାଗାର ଲୁଣ୍ଠନ କରିଥିଲେ । ପୋଲିସ ଥାନା, ଅନେକ ସରକାରୀ କୋଠାବାଡ଼ିରେ ନିଆଁ ଲଗାଇ ଦେଇଥିଲେ । ପୁରୀରେ ଅବସ୍ଥାପିତ ଅଳ୍ପସଂଖ୍ୟକ ସୈନ୍ୟଙ୍କୁ ନେଇ ବିଦ୍ରୋହୀମାନଙ୍କୁ ମୁକାବିଲା କରିନପାରି କ୍ୟାପ୍‌ଟେନ୍ ୱେଲିଙ୍ଗଟନ୍ ପୁରୀ ଛାଡ଼ି କଟକ ଚାଲିଗଲେ ।

ତତ୍‌ପରେ ପାଇକମାନେ ରୁପସା, ଗୋପ, କୁଜଙ୍ଗ ଯାତ୍ରା କରିଥିଲେ । ମରୀଚପୁର, ହରୀଶପୁର, ଗୋଲରାରର ପୂର୍ବତନ ଜମିଦାରମାନେ ବିଦ୍ରୋହରେ ଯୋଗଦେଇଥିଲେ ।

ବିଦ୍ରୋହକୁ ଦମନ ପାଇଁ ଇଂରେଜମାନେ ଦୃଢ଼ ପଦକ୍ଷେପ ନେଲେ । ମେଦିନୀପୁରରୁ ପାଞ୍ଚ କମ୍ପାନୀ ସୈନ୍ୟବଳ ଅଣାଗଲା । ମେଜର ଜେନେରାଲ ମାଟିନ୍‌ଡେଲ୍‌ଙ୍କୁ ଓଡ଼ିଶାର ସାମରିକ କମିଶନର ଭାବେ କଟକରେ ଅବସ୍ଥାପିତ କରାଗଲା । ବିଦ୍ରୋହ ଦମନ ପାଇଁ ଖୋର୍ଦ୍ଧା, ପୁରୀ, ଗୋପରେ ସାମରିକ ଆଇନ୍ ପ୍ରବର୍ତ୍ତନ କରାଗଲା । ଅନ୍ୟାନ୍ୟ ଗଡ଼ଜାତ ରାଜ୍ୟରେ ବିଦ୍ରୋହର ପ୍ରଭାବ ଯେପରି ନପଡ଼େ ସେଥିପାଇଁ ପ୍ରତିଷେଧକ ବ୍ୟବସ୍ଥା ଗ୍ରହଣ କରାଗଲା । ପୂର୍ବତନ ଖୋର୍ଦ୍ଧାରାଜା ଯଦିଓ ବିଦ୍ରୋହରେ ପ୍ରତ୍ୟକ୍ଷ ଭାବେ ଭାଗ ନେଇ ନଥିଲେ ତଥାପି କାଳେ ସେ ବିଦ୍ରୋହର ନେତା ହୋଇପାରନ୍ତି, ଆଶଙ୍କା କରି ତାଙ୍କୁ ପୁରୀରୁ କଟକ ଅଣାଯାଇ ସେଠାରେ ଅଟକବନ୍ଦୀ ରଖାଗଲା । କ୍ୟାପଟେନ୍ ଲେ. ଫାବ୍ରେ (Le Fabre) ଖୋର୍ଦ୍ଧା ଓ ପୁରୀ ଠାରେ ବିପ୍ଳବକୁ ଦମନ କରିବାରେ ମୁଖ୍ୟ ଭୂମିକା ନେଇଥିଲେ । ଖ୍ରୀः ୧୮୧୭ ଅକ୍ଟୋବର ମାସରେ ଇଂରେଜମାନେ ବିଦ୍ରୋହକୁ ସମ୍ପୂର୍ଣ୍ଣ ଦମନ କରିପାରିଥିଲେ । କିନ୍ତୁ ପାଇକ ବିଦ୍ରୋହର ପ୍ରଧାନ ନେତା ବକ୍‌ସି ଜଗବନ୍ଧୁ ଓ ତାଙ୍କର ଅନୁଗାମୀମାନେ ଧରାପଡ଼ି ନଥିଲେ । ସେମାନେ ଲୁଚି ଛପି ନାନା ଉପଦ୍ରବ ଚଳାଇଥିଲେ । ସେମାନଙ୍କୁ ଧରାଇଦେବାପାଇଁ ସରକାର ପୁରସ୍କାର ଘୋଷଣା କରିଥିଲେ । ତା’ସତ୍ତ୍ୱେ ସେମାନଙ୍କୁ କେହି ଧରାଇ ଦେଇ ପାରି ନଥିଲେ । ଖ୍ରୀः ୧୮୨୨ରେ ଭାରତର ବଡଲାଟ ବକ୍‌ସି ଜଗବନ୍ଧୁ ଓ ତାଙ୍କର ପ୍ରଧାନ ସହଯୋଗୀ କୃଷ୍ଣଚନ୍ଦ୍ର ଭ୍ରମରବର ରାୟଙ୍କୁ କେତେକ ସର୍ତ୍ତରେ ରାଜକ୍ଷମା ଦେବାକୁ ଘୋଷଣା କରିଥିଲେ । ଶେଷରେ ଖ୍ରୀः ୧୮୨୫ରେ ଖୋର୍ଦ୍ଧାର ଜଏଣ୍ଟ ମାଜିଷ୍ଟ୍ରେଟ୍ ମିଷ୍ଟର ଉଇଲ୍‌କନସନ୍‌ଙ୍କ ଚେଷ୍ଟାରେ ନୟାଗଡ଼ର ବେବର୍ତ୍ତା ବରଜୁ ପାଇକରାୟଙ୍କ ମଧ୍ୟସ୍ଥତାରେ ବକ୍‌ସିଙ୍କ ସହିତ ବୁଝାମଣା ହୋଇଥିଲା । ଅଗତ୍ୟା ଖ୍ରୀः ୧୮୨୫ ମେ ମାସ ୨୭ ତାରିଖରେ ସେ କଟକ ଆସି ଆତ୍ମସମର୍ପଣ କଲେ । ତାଙ୍କ ସହିତ ତାଙ୍କର ଆଠଜଣ ବିଶ୍ୱସ୍ତ ଅନୁଚର ମଧ୍ୟ ଆତ୍ମସମର୍ପଣ କଲେ । ବକ୍‌ସି ମାସିକ ୧୫୦ ଟଙ୍କା ପେନସନ୍ ପାଇ କଟକରେ ଅବସ୍ଥାନ କଲେ । କମିଶନରଙ୍କ ଅନୁମତି ବିନା ସେ ନିଜର ବାସସ୍ଥାନ ଛାଡ଼ି ଅନ୍ୟତ୍ର ଯିବା ନିଷିଦ୍ଧ କରାଗଲା । କଟକରେ ତାଙ୍କର ବାସସ୍ଥାନ ଅଞ୍ଚଳକୁ ବକ୍ସିବଜାର କୁହାଯାଉଛି । ଗୃହବନ୍ଦୀ ଅବସ୍ଥାରେ ଓଡ଼ିଶାର ଏହି ମହାନ୍ ବୀର ୧୮୨୯ ମସିହା ଜାନୁଆରି ୨୪ ତାରିଖରେ ପ୍ରାଣତ୍ୟାଗ କଲେ ।

ବକ୍‌ସି ଜଗବନ୍ଧୁଙ୍କ ଦେହାନ୍ତ ପୂର୍ବରୁ ରାଜା ମୁକୁନ୍ଦଦେବ (୨ୟ) କଟକରେ ବାରବାଟୀ ଦୁର୍ଗରେ ଅଟକବନ୍ଦୀ ଥିବା ଅବସ୍ଥାରେ ନଭେମ୍ବର ୧୮୧୭ରେ ଶେଷ ନିଃଶ୍ୱାସ ତ୍ୟାଗ କରିଥିଲେ ।

## ରାମଚନ୍ଦ୍ରଦେବ (୩ୟ) (ଖ୍ରୀ: ୧୮୧୭-୧୮୫୫)

ମୁକୁନ୍ଦଦେବ (୨ୟ)ଙ୍କ ପରେ ତାଙ୍କ ପୁତ୍ର ରାମଚନ୍ଦ୍ର ଦେବଙ୍କ ଅଭିଷେକ ବାରବାଟୀ ଦୁର୍ଗରେ ହୋଇଥିବା ଜଣାଯାଏ । ସରକାରଙ୍କ ନିର୍ଦ୍ଦେଶ ପ୍ରକାରେ ପୁରୀରାଜା ଓ ଶ୍ରୀମନ୍ଦିର ସୁପରିନ୍‌ଟେଣ୍ଡେଣ୍ଟ ହିସାବରେ ସେ ପୁରୀଠାରେ ଅବସ୍ଥାପିତ ହେଲେ ।

ଖୋର୍ଦ୍ଧା ରାଜ୍ୟ ହରାଇଥିବାରୁ କ୍ଷତି ପୂରଣ ବାବଦରେ ପୂର୍ବତନ ଖୋର୍ଦ୍ଧାରାଜା (ପରେ ପୁରୀ ରାଜା)ଙ୍କ ଭରଣପୋଷଣପାଇଁ ଇଂରେଜ ସରକାର ମାସିକ ଟ. ୨୧୩୩-୫-୪ ବା ବାର୍ଷିକ ୨୫୬୦୦ ଟଙ୍କା ଭତ୍ତା ମଞ୍ଜୁର କଲେ । ଏହି ଭତ୍ତାକୁ 'ମାଲିକାନା' (Malikana) କୁହାଗଲା । ଏହି ମାଲିକାନା ୧୮୧୯ ମସିହା ନଭେମ୍ବର ମାସରେ ମଞ୍ଜୁର କରାଯାଇଥିଲା । ପରବର୍ତ୍ତୀ କାଳରେ 'ମାଲିକାନା'ର ନାମ ବଦଳାଯାଇ 'ପଲିଟିକାଲ ପେନ୍‌ସନ୍' ରଖାଗଲା । ମାଲିକାନାକୁ ପଲିଟିକାଲ ପେନ୍‌ସନ୍ ନାମ କରଣର ପ୍ରତିବାଦ କରି ତତ୍‌କାଳୀନ ପୁରୀ ରାଜା ଦିବ୍ୟସିଂହଦେବ (୩ୟ) ଭାରତ ସରକାରଙ୍କୁ ଏକ ଦରଖାସ୍ତ ପଠାଇଥିଲେ ମଧ୍ୟ ତାହା ଗ୍ରହଣୀୟ ହେଲାନାହିଁ । ସେ ଯାହାହେଉ, ଉକ୍ତ ରାଜନୀତିକ ପେନ୍‌ସନ୍ ପରିମାଣ ଅଦ୍ୟାବଧି ଅପରିବର୍ତ୍ତିତ ରହିଅଛି ।

ଇଂରେଜ ଅମଳରେ ଓଡ଼ିଶାର ପ୍ରାଶାସନିକ ବ୍ୟବସ୍ଥା ସମ୍ପର୍କରେ କିଛି ସୂଚନା ଦେବା ସମୀଚୀନ ହେବ । ଅକ୍ଟୋବର ୧୮୦୩ରେ କଟକ, ପୁରୀ ଓ ବାଲେଶ୍ୱର ଏବଂ ସଂଲଗ୍ନ ଅଞ୍ଚଳ ବ୍ରିଟିଶ୍ ଅଧିକାରଭୁକ୍ତ ହେବା ପରେ ବେସାମରିକ (ବା ସିଭିଲ) ପ୍ରଶାସନର ସୁବନ୍ଦୋବସ୍ତପାଇଁ ଯୋଜନା କରାଯାଇଥିଲା । ଜନ୍ ମେଲଭିଲ୍ (John Melvile) ଙ୍କୁ ଏହି ଦାୟିତ୍ୱରେ ନିଯୁକ୍ତ କରାଯାଇଥିଲା । ସେ କର୍ଣ୍ଣେଲ ହାରକୋର୍ଟଙ୍କ ସହିତ ସହଯୋଗ କରି ଜନସାଧାରଣଙ୍କ ମଧ୍ୟରେ ସରକାରଙ୍କ ପ୍ରତି ବିଶ୍ୱାସ ଓ ଆସ୍ଥା ଭାବ ସୃଷ୍ଟି କରିବାପାଇଁ ବିବିଧ ଘୋଷଣା କରିଥିଲେ । ମେଲଭିଲ୍ କଟକ ପ୍ରଦେଶ ବ୍ୟାପାର ସକାଶେ କମିଶନର (Commissioner for the affairs of the province of Cuttack) ନିଯୁକ୍ତ ହୋଇଥିଲେ । ପରବର୍ତ୍ତୀ କାଳରେ ଏହି ପଦବୀ ଉଠି ଯାଇଥିଲା ।

୧୮୦୪ ମସିହା ଜୁନ୍ ମାସରେ ଓଡ଼ିଶାକୁ ଦୁଇଟି ପ୍ରାଶାସନିକ ଭାଗ (ଡିଭିଜନ)ରେ ବିଭକ୍ତ କରାଗଲା । ବାଲେଶ୍ୱରଠାରେ ଉତ୍ତରାଞ୍ଚଳ ଡିଭିଜନ୍ ଓ ପୁରୀଠାରେ ଦକ୍ଷିଣାଞ୍ଚଳ ଡିଭିଜନର ସଦର ମହକୁମା ରଖାଗଲା । ପ୍ରତ୍ୟେକ ଡିଭିଜନର ମୁଖ୍ୟ ହେଲେ ଜଣେ ଜଣେ କମିଶନର । ୧୮୦୫ ମସିହାରେ କମିଶନର ଦ୍ୱୟଙ୍କ କାର୍ଯ୍ୟାଳୟ ଉଠାଇ ସେଗୁଡିକୁ ଜଣେ ଜଣେ କଲେକ୍ଟର ତଥା ମାଜିଷ୍ଟ୍ରେଟ୍‌ଙ୍କ ଅଧୀନରେ ରଖାଗଲା । ପରେ ପରେ ଏହି ଦୁଇ ଡିଭିଜନକୁ ସଂଯୋଗ କରାଯାଇ ଏକତ୍ରୀକରଣ କରାଗଲା ଓ ଏହାର ଦାୟିତ୍ୱରେ ଜଣେ କଲେକ୍ଟରଙ୍କୁ ନିଯୁକ୍ତ କରାଗଲା । ତାଙ୍କର ମୁଖ୍ୟ କାର୍ଯ୍ୟାଳୟ ପୁରୀରେ ରହିଲା । ୧୮୧୬ ମସିହାରେ ପୁରୀଠାରୁ କାର୍ଯ୍ୟାଳୟ (Collectorate) କଟକକୁ ସ୍ଥାନାନ୍ତର କରାଗଲା । ୧୮୧୮ ମସିହାର ରେଗୁଲେସନ-୧ ଅନୁଯାୟୀ କଟକରେ ଏକ କମିଶନର କାର୍ଯ୍ୟାଳୟ ଖୋଲାଗଲା । ଏହାଙ୍କ

ଉପରେ ରାଜସ୍ୱ ବୋର୍ଡ, ବାଣିଜ୍ୟ ବୋର୍ଡ, ପ୍ରାଦେଶିକ ବିଚାରାଳୟ ଓ ଆଞ୍ଚଳିକ ବିଚାରାଳୟ (Board of Revenue, Board of Trade, Provincial Court of Appeal and Circuit Court)ର କ୍ଷମତା ନ୍ୟସ୍ତ କରାଗଲା ।

୧୮୨୮ ମସିହା ଅକ୍ଟୋବର ମାସରେ କଟକ ପ୍ରଦେଶ (ଓଡ଼ିଶା ଡିଭିଜନ୍)କୁ ତିନୋଟି ଜିଲ୍ଲାରେ-କଟକ, ପୁରୀ ଓ ବାଲେଶ୍ୱରରେ ବିଭକ୍ତ କରାଗଲା । ପ୍ରତ୍ୟେକ ଜିଲ୍ଲାପାଇଁ ଜଣେ ଜଣେ କଲେକ୍ଟର ତଥା ମାଜିଷ୍ଟ୍ରେଟ୍‌ଙ୍କୁ ନିଯୁକ୍ତ କରାଗଲା । ୧୮୨୯ ମସିହାରେ ଏହି ତିନିଟି ଜିଲ୍ଲା (ଖୋର୍ଦ୍ଧା ସହିତ) ଓ ଅଧୁନା ପଶ୍ଚିମବଙ୍ଗର ମେଦିନାପୁର, ନୂଆଗାଁ ଏବଂ ହିଜଳି ଅଞ୍ଚଳକୁ ନେଇ ବେଙ୍ଗାଲ ପ୍ରେସିଡେନ୍‌ସିର ଉନବିଂଶତମ କମିଶନର ଡିଭିଜନ (19th commissonership of Bengal Presidency) ପ୍ରତିଷ୍ଠା କରାଗଲା ।

ଓଡ଼ିଶା ଡିଭିଜନର କମିଶନର ନିଜ ଦାୟିତ୍ୱ ସହ 'ଟ୍ରିବ୍ୟୁଟାରୀ ମାହାଲ' ମାନଙ୍କର ସୁପିରିନ୍‌ଟେଣ୍ଡେଣ୍ଟ ଭାବରେ କାର୍ଯ୍ୟ କଲେ । ୧୯୧୨ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ବାଲେଶ୍ୱର, କଟକ ଓ ପୁରୀ ଜିଲ୍ଲା ବେଙ୍ଗାଲ ପ୍ରେସିଡେନ୍‌ସିରେ ଅନ୍ତର୍ଭୁକ୍ତ ଥିଲା । ତା'ପରେ ବିହାର-ଓଡ଼ିଶା ସରକାରଙ୍କ ଅଧୀନକୁ ଓଡ଼ିଶା ଡିଭିଜନ୍ ଆସିଲା ।

ମରହଟ୍ଟା ରାଜତ୍ୱରେ ଓଡ଼ିଶାରେ ୭୦ଟି ଗଡ଼ଜାତ ରାଜ୍ୟ ଥିଲା । ଏମାନେ ନାଗପୁର ଭୋନ୍‌ସଲା ଶାସକଙ୍କର କରଦ ରାଜ୍ୟ ଥିଲେ । ସେମାନେ ତାଙ୍କୁ କର ଦେଉଥିଲେ ଓ ତାଙ୍କର ଆଧିପତ୍ୟ ସ୍ୱୀକାର କରୁଥିଲେ । କିନ୍ତୁ ସେମାନଙ୍କର ଆଭ୍ୟନ୍ତରୀଣ ସ୍ୱାତନ୍ତ୍ର୍ୟ ରହିଥିଲା । ଖ୍ରୀ: ୧୮୦୪ରେ ଖୋର୍ଦ୍ଧାରାଜାଙ୍କ ବିଦ୍ରୋହ ପରେ ଖୋର୍ଦ୍ଧାରାଜ୍ୟକୁ ଗଡଜାତ କୁହାନଯାଇ ମୋଗଲବନ୍ଦୀରେ ଅନ୍ତର୍ଭୁକ୍ତ କରାଗଲା, ଅର୍ଥାତ୍ କମ୍ପାନୀର ପ୍ରତ୍ୟକ୍ଷ ଶାସନାଧୀନ ରାଜ୍ୟ ହୋଇ ରହିଲା । ଖ୍ରୀ: ୧୮୦୪ରେ ଦେଓଗାଁ ସନ୍ଧି ସ୍ୱାକ୍ଷରିତ ହେବା ପରେ ସେହି ୭୦ଟି ଗଡଜାତ ରାଜ୍ୟ କମ୍ପାନୀ ପ୍ରତି ଆନୁଗତ୍ୟ ପ୍ରଦର୍ଶନ କରି ବାର୍ଷିକ କର ପୈଠ କରିବାପାଇଁ ଅଙ୍ଗୀକାରବଦ୍ଧ ହେଲେ । ୧୬ଟି ଗଡ଼ଜାତ ରାଜ୍ୟରେ ଆଭ୍ୟନ୍ତରୀଣ ସ୍ୱାୟତ୍ତଶାସନ ବା ସ୍ୱତନ୍ତ୍ର ଶାସନ ପ୍ରବର୍ତ୍ତିତ ହେଲା । ସେହି ରାଜ୍ୟମାନଙ୍କୁ 'ଟ୍ରିବୁଟାରୀ ମାହାଲ' କୁହାଗଲା । ସେମାନେ ହେଲେ- (୧) ମୟୂରଭଞ୍ଜ, (୨) କେନ୍ଦୁଝର, (୩) ନୀଳଗିରି, (୪) ବାଙ୍କି, (୫) ଦଶପଲ୍ଲା, (୬) ନରସିଂହପୁର, (୭) ଅନୁଗୁଳ, (୮) ତାଳଚେର, (୯) ଆଠଗଡ଼, (୧୦) ଖଣ୍ଡପଡ଼ା, (୧୧) ନୟାଗଡ଼, (୧୨) ରଣପୁର, (୧୩) ହିନ୍ଦୋଳ, (୧୪) ତିଗିରିଆ, (୧୫) ବଡ଼ମ୍ବା ଓ (୧୬) ଢ଼ଙ୍କାନାଳ । ସାଧାରଣତଃ ଇଂରେଜ ସରକାର ବା କମ୍ପାନୀ ସରକାର ସେମାନଙ୍କର ଆଭ୍ୟନ୍ତରୀଣ ବ୍ୟାପାରରେ ହସ୍ତକ୍ଷେପ କରୁ ନଥିଲେ । କିନ୍ତୁ ବିଶେଷ ପରିସ୍ଥିତିରେ ହସ୍ତକ୍ଷେପ କରିବାକୁ ବାଧ୍ୟ ହେଉଥିଲେ । ଏହି ସବୁ ରାଜ୍ୟର ରାଜାମାନଙ୍କର ଆଚରଣ ଓ ଶାସନ ତଦାରଖ କରିବାପାଇଁ ଜଣେ ଇଂରେଜ ସୁପରିନ୍‌ଟେଣ୍ଡେଣ୍ଟ୍‌ଙ୍କୁ ନିଯୁକ୍ତ କରାଗଲା । ଯେଉଁ ରାଜ୍ୟରେ ଶାସନ ନାମରେ ସ୍ୱେଚ୍ଛାଚାର ପରିଲକ୍ଷିତ ହେଉଥିଲା, କମ୍ପାନୀ ସରକାର ତାହାକୁ ଦୃଢ଼ ଭାବରେ ଦମନ କରୁଥିଲେ ।

ମରହଟ୍ଟା ରାଜତ୍ୱରେ ପୁରୀ ଶ୍ରୀଜଗନ୍ନାଥ ମନ୍ଦିର ପ୍ରତି ସ୍ୱତନ୍ତ୍ର ଦୃଷ୍ଟିଦେଇ ବହୁତ ସମ୍ପତ୍ତି ଠାକୁରଙ୍କ ସେବା ପାଇଁ ଖଞ୍ଜା ଯାଇଥିଲା । ଯାତ୍ରୀକର ଆଦାୟ କରାଯାଇ ମନ୍ଦିର ପରିଚାଳନାରେ ବ୍ୟୟ କରାଯାଉଥିଲା । ଇଂରେଜ ସରକାର ମଧ୍ୟ ମନ୍ଦିର ପାଇଁ ପୂର୍ବ ସରକାରଙ୍କ ନୀତି ଅନୁସରଣ କରି, ବାର୍ଷିକ ହାରାହାରି ୫୩୦୦୦/- ଟଙ୍କା ମନ୍ଦିରର ଖର୍ଚ୍ଚ ବାବଦରେ ଦେଉଥିଲେ । ପୁରୀରାଜାଙ୍କୁ ମନ୍ଦିର ସୁପରିନ୍‌ଟେଣ୍ଡେଣ୍ଟ ନିଯୁକ୍ତ କରାଗଲା ପରେ ମଧ୍ୟ ବିଲାତରେ ଓ ଭାରତରେ ଖ୍ରୀଷ୍ଟିଆନ ସମ୍ପ୍ରଦାୟ ସରକାରଙ୍କୁ ସମାଲୋଚନା କରିବାରୁ ବିରତ ହେଲେ ନାହିଁ । ୧୮୩୨ ଖ୍ରୀଷ୍ଟାବ୍ଦରେ ହିନ୍ଦୁ ମନ୍ଦିରମାନଙ୍କର ପରିଚାଳନାରେ ସରକାରଙ୍କ ପ୍ରତ୍ୟକ୍ଷ ସମ୍ପର୍କ ଛିନ୍ନ କରାଯିବା ଉଚିତ ବୋଲି ବିଧିବଦ୍ଧ ଆନ୍ଦୋଳନ ଆରମ୍ଭ ହୋଇଥିଲା । ହିନ୍ଦୁ ଦେବୋତ୍ତର ସମ୍ପତ୍ତିର ପର୍ଯ୍ୟବେକ୍ଷଣରୁ ଇଂରେଜ ସରକାର କ୍ଷାନ୍ତ ରହିବାକୁ ଖ୍ରୀଷ୍ଟିଆନ ଧର୍ମଯାଜକମାନେ ଦାବି କରିଥିଲେ । ସେମାନେ ଓ ସେମାନଙ୍କ ସମର୍ଥକମାନେ 'ପ୍ରତିମା ପୂଜା ପ୍ରତି ସଂଯୋଗ' (Connection with idolatory) ଓ 'ଅନ୍ଧବିଶ୍ୱାସ ପ୍ରତି ସରକାରୀ ଅନୁମୋଦନ' (Official sanction of Superstition) ଅଭିଯୋଗ କରି ଜୋରଦାର ଆନ୍ଦୋଳନ କରିବାରୁ ବିଲାତରେ  ଇଷ୍ଟ ଇଣ୍ଡିଆ କମ୍ପାନୀର ଡିରେକ୍ଟର ବୋର୍ଡ ଓ ଭାରତ ସରକାର ବିଚଳିତ ହୋଇପଡିଲେ । ଫଳରେ ଅଧିନିୟମ-୧୦, ୧୮୪୦ (Act  X of 1840, passed on 20.4.1840) ବଳରେ ଯାତ୍ରୀକର (Pilgrim Tax) ବିଲୋପନ କରାଗଲା । ଏହି ବିଲୋପନ ତା଼ଃ୩.୫.୧୮୪୦ରୁ କାର୍ଯ୍ୟକାରୀ କରାଗଲା । ଏହି ଅଧିନିୟମରେ ଥିବା ବ୍ୟବସ୍ଥା ଅନୁସାରେ ଜଗନ୍ନାଥ ମନ୍ଦିରର ତତ୍ତ୍ୱାବଧାନ, ଅଭ୍ୟନ୍ତର ଅର୍ଥବ୍ୟବସ୍ଥା, ମନ୍ଦିର ବ୍ୟାପାର ନିର୍ବାହ ଓ ପରିଚାଳନା, ପୂଜାରୀ, ଅଧିକାରୀ ଏବଂ କର୍ମଚାରୀମାନଙ୍କ ଉପରେ ନିୟନ୍ତ୍ରଣ ଦାୟିତ୍ୱ ରାଜା-ସୁପରିନ୍‌ଟେଣ୍ଡେଣ୍ଟଙ୍କ ଉପରେ ନ୍ୟସ୍ତ ରହିଲା ।

ଖ୍ରୀଷ୍ଟିଆନ୍ ମିସନାରୀମାନଙ୍କ ପ୍ରତିବାଦ ଓ ପ୍ରତିରୋଧ ଦୃଷ୍ଟିରୁ ସରକାର ଶ୍ରୀମନ୍ଦିରକୁ ନଗଦ ଆର୍ଥିକ ଅନୁଦାନ ବଦଳରେ ତତ୍ତୁଲ୍ୟ ଭୂସମ୍ପତ୍ତି ଦାନ କରିଥିଲେ । ୧୮୪୩ ଠାରୁ ୧୮୫୮ ମସିହା ମଧ୍ୟରେ ଅନେକ ଭୂସମ୍ପତ୍ତି, ବିଶେଷତଃ 'ସତେଇଶି ହଜାରୀ ମାହାଲ' ରାଜା ସୁପରିନ୍‌ଟେଣ୍ଡେଣ୍ଟଙ୍କ ପରିଚାଳନାଧୀନରେ ରଖାଯାଇ ତତ୍‌ଲବ୍‌ଧ ଅର୍ଥରେ ଠାକୁରମାନଙ୍କର ନୀତି, ସେବାପୂଜା ପରିଚାଳନା କରାଗଲା । ପରବର୍ତ୍ତୀ ସମୟରେ ଏକ ସ୍ୱତନ୍ତ୍ର ପୋଲିସ୍ ସଂସ୍ଥା ମନ୍ଦିର ପାଇଁ ରଖାଯିବା ସକାଶେ 'ଏଖରାଜାତ ମାହାଲ' ନାମରେ  ୧୮୫୮ ଓ ୧୮୬୩ ମସିହାରେ ତତ୍ତ୍ୱାବଧାରକ ହିସାବରେ ପୁରୀରାଜାଙ୍କୁ ହସ୍ତାନ୍ତର କରାଗଲା । ମୋଟ ୧୫୬ଟି ଗ୍ରାମ ଏହି ମାହାଲର ଅନ୍ତର୍ଭୁକ୍ତ । ତନ୍ମଧ୍ୟରୁ ୧୨୮ଟି ଗ୍ରାମ ଖୋର୍ଦ୍ଧା ତହସିଲରେ ଓ ଅନ୍ୟାନ୍ୟ ଗ୍ରାମ ଭୁବନେଶ୍ୱର, ପିପିଲି ଓ ପୁରୀ ସଦର ତହସିଲମାନଙ୍କରେ ରହିଛି । ଏଥି ମଧ୍ୟରୁ ୧୩୮ଟି ଗ୍ରାମରେ ସରବରାକାରମାନେ ଜାଗିରୀଦାର ଭାବରେ ରହୁଥିଲେ ଏବଂ ଖଜଣା ଆଦାୟ କରୁଥିଲେ । ସମୁଦାୟ ଆଦାୟର ଶତକଡ଼ା ୨୦ ଭାଗ ସେମାନେ ନେଉଥିଲେ । ବାକି ଗ୍ରାମରୁ ମନ୍ଦିର କର୍ତ୍ତୃପକ୍ଷ ତାଙ୍କର କର୍ମଚାରୀମାନଙ୍କଦ୍ୱାରା ପାଉଣା ଆଦାୟ କରୁଥିଲେ ।

ମରହଟ୍ଟାମାନେ ଜଗନ୍ନାଥ ମନ୍ଦିର ଉଦ୍ଦେଶ୍ୟରେ କିଛି ଜମି ଦେଇଥିଲେ, ଯେଉଁଥିରୁ କି ୨୭୦୦୦ ଟଙ୍କା ରାଜସ୍ୱ ଆଦାୟ ହେଉଥିଲା । କାଳକ୍ରମେ ଏହି ମାହାଲ ସତେଇଶି ହଜାରୀ ମାହାଲ ନାମରେ ନାମିତ ହେଲା । ଇଂରେଜ ସରକାର ୧୮୪୩ ମସିହାରେ ୯୦ଟି ଗ୍ରାମବିଶିଷ୍ଟ ଏହି ମାହାଲ ମନ୍ଦିର ତତ୍ତ୍ୱାବଧାରକ  ରାଜାଙ୍କ ନାମରେ ହସ୍ତାନ୍ତର କରିଥିଲେ । (ଶ୍ରୀଜଗନ୍ନାଥଙ୍କ ଭୂସମ୍ପତ୍ତି (ପ୍ରବନ୍ଧ)- ଶରତଚନ୍ଦ୍ର ମହାପାତ୍ର । 'ଶ୍ରୀଜଗନ୍ନାଥ ପରିକ୍ରମା', ଭାରତ ଭାରତୀ, କଟକ, ୧୯୯୧) ।

## ବୀରକେଶରୀ ଦେବ (୨ୟ) (ଖ୍ରୀ: ୧୮୫୪/୫୫-୧୮୫୯)

ରାମଚନ୍ଦ୍ର ଦେବ(୩ୟ)ଙ୍କ ଦେହାନ୍ତ ପରେ ବୀରକେଶରୀ ଦେବ(୨ୟ) ପୁରୀ ରାଜା ତଥା ଶ୍ରୀମନ୍ଦିର ସୁପରିନ୍‌ଟେଣ୍ଡେଣ୍ଟ ହେଲେ । ତାଙ୍କର ଅନ୍ୟ ନାମ ବୀରକିଶୋର ଦେବ ଥିଲା । ଡିସେମ୍ବର ୧୮୫୯ରେ ତାଙ୍କର ଅକାଳ ବିୟୋଗ ହେଲା । ସେ ନିଃସନ୍ତାନ ଥିବାରୁ ମୃତ୍ୟୁର ଅବ୍ୟବହିତ ପୂର୍ବରୁ ଗଞ୍ଜାମର ବଡ଼ ଖେମୁଣ୍ଡି ରାଜାଙ୍କ ଚାରି ବର୍ଷ (ମତାନ୍ତରେ ପାଞ୍ଚ ବର୍ଷ) ବୟସର ପ୍ରଥମ ପୁତ୍ର (ମତାନ୍ତରେ ଦ୍ୱିତୀୟ ପୁତ୍ର)କୁ ପୋଷ୍ୟପୁତ୍ର ରୂପେ ଗ୍ରହଣ କରିଥିଲେ । ଏକ ଉଇଲ ଓ ସିଭିଲ କୋର୍ଟର ସାର୍ଟିଫିକେଟ୍ ବଳରେ (Act - XL of 1858 ଅନୁଯାୟୀ) ରାଣୀ ସୂର୍ଯ୍ୟମଣି ପାଟ ମହାଦେଈ ନାବାଳକ ପୁତ୍ରର ଅଭିଭାବକ ଓ ଇଷ୍ଟେଟର ପରିଚାଳକ ଭାବରେ କ୍ଷମତା ପ୍ରାପ୍ତ ହୋଇଥିଲେ । ନାବାଳକ ପୁତ୍ର ସାବାଳକ ହେବା ଯାଏଁ ଶ୍ରୀମନ୍ଦିରର ଅଧୀକ୍ଷକ (ସୁପରିନ୍‌ଟେଣ୍ଡେଣ୍ଟ୍) ଦାୟିତ୍ୱ ତାଙ୍କ ଉପରେ ନ୍ୟସ୍ତ ରହିଲା । ନାବାଳକ ପୁତ୍ରର ବିୟୋଗ ଘଟିଲେ ଅନ୍ୟ ଏକ ପୋଷ୍ୟପୁତ୍ର ଗ୍ରହଣ କରିବାକୁ ରାଣୀଙ୍କୁ କ୍ଷମତା ପ୍ରଦାନ କରାଯାଇଥିଲା । ରାଣୀଙ୍କ ପରିଚାଳନାରେ ଶ୍ରୀମନ୍ଦିରର ରୀତିନୀତି ସନ୍ତୋଷଜନକ ହେଉନଥିଲା । ଅନ୍ତଃପୁରଚାରିଣୀ ଅନଭିଜ୍ଞା ରାଣୀଙ୍କପାଇଁ ଏହି ବିରାଟ ଧର୍ମାନୁଷ୍ଠାନର ପରିଚାଳନା ଏକ କଠିନ କାର୍ଯ୍ୟ ଥିଲା ।

## ଦିବ୍ୟସିଂହ ଦେବ (୩ୟ) (ଖ୍ରୀ: ୧୮୫୯-୧୮୮୮)

ନାବାଳକ ପୁତ୍ର ସାବାଳକ ହେବା ପରେ ଦିବ୍ୟସିଂହଦେବ ନାମରେ ଅଭିଷିକ୍ତ ହେଲେ ମଧ୍ୟ ଶ୍ରୀମନ୍ଦିରର ପରିସ୍ଥିତି ଶୋଚନୀୟ ହୋଇ ପଡିଥିଲା । କାରଣ ପିଲାଟି ଦିନରୁ ସେ ବେପରୁଆ ଓ ଦାୟିତ୍ୱହୀନ ଥିଲେ । ଶ୍ରୀମନ୍ଦିରର ସେବକ ଓ କର୍ମଚାରୀମାନଙ୍କ ସହିତ ଏବଂ ସରକାରୀ କର୍ତ୍ତୃପକ୍ଷଙ୍କ ସହିତ ତାଙ୍କର ସମ୍ପର୍କ ଭଲ ନଥିଲା । ମାତା ସୂର୍ଯ୍ୟମଣିଙ୍କ ପ୍ରତି ମଧ୍ୟ ଭକ୍ତି ଓ ଆନୁଗତ୍ୟ ନଥିଲା । ୧୮୭୭ରେ ଗୋବିନ୍ଦ ଦ୍ୱାଦଶୀ ବୁଡ଼ ବେଳେ ପୁରୀରେ ପ୍ରବଳ ଯାତ୍ରୀ ଭିଡ଼ ହୋଇଥିଲା । ଶ୍ରୀମନ୍ଦିରରେ ଦଳାଚକଟାରେ ଏଗାର ଜଣ ବ୍ୟକ୍ତି ପ୍ରାଣ ହରାଇଥିବା ସରକାରୀ ନଥିପତ୍ରରେ ଉଲ୍ଲେଖ ଅଛି । ରାଜା ପୂର୍ବରୁ ସତର୍କତା ଅବଲମ୍ବନ କରି ଉପଯୁକ୍ତ ସୁରକ୍ଷା ବ୍ୟବସ୍ଥା ଗ୍ରହଣ କରିଥିଲେ ହୁଏତ  ଏ ପ୍ରକାର ଶୋଚନୀୟ ଦୁର୍ଘଟଣା ଘଟି ନଥାନ୍ତା ।

ତାଙ୍କ ସମୟରେ ଆଉ ଏକ ବିଶିଷ୍ଟ ଘଟଣା ହେଲା- ଶ୍ରୀମନ୍ଦିର ଗର୍ଭଗୃହ ଛାତରୁ ପଥର ଖସିବା । ୧୮୭୫ ମସିହା ଜୁଲାଇ ମାସରେ ଯେତେବେଳେ ଦିଅଁମାନେ ରଥଯାତ୍ରାଯୋଗୁଁ ଗୁଣ୍ଡିଚା ଘରେ ଅବସ୍ଥାନ କରୁଥିଲେ, ସେତେବେଳେ ଶ୍ରୀମନ୍ଦିରରେ ଏ ପଥର ଖସିବା ଘଟଣା ଘଟିଥିଲା । ଅବଶ୍ୟ ଏଥିଯୋଗୁଁ କେହି ମୃତାହତ ହୋଇନଥିଲେ । ୧୮୭୭ ମସିହାରେ ଦିବ୍ୟସିଂହଦେବଙ୍କୁ ବ୍ରିଟିଶ ସରକାର 'ମହରାଜା' ଉପାଧି ପ୍ରଦାନ କରିଥିଲେ । କିନ୍ତୁ ଦୁର୍ଭାଗ୍ୟର ବିଷୟ ଏହି ଯେ, ପରବର୍ତ୍ତୀ ବର୍ଷ ତା୮.୪.୧୮୭୮ରେ ଜଣେ ସାଧୁଙ୍କୁ ହତ୍ୟା କରିବା ଅପରାଧରେ ତାଙ୍କୁ ଦୋଷୀ ସାବ୍ୟସ୍ତ କରାଯାଇ ଆଣ୍ଡାମାନକୁ ଦ୍ୱୀପାନ୍ତର ଦଣ୍ଡ ମିଳିଥଲା । ସେଠାରେ କେତେ ବର୍ଷ ପରେ ବନ୍ଦୀ ଅବସ୍ଥାରେ ସେ ପ୍ରାଣତ୍ୟାଗ କଲେ ।

ଆଣ୍ଡାମାନକୁ ଦିବ୍ୟସିଂହ ଦେବଙ୍କ ପ୍ରେରଣ ପରେ ଶ୍ରୀମନ୍ଦିର ପରିଚାଳନା କ୍ଷେତ୍ରରେ ସଂକଟ ଓ ଆଇନଗତ ଅସଂଗତି ଦେଖାଦେଇଥିଲା । ଆଇନ ଅନୁଯାୟୀ (Act-X 1840 ପ୍ରକାରେ) ସୁପରିଣ୍ଟେଣ୍ଡେଣ୍ଟ ଦାୟିତ୍ୱ ନିର୍ବାସନ ପରେ ମଧ୍ୟ ରାଜାଙ୍କ ଉପରେ ନ୍ୟସ୍ତ ଥିଲା । ସୁତରାଂ ଭାରତ ସରକାର ସଂପୃକ୍ତ ଆଇନର କେତେକ ଧାରାକୁ ବାତିଲ ତଥା ଆବଶ୍ୟକ ସଂଶୋଧନ କରିବାକୁ ଚିନ୍ତାକଲେ । ମନ୍ଦିର ପରିଚାଳନା ଭାର ଗୋଟିଏ କମିଟି ବା ଟ୍ରଷ୍ଟ ହାତରେ ଦେବାକୁ ଏକ ଯୋଜନା ପୁରୀର କଲେକ୍ଟର ମିଷ୍ଟର କେ.ଜି. ଗୁପ୍ତ ପ୍ରସ୍ତୁତ କରି ୧୮୮୩ ସାଲରେ ସରକାରଙ୍କ ଅନୁମୋଦନ ସକାଶେ ପଠାଇଲେ । ମନ୍ଦିରର ସୁପରିଣ୍ଟେଣ୍ଡେଣ୍ଟ୍ ପଦ ଶୂନ୍ୟ ହେଲା ବୋଲି ଘୋଷଣା କରିବାକୁ ସରକାରଙ୍କ ତରଫରୁ ଦେଓ୍ୱାନୀ ଅଦାଲତରେ ଏକ ମୋକଦ୍ଦମା (ସୁଟ୍) ଦାଏର କରାଗଲା ।

ଏହି ସୁଟ୍ (Suit) ବିରୁଦ୍ଧରେ ପ୍ରବଳ ଜନଚେତନା ତଥା ପ୍ରତିବାଦ ପ୍ରକାଶ ପାଇଲା । ହିନ୍ଦୁଧର୍ମର ଏହି ଶ୍ରେଷ୍ଠ ଅନୁଷ୍ଠାନରେ ସରକାରଙ୍କ ଅଯଥା ହସ୍ତକ୍ଷେପ ଓ ଠାକୁରରାଜାଙ୍କ ପାରମ୍ପରିକ ସମ୍ମାନ ଏବଂ ପ୍ରତିଷ୍ଠାର ବିଲୋପସାଧନ ପ୍ରଚେଷ୍ଟାର ପ୍ରତିବାଦରେ ଅନେକ ପ୍ରତିବାଦ ପତ୍ର ଓ ସ୍ମାରକ ପତ୍ର ଭାରତ ସରକାରଙ୍କ ପାଖକୁ ପଠାଗଲା । ରାଣୀ ସୂର୍ଯ୍ୟମଣିଙ୍କ ତରଫରୁ ଉତ୍କଳଗୌରବ ମଧୁସୂଦନ ଦାସ ସରକାରଙ୍କ ବିରୁଦ୍ଧରେ ଲଢ଼ିଥିଲେ । ପରିଶେଷରେ ସରକାର ବାଧ୍ୟ ହୋଇ ରାଣୀଙ୍କ ସହିତ ଆପୋଷ ରାଜିନାମାପାଇଁ ପ୍ରସ୍ତାବ ଦେଲେ । ରାଣୀଙ୍କ ଓକିଲ ମଧୁବାବୁଙ୍କ ନିକଟକୁ ଓଡ଼ିଶା ଡିଭିଜନର କମିଶନର ପଠାଇଥିବା ଚିଠା ରାଜିନାମା ପ୍ରସ୍ତାବର ଉତ୍ତରରେ କେତେକ ସଂଶୋଧନ ସହ ମଧୁବାବୁ ସମ୍ମତି ଜଣାଇଥିଲେ ।

ରାଣୀ ଓ ସରକାରଙ୍କ ମଧ୍ୟରେ ରାଜିନାମା ହେବା ଫଳରେ ସରକାର ସିଭିଲ କୋର୍ଟରୁ ସୁଟ୍ ଉଠାଇ ଆଣିଲେ । ରାଜିନାମାର ସର୍ତ୍ତ ଅନୁଯାୟୀ ଶ୍ରୀମନ୍ଦିରର ସୁପରିଣ୍ଟେଣ୍ଡେଣ୍ଟ ଦାୟିତ୍ୱ ପୁରୀ ରାଜାଙ୍କ ଉପରେ ପୂର୍ବ ପରି ନ୍ୟସ୍ତ ରହିଲା । ନାବାଳକ ରାଜା ସାବାଳକ ହେବା ଯାଏଁ ରାଣୀ ସୂର୍ଯ୍ୟମଣି ଶ୍ରୀମନ୍ଦିର ସୁପରିଣ୍ଟେଣ୍ଡେଣ୍ଟ ଓ ଇଷ୍ଟେଟ୍ ପରିଚାଳନା ଦାୟିତ୍ୱରେ ରହିଲେ । ଜଣେ ମ୍ୟାନେଜରଙ୍କୁ ସେ ତାଙ୍କର କ୍ଷମତା ପ୍ରଦାନ (delegate) କରିବା ବ୍ୟବସ୍ଥା ରଖାଗଲା । କିନ୍ତୁ କୌଣସି ମନ୍ଦିର ସେବକଙ୍କୁ ରାଣୀଙ୍କ ଅନୁମୋଦନ ବିନା ସେବାରୁ ବାସନ୍ଦ କରିବାର ଅଧିକାର ମ୍ୟାନେଜରଙ୍କର

ନଥିଲା । ରାଣୀ ଯଦି ମ୍ୟାନେଜରଙ୍କୁ ବାହାର କରିବାକୁ ଚାହିଁବେ ତେବେ କରିପାରିବେ । କିନ୍ତୁ ଅନ୍ୟ ଜଣେ ମ୍ୟାନେଜରଙ୍କୁ ଯଥାସମୟରେ ସେ ନିଯୁକ୍ତି ଦେବେ । ନଚେତ୍ ସିଭିଲ କୋର୍ଟ ଖାଲି ପଡିଥିବା ମ୍ୟାନେଜର ପଦବୀରେ ଅନ୍ୟ ଜଣେ ଯୋଗ୍ୟ ବ୍ୟକ୍ତିଙ୍କୁ ମ୍ୟାନେଜର ଭାବେ ନିଯୁକ୍ତି ଦେବେ । ମ୍ୟାନେଜରଙ୍କ କ୍ଷମତା କ'ଣ ତାହା ଏହି ରାୟ (decree) ରେ ଉଲ୍ଲେଖ ଥିଲା । ରାଜା ସାବାଳକତ୍ୱ ଲାଭ କରିବା ପରେ ଏହି 'ଡିକ୍ରୀ' ଆପଣା ଛାଏଁ ଅକାମୀ ହେବ ବୋଲି ଲେଖାଥିଲା ।

୧୮୮୮ ମସିହାରେ ହୋଇଥିବା ଏହି ରାଜିନାମା ୧୮୯୮ ମସିହା ଯାଏଁ, ଅର୍ଥାତ୍ ନାବାଳକ ରାଜା ସାବାଳକ ହେବା ଯାଏଁ ବଳବତ୍ତର ଥିଲା ।

ପ୍ରଥମ ଥର ନାବାଳକ ପୁତ୍ର ଓ ଦ୍ୱିତୀୟ ବାର ନାବାଳକ ନାତିଙ୍କ ତରଫରୁ ରାଣୀ ସୂର୍ଯ୍ୟମଣିଙ୍କୁ ଶ୍ରୀମନ୍ଦିରର ସୁପରିଣ୍ଟେଣ୍ଡେଣ୍ଟ ଦାୟିତ୍ୱ ନିର୍ବାହ କରିବାକୁ ପଡ଼ିଥିଲା । ପୂର୍ବରୁ ଅଭିଜ୍ଞତା ଥିବାରୁ ଏହିଥର ମନ୍ଦିର ପରିଚାଳନାରେ ତାଙ୍କୁ ବିଶେଷ ଅସୁବିଧାର ସମ୍ମୁଖୀନ ହେବାକୁ ପଡିଲା ନାହିଁ । ପୂର୍ବୋକ୍ତ ରାଜିନାମା ରାଣୀ ସୂର୍ଯ୍ୟମଣି ଓ ମଧୁବାବୁଙ୍କ ବ୍ୟକ୍ତିତ୍ୱ ଓ ସାମାଜିକ ପ୍ରତିଷ୍ଠାକୁ ବହୁଗୁଣିତ କରି ଦେଇଥିଲା । ସେମାନଙ୍କ ଉଦ୍ୟମରେ ଭାରତ ସରକାର ନାବାଳକ ରାଜାଙ୍କୁ 'ରାଜା' ଉପାଧି ପ୍ରଦାନ କରିଥିଲେ ।

ଦୀର୍ଘ ୩୩ ବର୍ଷ କାଳ ୧୮୬୦ରୁ ୧୮୯୭ ଯାଏଁ (ମଝିରେ ଦିବ୍ୟସିଂହ ଦେବଙ୍କ ଦାୟିତ୍ୱ ସମୟ ୧୮୭୫ରୁ ୧୮୭୮ ବାଦ୍ ଯାଇ), ରାଣୀ ସୂର୍ଯ୍ୟମଣି ଶ୍ରୀମନ୍ଦିରର ପରିଚାଳନା ଦାୟିତ୍ୱ ତୁଲାଇ ଶ୍ରୀମନ୍ଦିର ତଥା ଓଡ଼ିଶା ଇତିହାସରେ ଏକ ମୁଖ୍ୟ ଭୂମିକାରେ ଅବତୀର୍ଣ୍ଣ ହୋଇଥିଲେ । ରାଣୀ ସୂର୍ଯ୍ୟମଣିଙ୍କ ଭୂମିକା ଉପରେ ମତ ଦେଇ ବିଶିଷ୍ଟ ଐତିହାସିକ ପ୍ରଭାତ ମୁଖାର୍ଜୀ ଲେଖିଛନ୍ତି :

"Rani Suryamani was undoubtedly a woman of keen intelligence and strong personality. Though a purdha lady, she revived the prestige of the Puri Raja family. She practically forced the Govt. of India to confer the title of Raja on Mukunda Dev, during the life time of his father. She united all sections of people to rally round the cause of the Raja of Puri. x x x x" She became widow at an early age. "She was expected to live sixty years in recluse but destiny ordained otherwise. She became the custodian of the Jagannath temple and of the Puri Raj estates from 1860 to 1897, except for the brief period 1875 to 1878, when Dibyasingh Dev took charge".

*(History of Jagannath Temple in the 19th century- P. Mukherjee)*

ରାଣୀ ସୂର୍ଯ୍ୟମଣି ୧୦୮ ବର୍ଷ ବୟସରେ ୧୯୨୬ ମସିହା ନଭେମ୍ବର ୧୪ରେ ପରଲୋକ ଗମନ କଲେ । ନାତି ଜଗନ୍ନାଥ ଜେନାମଣି ସାବାଳକ ହେବା ପରେ ମୁକୁନ୍ଦଦେବ (୩ୟ) ନାମରେ ପୁରୀର ଗଜପତି ରାଜା ଓ ମନ୍ଦିରର ସୁପରିଣ୍ଟେଣ୍ଡେଣ୍ଟ ହେଲେ । ନିଜ ପିତା ଦିବ୍ୟସିଂହଦେବଙ୍କ ପରି ସେ ମଧ୍ୟ ମନ୍ଦିର ସୁପରିଚାଳନା ଦିଗରେ ବିଶେଷ ଆଗ୍ରହୀ ହୋଇନଥିଲେ । ସରକାର ବା ଜିଲ୍ଲା କର୍ତ୍ତୃପକ୍ଷଙ୍କ ସହିତ ଉତ୍ତମ ବୁଝାମଣା ଓ ସହଯୋଗ ରଖିବାରେ ସେ ବିମୁଖ ଥିଲେ ।

କେତେଜଣ ନ୍ୟସ୍ତସ୍ୱାର୍ଥ ବ୍ୟକ୍ତିଙ୍କ କୁପରାମର୍ଶରେ ସେ ପରିଚାଳିତ ହେଉଥିଲେ । ତା୨୦.୧୦.୧୯୦୧ (ମହାଷ୍ଟମୀ) ଦିନ ଶ୍ରୀମନ୍ଦିରର 'ପୋଖରିଆ'ରେ ପ୍ରବଳ ଯାତ୍ରୀଭିଡ଼ଯୋଗୁଁ ଦୁଇଜଣ ବ୍ୟକ୍ତି ଦଳାଚକଟାରେ ପ୍ରାଣ ହରାଇଥିଲେ ଓ ଅନେକ ଆଘାତ ପ୍ରାପ୍ତ ହୋଇଥିଲେ ବୋଲି ସରକାରୀ ନଥିପତ୍ରରେ ଉଲ୍ଲେଖ ଅଛି ।

ଶ୍ରୀମନ୍ଦିରର ଆର୍ଥିକ ପରିସ୍ଥିତି ବେଳକୁ ବେଳ ଶୋଚନୀୟ ହୋଇପଡ଼ିଲା । ରାଜା ମୁକୁନ୍ଦଦେବ କରଜରେ ବୁଡ଼ି ରହିଲେ । ସରକାରଙ୍କ ଚାପ ଫଳରେ ରାଜା, ଜଣେ ଡେପୁଟି ମାଜିଷ୍ଟ୍ରେଟ୍‌ଙ୍କୁ ଡେପୁଟେସନ୍‌ରେ ଆଣି ମନ୍ଦିରର ମ୍ୟାନେଜର ପଦବୀରେ ରଖିବାକୁ ବାଧ୍ୟ ହେଲେ । ଡେପୁଟି ମାଜିଷ୍ଟ୍ରେଟ୍ ରାଜକିଶୋର ଦାସ ୧୩.୫.୧୯୦୩ ତାରିଖରେ ମ୍ୟାନେଜର ଭାବେ ଦାୟିତ୍ୱ ଗ୍ରହଣ କଲେ । ଏହି ପଦବୀରେ ସେ ପ୍ରଥମ ଥର ପାଞ୍ଚବର୍ଷ ଓ ଦ୍ୱିତୀୟ ଥର ଆଉ ପାଞ୍ଚବର୍ଷ, ଏହିପରି ଦଶବର୍ଷ ଯାଏଁ ରହି ମନ୍ଦିରର ହିସାବପତ୍ର ଓ ଆର୍ଥିକ ଶୃଙ୍ଖଳା ପ୍ରତି ଧ୍ୟାନ ଦେଲେ । ସେ ରହିବାର କେତେବର୍ଷ ପରେ କେତେଜଣ ଇତର ବ୍ୟକ୍ତିଙ୍କ ସ୍ୱାର୍ଥରେ ବାଧା ଆସିବାରୁ ସେମାନେ ରାଜା ଓ ରାଜକିଶୋରଙ୍କ ମଧ୍ୟରେ ଭୁଲ ବୁଝାମଣା ଓ ବିବାଦ ସୃଷ୍ଟି କରାଇଥିଲେ । ମୁକୁନ୍ଦଦେବ ଜେଜେ ମା' ରାଣୀ ସୂର୍ଯ୍ୟମଣି ଓ ନିଜର ପତ୍ନୀଙ୍କ ସହିତ ମଧ୍ୟ ଭଲ ସମ୍ପର୍କ ରଖିନଥିଲେ । ମୁକୁନ୍ଦଦେବଙ୍କ ମାତାଙ୍କ ଦେହାନ୍ତ ହୋଇଯାଇଥିଲା ।

ନିମ୍ନଲିଖିତ ବ୍ୟକ୍ତିମାନେ ବିଭିନ୍ନ ସମୟରେ ୧୮୮୯ ମସିହାଠାରୁ ୧୯୨୬ ମସିହା ପର୍ଯ୍ୟନ୍ତ ଶ୍ରୀମନ୍ଦିରର ମ୍ୟାନେଜର ଭାବରେ କାର୍ଯ୍ୟ କରିଥିଲେ ।

୧୮୮୯ ରୁ ୧୮୯୦ - ହରେକୃଷ୍ଣ ଦାସ
୧୮୯୦ ରୁ ୧୮୯୩ - କୃଷଚନ୍ଦ୍ର ମହାନ୍ତି
୧୮୯୩ - ଆର୍. କେ. କୁଣ୍ଡୁ (ଅଳ୍ପ ସମୟ ପାଇଁ)
୧୮୯୩ ରୁ ୧୮୯୫ - ଜେ. ଏନ୍. ଚୌଧୁରୀ
୧୮୯୫ - ନିତ୍ୟାନନ୍ଦ ଦାସ (ସ୍ୱଳ୍ପ କାଳ ପାଇଁ)
୧୮୯୮ - ମିଷ୍ଟର ପ୍ରାଇସ୍ (ପୂର୍ବତନ ଆଇ.ସି.ଏସ୍.) (ସ୍ୱଳ୍ପକାଳ)
୧୯୦୦ - ମିଷ୍ଟର ପ୍ରାଇସ୍ (ପୁଣି ସ୍ୱଳ୍ପକାଳ ପାଇଁ)
୧୯୦୦ (ମେ) ରୁ ୧୯୦୦ (ଅକ୍ଟୋବର) - ଚିନ୍ତାମଣି ପଟ୍ଟନାୟକ
୧୯୦୦ (ଅକ୍ଟୋବର) - ରାସବିହାରୀ ନାୟକ (ସ୍ୱଳ୍ପକାଳ)
୧୯୦୩ (ମେ) ରୁ ୧୯୧୩ (ମେ) - ରାଜକିଶୋର ଦାସ
୧୯୧୩ (ମେ) ରୁ ୧୯୧୭ (ମେ) - ଗୌରଶ୍ୟାମ ମହାନ୍ତି
୧୯୧୭ (ମେ) ରୁ ୧୯୨୧ (ମେ) - ବାଳମୁକୁନ୍ଦ କାନୁନ୍‌ଗୋ
୧୯୨୧ (ମେ) ରୁ ୧୯୨୫ (ମେ) - ସଖୀ ଚାନ୍ଦ
୧୯୨୫ (ମେ) ୧୯୨୬ (ଅଗଷ୍ଟ) - ଲାଲା ଆଶୁତୋଷ

୧୯୨୬ ମସିହା ଫେବ୍ରୁଆରି ମାସ ୧୧ ତାରିଖରେ ବସନ୍ତ ରୋଗରେ ରାଜା ମୁକୁନ୍ଦଦେବଙ୍କର ମୃତ୍ୟୁ ଘଟିଲା । ତାଙ୍କ ପରେ ତାଙ୍କର ପୋଷ୍ୟ ପୁତ୍ର ରାମଚନ୍ଦ୍ର ଦେବ (୪ର୍ଥ) ନାମ ଧାରଣ କରି ରାଜଗାଦିରେ ବସିଲେ । କିନ୍ତୁ କେତେ ମାସ ଯାଏଁ ମନ୍ଦିର ସୁପରିଣ୍ଟେଣ୍ଡେଣ୍ଟ ଭାବରେ ସରକାର ତାଙ୍କୁ ସ୍ୱୀକୃତି ଦେଇନଥିଲେ ଏବଂ ରାଜା ଉପାଧି ମଧ୍ୟ ଦେଇନଥିଲେ । ଶ୍ରୀମନ୍ଦିର ପରିଚାଳନା କାର୍ଯ୍ୟ ମୁଖ୍ୟତଃ ମ୍ୟାନେଜର ତୁଲାଉଥିଲେ ।

ରାମଚନ୍ଦ୍ର ଦେବଙ୍କ ଅମଳରେ ମନ୍ଦିରର ମ୍ୟାନେଜର ଭାବରେ ଲାଲା ଆଶୁତୋଷ କେତେ ମାସ କାମ କରିଥିଲେ । ତା'ପରେ ଆଉ କେହି ମ୍ୟାନେଜର ରହିଲେ ନାହିଁ । ରାଜାଙ୍କ ସୁପାରିଶ ଓ ସରକାରଙ୍କ ଅନୁମୋଦନ ଲାଭ ପରେ ଅବସରପ୍ରାପ୍ତ ଡେପୁଟି ମାଜିଷ୍ଟ୍ରେଟ୍ ଓ ପୂର୍ବତନ ମ୍ୟାନେଜର ରାଜକିଶୋର ଦାସଙ୍କୁ ରାଜାଙ୍କ ଦେଓ୍ୱାନ ଭାବରେ ନିଯୁକ୍ତ କରାଗଲା । ଏହି ପଦବୀରେ ସେ ପ୍ରାୟ ପାଞ୍ଚବର୍ଷ କାର୍ଯ୍ୟ କରିଥିଲେ ।

ରାମଚନ୍ଦ୍ର ଦେବଙ୍କ ପରେ ତାଙ୍କର ପୁତ୍ର ବୀରକିଶୋର ଦେବ (୩ୟ) ରାଜା ହେଲେ ୧୯୫୬ ମସିହାରେ । ତାଙ୍କ ପରେ ଦିବ୍ୟସିଂହ ଦେବ (୪ର୍ଥ) ୧୯୭୦ରେ ରାଜା ହେଲେ ।

ରାଜା ରାମଚନ୍ଦ୍ର ଦେବଙ୍କ ସମୟରେ ରାଜ୍ୟ ସରକାର ପୁରୀ ଶ୍ରୀଜଗନ୍ନାଥ ମନ୍ଦିର ପରିଚାଳନାରେ କ୍ରମାଗତ ବିଶୃଙ୍ଖଳା, ଦୈନିକ ନୀତି ଓ ଯାନିଯାତ୍ରାରେ ବିଭ୍ରାଟ ତଥା ଅହେତୁକ ବିଳମ୍ବ ଇତ୍ୟାଦି ସମସ୍ୟାର ନିରାକରଣ ଚିନ୍ତା କରି ପ୍ରାଥମିକ  ପଦକ୍ଷେପ ସ୍ୱରୂପ ୧୯୫୨ ମସିହାରେ 'ପୁରୀ ଶ୍ରୀଜଗନ୍ନାଥ ମନ୍ଦିର (ପ୍ରଶାସନ) ଅଧିନିୟମ, ୧୯୫୨' (The Puri Shri Jagannath Temple (Administration) Act, 1952) ପ୍ରଣୟନ କଲେ । ଓଡ଼ିଶା ବିଧାନସଭାରେ ତତ୍‌କାଳୀନ ବିଧିବିଭାଗ ମନ୍ତ୍ରୀ ଦୀନବନ୍ଧୁ ସାହୁ ବିଲ୍ ଉପସ୍ଥାପନ କରି ଏଭଳି ଆଇନ ପ୍ରଣୟନର ଆବଶ୍ୟକତା ଦର୍ଶାଇଥିଲେ । ସେ ଦେଇଥିବା ବିବୃତିର କିଛି ଅଂଶ ନିମ୍ନରେ ପ୍ରଦାନ କରାଗଲା ।

## STATEMENT OF OBJECTS AND REASONS

"The Puri Temple of Lord Jagannath which occupies an unique position not only in the State of Orissa but also in relation to the whole of the Union is in a sad plight.

Abject mismanagement, a standing disgrace to the citizens and their administration, prevails in spite of all efforts to remedy it. There is no escape but that in the interest of the public, State Government must step in and take effective measures in order to save it from ruination.

In the absence of any guidance from the Raja and sufficient contribution from him for the regular expenses of the Temple, the scheduled and disciplined performance of the Nitis has suffered beyond imagination and the Raja has practically lost all control over the different Sebaks and other temple servants. x x x."

ଉକ୍ତ ଅଧିନିୟମ, ୧୯୫୨ରେ ଥିବା ବ୍ୟବସ୍ଥାନୁଯାୟୀ ଜଣେ ସ୍ପେଶାଲ ଅଫିସରଙ୍କୁ ସରକାର ନିଯୁକ୍ତି ଦେଲେ । ସେ ଶ୍ରୀମନ୍ଦିର ଓ ତାର ସେବାପୂଜା ଏବଂ ପ୍ରଦତ୍ତ ସମ୍ପତ୍ତି (ଦେବୋତ୍ତର) ସହିତ ସମ୍ପୃକ୍ତ ସେବକ ଓ ଅନ୍ୟାନ୍ୟ ବ୍ୟକ୍ତିମାନଙ୍କର ଅଧିକାର ଓ ଦାୟିତ୍ୱ ସମ୍ବନ୍ଧରେ ଅନୁଧ୍ୟାନ କରି ସ୍ୱତ୍ୱଲିପି ବା ଅଧିକାର ଅଭିଲେଖ (Record of Rights) ପ୍ରସ୍ତୁତ କରି ତାଙ୍କର ରିପୋର୍ଟ ସରକାରଙ୍କ ନିକଟରେ ୧୯୫୪ ମସିହା ମାର୍ଚ୍ଚ ୧୫ ତାରିଖରେ ଦାଖଲ କଲେ । ତାଙ୍କର ସୁପାରିଶ ଅନୁଯାୟୀ ୧୯୫୫ ମସିହାରେ ସରକାର ଶ୍ରୀଜଗନ୍ନାଥ ମନ୍ଦିର ଅଧିନିୟମ, ୧୯୫୪ (Shri Jagannath Temple Act, 1954) (Orissa Act No.11 of 1955) ପ୍ରଣୟନ କଲେ । ପୂର୍ବ ପ୍ରଚଳିତ ସମସ୍ତ ଅଧିନିୟମ, ନିୟମ, ବିନିୟମ (regulation) ଓ ପରିଚାଳନା ବ୍ୟବସ୍ଥାକୁ ଅସିଦ୍ଧ କରି ଏହି ଐତିହାସିକ ଆଇନ ପ୍ରକୃତରେ ୧୯୫୫ ମସିହାରେ ପ୍ରଣୟନ ହୋଇଥିଲେ ମଧ୍ୟ ତା୨୭.୧୦.୧୯୬୦ରୁ ଲାଗୁ ହୋଇଥିଲା । ଏହି ଅଧିନିୟମ ବା ଆଇନର ଧାରା-୩ ଅନୁଯାୟୀ ପୂର୍ବୋକ୍ତ ଅଧିନିୟମ, ୧୯୫୨କୁ ଏହାର ଅଙ୍ଗୀଭୂତ କରାଗଲା ।

ଶ୍ରୀଜଗନ୍ନାଥ ମନ୍ଦିର ଅଧିନିୟମ, ୧୯୫୪ (୧୯୫୫)ର ଧାରା-୫ ଅନୁଯାୟୀ ସରକାରଙ୍କ ଦ୍ୱାରା ଗଠିତ 'ଶ୍ରୀଜଗନ୍ନାଥ ମନ୍ଦିର ପରିଚାଳନା କମିଟି' ଉପରେ ଶ୍ରୀମନ୍ଦିର ଓ ତତ୍‌ସଂଲଗ୍ନ ସମସ୍ତ ସ୍ଥାବର ଓ ଅସ୍ଥାବର ସମ୍ପତ୍ତିର ପରିଚାଳନା ଦାୟିତ୍ୱ ନ୍ୟସ୍ତ କରାଗଲା । କମିଟି ଆଇନ ଅନୁଯାୟୀ ସଂଘବଦ୍ଧ (body corporate) ରହିବେ ଓ ଏହାଙ୍କର ସାଧାରଣ ମୋହର (Common seal) ରହିବ । ଏହାର ଧାରାବାହିକତା ନିରବଚ୍ଛିନ୍ନ (Perpetual succession) ରହିବା ସଙ୍ଗେ ସଙ୍ଗେ ସଂଗଠିତ ରୂପରେ ମୋକଦ୍ଦମା କରିବା ଓ ମୋକଦ୍ଦମାଭୁକ୍ତ (to sue and to be sued) ବ୍ୟବସ୍ଥା ରହିଲା ।

ଏହି ଅଧିନିୟମର ୬ ଧାରା ଅନୁସାରେ ପୁରୀ ରାଜା ପରିଚାଳନା କମିଟିର ବଂଶାନୁକ୍ରମିକ ସଭାପତି (Chairman) ରହିଲେ । ପୁରୀ ଜିଲ୍ଲାପାଳ ଏହି କମିଟିର ପଦପ୍ରଯୁକ୍ତ (ex-officer) ଉପସଭାପତି ରହିଲେ । ଧାରା-୧୯ ଅନୁଯାୟୀ ଜଣେ ଅଫିସରଙ୍କୁ ପ୍ରଶାସକ (Administrator) ନିଯୁକ୍ତ କରାଗଲା । ସେ ପରିଚାଳନା କମିଟିର ପଦପ୍ରଯୁକ୍ତ ସମ୍ପାଦକ (Secretary) ଏବଂ ମୁଖ୍ୟ କାର୍ଯ୍ୟନିର୍ବାହୀ ଅଧିକାରୀ (Chief Executive Officer) ହେଲେ । ଧାରା-୨୧ରେ ପ୍ରଶାସକଙ୍କ କ୍ଷମତା ଓ କର୍ତ୍ତବ୍ୟ ଉଲ୍ଲେଖ ରହିଛି । ନିମ୍ନ ପ୍ରକାରେ ୧୨ ଜଣ ସଭ୍ୟ (ସଭାପତିଙ୍କ ସମେତ)ଙ୍କୁ ନେଇ ପରିଚାଳନା କମିଟି ଗଠନ କରାଗଲା ।

କ) ପୁରୀ ରାଜା - ଚେୟାରମ୍ୟାନ ବା ସଭାପତି

ଖ) ପୁରୀ ଜିଲ୍ଲାପାଳ - ଉପସଭାପତି

ଗ) ପ୍ରଶାସକ - ପଦପ୍ରଯୁକ୍ତ ସଭ୍ୟ

ଘ) ଦେବୋତ୍ତର କମିଶନର - ପଦପ୍ରଯୁକ୍ତ ସଭ୍ୟ

ଙ) ମୁକ୍ତିମଣ୍ଡପ ପ୍ରତିନିଧ (ଏକଜଣ) - ସଭ୍ୟ

ଚ) ଶ୍ରୀମନ୍ଦିର ସେବକମାନଙ୍କ ମଧ୍ୟରୁ (ଚାରିଜଣ) - ସଭ୍ୟ

ଛ) ମଠ ଓ ଅନ୍ୟାନ୍ୟ ଅନୁଷ୍ଠାନ (ଯାହାର କି ଶ୍ରୀମନ୍ଦିର ସେବାପୂଜା ବା ନୀତି ସହିତ ସମ୍ପର୍କ ରହିଛି) ମଧ୍ୟରୁ ଏକ ଜଣ - ସଭ୍ୟ

ଜ) ଅନ୍ୟାନ୍ୟ ଦୁଇ ଜଣ (ଉଲ୍ଲିଖିତ 'ଚ' ଓ 'ଛ' ଶ୍ରେଣୀର ହୋଇ ନଥିବେ) - ସଭ୍ୟ ।

କେବଳ ହିନ୍ଦୁଧର୍ମାବଲମ୍ବୀ ହିଁ ପରିଚାଳନା କମିଟିର ସଭ୍ୟ ହୋଇପାରିବେ । ଚେୟାରମ୍ୟାନ ଓ ପଦପ୍ରଯୁକ୍ତ ସଭ୍ୟମାନଙ୍କ ଛଡ଼ା ଅନ୍ୟ ସଭ୍ୟମାନଙ୍କର କାର୍ଯ୍ୟକାଳ ତିନି ବର୍ଷ ରହିବ ।  ଧାରା-୧୫ରେ ପରିଚାଳନା କମିଟିର କର୍ତ୍ତବ୍ୟ ଉଲ୍ଲେଖ କରାଯାଇଛି । ଧାରା ୬(କ)(୧) ଅନୁସାରେ ପରିଚାଳନା କମିଟି ସର୍ବାଧିକ ଚାରିଜଣଙ୍କୁ (କେତେକ କଟକଣା ଥାଇ) ବରିତ ସଦସ୍ୟ (co-opted member) କରିପାରିବେ ।

ଏହି ଶ୍ରୀଜଗନ୍ନାଥ ମନ୍ଦିର ଅଧିନିୟମର ବୈଧତା ଓ ସାମ୍ବିଧାନିକତାକୁ ଆହ୍ୱାନ ବା ବିରୋଧ କରି ରାଜା ରାମଚନ୍ଦ୍ରଦେବ ଓ ତାଙ୍କ ପରେ ରାଜା ବୀରକିଶୋର ଦେବ ଓଡ଼ିଶା ହାଇକୋର୍ଟରେ ଓ ସୁପ୍ରିମ୍‌କୋର୍ଟରେ ମୋକଦ୍ଦମା କରିବାରୁ ଏହି ଆଇନ କାର୍ଯ୍ୟକାରୀ ହେବାକୁ ପ୍ରାୟ ୫ ବର୍ଷ ଲାଗିଥିଲା । ରାଜାଙ୍କ ଯୁକ୍ତି ଥିଲା ଯେ, ପୁରୀ ଶ୍ରୀଜଗନ୍ନାଥ ମନ୍ଦିର ତାଙ୍କର ବ୍ୟକ୍ତିଗତ ସମ୍ପତ୍ତି । ଓଡ଼ିଶା ସରକାର ଉକ୍ତ ଅଧିନିୟମ ବଳରେ ତାଙ୍କୁ କୌଣସି କ୍ଷତିପୂରଣ ନ ଦେଇ ତାଙ୍କ ଅଧିକାରକୁ ଉଚ୍ଛେଦ କରିବା ଫଳରେ ଭାରତୀୟ ସମ୍ବିଧାନର ୧୯ ଓ ୩୧ ଧାରାର ଉଲ୍ଲଙ୍ଘନ କରାଯାଇଛି । ତାଙ୍କର ଆହୁରି ଯୁକ୍ତି ହେଲା ଯେ, ସମସ୍ତ ହିନ୍ଦୁ ମନ୍ଦିର ଓ ଦେବୋତ୍ତର ସମ୍ପତ୍ତିର ପରିଚାଳନାପାଇଁ ହିନ୍ଦୁ ଦେବୋତ୍ତର ଅଧିନିୟମ, ୧୯୫୨ (The Orissa Hindu Religious Endowment Act, 1952) ଭଳି ଏକ ସାଧାରଣ ଆଇନ ଥିବା ବେଳେ ପୁରୀ ଶ୍ରୀଜଗନ୍ନାଥ ମନ୍ଦିରପାଇଁ ସ୍ୱତନ୍ତ୍ର ଆଇନ ପ୍ରଣୟନ କରାଯିବା ଫଳରେ ଏହି ମନ୍ଦିରକୁ ଅନ୍ୟାନ୍ୟ ମନ୍ଦିରଠାରୁ ଅଲଗା କରି ବିଚାର କରାଯାଉଛି ।

ଉଭୟ ପକ୍ଷଙ୍କ (ରାଜା ଓ ରାଜ୍ୟ ସରକାରଙ୍କ) ଯୁକ୍ତି, ଆଇନର ବ୍ୟାପକ ବ୍ୟାଖ୍ୟା ଓ ବିଶ୍ଳେଷଣ କରି ମାନ୍ୟବର ହାଇକୋର୍ଟ ରାଜାଙ୍କ ଦାବି ଅଗ୍ରାହ୍ୟ କରିଥିଲେ । ରାଜା ଆଦ୍ୟ ସେବକ ହୋଇଥିବାରୁ ତାଙ୍କର ପାରମ୍ପରିକ ସେବା ଅଧିକାର ଓ ପ୍ରାପ୍ୟରେ ଆଲୋଚିତ ଆଇନରେ ହସ୍ତକ୍ଷେପ କରାଯାଇନାହିଁ । ତାଙ୍କର ବଂଶାନୁକ୍ରମିକ ଅଧ୍ୟକ୍ଷତାରେ ପରିଚାଳନା କମିଟି ପରିଚାଳିତ ହେବା ବ୍ୟବସ୍ଥା କରାଯାଇଥିବାରୁ ରାଜାଙ୍କ ସେ ଅଧିକାର ମଧ୍ୟ ସମ୍ପୂର୍ଣ୍ଣ  କ୍ଷୁଣ୍ଣ ହୋଇନାହିଁ; ବରଂ ପରିଚାଳନା ପ୍ରକ୍ରିୟାରେ ଏକ ନୂତନ ବିନ୍ୟାସ କରାଯାଇଛି ।

ଓଡ଼ିଶା ସରକାରଙ୍କ ବିଧି ବିଭାଗ (Law department)ର ଅଧିସୂଚନା ନଂ.୬୬୧୯ ତା୨୪.୧୦.୧୯୬୦ ପ୍ରକାଶ ପାଇବା ପରେ ଶ୍ରୀଜଗନ୍ନାଥ ମନ୍ଦିର ପରିଚାଳନାପାଇଁ ଗଠିତ କମିଟି ତା୨୭.୧୦.୧୯୬୦ରେ କାର୍ଯ୍ୟଭାର ଗ୍ରହଣ କଲେ (ଉକ୍ତ ଦିନ ଜିଲ୍ଲାପାଳ ଉଦୟନାଥ ପଟ୍ଟନାୟକ, ଶ୍ରୀମନ୍ଦିରର ପ୍ରଥମ ପ୍ରଶାସକ ଆନନ୍ଦ ଚନ୍ଦ୍ର ମହାପାତ୍ର, ଏସ୍.ପି., କମିଟି ସଭ୍ୟ ରମେଶ ମିତ୍ର, ବିଚିତ୍ରାନନ୍ଦ ଦାସ, ଏମାରମଠ ମହନ୍ତ ଶ୍ରୀନିବାସ ରାମାନୁଜ ଦାସ, ଦ୍ୱାରକାନାଥ ପଟ୍ଟଯୋଷୀ, ବିଶ୍ୱନାଥ ପାଢ଼ୀ, ଜଗତବନ୍ଧୁ ମହାପାତ୍ର, ଦେବୋତ୍ତର କମିଶନର ଲକ୍ଷ୍ମଣ ପଣ୍ଡା ଶ୍ରୀମନ୍ଦିରକୁ ଯାଇ ଭିତରକାଠ ପାଖରେ ଦିଅଁ ଦର୍ଶନ କରି ସେଠାରେ ଏକତିରିଶ ଟଙ୍କା

ପିଣ୍ଡିକାରେ ଦାନ କଲେ ଓ ତାହା ପରେ ସମସ୍ତେ କିଛି ସମୟ ମାଜଣା ମଣ୍ଡପରେ ବସିଥିଲେ ।) ୧୯୬୦ ମସିହା ଅକ୍ଟୋବର ମାସ ୨୭, ୨୮ଓ ୨୯ ତାରିଖରେ କ୍ରମାଗତ ତିନି ଦିନ ଧରି ପରିଚାଳନା କମିଟିର ବୈଠକ ବସିଥିଲା ।

ଓଡ଼ିଶା ହାଇକୋର୍ଟଙ୍କ ରାୟ ବିରୁଦ୍ଧରେ ରାଜା ବୀରକେଶରୀ ଦେବ ଭାରତର ସର୍ବୋଚ୍ଚ ନ୍ୟାୟାଳୟ (ସୁପ୍ରିମ୍‌କୋର୍ଟ)ରେ ଅପିଲ କରିଥିଲେ । ମାନ୍ୟବର ସୁପ୍ରିମ୍‌କୋର୍ଟ ରହିତାଦେଶ (adinterim exparte stay order) ତା୧.୧୧.୧୯୬୦ରେ ଦେବା ଫଳରେ ପୁନର୍ବାର ପୁରୀ ରାଜାଙ୍କୁ ଶ୍ରୀମନ୍ଦିର ପରିଚାଳନା କ୍ଷମତା ତା୨.୧୧.୧୯୬୦ରେ ହସ୍ତାନ୍ତର କରାଗଲା । ମାନ୍ୟବର ସୁପ୍ରିମ୍‌କୋର୍ଟ ତାଙ୍କର ୧୬.୧୨.୧୯୬୦ ତାରିଖର ଆଦେଶରେ ରହିତାଦେଶକୁ ପ୍ରତ୍ୟାହାର କରିନେଲେ । ଫଳରେ ରାଜ୍ୟ ସରକାର ବା ପରିଚାଳନା କମିଟି ତା୧୭.୧୨.୧୯୬୦ରେ ପୁନର୍ବାର ପରିଚାଳନା ଭାର ଗ୍ରହଣ କଲେ ।

ପରେ ଓଡ଼ିଶା ହାଇକୋର୍ଟର ବିଚାର ଓ ରାୟକୁ ସମର୍ଥନ କରି ସୁପ୍ରିମ୍‌କୋର୍ଟ ରାଜାଙ୍କ ଅପିଲ ଖାରଜ କଲେ । ମାନ୍ୟବର ପ୍ରଧାନ ବିଚାରପତିଙ୍କ ସମେତ ତିନି ଜଣ ବିଚାରପତିଙ୍କୁ ନେଇ ଗଠିତ ଡିଭିଜନ୍ ବେଞ୍ଚ ତାଙ୍କର ଐତିହାସିକ ରାୟରେ କହିଛନ୍ତି ଯେ, ପୁରୀର ଶ୍ରୀଜଗନ୍ନାଥ ମନ୍ଦିରର ସ୍ଥାନ ଓଡ଼ିଶାରେ ଅଦ୍ୱିତୀୟ (unique) ଯାହାର ଜାତୀୟପ୍ରାଧାନ୍ୟ (national importance) ରହିଛି । ଓଡ଼ିଶାର ଅନ୍ୟ କୌଣସି ମନ୍ଦିର ଏହା ସହିତ ତୁଳନୀୟ ନୁହେଁ । ଏହା ନିଜେ ହିଁ ଏକ ସ୍ୱତନ୍ତ୍ର ଶ୍ରେଣୀ (a class by itself) । ସମଗ୍ର ଭାରତରୁ ବହୁ ସଂଖ୍ୟକ ଯାତ୍ରୀଙ୍କୁ ଏହା ଆକୃଷ୍ଟ କରୁଥିବାରୁ ଏହାକୁ ସ୍ୱତନ୍ତ୍ର ଭାବେ ରାଜ୍ୟ ସରକାର ନିଶ୍ଚିତ ରୂପେ ବିଚାର କରିବେ ।

ଶ୍ରୀଜଗନ୍ନାଥ ମନ୍ଦିର ଅଧିନିୟମ ଅନୁଯାୟୀ ଶ୍ରୀଜଗନ୍ନାଥ ମନ୍ଦିର ପରିଚାଳିତ ହୋଇଆସୁଅଛି । ଏହି ଅଧିନିୟମରେ କିଛି କିଛି ସଂଶୋଧନ (amendment) ମଝିରେ ମଝିରେ କରାଯାଇଛି ।

ଉକ୍ତ ଶ୍ରୀଜଗନ୍ନାଥ ମନ୍ଦିର ଅଧିନିୟମ, ୧୯୫୪ ଧାରା-୧୯(୧)ରେ ଶ୍ରୀଜଗନ୍ନାଥ ମନ୍ଦିର ପାଇଁ ଜଣେ ପ୍ରଶାସକ (Administrator)ଙ୍କୁ ସରକାର ନିଯୁକ୍ତି ଦେବା ଉଲ୍ଲେଖ ଅଛି । କିନ୍ତୁ କେଉଁ ସରକାରୀ ସେବାରୁ ଏବଂ କେଉଁ ପାହ୍ୟାର ଅଫିସର ନିଯୁକ୍ତ ହେବେ ଉଲ୍ଲେଖ ନାହିଁ । କେବଳ ଲେଖାଅଛି- "...from amongst persons in their active service and professing Hindu religion."

ଅତିରିକ୍ତ ଜିଲ୍ଲାପାଳ ପାହ୍ୟାର ବରିଷ୍ଠ ଓ.ଏ.ଏସ୍. ଅଫିସର ଆନନ୍ଦ ଚନ୍ଦ୍ର ମହାପାତ୍ର ପ୍ରଥମ ପ୍ରଶାସକ ରୂପେ ତା୨୭.୧୦.୧୯୬୦ରୁ ତା୧୦.୧୧.୧୯୬୧ ପର୍ଯ୍ୟନ୍ତ କାର୍ଯ୍ୟ କରିଥିଲେ । ତାଙ୍କ ପରେ ରାଜ୍ୟ ସରକାର ସ୍ୱତନ୍ତ୍ର ବିଚାରପୂର୍ବକ ପୁରୀ ନିବାସୀ ଅବସରପ୍ରାପ୍ତ ଆଇ.ପି.ଏସ୍. ଅଫିସର ଲକ୍ଷ୍ମଣ ମିଶ୍ରଙ୍କୁ ଶ୍ରୀମନ୍ଦିର ପ୍ରଶାସକ ନିଯୁକ୍ତ କଲେ । ସେ ତା୮.୧୧.୧୯୬୫ ଯାଏଁ ଏହି ଦାୟିତ୍ୱ ନିର୍ବାହ କଲେ । ତାଙ୍କ ପରେ ପୁରୀର ଜଣେ ଜଣେ ଅତିରିକ୍ତ ଜିଲ୍ଲାପାଳ (ଏ.ଡି.ଏମ୍.), ଅର୍ଥାତ୍ ବରିଷ୍ଠ ଓ.ଏ.ଏସ୍. ଅଫିସର, ଉକ୍ତ ପଦବୀ ସହିତ ଶ୍ରୀମନ୍ଦିର ପ୍ରଶାସକ ଭାବେ କାର୍ଯ୍ୟ କରି ଆସୁଥିଲେ । ଏହି ବ୍ୟବସ୍ଥା ତା୩.୬.୧୯୯୪ ପର୍ଯ୍ୟନ୍ତ କାର୍ଯ୍ୟକାରୀ ହେଉଥିଲା । ଏହି

ତାରିଖଠାରୁ ରାଜ୍ୟ ବିଧି (Law) ବିଭାଗର ପ୍ରତ୍ୟକ୍ଷାଧୀନରେ ଥାଇ ଜଣେ ଜଣେ ଉପଶାସନ ସଚିବ (Deputy Secretary), କିମ୍ବା ଯୁଗ୍ମଶାସନ ସଚିବ (Joint Secretary) (ବରିଷ୍ଠ ଓ.ଏ.ଏସ୍. ଅଫିସର) ପ୍ରଶାସକ ଭାବରେ କାର୍ଯ୍ୟ କଲେ ।

ରାଜ୍ୟ ସରକାର ଶ୍ରୀଜଗନ୍ନାଥ ମନ୍ଦିର ଅଧିନିୟମ, ୧୯୫୪ରେ ସଂଶୋଧନ କରି ଶ୍ରୀଜଗନ୍ନାଥ ମନ୍ଦିର (ସଂଶୋଧନ) ଅଧିନିୟମ, ୨୦୦୪ ପ୍ରଣୟନ କଲେ । ଏହି Shri Jagannath Temple (Amendment) Act, 2004 (ବିଧି ବିଭାଗର ଅଧିସୂଚନା ତା୨୭.୧୨.୨୦୦୪) ଓଡ଼ିଶା ଗେଜେଟ୍ (ଏକଷ୍ଟ୍ରାଅଡିନାରି, ତା.୨୭.୧୨.୨୦୦୪)ରେ ପ୍ରକାଶିତ ହେଲା ।

ଏହି ସଂଶୋଧିତ ଅଧିନିୟମ ଅନୁସାରେ ଶ୍ରୀମନ୍ଦିର ପରିଚାଳନା ସଂସ୍ଥାକୁ ଏକ ନୂଆ ରୂପ ପ୍ରଦାନ କରାଯିବା ସଙ୍ଗେ ସଙ୍ଗେ ଉନ୍ନତ କରାଗଲା । ଜଣେ କାର୍ଯ୍ୟକାରୀ ସଭାପତି (working chairman) ରହିବାର ବ୍ୟବସ୍ଥା କରାଗଲା । ଅତିରିକ୍ତ ମୁଖ୍ୟ ଶାସନ ସଚିବ ପାହ୍ୟାଠାରୁ ନିମ୍ନ ହୋଇନଥିବା ଜଣେ ଅଫିସର ପଦପ୍ରଯୁକ୍ତ ଭାବରେ କାର୍ଯ୍ୟକାରୀ ସଭାପତି ରହିଲେ ।

ଜଣେ ଆଇ.ଏ.ଏସ୍. ଅଫିସର, କମିଶନର ପାହ୍ୟାଠାରୁ ନିମ୍ନ ହୋଇନଥିବା (ରାଜସ୍ୱ ଡିଭିଜନାଲ କମିଶନର ସମତୁଲ୍ୟ) ଶ୍ରୀମନ୍ଦିରର ମୁଖ୍ୟ ପ୍ରଶାସକ (Chief Administrator) ରହିଲେ ।

ପୁରୀ ଜିଲ୍ଲାପାଳ ପଦପ୍ରଯୁକ୍ତ ଶ୍ରୀମନ୍ଦିରର ଉପମୁଖ୍ୟ ପ୍ରଶାସକ (Deputy Chief Administrator) ରହିଲେ ।

ମୁଖ୍ୟ ପ୍ରଶାସକଙ୍କ ଅଧୀନରେ ତାଙ୍କୁ ସହାୟତା କରିବାପାଇଁ ତିନିଜଣ ପ୍ରଶାସକ (Administrator)ଙ୍କୁ ରଖାଗଲା । ସେମାନେ ହେଲେ-(୧) ପ୍ରଶାସକ (ଉନ୍ନୟନ) - ଆଇ.ଏ.ଏସ୍. କିମ୍ବା ଓ.ଏ.ଏସ୍. ଅଫିସର, ଯୁଗ୍ମ ଶାସନ ସଚିବ ପାହ୍ୟାଠାରୁ ନିମ୍ନ ହୋଇନଥିବ । (୨) ପ୍ରଶାସକ (ନୀତି)- ଓ.ଏ.ଏସ୍. ଅଫିସର ଯାହାଙ୍କ ପାହ୍ୟା ଯୁଗ୍ମ ଶାସନ ସଚିବ ପାହ୍ୟାଠାରୁ ନିମ୍ନ ହୋଇ ନଥିବ । (୩) ପ୍ରଶାସକ (ସୁରକ୍ଷା)- ଆଇ.ପି.ଏସ୍. କିମ୍ବା ଓ.ପି.ଏସ୍. ଅଫିସର, ଯାହାଙ୍କ ପାହ୍ୟା ଅତିରିକ୍ତ ଏସ୍.ପି.ଙ୍କ ଠାରୁ ନିମ୍ନ ହୋଇ ନଥିବ ।

ଏମାନଙ୍କ ବ୍ୟତୀତ ବିଭିନ୍ନ ବିଭାଗରୁ ଆସି ଉପ ପ୍ରଶାସକ (Deputy Administrator) ଓ ସହକାରୀ ପ୍ରଶାସକ (Asst. Administrator) ଭାବରେ କେତେ ଜଣ ଅଫିସର କାର୍ଯ୍ୟ କଲେ ।

ପୂର୍ବର ଅଧିନିୟମରେ ସଭାପତିଙ୍କ ସମେତ ବାର ଜଣ ସଭ୍ୟଙ୍କୁ ନେଇ ପରିଚାଳନା କମିଟି ଗଠନ କରାଯାଉଥିଲା । ସଂପୃକ୍ତ ଧାରା ୬(୧)ରେ ପ୍ରତିସ୍ଥାପନ କରାଯାଇ ସଭାପତିଙ୍କ ସମେତ ଅଠର ଜଣ ସଭ୍ୟଙ୍କୁ ପରିଚାଳନା କମିଟିରେ ନିଆଗଲା ।

ଶ୍ରୀଜଗନ୍ନାଥ ମନ୍ଦିର (ସଂଶୋଧନ) ଅଧିନିୟମ, ୨୦୦୪ରେ ଥିବା ବ୍ୟବସ୍ଥା ଅନୁଯାୟୀ ବର୍ତ୍ତମାନ ଶ୍ରୀଜଗନ୍ନାଥ ମନ୍ଦିରର ପରିଚାଳନା କମିଟି ନିମ୍ନମତେ ଗଠନ କରାଯାଇଛି ।

କ) ପୁରୀ ରାଜା - ସଭାପତି

ଖ) ଅତିରିକ୍ତ ମୁଖ୍ୟ ଶାସନ ସଚିବ ପାହ୍ୟାଠାରୁ ନିମ୍ନ ହୋଇନଥିବା ଜଣେ ଅଫିସର - କାର୍ଯ୍ୟକାରୀ ସଭାପତି (ପଦ ପ୍ରଯୁକ୍ତ)

ଗ) ମୁଖ୍ୟ ପ୍ରଶାସକ - ସଭ୍ୟ ଓ ସଂପାଦକ (ପଦପ୍ରଯୁକ୍ତ)

ଘ) ଜିଲ୍ଲାପାଳ, ପୁରୀ - ସଭ୍ୟ (ପଦ ପ୍ରଯୁକ୍ତ)

ଙ) ଦେବୋତ୍ତର କମିଶନର, ଓଡ଼ିଶା - ସଭ୍ୟ (ପଦପ୍ରଯୁକ୍ତ)

ଚ) ଅତିରିକ୍ତ ଶାସନ ସଚିବ, ବିଧିବିଭାଗ (ଶ୍ରୀଜଗନ୍ନାଥ ମନ୍ଦିର ପ୍ରଶାସନ ଦାୟିତ୍ୱରେ ଥିବା) - ସଭ୍ୟ (ପଦ ପ୍ରଯୁକ୍ତ)

ଛ) ପୋଲିସ ସୁପିରିଣ୍ଟେଣ୍ଡେଣ୍ଟ, ପୁରୀ - ସଭ୍ୟ (ପଦ ପ୍ରଯୁକ୍ତ)

ଜ) ସୁପରିନ୍‌ଟେଣ୍ଡିଙ୍ଗ୍ ଆର୍କିଓଲୋଜିଷ୍ଟ, ଓଡ଼ିଶା ସର୍କଲ, ଭୁବନେଶ୍ୱର (ଭାରତୀୟ ପ୍ରତ୍ନତତ୍ତ୍ୱ ସର୍ଭେ) - ସଭ୍ୟ (ପଦପ୍ରଯୁକ୍ତ)

ଝ) ମୁକ୍ତିମଣ୍ଡପ ଉପରେ ବସିପାରିବା ଅଧିକାର ପାଇଥିବା ବ୍ୟକ୍ତିମାନଙ୍କ ମଧ୍ୟରୁ ସରକାରଙ୍କ ଦ୍ୱାରା ମନୋନୀତ ଜଣେ ସଭ୍ୟ

ଞ) ଶ୍ରୀମନ୍ଦିର ସେବକମାନଙ୍କ ମଧ୍ୟରୁ ସରକାରଙ୍କଦ୍ୱାରା ମନୋନୀତ ପାଞ୍ଚ ଜଣ- ସଭ୍ୟ

ଟ) ଶ୍ରୀମନ୍ଦିରର ସେବାପୂଜା କିମ୍ବା ନୀତି ସହିତ ସମ୍ପର୍କିତ ମଠ ଓ ଅନ୍ୟାନ୍ୟ ଅନୁଷ୍ଠାନ କିମ୍ବା କୌଣସି ହିନ୍ଦୁଧାର୍ମିକ/ଆଧ୍ୟାତ୍ମିକ ସଂଗଠନ ମଧ୍ୟରୁ ସରକାରଙ୍କଦ୍ୱାରା ମନୋନୀତ ଜଣେ- ସଭ୍ୟ

ଠ) ଉଲ୍ଲିଖିତ (ଞ) ଓ (ଟ) ଶ୍ରେଣୀରେ ଅନ୍ତର୍ଭୁକ୍ତ ହୋଇନଥିବା ଅନ୍ୟାନ୍ୟ ତିନି ଜଣ ବ୍ୟକ୍ତି (ଜଣେ ସେଥିରୁ ଚାଟାର୍ଡ ଆକାଉଣ୍ଟାଣ୍ଟ୍ ହୋଇଥିବା ଆବଶ୍ୟକ)- ସଭ୍ୟ ।

କେବଳ ହିନ୍ଦୁଧର୍ମାବଲମ୍ବୀମାନେ ପରିଚାଳନା କମିଟିର ସଭ୍ୟ ହୋଇପାରିବେ ।

ଶ୍ରୀ ସୁରେଶଚନ୍ଦ୍ର ମହାପାତ୍ର, ଆଇ.ଏ.ଏସ୍., ପ୍ରଥମ କରି ମୁଖ୍ୟ ପ୍ରଶାସକ ଭାବରେ ୨୦୦୫ ମସିହା ଫେବ୍ରୁଆରି ୨୪ ତାରିଖରେ ଯୋଗଦାନ କରିଥିଲେ । କେତେ ମାସ ପରେ ସେ କେନ୍ଦ୍ରାଞ୍ଚଳ ରାଜସ୍ୱ କମିଶନର (ଆର୍.ଡି.ସି.) ନିଯୁକ୍ତ ହେଲେ ଓ ଉଭୟ ଦାୟିତ୍ୱରେ ରହି କାର୍ଯ୍ୟ କଲେ । ତାଙ୍କ ପରଠାରୁ କେନ୍ଦ୍ରାଞ୍ଚଳ ଆର୍.ଡି.ସି. ଶ୍ରୀମନ୍ଦିରର ମୁଖ୍ୟ ପ୍ରଶାସକ ଭାବରେ କାମ କରି ଆସୁଥିଲେ । ସଂପ୍ରତି ମୁଖ୍ୟ ପ୍ରଶାସକ ଡକ୍ଟର ଅରବିନ୍ଦ ପାଢ଼ୀ ରାଜ୍ୟ ପର୍ଯ୍ୟଟନ ବିଭାଗର ଶାସନ ସଚିବ ଭାବରେ କାର୍ଯ୍ୟ କରୁଛନ୍ତି ।



## ପରିଶିଷ୍ଟ - ୧

# ପୁରାଣ ଓ ଲୋକକଥାରେ ଶ୍ରୀଜଗନ୍ନାଥ

### ସ୍କନ୍ଦପୁରାଣ

ସଂସ୍କୃତ ପୁରାଣମାନଙ୍କ ମଧ୍ୟରୁ କେବଳ ସ୍କନ୍ଦ ପୁରାଣର ଉତ୍କଳ ଖଣ୍ଡ (ବା ପୁରୁଷୋତ୍ତମ କ୍ଷେତ୍ର ମାହାତ୍ମ୍ୟ)ରେ ପୁରୁଷୋତ୍ତମ କ୍ଷେତ୍ର ଓ ମହାପ୍ରଭୁ ଜଗନ୍ନାଥ ଚରିତର ତୁଳନାତ୍ମକ ଭାବରେ ବିସ୍ତୃତ ବର୍ଣ୍ଣନା ରହିଛି। ମହର୍ଷି ବ୍ୟାସଦେବ ସ୍କନ୍ଦ ପୁରାଣର ପ୍ରଣେତା ହେଲେ ହେଁ ଉତ୍କଳ ଖଣ୍ଡର ରଚନା ପରବର୍ତ୍ତୀ କାଳରେ ହୋଇଥିବା ଜଣାଯାଏ । ବିଦ୍ୱାନ ଲେଖକ ତଥା ଗବେଷକମାନଙ୍କ ମତକୁ ବିଚାରକୁ ନେଇ ଏହି ଖଣ୍ଡର ରଚନାକାଳ ୮୦୦ରୁ ୧୩୦୦ ଖ୍ରୀଷ୍ଟାବ୍ଦ ମଧ୍ୟରେ ସ୍ଥିର କରାଯାଇପାରେ । ଏହି ଖଣ୍ଡ ବା 'ପୁରୁଷୋତ୍ତମ କ୍ଷେତ୍ର ମାହାତ୍ମ୍ୟ'ର ବିଷୟବସ୍ତୁ ସଂକ୍ଷେପରେ ନିମ୍ନରେ ପ୍ରଦାନ କରାଗଲା ।

ସତ୍ୟ ଯୁଗରେ ସୂର୍ଯ୍ୟବଂଶରେ ଇନ୍ଦ୍ରଦ୍ୟୁମ୍ନ ନାମକ ଜଣେ ମହାରାଜା ଥିଲେ । ତାଙ୍କ ରାଜ୍ୟର ନାମ ମାଳବ ଓ ରାଜଧାନୀର ନାମ ଅବନ୍ତୀ ଥିଲା । ସେ ଥିଲେ ପରମ ଭକ୍ତ, ଧାର୍ମିକ , ଜିତେନ୍ଦ୍ରିୟ ଓ ପ୍ରଜାବତ୍ସଳ । ଦିନେ ସେ ତାଙ୍କର ଦେବାର୍ଚ୍ଚନ ଗୃହରେ ସମବେତ ସାଧୁସନ୍ଥ, ବ୍ରାହ୍ମଣ ପ୍ରଭୃତିଙ୍କୁ ଏକ ପ୍ରଶ୍ନ ପଚାରିଲେ- ''ଯତ୍ର ସାକ୍ଷାଜ୍ଜଗନ୍ନାଥଂ ପଶ୍ୟାମ୍ୟେତେନ ଚକ୍ଷୁସା ?'' ଅର୍ଥାତ୍, (ସେହି ଉତ୍ତମ କ୍ଷେତ୍ର କେଉଁଠାରେ ଅଛି) ଯେଉଁଠାରେ ସାକ୍ଷାତ ଜଗନ୍ନାଥଙ୍କୁ ଚର୍ମ ଚକ୍ଷୁରେ ଦର୍ଶନ କରିହେବ ? ସେଠାରେ ଉପସ୍ଥିତ ଥିବା ଜଣେ ଜଟାଜୁଟଧାରୀ ସନ୍ନ୍ୟାସୀ ବିନୟପୂର୍ବକ ଉତ୍ତର ଦେଲେ- ହେ ରାଜନ୍ ! ମୁଁ ଅନେକ ତୀର୍ଥ ଭ୍ରମଣ କରିଛି ଏବଂ ଶୁଣିଛି ଯେ ଭାରତବର୍ଷରେ ଓଡ୍ର ନାମରେ ଖ୍ୟାତ ଦେଶର ସମୁଦ୍ର ତୀରରେ ପୁରୁଷୋତ୍ତମ ନାମକ ଏକ କ୍ଷେତ୍ର ଅଛି । ସେଠାରେ ଏକ ନୀଳ ପର୍ବତ ବିଦ୍ୟମାନ, ଯା'ର ଚତୁର୍ଦ୍ଦିଗ ନାନା ପ୍ରକାର ବୃକ୍ଷଲତାଦ୍ୱାରା ସମାବୃତ ଓ ଯା'ର ବକ୍ଷସ୍ଥଳରେ ମନୋହର କଳ୍ପବୃକ୍ଷଟିଏ ଅଛି। ଦକ୍ଷିଣ ଦିଗରେ ରୋହିଣୀ ନାମକ ଏକ କୁଣ୍ଡ ଅଛି । ଉକ୍ତ କୁଣ୍ଡର ପୂର୍ବ ଭାଗରେ ନୀଳକାନ୍ତମଣିନିର୍ମିତ ବାସୁଦେବ-ଜଗନ୍ନାଥଙ୍କର ମୂର୍ତ୍ତି ବିରାଜିତ । ସେ ଶଙ୍ଖ, ଚକ୍ର ଓ ଗଦା ଧାରଣ ପୂର୍ବକ ଅବସ୍ଥାନ କରିଛନ୍ତି । ସେ କୃପାନିଧି ଦର୍ଶନମାତ୍ରେ ସଭିଙ୍କୁ ମୁକ୍ତି ପ୍ରଦାନ କରନ୍ତି ।

ନିଜ ରାଜପୁରୋହିତଙ୍କ ପରାମର୍ଶରେ ଇନ୍ଦ୍ରଦ୍ୟୁମ୍ନ ରାଜପୁରୋହିତଙ୍କ ଭାଇ ବିଦ୍ୟାପତିଙ୍କୁ ନୀଳମାଧବଙ୍କ ସନ୍ଧାନ କରି ସବିଶେଷ ସମ୍ବାଦ ଆଣିବାକୁ ଉତ୍ର ଦେଶକୁ ପଠାଇଲେ । ନୀଳାଚଳରେ ବିଦ୍ୟାପତିଙ୍କର ଭେଟ ହେଲା ଶବର ରାଜା ବିଶ୍ୱାବସୁଙ୍କ ସହିତ । ସେ ବିଦ୍ୟାପତିଙ୍କୁ ଆଦର ଅଭ୍ୟର୍ଥନା କଲେ ଓ ବିଦ୍ୟାପତିଙ୍କ ଆଗମନର ଅଭିପ୍ରାୟ ଜାଣିଲେ । ବିଶ୍ୱାବସୁ ଚିନ୍ତାରେ ପଡ଼ିଲେ । ସେ ଜାଣିଥିଲେ ଯେ ଦିନେ ନୀଳମାଧବ ଭୂମିତଳେ ଅନ୍ତର୍ହିତ ହେବେ ଓ ଇନ୍ଦ୍ରଦ୍ୟୁମ୍ନ ନାମକ ଏକ ପରାକ୍ରମଶାଳୀ ନରପତି ଏ ସ୍ଥାନକୁ ଆସି ଶହେ ଅଶ୍ୱମେଧ ଯଜ୍ଞ କରି ବିଷ୍ଣୁଙ୍କୁ ଚାରିଗୋଟି ଦାରୁମୂର୍ତ୍ତିରେ ସ୍ଥାପନ କରାଇବେ । ନିରୁପାୟ ବିଶ୍ୱାବସୁ ବିଦ୍ୟାପତିଙ୍କ ହାତ ଧରି ଦୁର୍ଗମ କଣ୍ଟକମୟ ପଥରେ ବାଟ କଢ଼ାଇ ନେଇ ନୀଳାଚଳ ଉପରେ ନୀଳମାଧବଙ୍କୁ ଦର୍ଶନ କରାଇଲେ । ବେଦଜ୍ଞ ବ୍ରାହ୍ମଣ ବିଦ୍ୟାପତି ଭାବ ବିହ୍ୱଳ ହୋଇ ସ୍ତୁତି କଲେ ।

ପ୍ରଧାନ ପୁରୁଷାତୀତ, ସର୍ବବ୍ୟାପିନ- ପରାତ୍ପର !
ଚରାଚର ପରିଣାମ, ପରମାର୍ଥ, ନମୋଽସ୍ତୁତେ ।

× × ×

ନମସ୍ତେ କମଳାକାନ୍ତ ନମସ୍ତେ କମଳାନନ ।
ନମଃ କମଳପତ୍ରାକ୍ଷ ତ୍ରାହି ମାଂ ପୁରୁଷୋତ୍ତମ ॥

ବିଶ୍ୱାବସୁଙ୍କ ଗୃହରେ ଦିବ୍ୟ ମହାପ୍ରସାଦ ସେବନ କରି ବିଦ୍ୟାପତି ବିଦାୟ ନେଇ ଅବନ୍ତୀ ଯାତ୍ରା କଲେ । ତାଙ୍କଠାରୁ ସମସ୍ତ ସମ୍ବାଦ ପାଇ ରାଜା ଇନ୍ଦ୍ରଦ୍ୟୁମ୍ନ ଯଥା ଶୀଘ୍ର ନୀଳାଚଳ ଅଭିମୁଖେ ପଟୁଆରରେ ବାହାରିଲେ । ତାଙ୍କ ସହିତ ସୈନ୍ୟସାମନ୍ତ, ଆଗ୍ରହୀ ପ୍ରଜାଗଣ, ବ୍ୟବସାୟୀ, ନଟ, ଭାଟ ଏପରିକି କେତେଜଣ ବେଶ୍ୟା ବାହାରିଲେ । ଉତ୍କଳ ଦେଶର ରାଜା ଅବନ୍ତୀରୁ ଆଗତ ରାଜାଙ୍କୁ ସମ୍ବର୍ଦ୍ଧନା, ସ୍ୱାଗତ ଜଣାଇଲେ । ବିଦ୍ୟାପତିଙ୍କ ପ୍ରତ୍ୟାବର୍ତ୍ତନ ପରେ ଏକ ଝଡ଼ରେ ପ୍ରଭୁ ନୀଳମାଧବ ବାଲୁକା ରାଶିରେ ଅନ୍ତର୍ହିତ ହୋଇଯାଇଥିଲେ । ଉତ୍କଳାଧିପତିଙ୍କ ଠାରୁ ଏ ଦୁଃସମ୍ବାଦ ପାଇ ଇନ୍ଦ୍ରଦ୍ୟୁମ୍ନ ଗଭୀର ଦୁଃଖରେ ଭାଙ୍ଗି ପଡ଼ିଲେ । ତାଙ୍କ ସଙ୍ଗରେ ଆସିଥିବା ଦେବର୍ଷି ନାରଦ ପ୍ରବୋଧନା ଦେଇ କହିଥିଲେ ଯେ ଅନ୍ତର୍ହିତ ବିଗ୍ରହ ପୁନରାୟ ଅବତୀର୍ଣ୍ଣ ହୋଇ ଦର୍ଶନ ଦେବେ । ରାଜା ଇନ୍ଦ୍ରଦ୍ୟୁମ୍ନ ଉତ୍କଳ ଦେଶକୁ ପ୍ରବେଶ ପଥରେ ଚର୍ଚ୍ଚିକା ଠାକୁରାଣୀ (ବାଙ୍କୀର)ଙ୍କ ଦର୍ଶନ କରି ପୂଜାର୍ଚ୍ଚନା କରିଥିଲେ । ଏକାମ୍ରକାନନ (ଭୁବନେଶ୍ୱର)ଠାରେ ଶିବଙ୍କୁ ସ୍ତୁତି କରିବାରୁ ଶିବ ପ୍ରସନ୍ନ ହୋଇ ଇନ୍ଦ୍ରଦ୍ୟୁମ୍ନଙ୍କୁ କହିଥିଲେ ଯେ ତାଙ୍କର ମନୋବାଞ୍ଛା ଶୀଘ୍ର ପୂରଣ ହେବ । ଶିବ ନାରଦଙ୍କୁ ନିର୍ଦ୍ଦେଶ ଦେଇଥିଲେ ଯେ ଇନ୍ଦ୍ରଦ୍ୟୁମ୍ନଙ୍କୁ ସେ ପୁରୁଷୋତ୍ତମ କ୍ଷେତ୍ରକୁ ନେଇ ଯାଆନ୍ତୁ । ସେଠାରେ ଇନ୍ଦ୍ରଦ୍ୟୁମ୍ନ ନୃସିଂହ ବିଗ୍ରହ ସ୍ଥାପନା କରି ସହସ୍ର ଅଶ୍ୱମେଧ ଯଜ୍ଞ ସମାପ୍ତ କଲେ ଦାରୁବ୍ରହ୍ମ ଜଗନ୍ନାଥ ପ୍ରକଟ ହେବେ । ଶିବଙ୍କ ଆଦେଶକୁ ପାଳନ କରି ନାରଦ ଇନ୍ଦ୍ରଦ୍ୟୁମ୍ନଙ୍କୁ ନେଇ ନୀଳାଚଳ ଅଭିମୁଖେ ଯାତ୍ରା କଲେ । ବାଟରେ କପୋତେଶ୍ୱର ଶିବଙ୍କୁ ଓ ବିଲେଶ୍ୱରଙ୍କୁ ଦର୍ଶନ କରି ଶ୍ରୀକ୍ଷେତ୍ର ସୀମାରେ ବିରାଜିତ ନୀଳକଣ୍ଠ ମହାଦେବଙ୍କ ନିକଟରେ ପହଞ୍ଚିଲେ ।

ଇନ୍ଦ୍ରଦ୍ୟୁମ୍ନ ଯଥାସମୟରେ ଅଶ୍ୱମେଧ ଯଜ୍ଞ କରାଇଲେ । ଯଜ୍ଞାନୁଷ୍ଠାନ ପୂର୍ବରୁ ସେ ନରସିଂହ ମୂର୍ତ୍ତିଙ୍କୁ ଦର୍ଶନ କରିବାର ସୌଭାଗ୍ୟ ଲାଭ କରିଥିଲେ । ଯଜ୍ଞର ଶେଷ ରାତ୍ରରେ ବିଷ୍ଣୁ ଦାରୁ ରୂପରେ ମହୋଦଧି କୂଳରେ ଦର୍ଶନ ଦେବେ ବୋଲି ଇନ୍ଦ୍ରଦ୍ୟୁମ୍ନଙ୍କୁ ସ୍ୱପ୍ନରେ ଜଣାଇଥିଲେ । ସତକୁ ସତ ବିଶେଷ ଲକ୍ଷଣଯୁକ୍ତ ଦାରୁ ସମୁଦ୍ରରେ ଭାସି ଆସିଲା । ରାଜା ମହା ଉତ୍ସବ ସହକାରେ ପବିତ୍ର ଦାରୁକୁ ନେଇ ମହାବେଦୀ ଉପରେ ସ୍ଥାପନ କରାଇଲେ । ସ୍ୱପ୍ନବାଣୀ ଅନୁସାରେ ଜଣେ ବୃଦ୍ଧ ବର୍ଦ୍ଧକୀ ଉପସ୍ଥିତ ହୋଇ ଚତୁର୍ଦ୍ଧାମୂର୍ତ୍ତି ନିର୍ମାଣ କରିବାର ଦାୟିତ୍ୱ ନେଲେ । ଏହି ବର୍ଦ୍ଧକୀ ଥିଲେ ସ୍ୱୟଂ ବିଷ୍ଣୁ । ଗୋପନରେ ବିଗ୍ରହମାନ ନିର୍ମାଣର ପନ୍ଦର ଦିନ ପରେ ଚତୁର୍ଦ୍ଧାମୂର୍ତ୍ତି ଅର୍ଥାତ୍ ବଳଭଦ୍ର, ସୁଭଦ୍ରା, ଜଗନ୍ନାଥ ଓ ସୁଦର୍ଶନ ପ୍ରକାଶମାନ ହେଲେ । କିନ୍ତୁ ଶିଳ୍ପୀ ଅନ୍ତର୍ଦ୍ଧାନ ହୋଇଗଲେ । ପୁନର୍ବାର ଦୈବୀବାଣୀ ହେଲା ''ରାଜନ୍ ! ଚତୁର୍ଦ୍ଧାମୂର୍ତ୍ତିଙ୍କୁ ପଟବସ୍ତ୍ର ଦ୍ୱାରା ଆବୃତ କରି ଚିତ୍ରକର ଦ୍ୱାରା ନିଜ ନିଜ ବର୍ଣ୍ଣରେ ଚିତ୍ରିତ କର । ନୀଳାଚଳର ଉପରିଭାଗରେ କଳ୍ପବୃକ୍ଷର ବାୟୁକୋଣରେ ଶତହସ୍ତ ଦୂରରେ ବିରାଜିତ ନୃସିଂହଙ୍କ ଉତ୍ତର ଭାଗରେ ଥିବା ପ୍ରଶସ୍ତ ଭୂମିରେ ସହସ୍ର ହାତ ଉଚ୍ଚ ଓ ତାହାର ଉପଯୋଗୀ ଆୟତନଦ୍ୱାରା ଏକ ସୁଦୃଢ଼ ପ୍ରାସାଦ ନିର୍ମାଣ କରି ତହିଁରେ ମୂର୍ତ୍ତିମାନଙ୍କୁ ସ୍ଥାପନ କର । ପୂର୍ବେ ନୀଳମାଧବଙ୍କୁ ବିଶ୍ୱାବସୁ ଶବର ଗଭୀର ଭକ୍ତିର ସହିତ ପୂଜାର୍ଚ୍ଚନା କରୁଥିଲା । ତା'ର ଓ ବିଦ୍ୟାପତିଙ୍କ ବଂଶଜାତ ସନ୍ତାନମାନେ ଏହି ବିଗ୍ରହମାନଙ୍କର ଲେପ, ସଂସ୍କାର ଓ ସକଳ ଯଜ୍ଞୀୟ ଉତ୍ସବାଦି କର୍ମରେ ସେବକ ଭାବେ ନିଯୁକ୍ତ ହେବେ ।''

ଦୈବାଦେଶ ଅନୁଯାୟୀ ଇନ୍ଦ୍ରଦ୍ୟୁମ୍ନ ଅନ୍ୟାନ୍ୟ ରାଜାମାନଙ୍କ ସହାୟତାରେ ଓ ନିଜର ସମସ୍ତ ସମ୍ପତ୍ତି ବ୍ୟୟରେ ଏକ ଅଭୂତପୂର୍ବ ମନ୍ଦିର ନିର୍ମାଣ କଲେ । ତା'ପରେ ବିଗ୍ରହମାନଙ୍କ ପ୍ରତିଷ୍ଠାପାଇଁ ବ୍ରହ୍ମାଙ୍କୁ ପୁରୋହିତ ଭାବରେ ନିମନ୍ତ୍ରଣ କରିବାପାଇଁ ନାରଦଙ୍କ ସହିତ ବ୍ରହ୍ମଲୋକକୁ ଗମନ କଲେ । ବ୍ରହ୍ମାଙ୍କୁ ଭେଟିଲା ବେଳକୁ ବ୍ରହ୍ମା ସଂଗୀତ ଶୁଣୁଥିଲେ । ଦେବଲୋକରେ ଯାହା ସ୍ୱଳ୍ପକାଳ, ମର୍ତ୍ତ୍ୟଲୋକରେ ତାହା ମନ୍ୱନ୍ତର । ଦେବଲୋକରେ ଥିବା ଭିତରେ କେବଳ ଇନ୍ଦ୍ରଦ୍ୟୁମ୍ନଙ୍କ ବଂଶରୁ ନୁହେଁ ଅନ୍ୟାନ୍ୟ ନୃପତିଙ୍କ ବଂଶରୁ କେତେ ଯେ ନୃପତି ଲୋପ ପାଇଗଲେଣି ଓ ସତ୍ୟଯୁଗ ଅତିକ୍ରାନ୍ତ ହୋଇଗଲାଣି । ବ୍ରହ୍ମାଙ୍କ ସାନ୍ନିଧ୍ୟରେ ଥିବାରୁ ଇନ୍ଦ୍ରଦ୍ୟୁମ୍ନ ଜରା ଓ ମୃତ୍ୟୁର ବଶୀଭୂତ ହୋଇ ନାହାନ୍ତି । କିନ୍ତୁ ମର୍ତ୍ତ୍ୟଲୋକରେ ବିଷ୍ଣୁଙ୍କର ଦାରୁମୂର୍ତ୍ତି ଓ ପ୍ରାସାଦ ବିଦ୍ୟମାନ ରହିଛି । ବ୍ରହ୍ମା ନିର୍ଦ୍ଦେଶ ଦେଲେ ଇନ୍ଦ୍ରଦ୍ୟୁମ୍ନଙ୍କୁ- ''ଶୀଘ୍ର ତୁମେ ମର୍ତ୍ତ୍ୟଲୋକକୁ ଯାଇ ଦେବ ଓ ଦେବମନ୍ଦିରକୁ ସ୍ୱୀୟ ଆୟତ୍ତକୁ ଆଣ ଓ ପ୍ରତିଷ୍ଠା ପାଇଁ ଦ୍ରବ୍ୟ ଆୟୋଜନ କର । ମୁଁ ତୁମ ପଛେ ପଛେ ଯାଇ ସେଠାରେ ପହଞ୍ଚିବି ।'' ନାରଦ, ବୃହସ୍ପତି ଓ ଅନ୍ୟ ଦେବଗଣଙ୍କ ସଂଗେ ଇନ୍ଦ୍ରଦ୍ୟୁମ୍ନ ଭୂତଳକୁ ଆସିଲେ । ସେ ଫେରିବା ପରେ ଦେଖିଲେ ଯେ, ମନ୍ଦିରଟି ଇତିମଧ୍ୟରେ ପୂର୍ଣ୍ଣାଙ୍ଗ ପ୍ରାପ୍ତି ହୋଇଅଛି । ନାରଦଙ୍କ ପରାମର୍ଶରେ ରାଜା ପୂଜା ସାମଗ୍ରୀ ସଂଗ୍ରହ କଲେ । ନାରଦ ନିଜେ ତିନିଟି ରଥ ନିର୍ମାଣ ଓ ପ୍ରତିଷ୍ଠା କଲେ । ସେହି ରଥମାନଙ୍କରେ ମୂର୍ତ୍ତିମାନଙ୍କୁ ବସାଇ ମହାବେଦୀକୁ ଆଣିଲେ ।

ଇନ୍ଦ୍ରଦ୍ୟୁମ୍ନ ବ୍ରହ୍ମଲୋକରେ ଥିବା ସମୟରେ ଗାଲ ନାମକ ଜଣେ ରାଜା ଇନ୍ଦ୍ରଦ୍ୟୁମ୍ନଙ୍କ ମନ୍ଦିରକୁ କରାୟତ୍ତ କରି ମାଧବ ନାମକ ଦାରୁ ମୂର୍ତ୍ତି ସେଠାରେ ସ୍ଥାପନ କରି ପୂଜା କରୁଥିଲେ । ଇନ୍ଦ୍ରଦ୍ୟୁମ୍ନ

ଫେରି ଆସିବା ପରେ ଅନ୍ୟ ଏକ ଛୋଟିଆ ମନ୍ଦିର ନିର୍ମାଣ କରି ଗାଲ ରାଜାଙ୍କଦ୍ୱାରା ସ୍ଥାପିତ ମାଧବ ମୂର୍ତ୍ତିଙ୍କୁ ସେଠାରେ ରଖିବା ଖବର ପାଇ କ୍ରୋଧରେ ଗାଲ ରାଜା ସୈନ୍ୟସାମନ୍ତ ନେଇ ନୀଳାଚଳରେ ପହଞ୍ଚିଲେ । କିନ୍ତୁ ପହଞ୍ଚିବା ପରେ ଇନ୍ଦ୍ରଦ୍ୟୁମ୍ନଙ୍କ ବ୍ରହ୍ମଲୋକ ଯାତ୍ରା ଖବର ଶୁଣି ଦେବତାଙ୍କ ଉପସ୍ଥିତି ଦେଖି ଓ ବ୍ରହ୍ମା ସ୍ୱୟଂ ପ୍ରତିଷ୍ଠାପାଇଁ ଆସୁଛନ୍ତି ଜାଣିବା ପରେ ସେ ବିବାଦ ସୃଷ୍ଟି ନକରି ଇନ୍ଦ୍ରଦ୍ୟୁମ୍ନଙ୍କୁ ପ୍ରଣତି ଜଣାଇଲେ ଏବଂ ସହଯୋଗ କଲେ । ପ୍ରତିଷ୍ଠା ପରେ ମନ୍ଦିରଟି ଗାଲଙ୍କ ଦାୟିତ୍ୱରେ ରଖି ବ୍ରହ୍ମଲୋକ ଚାଲିଯିବେ ବୋଲି ଇନ୍ଦ୍ରଦ୍ୟୁମ୍ନ ଆଶ୍ୱାସନା ଦେଇଥିଲେ । ବ୍ରହ୍ମା ମନ୍ଦିରକୁ ପ୍ରତିଷ୍ଠା କରିବାକୁ ପହଞ୍ଚିଲେ । ଚତୁର୍ଦ୍ଧାମୂର୍ତ୍ତିଙ୍କୁ  ମହାବେଦୀ (ଗୁଣ୍ଡିଚା ଘର)ରୁ ପ୍ରାସାଦକୁ ନିଆଗଲା । ବୈଶାଖ ଶୁକ୍ଳ ଅଷ୍ଟମୀ ତିଥିରେ (ନୀଳାଦ୍ରି ମହୋଦୟ ଦିନ) ମନ୍ଦିର ପ୍ରତିଷ୍ଠା ହେଲା । ସେଦିନ ଥିଲା ଗୁରୁବାର । ପ୍ରତିଷ୍ଠା କର୍ମ ସମାପନ ପରେ ନିଜ ପ୍ରତିଶ୍ରୁତି ରକ୍ଷାକରି ରାଜା ଇନ୍ଦ୍ରଦ୍ୟୁମ୍ନ ଶ୍ୱେତବଂଶୀୟ ଗାଲ ରାଜାଙ୍କୁ ମନ୍ଦିର ଭାର ଅର୍ପଣ କରି ସ୍ୱଦେହରେ ନାରଦଙ୍କ ସହ ବ୍ରହ୍ମଲୋକକୁ ପ୍ରସ୍ଥାନ କଲେ ।

## ପଦ୍ମପୁରାଣ (ପାତାଳ ଖଣ୍ଡ)

ଏଥିରେ ଉଲ୍ଲେଖ ଅଛି ଯେ ଗଙ୍ଗାସାଗର ସଙ୍ଗମଠାରେ ପୁରୁଷୋତ୍ତମ କ୍ଷେତ୍ର ଅନ୍ତର୍ଗତ ନୀଳଗିରି ଅବସ୍ଥିତ। ଏହି ନୀଳଗିରି ଉପରେ ପୁରୁଷୋତ୍ତମ ବିରାଜିତ । ଶ୍ରୀରାମଚନ୍ଦ୍ରଙ୍କ ଯଜ୍ଞ ଅଶ୍ୱ ରକ୍ଷା କରିବା ବେଳେ ଭ୍ରାତା ଶତ୍ରୁଘ୍ନ ବହୁ ସ୍ଥାନ ଭ୍ରମଣ କରି ଏହି ନୀଳଗିରି ଦର୍ଶନ କଲେ । ଏହି ନୀଳଗିରି ନିବାସୀ ଭିଲମାନେ ମଧ୍ୟ ଭଗବାନ ପୁରୁଷୋତ୍ତମଙ୍କ ମହିମା ବଳରେ ଚତୁର୍ଭୁଜ ହୋଇଛନ୍ତି । କାଞ୍ଚି ନଗରର ରାଜା ରତ୍ନଗ୍ରୀବ ଏହି କ୍ଷେତ୍ରରେ ଶ୍ରୀହରିଙ୍କୁ ଦର୍ଶନ କରି ଚତୁର୍ଭୁଜତ୍ୱ ପ୍ରାପ୍ତ ହୋଇଥିଲେ ।

(ଏଥିରେ ଚତୁର୍ଦ୍ଧାମୂର୍ତ୍ତିଙ୍କର ନାମ କିମ୍ବା ଜଗନ୍ନାଥ ନାମ ନାହିଁ । କଳ୍ପବଟ, ରୋହିଣୀକୁଣ୍ଡ, ମହାବେଦୀ, ଇନ୍ଦ୍ରଦ୍ୟୁମ୍ନ ପ୍ରସଙ୍ଗ ନାହିଁ । ଏ କ୍ଷେତ୍ରରେ ବିରାଜିତ ଓ ପୂଜିତ ପୁରୁଷୋତ୍ତମ ହିଁ ଶ୍ରୀରାମ, ଏହା କୁହାଯାଇଛି ।)

## ବ୍ରହ୍ମପୁରାଣ

ଏଥିରେ ଲେଖାଅଛି ଯେ ସତ୍ୟ ଯୁଗରେ ମାଳବର ରାଜା ଇନ୍ଦ୍ରଦ୍ୟୁମ୍ନ ଶଙ୍ଖ, ଚକ୍ର, ଗଦାଧାରୀ ଚତୁର୍ଭୁଜ ବିଷ୍ଣୁଙ୍କୁ ଆରାଧନା କରିବାପାଇଁ ଅବନ୍ତୀନଗର ତ୍ୟାଗକରି ପୁରୁଷୋତ୍ତମ କ୍ଷେତ୍ରକୁ ଆସିଥିଲେ । ପୂର୍ବେ ଏ କ୍ଷେତ୍ରର କଳ୍ପବଟ ନିକଟରେ ନୀଳକାନ୍ତମଣିଙ୍କ ମୂର୍ତ୍ତି ପୂଜିତ ହେଉଥିଲା । ସାକ୍ଷାତ ଭଗବାନ ନୀଳମାଧବଙ୍କୁ ଦର୍ଶନ କରୁଥିବାରୁ ଏଠାରେ ଯେତେ ଲୋକ ମୃତ୍ୟୁବରଣ କରୁଥିଲେ ସମସ୍ତେ ବିଷ୍ଣୁଲୋକ ପ୍ରାପ୍ତ ହେଉଥିଲେ । ଯମରାଜଙ୍କ ପଦୋଚିତ କାର୍ଯ୍ୟରେ ବାଧା ହେବାରୁ  ନୀଳକାନ୍ତମଣିମୟ ପ୍ରତିମାକୁ ସେଠାରୁ ଅପସାରଣ କରିବାକୁ ସେ ବିଷ୍ଣୁଙ୍କୁ ପ୍ରାର୍ଥନା କଲେ । ବିଷ୍ଣୁ ତେଣୁ ଏହି ପ୍ରତିମାକୁ ବାଲୁକାରାଶି ଦ୍ୱାରା ଆଚ୍ଛାଦିତ କରିଦେଲେ । ରାଜା ଇନ୍ଦ୍ରଦ୍ୟୁମ୍ନ

ଇନ୍ଦ୍ରନୀଳମୟ ମୂର୍ତ୍ତି ନ ଦେଖି ଏହି କ୍ଷେତ୍ରରେ ଏକ ହରି ପ୍ରାସାଦ (ମନ୍ଦିର) ନିର୍ମାଣ କରିବାକୁ ସ୍ଥିର କଲେ । କଳିଙ୍ଗ, ଉତ୍କଳ ଓ କୋଶଳ ରାଜାମାନଙ୍କ ସାହାଯ୍ୟରେ ବିନ୍ଧ୍ୟପର୍ବତରୁ ଉପଯୁକ୍ତ ଶିଳା ଅଣାଇ ମନ୍ଦିର ନିର୍ମାଣ କରାଇଲେ । ଅନ୍ୟାନ୍ୟ ଦେଶର ରାଜାମାନେ ମଧ୍ୟ ସହାୟତା କଲେ । ମନ୍ଦିର ନିର୍ମାଣ ପରେ ଏଥିରେ କିଭଳି ମୂର୍ତ୍ତି- ଶିଳା, ମୃତ୍ତିକା ନା ଦାରୁରେ ଗଠିତ ହେବ ଏହା ରାଜା ଇନ୍ଦ୍ରଦ୍ୟୁମ୍ନଙ୍କୁ ଚିନ୍ତାରେ ପକାଇଲା । ଭଗବାନ ବିଷ୍ଣୁ ରାଜାଙ୍କୁ ସ୍ୱପ୍ନରେ ଦେଇଥିବା ଆଦେଶାନୁସାରେ ରାଜା ସାଗରକୂଳକୁ ଯାଇ ଏକ ବୃକ୍ଷ ଦେଖିଲେ । ରାଜା ବୃକ୍ଷକୁ ନିଜେ କୁଠାର ଦ୍ୱାରା କାଟିଲେ । ହଠାତ୍ ବିଷ୍ଣୁ ଓ ବିଶ୍ୱକର୍ମା ବ୍ରାହ୍ମଣ ରୂପ ଧାରଣ କରି ସେଠାରେ ଉପସ୍ଥିତ ହେଲେ । ବିଷ୍ଣୁ ରାଜାଙ୍କୁ କହିଲେ ଯେ, ଏହି ବ୍ରାହ୍ମଣ (ବିଶ୍ୱକର୍ମା) ବୃକ୍ଷଟିରୁ ପ୍ରତିମା ନିର୍ମାଣ କରିଦେବେ। ବିଶ୍ୱକର୍ମା ଚତୁର୍ଦ୍ଧାମୂର୍ତ୍ତି ବଳଭଦ୍ର, ସୁଭଦ୍ରା, ଜଗନ୍ନାଥ ଓ ସୁଦର୍ଶନଙ୍କୁ ଗଠନ କଲେ । ଗଠନ ପରେ ବିଗ୍ରହମାନଙ୍କୁ ପାଟବସ୍ତ୍ର ଓ ଅଳଙ୍କାରରେ ଭୂଷିତ କଲେ । ଛଦ୍ମବେଶୀ ବିଷ୍ଣୁ ସ୍ତବରେ ସନ୍ତୁଷ୍ଟ ହୋଇ ସ୍ୱରୂପ ପ୍ରକାଶ କଲେ ଓ ତାଙ୍କୁ ବର ଦେଇ ଅନ୍ତର୍ଦ୍ଧାନ ହେଲେ । ରାଜା ପ୍ରତିମାମାନଙ୍କୁ ମହା ସମାରୋହରେ ପ୍ରତିଷ୍ଠା କରାଇ ମନ୍ଦିରରେ ସ୍ଥାପନ କରାଇଲେ । ରାଜା ଅଶ୍ୱମେଧ ଯଜ୍ଞାଦି କଲେ। ମରଣାନ୍ତେ, ପରମପଦ ଲାଭ କଲେ ।

(ବ୍ରହ୍ମପୁରାଣରେ ନୀଳଗିରି, ନୀଳମାଧବ, ବିଦ୍ୟାପତି, ବିଶ୍ୱାବସୁ ନାମ ଉଲ୍ଲେଖ ନାହିଁ । ଶବର ଉପାସନା ପ୍ରସଙ୍ଗ ନାହିଁ । ନୀଳମାଧବଙ୍କ ନାମ ନଥାଇ ଇନ୍ଦ୍ରନୀଳମଣିମୟ, ଇନ୍ଦ୍ରମଣିମୟ ମୂର୍ତ୍ତିର ବର୍ଣ୍ଣନା ଅଛି। ମହାବେଦୀ ନାମ ପରିବର୍ତ୍ତେ ଏକ ଶୁଭ ସ୍ଥାନ ଲେଖାଅଛି ।

## ସାରଳା ମହାଭାରତ

ସାରଳାଦାସ (୧୫ଶ ଶତାବ୍ଦୀ)ଙ୍କ ପୂର୍ବରୁ ଅନ୍ୟ କୌଣସି ଓଡ଼ିଆ କବିଙ୍କ ରଚନାରେ ଜଗନ୍ନାଥ ଚରିତ ଉଲ୍ଲେଖ ନାହିଁ । ସାରଳା ଦାସ ଓଡ଼ିଆ ମହାଭାରତର ବନପର୍ବ ଓ ମୂଷଳୀ ପର୍ବରେ ଜଗନ୍ନାଥଙ୍କ ବିଷୟରେ ଲେଖିଛନ୍ତି । ଏହି ମହାଭାରତରୁ ଜଗନ୍ନାଥ ଚରିତ ଅତି ସଂକ୍ଷେପରେ ନିମ୍ନରେ ପ୍ରଦତ୍ତ ହେଲା ।

ଜାରା ଶବର ଭୁଲରେ ଶ୍ରୀକୃଷ୍ଣଙ୍କୁ ଶରବିଦ୍ଧ କରିବାରୁ ଶ୍ରୀକୃଷ୍ଣ ଦେହତ୍ୟାଗ କଲେ । ଦେହତ୍ୟାଗ ପୂର୍ବରୁ ଅନୁତପ୍ତ ଜାରାକୁ ସେ ନିର୍ଦ୍ଦେଶ ଦେଲେ ଅର୍ଜୁନଙ୍କୁ ଡାକି ଆଣିବାକୁ । ଅର୍ଜୁନ ପହଞ୍ଚିବା ପରେ ଶ୍ରୀକୃଷ୍ଣ ଦେହତ୍ୟାଗ କଲେ । ଅର୍ଜୁନ ଓ ଜାରା ଖୋଜି ଖୋଜି ଗୋଟିଏ ଅଗରୁ ବୃକ୍ଷ ଆଣି ସେଥିରେ ଜୁଇ ତିଆରି କଲେ ଏବଂ ଶ୍ରୀକୃଷ୍ଣଙ୍କ ଶରୀରର ଦହନପାଇଁ ଅଗ୍ନି ସଂଯୋଗ କଲେ । ଅଗରୁ ବୃକ୍ଷର କାଠ ଶେଷ ହୋଇଗଲା, କିନ୍ତୁ ଦିବ୍ୟ ପିଣ୍ଡ ଦଗ୍ଧ ହୋଇ ପାରିଲା ନାହିଁ । କେବଳ ଦୁଇ ହାତ, ଦୁଇ ଗୋଡ଼ ଓ ମସ୍ତକ ପୋଡ଼ିଯାଇଥିଲା । ଏହି ସମୟରେ ଶୂନ୍ୟରୁ ଦୈବୀବାଣୀ ହେଲା-

ଏ ପିଣ୍ଡ ବିଜେ କରିବ ନୀଳସୁନ୍ଦର ପରବତେ
ତହିଁରେ ପୂଜା ପାଇବେ ଦଶ ସହସ୍ର ବରଷ ପରିଯନ୍ତେ ।

ଅଗ୍ନି ଲିଭାଅ ତୁମ୍ଭେ କର ଆମ୍ଭର ବୋଲ
କାଢ଼ି ଆଣି ପିଣ୍ଡ ମଉଦଧିରେ ମେଲ ।

ଦୈବୀବାଣୀ ପ୍ରକାରେ ଅର୍ଜୁନ ଓ ଜାରା ଶବର ଚିତା ମଧ୍ୟରୁ ଅପୋଡ଼ା ପିଣ୍ଡକୁ ବାହାର କରିନେଇ ମହୋଦଧିରେ ଭସାଇ ଦେଲେ । ଏହି ପିଣ୍ଡ ସମୁଦ୍ରକୂଳରେ କେଉଁଠାରେ ଲାଗିବ ସେଥି ପ୍ରତି ନଜର ଦେବାକୁ ଜାରାକୁ କହି ଅର୍ଜୁନ ଫେରିଗଲେ ।

କେତେଦିନ ପରେ ତାଙ୍କର ପିଣ୍ଡ ପୂଜା କରିବାକୁ ଜାରା ଶବରକୁ ସ୍ୱପ୍ନରେ ଭଗବାନ ଶ୍ରୀକୃଷ୍ଣ ଆଦେଶ ଦେଲେ । ନିଦ୍ରାଭଙ୍ଗ ପରେ ଜାରା ପାଖରେ ଗୋଟିଏ ବିଷ୍ଣୁ ପ୍ରତିମାକୁ ଦେଖିଲେ । ତାହାଙ୍କୁ ନେଇ ଧଉଳି ପର୍ବତ ଉପରେ ଏକ ଅଗରୁ ବୃକ୍ଷ ମୂଳେ ସ୍ଥାପନ କରି ଗୋପନରେ ପୂଜା କଲେ ।

କେତେବର୍ଷ ପରେ କାଞ୍ଚି ନଗରର ବିଷ୍ଣୁଭକ୍ତ ରାଜା ଗାଲମାଧବ ଶ୍ରୀକୃଷ୍ଣଙ୍କ ଅପୋଡ଼ା ପିଣ୍ଡର ଅନ୍ୱେଷଣପାଇଁ ଚତୁର୍ଦ୍ଦିଗକୁ ଲୋକ ପଠାଇଲେ । ଦକ୍ଷିଣ ଦିଗକୁ ବାସୁଦେବ ନାମକ ବ୍ରାହ୍ମଣ ଗଲେ । ବାସୁଦେବ ବହୁ ଅନୁସନ୍ଧାନ ପରେ ଜାରା ଶବର ପଲ୍ଲୀରେ ପହଞ୍ଚିଲେ । ଜାରା ଶବରର ପୁତ୍ର ବାସୁଦେବ ସହିତ ବାସୁଦେବ ବ୍ରାହ୍ମଣ ମୈତ୍ର ବସିଲେ (ମତାନ୍ତରେ ଜାରା ଶବର ସହିତ) । ଜାରା ଶବର ବାସୁଦେବଙ୍କୁ ପୂଜା କରୁଥିବା ପ୍ରତିମା ଦେଖାଇବାକୁ ରାଜିହୋଇ ତାଙ୍କ ଆଖିରେ ଅନ୍ଧପୁଟୁଳି ବାନ୍ଧି ସେଠାକୁ ନେଲେ । ବ୍ରାହ୍ମଣ ବାଟରେ ଯବଧାନ ଓ ତିଳ ପକାଇ ପକାଇ ଯାଇଥିଲେ । ବିଷ୍ଣୁ ପ୍ରତିମାକୁ ଦର୍ଶନ କରିବାର ଛଅ ସାତ ମାସ ପରେ ବାସୁଦେବ କାଞ୍ଚିନଗରକୁ ଫେରିଯାଇ ଗାଲମାଧବଙ୍କୁ ସମସ୍ତ ବୃତ୍ତାନ୍ତ କହିଲେ ।

ରାଜା ଗାଲମାଧବ ଧଉଳି ପର୍ବତକୁ ଆସି ଯବଧାନ ଗଛର ସଂକେତକୁ ଅନୁସରଣ କରି ବିଷ୍ଣୁ ବିଗ୍ରହ ପାଖକୁ ଆସି ଦେଖିଲେ ଯେ ବିଗ୍ରହ ଅନ୍ତର୍ଦ୍ଧାନ ହୋଇଯାଇଛନ୍ତି । କେବଳ ଛଡ଼ାଫୁଲ ଗୁଡ଼ିଏ ପଡ଼ିଛି । ଶବରମାନେ ବିଗ୍ରହଙ୍କୁ ଲୁଚାଇ ରଖିଥିବେ ମନେ କରି ସେ ଅନେକ ଶବରଙ୍କୁ ମାରିଦେଲେ । ଜାରା ଶବର ସେତେବେଳେ ସେଠାରେ ଅନୁପସ୍ଥିତ ଥିଲେ । ଗାଲମାଧବଙ୍କ ଏ ନିଷ୍ଠୁର କାର୍ଯ୍ୟରେ ଭଗବାନ ଅସନ୍ତୁଷ୍ଟ ହୋଇ ଅଭିଶାପ ଦେଲେ ଯେ ଜାରା ଶବରର ବଂଶବୃଦ୍ଧି ଘଟୁ, ରାଜା ଗାଲମାଧବଙ୍କ ବଂଶରେ କେହି ନ ରହନ୍ତୁ । ସେ ଯାହାହେଉ, ପ୍ରଭୁଙ୍କ ଇଚ୍ଛାରେ ଗାଲମାଧବ ଓ ଜାରାଙ୍କ ମଧ୍ୟରେ ବୁଝାମଣା ହୋଇଥିଲା । ପ୍ରଭୁଙ୍କ ଆଦେଶରେ ଗାଲମାଧବ ବିଷ୍ଣୁ ପ୍ରତିମାଙ୍କୁ ଆଣି ନୀଳଗିରିରେ ସ୍ଥାପନ କରି ପୂଜା କଲେ । ପୂର୍ବେ ଏହି ପ୍ରତିମାଙ୍କୁ ଶବରମାନେ ଶବରୀ-ନାରାୟଣ ରୂପରେ ପୂଜା କରୁଥିଲେ ।

ବିରାଟ ବଂଶର ରାଜା ମଧୁ କେଶରୀଙ୍କ ପୁତ୍ର ଇନ୍ଦ୍ରଦ୍ୟୁମ୍ନ ନୀଳଗିରିରେ ଭଗବାନ ଅବସ୍ଥାନ କରିବେ ବୋଲି ଖବର ପାଇ ବିଶ୍ୱାବସୁ ନାମକ ଏକ ବ୍ରାହ୍ମଣଦ୍ୱାରା ଭଗବାନଙ୍କ ପାଇଁ ଏକ ମନ୍ଦିର ନିର୍ମାଣ କଲେ । ସେ ଜାରା ଶବରଙ୍କୁ ଭେଟି ଶ୍ରୀକୃଷ୍ଣଙ୍କ ଅପୋଡ଼ା ପିଣ୍ଡ କଥା ପଚାରିଲେ । ଜାରାକୁ ଧ୍ୟାନରେ ଦର୍ଶନ ଦେଇ ଭଗବାନ କହିଲେ ଯେ, କଳିଯୁଗରେ ବୌଦ୍ଧ ରୂପରେ ସେ କାୟା ଦେଖାଇବେ ଓ ତାଙ୍କର ଅପୋଡ଼ା ପିଣ୍ଡ ଦାରୁ ପାଲଟିଯିବ ।

କୃଷ୍ଣ ବୋଇଲେ ଇନ୍ଦ୍ରଦ୍ୟୁମ୍ନକୁ ଘେନିଯାଆ,
କାଲି ପ୍ରଭାତେ ରୋହିଣୀ କୁଣ୍ଡ ଜଗିଥାଆ
ରୋହିଣୀ କୁଣ୍ଡେ ଆମ୍ଭେ କାୟା ଯେ ବିସ୍ତାରୁ
ଯେ ପିଣ୍ଡ ଗୋଟିକ କାଳେ ହୋଇବକି ଦାରୁ ।

ଇନ୍ଦ୍ରଦ୍ୟୁମ୍ନକୁ ସାଙ୍ଗରେ ନେଇ ଜାରା ଶବର ନୀଳଗିରିରେ ପହଞ୍ଚିଲା । ରୋହିଣୀ କୁଣ୍ଡରେ ଭଗବାନ ଦାରୁ ରୂପରେ ଆବିର୍ଭୂତ ହେଲେ । ଜାରା ଓ ବାସୁଦେବ ବ୍ରାହ୍ମଣ କୁଣ୍ଡରୁ ଦାରୁଙ୍କୁ ବାହାର କରି ଆଣିଲେ । ଜାରା ବିଗ୍ରହ ନିର୍ମାଣ ଭାର ନେଲେ । ତାଙ୍କୁ ଛଦ୍ମବେଶୀ ବିଶ୍ୱକର୍ମା ବ୍ରାହ୍ମଣ ରୂପରେ ସାହାଯ୍ୟ କଲେ । ମିଥୁନ ମାସ ପଞ୍ଚମୀ ଶ୍ରବଣା ନକ୍ଷତ୍ର ଗୁରୁବାର ଦିନ ବିଗ୍ରହ ଗଠନପାଇଁ ଜାରା ମନ୍ଦିର ଭିତରକୁ ଗଲେ । ମନ୍ଦିରର ସବୁ ଦ୍ୱାର ବନ୍ଦ ରଖିବାକୁ ଓ ତାଙ୍କ ନିର୍ଦ୍ଦେଶ ବିନା ନ ଖୋଲିବାକୁ ଜାରା ରାଜାଙ୍କୁ କହିଲେ । ପନ୍ଦର ଦିନ ଅତିକ୍ରାନ୍ତ ହୋଇଯିବା ପରେ ଓ ଭିତରୁ କୌଣସି ସ୍ୱର ଶବ୍ଦ ଶୁଣା ନଯିବାରୁ ରାଜା ଦ୍ୱାର ଖୋଲିଦେଲେ । ଦେଖିଲେ ସିଂହାସନ ଉପରେ ତିନି ମୂର୍ତ୍ତି ବସିଛନ୍ତି । ପରେ ଜାରା ଶାଳ ବୃକ୍ଷରୁ ଝୁଣା ଆଣି ପିଣ୍ଡରେ ଲେପଦେଇ ପିଣ୍ଡକୁ ଦାରୁ ମୂର୍ତ୍ତି ଦେହରେ ଗୋପ୍ୟ କରିଦେଲେ । ବିଷ୍ଣୁ, ଶିବ ଓ ବ୍ରହ୍ମା ଯଥାକ୍ରମେ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ଏପରି ତ୍ରିମୂର୍ତ୍ତି ଭାବରେ ବିରାଜିତ ହେଲେ ।

(ସାରଳା ଦାସଙ୍କ ମହାଭାରତର ବନପର୍ବ ଓ ମୂଷଳୀ ପର୍ବରେ ଜଗନ୍ନାଥ ଚରିତ ଉଲ୍ଲେଖ ଅଛି । କିନ୍ତୁ ଦୁଇ ପର୍ବରେ ଥିବା ବିଷୟବସ୍ତୁରେ କିଛି ଅମେଳ ରହିଛି । ବନ ପର୍ବରେ ଗାଲମାଧବଙ୍କୁ ସୋମବଂଶର ରାଜା ଓ ସେ ସାକଲ୍ୟ ଦ୍ୱୀପରେ ରାଜତ୍ୱ କରୁଥିଲେ ବୋଲି ଲେଖା ଅଛି । ଇନ୍ଦ୍ରଦ୍ୟୁମ୍ନ ଗାଲମାଧବଙ୍କ ପୁତ୍ର । ଇନ୍ଦ୍ରଦ୍ୟୁମ୍ନଙ୍କ ରାଣୀଙ୍କ ନାମ ଗୁଣ୍ଡିକୋରା । ବନପର୍ବରେ ଯଦୁ ବିପ୍ର ଜାରା ସହିତ ମୈତ୍ର ହୋଇ ଦିଅଁଙ୍କୁ ଠାବ କରିଥିଲେ । ମୂଷଳୀ ପର୍ବରେ ବାସୁଦେବ ବ୍ରାହ୍ମଣ ବସୁ ଶବରର ପୁତ୍ର ବାସୁଦେବଙ୍କ ସହିତ ମୈତ୍ର ହୋଇ ଥିଲେ । ଇନ୍ଦ୍ରଦ୍ୟୁମ୍ନ ଜାରା ଶବର ବଂଶ ଧ୍ୱଂସ କରିଥିଲେ ବୋଲି ମୂଷଳୀ ପର୍ବରେ ଅଛି । ଏହିପରି କେତେ ତଫାତ୍ ପରିଲକ୍ଷିତ ହୁଏ । କୃଷ୍ଣଙ୍କ 'ଅପୋଡ଼ା ପିଣ୍ଡ' ସାରଳା ଦାସଙ୍କ ନିଜସ୍ୱ ପରିକଳ୍ପନା ।)

## ଶିଶୁ କୃଷ୍ଣ ଦାସଙ୍କ 'ଦେଉଳ ତୋଳା'

'ଦେଉଳ ତୋଳା' ନାମରେ ଅନେକ ପ୍ରାଚୀନ ଓଡ଼ିଆ କବି ପୋଥି ଲେଖିଛନ୍ତି । ସେମାନେ ହେଲେ ନୀଳାମ୍ବର ଦାସ, ବଳରାମ ଦାସ, ଦାମ ଦାସ, ମାଗୁଣିଆ ଦାସ ଓ କୃଷ୍ଣ ବା ଶିଶୁ କୃଷ୍ଣ ଦାସ । ଶିଶୁ କୃଷ୍ଣ ଦାସଙ୍କ 'ଦେଉଳ ତୋଳା' ଅଧିକ ପ୍ରଚାରିତ ଓ ଜନାଦୃତ ରଚନା । ଏହି କବି ସପ୍ତଦଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଏହାକୁ ରଚନା କରିଥିବା ଅନୁମାନ କରାଯାଏ । ଏହାର କାହାଣୀ ନିମ୍ନରେ ସଂକ୍ଷେପରେ ପ୍ରଦାନ କରାଗଲା ।

ବିଷ୍ଣୁ ଭକ୍ତ ରାଜା ଇନ୍ଦ୍ରଦ୍ୟୁମ୍ନ ବିଷ୍ଣୁମୂର୍ତ୍ତିର ସନ୍ଧାନ ନେବାକୁ ଚାରି ଦିଗକୁ ଦୂତ ପଠାଇଲେ । ପୂର୍ବଦିଗରେ ଯାଇଥିଲେ ବିଦ୍ୟାପତି ନାମକ ବ୍ରାହ୍ମଣ । ସେ ଶବର ପଲ୍ଲୀରେ ପହଞ୍ଚି ବସୁ ଶବର

ଘରେ ତା'ର କନ୍ୟା ଲଳିତାକୁ ଭେଟିଲେ । ବସୁ ଶବର ଘରେ ନଥିଲେ । କିଛି ସମୟ ପରେ ସେ ଆସିବାରୁ ପିତା ଓ କନ୍ୟା ଉଭୟେ ଅତିଥି ବ୍ରାହ୍ମଣଙ୍କୁ ଯଥାବିଧି ସତ୍କାର କଲେ । ବିଦ୍ୟାପତି ନିଜର ପ୍ରକୃତ ପରିଚୟ ଗୋପନ ରଖି ନିଜକୁ ଖାଦ୍ୟପାଇଁ ବୁଲୁଥିବା ଜଣେ ବ୍ରାହ୍ମଣ ବୋଲି କହିଲେ । ଶବର ତାଙ୍କୁ ନିଜ ଘରେ ଆଶ୍ରୟ ଦେଲେ । କିଛି ଦିନ ପରେ ବସୁ ଶବର ବିଦ୍ୟାପତିଙ୍କୁ ନିଜ ଝିଅକୁ ବିବାହ ଦେବାପାଇଁ ପ୍ରସ୍ତାବ ଦେଲା । ବିଦ୍ୟାପତି ଜାତିଗତ କାରଣ ଦର୍ଶାଇ ଅମଙ୍ଗ ହେବାରୁ ବସୁ ଶବର ତାଙ୍କର ମୁଣ୍ଡକାଟ କରିଦେବ ବୋଲି କହିଲା । ସେ କହିଲା ଯେ, ତା'ର ପିତା ଏକା ବାଣରେ କୃଷ୍ଣଙ୍କୁ ହତ୍ୟା କରିଥିଲା । ବସୁ ଶବର ସେହି ଜାରା ଶବରର ପୁତ୍ର । ବିଦ୍ୟାପତି ଅଗତ୍ୟା ଶବରର କନ୍ୟା ଲଳିତାକୁ ବିବାହ କରି ସେଠାରେ ରହିଲେ ।

ବିଦ୍ୟାପତି ଲକ୍ଷ୍ୟ କଲେ ଯେ, ପ୍ରତି ରାତ୍ରରେ ବସୁ ଶବର କୁଆଡ଼େ ଯାଇ ପରବର୍ତ୍ତୀ ମଧ୍ୟାହ୍ନ କାଳରେ ଘରକୁ ଫେରୁଛି । ଏକଥା ଲଳିତାକୁ ପଚାରିବାରୁ ସେ କହିଲା ଯେ, ''ଯେଉଁଠାରେ ନୀଳମାଧବଙ୍କ ରୂପ ଥାଇ, ସେଠାରେ ମୋହର ପିତା ପୂଜା କରେ ଯାଇ ।'' ବିଦ୍ୟାପତି ଉକ୍ତ ଦିଅଁ ଦର୍ଶନପାଇଁ ଆଗ୍ରହ ପ୍ରକାଶ କରି ସ୍ତ୍ରୀ'କୁ କହିଲା । ଲଳିତା ନିଜର ପିତାଙ୍କୁ ଏଥିପାଇଁ ଅନୁରୋଧ କଲା । ବସୁ ଶବର ଜ୍ୱାଇଁଙ୍କ ମୁହଁରେ ଅନ୍ଧପୁଟୁଳି ବାନ୍ଧି ସାଥିରେ ନେଇଗଲା ଯେପରିକି ଜ୍ୱାଇଁ ବାଟ ଦେଖି ପାରିବେ ନାହିଁ ।

ବିଦ୍ୟାପତି ଅନ୍ଧପୁଟୁଳି ବାନ୍ଧି ଗଲାବେଳେ ପତ୍ନୀ ଲଳିତା ଦେଇଥିବା ମାଘୀ ତିଳ ସୋରିଷ ବାଟର ଦୁଇପାଖେ ବୁଣି ବୁଣି ଯାଇଥିଲେ । ନୀଳକନ୍ଦରରେ ପହଞ୍ଚିଲା ପରେ ବସୁ ଶବର ଜାମାତାଙ୍କ ଚକ୍ଷୁରୁ ଅନ୍ଧପୁଟୁଳି ଖୋଲି 'ଏହି ଦେଖ ଦିଅଁ' ବୋଲି କହିଲା । ''ବଟତଳେ ଶୋଇଛନ୍ତି ପ୍ରଭୁ ଜଗନ୍ନାଥ । ଦେଖିକରି ବ୍ରାହ୍ମଣ ଯେ ଆନନ୍ଦ ହୋଇଲା । ନିସ୍ତରିଲି ନିସ୍ତରିଲି ବୋଲିଣ ବୋଇଲା ।'' ପ୍ରଭୁଙ୍କୁ ଭୋଗ କରିବାକୁ କନ୍ଦମୂଳ ଆଣିବାକୁ ବସୁ ଯିବା ପରେ ବିଦ୍ୟାପତି ପ୍ରଭୁଙ୍କୁ ବହୁତ ସ୍ତୁତି କଲେ । ସେ ଦେଖିଲେ ଯେ ବଟବୃକ୍ଷରେ ଝୁଲଉଥିବା ଏକ କାକ ତଳେ ଥିବା କୁଣ୍ଡରେ ପଡ଼ିଗଲା ଓ ତତ୍‌କ୍ଷଣାତ୍ ଚତୁର୍ଭୁଜ ହୋଇ ସ୍ୱର୍ଗକୁ ଗଲା । ସେ ଦିନ ଶବର ଆଣିଥିବା କନ୍ଦମୂଳ ଭୋଗ ପ୍ରଭୁ ନୀଳମାଧବ ଗ୍ରହଣ କଲେ ନାହିଁ । ଶୂନ୍ୟବାଣୀ ହେଲା, ''ଏଣିକି ନୀଳମାଧବ ରୂପ ଛାଡ଼ି ପ୍ରଭୁ ଦାରୁବ୍ରହ୍ମ ରୂପ ଧାରଣ କରିବେ ଓ ରାଜା ଇନ୍ଦ୍ରଦ୍ୟୁମ୍ନଙ୍କଦ୍ୱାରା ନିର୍ମିତ ମନ୍ଦିରରେ ପୂଜାପାଇବେ ।'' ଏହା ଶୁଣି ଶବର ସ୍ତବ୍ଧ ହୋଇ ଜାମାତାକୁ ଅନ୍ଧପୁଟୁଳି ବାନ୍ଧି ବାହୁଡ଼ି ଅଇଲା । ଅଳ୍ପଦିନ ପରେ ବିଦ୍ୟାପତି ବ୍ରାହ୍ମଣ ନିଜ ଘରକୁ ଯିବେ କହି ବିଦାୟ ନେଇ ମାଳବ ଫେରିଗଲେ ଓ ରାଜା ଇନ୍ଦ୍ରଦ୍ୟୁମ୍ନଙ୍କୁ ଭେଟି ସକଳ ବୃତ୍ତାନ୍ତ ଜଣାଇଲେ ।

ଇନ୍ଦ୍ରଦ୍ୟୁମ୍ନ ସଦଳବଳେ ପଟୁଆର କରି ନୀଳ କନ୍ଦରରେ ପହଞ୍ଚିଲେ । ବିଦ୍ୟାପତି ବାଟରେ ବୁଣିବୁଣି ଯାଇଥିବା ମାଘୀ ତିଳରୁ ଉଦ୍‌ଗତ ଅଙ୍କୁର ଫଳରେ ନୀଳମାଧବଙ୍କ ନିକଟରେ ପହଞ୍ଚିବାରେ ଅସୁବିଧା ହେଲା ନାହିଁ । ରାଜାଙ୍କ ମନରେ ଗର୍ବ ଜାତ ହେଲା ଯେ, ତାଙ୍କଠାରୁ ପୃଥିବୀରେ ଆଉ କେହି ବଡ଼ ରାଜା ନାହାନ୍ତି । କିନ୍ତୁ ରାଜା ପହଞ୍ଚିବା ବେଳକୁ ନୀଳମାଧବ ଅନ୍ତର୍ହିତ ହୋଇଗଲେ । ରାଜାଙ୍କ ଅହଂକାରଯୋଗୁଁ ନୀଳମାଧବ ଅନ୍ତର୍ଦ୍ଧାନ ହୋଇଗଲେ ଜାଣିବା ପରେ ରାଜା ପ୍ରଭୁଙ୍କୁ ପ୍ରାର୍ଥନା

କରି କ୍ଷମାଭିକ୍ଷା କଲେ । ଦିଅଁଙ୍କୁ ଶବର ଚୋରାଇ ନେଇ ଅନ୍ୟତ୍ର ରଖିଛି ଭାବି ରାଜା ପ୍ରଥମେ ସନ୍ଦେହ କରିଥିଲେ । କିନ୍ତୁ ଶୂନ୍ୟବାଣୀ ପ୍ରକାରେ ରାଜା ଶଙ୍ଖନାଭି ମଣ୍ଡଳରେ ନୀଳପର୍ବତ ଉପରେ ଗୋଟିଏ ମନ୍ଦିର ତୋଳାଇଲେ । ମନ୍ଦିର ନିର୍ମାଣ ପରେ ପ୍ରତିଷ୍ଠାପାଇଁ ବ୍ରହ୍ମାଙ୍କୁ ପୁରୋଧା ଭାବରେ ନିମନ୍ତ୍ରଣ କରିବାକୁ ବ୍ରହ୍ମଲୋକକୁ ଯାତ୍ରା କଲେ । ବ୍ରହ୍ମା ତର୍ପଣ କରିବାକୁ ଯାଉଥିବାରୁ ରାଜାଙ୍କୁ ଦଣ୍ଡେ ରହ ବୋଲି ସଂକେତ ଦେଲେ । ଇନ୍ଦ୍ରଦ୍ୟୁମ୍ନ ନିକଟରେ ଅପେକ୍ଷା କରି ରହିଲେ । ଦଣ୍ଡକ ପରେ ବ୍ରହ୍ମାଙ୍କ ତର୍ପଣ ସରିବାବେଳକୁ ମର୍ତ୍ତ୍ୟରେ ନଅଟି ଯୁଗ ବିତି ଯାଇଥିଲା । ଇତିମଧ୍ୟରେ ବାଲୁକା ଝଡ଼ରେ ନୀଳକନ୍ଦରସ୍ଥ ମନ୍ଦିର ମଧ୍ୟ ବାଲିରେ ପୋତି ହୋଇଯାଇଥିଲା ।

ସୁରଦେବଙ୍କ ନାତି ଗାଲମାଧବ ଇତି ମଧ୍ୟରେ ରାଜା ହୋଇଥିଲେ । ଦିନେ ସେ ମୃଗୟାରୁ ଫେରୁଥିବାବେଳେ ଉଚ୍ଚ ବାଲି ଚଟାଣ ଉପରେ ଘୋଡ଼ାର ଟାପୁ ପୋତି ହୋଇପଡ଼ିଥିବା ମନ୍ଦିରର ନୀଳଚକ୍ରରେ ବାଜିଲା । ରାଜା ବାଲି ଖୋଳାଇବାରୁ ନୀଳଚକ୍ର ଓ ପରେ ପୂରା ଦେଉଳ ବାହାରିଲା । ରାଜା ଗାଲମାଧବ କହିଲେ, ''ଏ ଦେଉଳ ମୋର ବାପ ନିର୍ମାଣ କରିଛନ୍ତି ମୁଁ ଏଥିରେ ଦିଅଁ ସ୍ଥାପନ କରାଇ ପୂଜା କରିବି ।''

ଇନ୍ଦ୍ରଦ୍ୟୁମ୍ନଙ୍କ ସହିତ ବ୍ରହ୍ମା ନୀଳ କନ୍ଦରରେ ପହଞ୍ଚିଲେ । ଦେଉଳ ପ୍ରକୃତରେ କାହାର, ଏ ନେଇ ଇନ୍ଦ୍ରଦ୍ୟୁମ୍ନ ଓ ଗାଲମାଧବଙ୍କ ମଧ୍ୟରେ ବିବାଦ ଉପୁଜିଲା । ବ୍ରହ୍ମା ସାକ୍ଷ୍ୟ ପ୍ରମାଣ ନେଲେ । ଇନ୍ଦ୍ରଦ୍ୟୁମ୍ନ ପୁଷ୍କରିଣୀରେ ରହିଥିବା ଅତି ବୃଦ୍ଧ କୂର୍ମମାନେ, ଇନ୍ଦ୍ରଦ୍ୟୁମ୍ନ ହିଁ ନିର୍ମାଣକର୍ତ୍ତା ବୋଲି ସାକ୍ଷୀ ଦେଲେ । ଗାଲମାଧବ ଲଜ୍ଜିତ ହୋଇ ନୀରବ ରହିଲେ । ଇନ୍ଦ୍ରଦ୍ୟୁମ୍ନ ଦେଉଳ ପ୍ରତିଷ୍ଠା କରିବାକୁ ବ୍ରହ୍ମାଙ୍କୁ ନିବେଦନ କଲେ । ବ୍ରହ୍ମା କହିଲେ, ହେ ରାଜନ୍ ! ଏ ଦେଉଳରେ ସ୍ୱୟଂ ଜଗନ୍ନାଥ ମୂର୍ତ୍ତିମନ୍ତ ହୋଇ ବସିବେ । ଏ ଦେଉଳ ''ପ୍ରତିଷ୍ଠାକୁ ମୋର କ୍ଷମ ନାହିଁ । ଚକ୍ରର ଉପରେ ମୁହିଁ ବାନ୍ଧିଗଲେ ନେତ, ଦୂରୁ ଦେଖି ଲୋକମାନେ ହୋଇବେ ମୁକତ ।''

ନୀଳମାଧବ ରାଜାଙ୍କୁ ସ୍ୱପ୍ନରେ କହିଲେ ଯେ, ସେ ବାଙ୍କି ମୁହାଣରେ ଦାରୁ ରୂପରେ ଲାଖିଛନ୍ତି, ତାଙ୍କୁ ଆଣି ମୂର୍ତ୍ତି ନିର୍ମାଣ କରନ୍ତୁ । ଏହି ଦାରୁ ଥିଲା ଅଚଳ ମହାମେରୁ । ପଞ୍ଚ ସହସ୍ର ହାତୀ, ତେର ଲକ୍ଷ ପଦାତିକ, ବିଶା ଶହେ ଜଣ ମାଲ ଦାରୁ ଟାଣିବାରେ ସକ୍ଷମ ହେଲେ ନାହିଁ । ଜଗନ୍ନାଥଙ୍କ ସ୍ୱପ୍ନାଦେଶ ଅନୁସାରେ ବସୁ ଶବର ଓ ବିଦ୍ୟାପତି ବ୍ରାହ୍ମଣ ଦାରୁକୁ ଟେକି ନେଇ ସୁବର୍ଣ୍ଣ ଶଗଡ଼ ଉପରେ ସ୍ଥାପନ କରି ଆଡ଼ପ ମଣ୍ଡପ ନିକଟକୁ ସହଜରେ ଟାଣିନେଲେ ।

ବ୍ରହ୍ମା ଆଡ଼ପ ମଣ୍ଡପରେ ଉପସ୍ଥିତ ରହି ଯାଗ କରାଇଲେ । ଯାଗବେଦୀକୁ ମାଡ଼ି ନୃସିଂହ ଠାକୁର ରହିଲେ । ଏହି ଆଡ଼ପ ମଣ୍ଡପରେ ଦିଅଁ ଗଢ଼ିବାପାଇଁ ରାଣୀ ଗୁଣ୍ଡିଚା ଦେବୀ ରାଜା ଇନ୍ଦ୍ରଦ୍ୟୁମ୍ନଙ୍କୁ ପରାମର୍ଶ ଦେବାରୁ ରାଜା କହିଲେ ଯେ ବଡ଼ଦେଉଳରେ ମୂର୍ତ୍ତି ଗଠିତ ହେବ । ଜଗନ୍ନାଥ ମହାପ୍ରଭୁ ଏହି ଆଡ଼ପ ମଣ୍ଡପରେ କିଛି ଦିନ ଅବସ୍ଥାନ କରୁଥିବେ । ରାଜା ପଟୁଆର ସହ ଦାରୁ ନେଇ ବଡ଼ଦେଉଳରେ ଗରୁଡ଼ ସ୍ତମ୍ଭଠାରେ ବିଜେ କରାଇଲେ ।

ଦାରୁରୁ ଜଗନ୍ନାଥ ବିଗ୍ରହ ନିର୍ମାଣପାଇଁ ରାଜା ଦୁଇ ଲକ୍ଷ ବଢ଼େଇ ନିଯୁକ୍ତ କଲେ । ବଢ଼େଇମାନେ ଯେତେ ଚେଷ୍ଟା କଲେ ବି ମୂର୍ତ୍ତି ନିର୍ମାଣ କରିପାରିଲେ ନାହିଁ । ଦାରୁ ଉପରେ

ସେମାନଙ୍କର ନିହାଣମାନ ଖଣ୍ଡ ଖଣ୍ଡ ହୋଇ ଭାଙ୍ଗିଗଲା ପଛକେ ଦାରୁ ସାମାନ୍ୟ ମାତ୍ର କଟିଲା ନାହିଁ । ରାଜା ବଢ଼େଇମାନଙ୍କ ଅପାରଗତାପାଇଁ କ୍ରୁଦ୍ଧ ହୋଇ ଆଦେଶ ଦେଲେ ଯେ ଆଜି ଭିତରେ ମୂର୍ତ୍ତି ଗଢି ନପାରିଲେ କାଲି ସବୁ ବଢ଼େଇଙ୍କ ମୁଣ୍ଡକାଟ ହେବ । ବଢ଼େଇମାନେ 'ଆରତେ ଡାକିଲେ ପ୍ରଭୁ ରଖ ଜଗନ୍ନାଥ, ତୁହି ନ ରଖିଲେ ପ୍ରଭୁ ଆଉ ରକ୍ଷା ନାହିଁ । ତୋତେ କେ ଗଢ଼ିବ ପ୍ରଭୁ ତ୍ରୈଲୋକ୍ୟ ଗୋସାଇଁ । ଏତେ ବୋଲି ବଢ଼ାଇ ଯେ ଡାକିଲେ ଆରତେ । ତକ୍ଷଣେ ବଢ଼ାଇ ରୂପ ଧରି ଜଗନ୍ନାଥେ '' ସେଠାରେ ଉଭାହେଲେ । ଶ୍ଳଥ ଚର୍ମ, ଗଳିତ ଦନ୍ତ, ଅତି ଦୁର୍ବଳ ବୃଦ୍ଧ ବଢ଼େଇ ରୂପରେ ପହଞ୍ଚି ମୂର୍ତ୍ତି ଗଢ଼ିବାକୁ ଇଚ୍ଛା ବ୍ୟକ୍ତ କଲେ । ପ୍ରଥମେ ଅବିଶ୍ୱାସ କରି ପରେ ରାଜା ବାଧ୍ୟ ହୋଇ ବୃଦ୍ଧ ବଢ଼େଇ ଉପରେ ମୂର୍ତ୍ତି ନିର୍ମାଣ ଦାୟିତ୍ୱ ଦେଲେ ।

ଗରୁଡ଼ ଖମ୍ବ ପାଖରୁ ସାଉଁଟିଲା ପରି ଦାରୁକୁ ଉଠାଇ ବୃଦ୍ଧ ବଢ଼େଇ ମନ୍ଦିର ଭିତରକୁ ନେଇଗଲେ । ସେ ଏକୋଇଶ ଦିନ ମଧ୍ୟରେ ମୂର୍ତ୍ତି ଗଢ଼ି ଦେବାକୁ କହି, ଏହି ସମୟସୀମା ପୂର୍ବରୁ ମନ୍ଦିର ଦ୍ୱାର ଖୋଲିଦେଲେ ଅଘଟଣ ଘଟିବ ବୋଲି ସତର୍କ କରିଦେଲେ । ରୁଦ୍ଧ ମନ୍ଦିର ଭିତରେ ବୃଦ୍ଧ ବଢ଼େଇ ରହିଲେ ।

ଚଉଦ ଦିନ ବିତିଗଲା ପରେ ରାଣୀ ଅଧୀରା ହୋଇ ରାଜାଙ୍କୁ କହିଲେ, ମନ୍ଦିର ଭିତରେ ଅତି ବୁଢ଼ା ବଢ଼େଇ ନଖାଇ ନପିଇ ମୂର୍ତ୍ତି ନିର୍ମାଣ କରିବାକୁ ଯାଇଛି, ବଞ୍ଚିଛି କି ନାହିଁ ଦେଖ । ମନ୍ତ୍ରୀଙ୍କ ବାରଣ ସତ୍ତ୍ୱେ ରାଜା ଦ୍ୱାର ଖୋଲିଦେଲେ । ଭିତରେ ଚତୁର୍ଦ୍ଧାମୂର୍ତ୍ତିଙ୍କୁ ଦେଖି ରାଜା ପ୍ରଥମେ ଭକ୍ତିରେ ବିହ୍ୱଳ ହୋଇ 'ନିସ୍ତରିଲି, ନିସ୍ତରିଲି' କହିଲେ । ପାଖକୁ ଯାଇ ଦେଖିଲେ ଯେ ମୂର୍ତ୍ତିମାନ ଅସଂପୂର୍ଣ୍ଣ ଓ ବୃଦ୍ଧ ବଢ଼େଇ ଅନ୍ତର୍ଦ୍ଧାନ । ଏଭଳି ଅସମ୍ପୂର୍ଣ୍ଣ ମୂର୍ତ୍ତି ଗଠନପାଇଁ ନିଜକୁ ଦାୟୀ କରି ରାଜା ମନଦୁଃଖରେ କୁଟା ଶଯ୍ୟାରେ ଶୋଇଲେ ଏବଂ ମରିବାପାଇଁ ଚିନ୍ତା କଲେ । ସେଦିନ ରାତିରେ ପ୍ରଭୁ ଜଗନ୍ନାଥ ସ୍ୱପ୍ନରେ ତାଙ୍କୁ ପ୍ରବୋଧନା ଦେଲେ-

''ଠାକୁରେ ବୋଇଲେ ରାଜା ହୋଇଲୁ କି ବାଇ ।
କଳିଯୁଗେ ବସିବୁ ବଉଧ ରୂପ ହୋଇ ॥
ତୋହ କାର୍ଯ୍ୟ ଥିଲେ ରାଜା ଯୋଗାଇବୁ ଏତେ ।
ଦୟଣାରେ ହାତଗୋଡ଼ ଭିଆଇଣ ମୋତେ ॥''

ପ୍ରଭୁ ଜଗନ୍ନାଥ ପୁଣି କହିଲେ,

ଶବରର ଘରେ ଯେଉଁ ପୁତ୍ର ହେବେ ଜାତ ।
ଦଇତ ସେବକ ହେବେ ବୋଲେ ଜଗନ୍ନାଥ ॥
ଯେଉଁ ବ୍ରାହ୍ମଣ ତୋହର ଦୂତ ପଣେ ଗଲା ।
ନୀଳ ଯେ ମାଧବ ରୂପ ଭେଟ ସେ ପାଇଲା ॥
ସେ ବ୍ରାହ୍ମଣ ଘରେ ଯେଉଁ ପୁତ୍ର ହେବ ଜାତ ।
ପ୍ରକୃତ ସେବକ ସେ ବୋଇଲେ ଜଗନ୍ନାଥ ॥

ବିଦ୍ୟାପତି ବ୍ରାହ୍ମଣ ଯେ ଦୂତ ପଣେ ଗଲା ।
ଶବର ଝିଅଙ୍କୁ ସେ ଯେ ପ୍ରଦାନ ହୋଇଲା ॥
ଶବରୁଣୀଠାରୁ ଯେଉଁ ପୁତ୍ର ହେବ ଜାତ ।
ଶୁଦ୍ଧ ଶୁଆର ସେ ହେବ ବୋଲେ ଜଗନ୍ନାଥ ॥

ପରିଶେଷରେ ରାଜା ଇନ୍ଦ୍ରଦ୍ୟୁମ୍ନଙ୍କୁ ବରମାଗିବାପାଇଁ ଭଗବାନ କହିବାରୁ ଇନ୍ଦ୍ରଦ୍ୟୁମ୍ନ ପ୍ରାର୍ଥନା କଲେ-

ତୁମେ ଯେବେ ବରଦେବ ମାଗୁଅଛି ମୁହିଁ ।
ମୋହର ବଂଶରେ କେହି ନଥିବେ ଗୋସାଇଁ ॥

ଏପରି ବିଚିତ୍ର ବର ମାଗିବାର କାରଣ ଭଗବାନ ପଚାରିବାରୁ ଇନ୍ଦ୍ରଦ୍ୟୁମ୍ନ କହିଲେ-

ପୁତ୍ର ନାତି ବୋଲିବେ ଯେ ଦେଉଳ ଆମ୍ଭରି ।
ଆମ୍ଭର ବୋଇଲେ ଧର୍ମ ଯିବ ଯେ ମୋହରି ॥

(ଏହି 'ଦେଉଳ ତୋଳା'ରେ ''କଳିଯୁଗ କଥା ଏହି ଶ୍ରୀସ୍କନ୍ଦ ପୁରାଣ'' କୁହାଯାଇଥିଲେ ହେଁ ଏଥିରେ ସ୍କନ୍ଦପୁରାଣରୁ କେତେକ ବିଚ୍ୟୁତି ପରିଲକ୍ଷିତ ହୁଏ । ସ୍କନ୍ଦ ପୁରାଣରେ 'ଲଳିତା' ଚରିତ୍ର ନାହିଁ । ସ୍କନ୍ଦପୁରାଣର ବିଶ୍ୱାବସୁ ଶବର 'ଦେଉଳ ତୋଳା'ରେ ବସୁ ଶବର ହୋଇଛି । ଏହି ଉଭୟ ରଚନାରେ ବ୍ରାହ୍ମଣ-ଦୂତଙ୍କ ନାମ ବିଦ୍ୟାପତି ଥିବାବେଳେ ସାରଳା ଦାସଙ୍କ ମହାଭାରତରେ ଯଦୁ ବିପ୍ର / ବାସୁଦେବ ଉଲ୍ଲେଖ ଅଛି । 'ଦେଉଳ ତୋଳା'ର ବସୁ ଶବର କନ୍ୟାର ନାମ ଲଳିତା; ସାରଳା ମହାଭାରତରେ ଜାରା ଶବରର ପତ୍ନୀର ନାମ ଲଳିତା । ଏହିପରି ଏହି ପୁସ୍ତକମାନଙ୍କରେ ପ୍ରଦତ୍ତ ବିଷୟବସ୍ତୁରେ ଅନେକ ଅମେଳ ଦେଖାଯାଏ । ଶିଶୁ କୃଷ୍ଣ ଦାସଙ୍କ 'ଦେଉଳ ତୋଳା'ର ଏକାଧିକ ସଂସ୍କରଣ ପ୍ରକାଶ ପାଇଛି । ଏହି ସଂସ୍କରଣଗୁଡ଼ିକର ପାଠ ସର୍ବଦା ସମାନ ନୁହେଁ । ତା' ସତ୍ତ୍ୱେ ସେଗୁଡ଼ିକର ମୂଳ ବକ୍ତବ୍ୟ ଏକ ବୋଲି ପ୍ରଫେସର ଗଗନେନ୍ଦ୍ର ନାଥ ଦାସ କହନ୍ତି ।)



## ପରିଶିଷ୍ଟ - ୨

# ଶ୍ରୀମନ୍ଦିରର କଳା ଓ ସ୍ଥାପତ୍ୟ

ଶ୍ରୀମନ୍ଦିର ପରିସରର ମଧ୍ୟଭାଗରେ ମୁଖ୍ୟମନ୍ଦିର (ବଡ଼ଦେଉଳ) ଅବସ୍ଥିତ । ଏହି ମୁଖ୍ୟ ମନ୍ଦିର ଚାରିଟି ଭାଗରେ ବିଭକ୍ତ । ଏହାର ବିମାନ (ଗର୍ଭଗୃହ) ଏବଂ ମୁଖଶାଳା (ଜଗମୋହନ) ଗଙ୍ଗବଂଶର ଶ୍ରେଷ୍ଠ ରାଜା ଅନନ୍ତ ବର୍ମନ୍ ଚୋଡ଼ଗଙ୍ଗଦେବ ନିର୍ମାଣ କରିଥିଲେ ବୋଲି ସାଧାରଣ ଭାବେ ସ୍ୱୀକୃତ । ମାଦଳାପାଞ୍ଜି (ସଂ- ଆର୍ତ୍ତବଲ୍ଲଭ) ପ୍ରକାରେ ଏହି ରାଜାଙ୍କ ଅଣନାତି ଅନଙ୍ଗଭୀମଦେବ ଏହାକୁ ନିର୍ମାଣ କରିଥିଲେ । ସେଥିରେ ଲେଖାଅଛି ଯେ ଏ ରାଜା ‘‘ବଡ଼ଦେଉଳ କଲେ । ମୁଖଶିଆଳି କଲେ ।’’ ମୁଖ୍ୟ ମନ୍ଦିରର ତୃତୀୟ ଓ ଚତୁର୍ଥ ଭାଗ ଯଥାକ୍ରମେ ନାଟ ମନ୍ଦିର ଓ ଭୋଗମଣ୍ଡପ ପରବର୍ତ୍ତୀକାଳରେ ନିର୍ମିତ ହୋଇଥିଲା । ସେତେବେଳର ନାଟମନ୍ଦିରକୁ ଏବେ ଜଗମୋହନ କୁହାଯାଉଛି । ‘ମାଦଳାପାଞ୍ଜି’ରେ ଲେଖାଅଛି ଯେ ସୂର୍ଯ୍ୟବଂଶର ରାଜା ପୁରୁଷୋତ୍ତମ ଦେବଙ୍କ ରାଜତ୍ୱର ସପ୍ତମ ଅଙ୍କରେ ଭୋଗମଣ୍ଡପ ଓ ନବମ ଅଙ୍କରେ କୂର୍ମବେଢ଼ା (ଭିତର ବେଢ଼ା) ନିର୍ମିତ ହୋଇଥିଲା । ତତ୍‌ପୂର୍ବରୁ ରାଜା କପିଳେନ୍ଦ୍ରଦେବଙ୍କର ତିନି ଅଙ୍କରେ ବାହାର ବେଢ଼ା ନିର୍ମିତ ହୋଇସାରିଥିଲା । ‘ମାଦଳାପାଞ୍ଜି’ରେ ଉଲ୍ଲେଖ ଅଛି ଯେ ପରବର୍ତ୍ତୀ ଭୋଇବଂଶର ରାଜତ୍ୱକାଳରେ ରାଜା ମୁକୁନ୍ଦଦେବ (ଖ୍ରୀଷ୍ଟାବ୍ଦ ୧୫୬୦-୧୫୬୮) ଜଗମୋହନ ନିର୍ମାଣ କରାଇଥିଲେ । ମୁଖଶାଳା ଓ ଭୋଗମଣ୍ଡପକୁ ସଂଯୋଗ କରାଯାଇ ଜଗମୋହନ ନିର୍ମାଣ କରାଗଲା । ଏହିଠାରେ ଦେବଦାସୀ ନୃତ୍ୟ ହେଉଥିବାରୁ ଏହାକୁ ମଧ୍ୟ ନାଟମନ୍ଦିର କୁହାଯାଉଥିଲା । ମୁଖଶାଳାର ପୂର୍ବପଟର ଦ୍ୱାର ଅର୍ଥାତ୍ ଜୟବିଜୟ ଦ୍ୱାର ଏବଂ ଭୋଗମଣ୍ଡପର ବହିଃପାର୍ଶ୍ୱର କାନ୍ଥରେ ଖୋଦିତ କାରୁକାର୍ଯ୍ୟ ବା ସ୍ଥାପତ୍ୟ ମଧ୍ୟରେ ବହୁ ତାରତମ୍ୟ ଥିବାରୁ ନାଟମନ୍ଦିର (ଏବର ଜଗମୋହନ) ଓ ଭୋଗମଣ୍ଡପ, ବିମାନ ଓ ମୁଖଶାଳା ନିର୍ମାଣର ଅନେକ ବର୍ଷ ପରେ ନିର୍ମିତ ହୋଇଥିବା କୁହାଯାଏ । ବିମାନ, ମୁଖଶାଳା ଓ ଭୋଗମଣ୍ଡପର ଶୀର୍ଷଭାଗ ଶିଖର ସଦୃଶ । ନାଟମନ୍ଦିର (ଜଗମୋହନ)ର ଛାତ ସମତଳ ଅଟେ ।

ଭାରତର ସ୍ଥାପତ୍ୟକୁ ପ୍ରଧାନତଃ ତିନି ଶ୍ରେଣୀରେ ବିଭକ୍ତ ହୋଇଥିବା କୁହାଯାଏ । ଯଥା- ୧. ନାଗର ସ୍ଥାପତ୍ୟ (ଉତ୍ତର ଭାରତୀୟ) ୨. ବେସର ସ୍ଥାପତ୍ୟ (ଦକ୍ଷିଣ-ପଶ୍ଚିମ ଭାରତୀୟ), ୩. ଦ୍ରାବିଡ଼ ସ୍ଥାପତ୍ୟ (ଦକ୍ଷିଣ ଭାରତୀୟ) । ଅନ୍ୟ ମତରେ ୧. ଆର୍ଯ୍ୟଭାରତୀୟ ସ୍ଥାପତ୍ୟ, ୨. ବେସର ସ୍ଥାପତ୍ୟ (କ-ଦକ୍ଷିଣ ଭାରତୀୟ ବା ଦ୍ରାବିଡ଼, ଖ-ଦକ୍ଷିଣ ପଶ୍ଚିମ ଭାରତୀୟ, ଚାଲୁକ୍ୟ ସ୍ଥାପତ୍ୟ), ୩. କଳିଙ୍ଗ ସ୍ଥାପତ୍ୟ । ଶ୍ରୀମନ୍ଦିରର ସ୍ଥାପତ୍ୟକୁ ଉନ୍ନତ ନାଗର ରୀତି ବା କଳିଙ୍ଗ ସ୍ଥାପତ୍ୟର ଅନ୍ତର୍ଗତ କରାଯାଇଛି । ରାଜେନ୍ଦ୍ରଲାଲ ମିତ୍ର ଓଡ଼ିଶାର ସ୍ଥାପତ୍ୟକୁ 'ଉତ୍ତର-ଭାରତୀୟ ସ୍ଥାପତ୍ୟର ଉପବିଭାଗ' କିମ୍ବା 'କେନ୍ଦ୍ର ଭାରତୀୟ ଶିଳ୍ପ' ଆଖ୍ୟା ଦେଇଛନ୍ତି ।

'ମାଦଳାପାଞ୍ଜି'ରେ ଲେଖାଅଛି ଯେ ବଡ଼ଦେଉଳ 'ଶ୍ରୀବସ୍ତ୍ର ଖଣ୍ଡୁଆଳ' ଢାଞ୍ଚା ଅନୁସାରେ ଗଠିତ । ଏହି ପ୍ରକାର ଦେଉଳ ବିଷ୍ଣୁଙ୍କର ଅତି ପ୍ରିୟ ବୋଲି କୁହାଯାଇଛି । ଅଗ୍ନିପୁରାଣରେ ପାଞ୍ଚପ୍ରକାର ଦେଉଳ ସଂପର୍କରେ ଉଲ୍ଲେଖଥିବା ଜଣାଯାଏ । ତାହାହେଲା- ୧. ବୈରାଜ, ୨. ପୁଷ୍ପକ, ୩. ମାଳକ, ୪. କୈଳାସ ଓ ୫. ତ୍ରିପିଷ୍ଟକ । 'ବୈରାଜ' ଶ୍ରେଣୀ ଭିତରେ 'ଶ୍ରୀବସ୍ତ୍ର ଖଣ୍ଡୁଆଳ' ରହିଛି । ଶିଳ୍ପଶାସ୍ତ୍ର 'ଭୁବନ ପ୍ରଦୀପ'ରେ ଛବିଶରୁ ଊର୍ଦ୍ଧ୍ୱ ରେଖମନ୍ଦିରର ବିବରଣୀ ରହିଛି । ଏଥିରେ 'ଶ୍ରୀବସ୍ତ୍ର' ଶବ୍ଦଯୁକ୍ତ ତିନୋଟି ମନ୍ଦିର ଉଲ୍ଲେଖ ଅଛି । ସେଗୁଡ଼ିକ ହେଲା- ଶ୍ରୀବସ୍ତ୍ର ଖଣ୍ଡଶାଳ, ମୂଳ ଶ୍ରୀବସ୍ତ୍ର ଓ ଶ୍ରୀବସ୍ତ୍ର ନନ୍ଦିବର୍ଦ୍ଧନ ।

ଓଡ଼ିଶାରେ ସାଧାରଣତଃ ଚାରିପ୍ରକାର ମନ୍ଦିର ଦେଖାଯାଏ । ଯଥା ୧. ରେଖ / ରେଖା, ୨) ଖାକରା, ୩. ଗୌଡ଼ୀୟ ଏବଂ ୪. ଭଦ୍ରା । ଶ୍ରୀମନ୍ଦିର ରେଖଶ୍ରେଣୀର । ରେଖ ମନ୍ଦିରର ମୁଖ୍ୟ ଅଂଶ ହେଲା- ୧. ପୀଠ (ପୃଷ୍ଠ), ୨. ବାଡ଼, ୩. ଗଣ୍ଡି (ଶରୀର) ଏବଂ ୪. ମସ୍ତକ । ଶ୍ରୀମନ୍ଦିରର ପୀଠ 'ପଦ୍ମପୀଠ' । 'ବାଡ଼' ସାଧାରଣତଃ ପାଞ୍ଚ ଭାଗରେ ବିଭକ୍ତ । ଯଥା- ୧. ଜଙ୍ଘା, ୨. ସାକର ବରଣ୍ଡି, ୩. ତିକାଠର୍ମି, ୪. ସିକର ଏବଂ ୫. ସପ୍ତକାସ । ରେଖ ଦେଉଳର ବିମାନ କୁଟିଳ ରେଖା ବିଶିଷ୍ଟ ହୋଇଥାଏ । ଯେଉଁ ଦେଉଳର ବିମାନର ଆକୃତି ପୀରାମିଡ଼ ପରି, ତାହା ହେଲା ପୀଢ଼ ଦେଉଳ । ପୀଢ଼ ଓ ରେଖ ଦେଉଳ ମଧ୍ୟ ଏକରଥ, ତ୍ରିରଥ, ପଞ୍ଚରଥ, ସପ୍ତରଥ କିମ୍ବା ନବରଥ ମନ୍ଦିର ଦେଖାଯାଏ । ଏହି ଶ୍ରେଣୀର ମନ୍ଦିର ମଧ୍ୟରେ 'ଶ୍ରୀବସ୍ତ୍ର' ଅଗ୍ରଗଣ୍ୟ । ପଞ୍ଚରଥ ମନ୍ଦିରରେ ଦୁଇଟି ଅନୁରଥ ପାଗ, ଦୁଇଟି କନକ ପାଗ ଏବଂ ଗୋଟିଏ ରାହାପାଗ ରହିଥାଏ । ମଧ୍ୟଭାଗଟି ରାହାପାଗ; ତାହାର ଦୁଇପଟେ ଦୁଇଟି ଅନୁରଥ ପାଗ ଓ ଦୁଇ କୋଣରେ ଦୁଇଟି କୋଣକ (କନକ) ପାଗ ଥାଏ ।

ଭୁବନେଶ୍ୱର ଲିଙ୍ଗରାଜ ମନ୍ଦିର, ଅନନ୍ତବାସୁଦେବ, ରାଜାରାଣୀ, ବ୍ରହ୍ମେଶ୍ୱର ଓ କେଦାରେଶ୍ୱର-ଗୌରୀ ଇତ୍ୟାଦି ମନ୍ଦିର ପଞ୍ଚରଥ ଶ୍ରେଣୀର । ଶାରୀ ଦେଉଳର ବିମାନ ଓ ଜଗମୋହନ ସପ୍ତରଥ ବିଶିଷ୍ଟ । ଓଡ଼ିଶାରେ ନବରଥ ମନ୍ଦିର ଅତି ବିରଳ । ଭୁବନେଶ୍ୱରର ଚିତ୍ରେଶ୍ୱର ଦେଉଳକୁ ନବରଥ ଦେଉଳ କୁହାଯାଇପାରେ ।

ରେଖଦେଉଳର ବିଭିନ୍ନ ଅଂଶ ନିମ୍ନ ଚିତ୍ରରେ ପ୍ରଦର୍ଶନ କରାଗଲା ।




୧. କଳସଘଡ଼ି, ୨. କଳସହାଣ୍ଡି, ୩. କଳସପାଦ, ୪. ତ୍ରିପତଧାର, ୫. ଅଁଅଳା, ୬. ବେକୀ, ୭. ଘଟଚକ୍ର, ୮. ପଞ୍ଚମଭୂମି, ୯. ଚୁତର୍ଥଭୂମି, ୧୦. ତୃତୀୟଭୂମି, ୧୧. ଦ୍ୱିତୀୟ ଭୂମି, ୧୨. ଅନର୍ଥପାଗ, ୧୩. ରାହାପାଗ, ୧୪. ଉର୍ଦ୍ଧ୍ୱଜାଙ୍ଘ, ୧୫. ଉପରବରଣ୍ଡୀ, ୧୬. ବନ୍ଧନ, ୧୭. ବରଣ୍ଡୀ, ୧୮. ଜାଙ୍ଘ । (କ) କନକପାଗ, (ଖ) ରଥକ, (ଗ) ବାଡ଼, (ଘ) ପଞ୍ଚକମ, (ଙ) ତିନିକମ, (ଚ) ସାତକମ ।

କାହାରି କାହାରି ମତରେ ଓଡ଼ିଶାର ଦେଉଳମାନଙ୍କୁ ମୁଖ୍ୟତଃ ଦୁଇଟି ଶ୍ରେଣୀରେ ବିଭକ୍ତ କରାଯାଇପାରେ- ରେଖଦେଉଳ ଓ ପୀଢ଼ ଦେଉଳ । ପୀଢ଼ ଦେଉଳର ବିଭିନ୍ନ ଅଂଶର ଏକ ରେଖାଚିତ୍ର ପ୍ରଦତ୍ତ ହେଲା ।




**ପଞ୍ଚରଥ ପୀଢ଼ ଦେଉଳର ଭୂମି**

**୧. ରାହାପାଗ, ୨. ଅନର୍ଥପାଗ, ୩. କନକପାଗ, ୪. ଦ୍ୱାର**

ଶ୍ରୀମନ୍ଦିରର ମୁଖଶାଳା ଓ ଭୋଗମଣ୍ଡପ ପଞ୍ଚରଥ ପୀଢ଼ ଦେଉଳ ଶ୍ରେଣୀର । ଏଠାରେ କିନ୍ତୁ ଶୀର୍ଷରେ ପତାକା ଉଡ଼େନାହିଁ । ଭୋଗ ମଣ୍ଡପର ଅନର୍ଥପାଗ (ଅନୁରଥ) ଗୁଡ଼ିକ ଅସ୍ପଷ୍ଟ ଥିବା ହେତୁ ଏହାକୁ ତ୍ରିରଥ ବୋଲି କେହିକେହି ମତ ଦେଇଥାନ୍ତି । ଏହାର ଦୈର୍ଘ୍ୟ ପୂର୍ବ ପଶ୍ଚିମରେ ୫୮ ଫୁଟ ଏବଂ ଉତ୍ତର ଦକ୍ଷିଣରେ ୫୬ ଫୁଟ । ମୁଖଶାଳା ୬ଫୁଟ ୩ ଇଞ୍ଚ ଉଚ୍ଚର ପୀଠ ଉପରେ ନିର୍ମାଣ କରାଯାଇଛି । ଏହାର ତଳଜଂଘାର ଉଚ୍ଚତା ପ୍ରାୟ ୮ ଫୁଟ । ମୁଖଶାଳାର ଲମ୍ବ ଓ ଓସାର ପ୍ରତ୍ୟେକ ୮୦ ଫୁଟ । ଏହାର ପୂର୍ବଦ୍ୱାରର ନାମ ଜୟବିଜୟଦ୍ୱାର, ପଶ୍ଚିମ ଦ୍ୱାରର ନାମ କଳାହାଟ ଦ୍ୱାର (ବିମାନ ବା ଗର୍ଭଗୃହକୁ ବାଟ), ଦକ୍ଷିଣଦ୍ୱାରଟି ମୁକ୍ତିମଣ୍ଡପ ଆଡ଼କୁ ଓ ଉତ୍ତର ଦ୍ୱାରଟି ରତ୍ନ ଭଣ୍ଡାର ଭିତରକୁ ରହିଅଛି । ଜୟବିଜୟ ଦ୍ୱାରର କାରୁକାର୍ଯ୍ୟ ଅତି ରମଣୀୟ । ଦ୍ୱାରର ଉଭୟ ପଟରେ କେତେକ ଶିଳାଲିପି ରହିଛି ।




**ପୀଢ଼ ଦେଉଳ**

**୧. ଚକ୍ର, ୨. କଳସ, ୩. କର୍ପୂରୀ, ୪. ଅଅଁଳା, ୫. ବାଢ଼**

ବିମାନ ବା ମୁଖ୍ୟମନ୍ଦିର ଏକ ମଧ୍ୟଯୁଗୀୟ ପଞ୍ଚରଥ ରେଖମନ୍ଦିର । ଏହା ତିନି ମହଲା ବିଶିଷ୍ଟ । ପ୍ରାୟ ୨୦୦ ଫୁଟ ଉଚ୍ଚ ବିମାନର ନିମ୍ନ କାନ୍ଥର ଓସାର ୫.୩୦ ମିଟର ବା ୧୭ ଫୁଟ ୪ଇଞ୍ଚ । ଏହାର ନିର୍ମାଣ ଶୈଳୀ ସହ ଉତ୍କଳର ସୋମବଂଶୀ ରାଜାମାନଙ୍କଦ୍ୱାରା ନିର୍ମିତ ଭୁବନେଶ୍ୱରର ଲିଙ୍ଗରାଜ, ବ୍ରହ୍ମେଶ୍ୱର ଓ କେତେକ ପ୍ରାଚୀନ ମନ୍ଦିରର ସାଦୃଶ୍ୟ ଅଛି । ଶ୍ରୀମନ୍ଦିର ବିମାନର ଏକ ବିଶେଷତ୍ୱ ହେଉଛି ଏଠାରେ ମୈଥୁନ ମୂର୍ତ୍ତିକଳା ନାହିଁ । ମୁଖଶାଳାର ବାହାରପଟେ ଏବଂ ପରବର୍ତ୍ତୀ କାଳରେ ନିର୍ମିତ କୂର୍ମବେଢ଼ାର ଅନ୍ୟାନ୍ୟ କେତୋଟି ମନ୍ଦିରରେ ମୈଥୁନ ମୂର୍ତ୍ତି ଦେଖାଯାଏ ।

ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ ଲେଖିଛନ୍ତି ଯେ ରାସ୍ତା (ରୋଡ଼୍) ଉପରୁ ବିମାନର ଖପୁରୀ ପର୍ଯ୍ୟନ୍ତ ଉଚ୍ଚତା ହେଉଛି ୨୧୪.୮ ଫୁଟ । କାନ୍ଥର ବାହାର ମାପ (ଚାରିକୋଣରୁ) ୮୦ ଫୁଟ

ଲମ୍ବ । ଓସାର ମଧ୍ୟ ସେତିକି । ଦୁଇଟି କୋଣକ ପାଗ ପ୍ରତ୍ୟେକଟି ୧୬ ଫୁଟ ଓସାର । ଦୁଇଟି ଅଣରଥ (ଅନୁରଥ) ପାଗ, ପ୍ରତ୍ୟେକଟି ୧୦ଫୁଟ ଲମ୍ବ । ରାହାପାଗଟି ୨୪ ଫୁଟ ଓସାର । ବିମାନଟି ୫ଫୁଟ୍ ୨ଇଞ୍ଚ୍ ଉଚ୍ଚ ପୀଠ ଉପରେ ଠିଆହୋଇଛି । ଜଂଘାର ଉଚ୍ଚତା ୧୧ଫୁଟ୍ ୬ ଇଞ୍ଚ୍ ।

ଶ୍ରୀମନ୍ଦିରର ଶରୀର ମୁଖ୍ୟତଃ ତିନିଭାଗରେ ବିଭକ୍ତ । ଯଥା- ବାଡ଼, ଗଣ୍ଡି ଓ ମସ୍ତକ । ମନ୍ଦିରର ନିମ୍ନ ଅଂଶକୁ ବାଡ଼ କୁହାଯାଏ । ବାଡ଼ ଉପରୁ ବକ୍ର ଆକାରରେ ଉଠିଛି ଗଣ୍ଡି । ଗଣ୍ଡି ଉପରେ ମସ୍ତକ । ଆମଳକ, ଦଧିନଉତି ଓ କଳସକୁ ନେଇ ମସ୍ତକ ନିର୍ମିତ । ବିମାନର କାନ୍ଥ ବା ବାଡ଼ ୫ଫୁଟ ୨ ଇଞ୍ଚ ପୃଷ୍ଠ ଉପରେ ଗଢ଼ା ହୋଇଛି । ଏଥିରେ ପାଞ୍ଚଟି ଭାଗ ବା ପଞ୍ଚ କର୍ମ ରହିଛି । ତାହାହେଲା- ୧. ପାଭାଗ, ୨. ତଳଜଂଘା, ୩. ବନ୍ଧନୀ, ୪. ଉପରଜଂଘା, ୫.ବରାଣ୍ଡି । ବରାଣ୍ଡିରୁ ଉର୍ଦ୍ଧ୍ୱକୁ ଉଠିଛି ଗଣ୍ଡି । ପାଭାଗ ମଧ୍ୟ ପଞ୍ଚାଙ୍ଗ ବାଡ଼ରେ ବିଭକ୍ତ । ଯଥା- ପାଦ ବା ଖୁର, କୁମ୍ଭ, ପଟ, କନି ଓ ବସନ୍ତ ।

ବିମାନର ପଶ୍ଚିମ ପାର୍ଶ୍ୱର ପଟର ସମାନ୍ତରାଳ ଭାଗରେ କେତେକ ଶ୍ରୀକୃଷ୍ଣ ଲୀଳା ସମ୍ବନ୍ଧୀୟ ଦୃଶ୍ୟ ଯଥା- ଗିରିଗୋବର୍ଦ୍ଧନ ଧାରଣ, ଧେନୁକାସୁର ବଧ, ରଥରେ ମଥୁରା ବିଜୟ, ଗୋପୀବିହାର ଆଦି ରହିଛି । 'ବସନ୍ତ'ର ସମ୍ମୁଖ ଭାଗରେ ହସ୍ତୀନାଥଙ୍କ ଯାତ୍ରା, ଅଶ୍ୱଯାତ୍ରା ଏବଂ ସୈନ୍ୟସାମନ୍ତଙ୍କର ଯୁଦ୍ଧଯାତ୍ରା ଦୃଶ୍ୟ ରହିଛି । 'ଗଣ୍ଡି'ର ନିମ୍ନରେ ଲତା, ଡାଳି ପ୍ରଭୃତି କାରୁକାର୍ଯ୍ୟ ରହିଛି ।

ତଳଜଂଘାର ରାହା, ଅନୁରଥ, କୋଣକ ପାଗର କାନ୍ଥରୁ କ୍ଷୁଦ୍ର ମନ୍ଦିରାକୃତି ଖାକରାମୁଣ୍ଡିମାନ ବାହାରକୁ ବାହାର ହୋଇଛି । ଖାକରାମୁଣ୍ଡିର ସମ୍ମୁଖ ଭାଗରେ ବିଭିନ୍ନ ଦିଗ୍‌ପାଳଙ୍କ ମୂର୍ତ୍ତି ଅଛି । ପୂର୍ବ ଦିଗରେ ଇନ୍ଦ୍ର ଐରାବତ ହସ୍ତୀ ଉପରେ, ଅଗ୍ନିକୋଣରେ ଅଗ୍ନି ଛାଗ ବା ମେଷ ଉପରେ, ନୈଋତ କୋଣରେ ନୈଋତ ମନୁଷ୍ୟ ଉପରେ, ପଶ୍ଚିମକୋଣରେ କୁବେର ସପ୍ତପାତ୍ର ବା କୁଣ୍ଡ ଉପରେ, ଐଶାନ୍ୟକୋଣରେ ଈଶାନ ବୃକ୍ଷ ଉପରେ, ଉର୍ଦ୍ଧ୍ୱରେ ବ୍ରହ୍ମା ଓ ଅଧଃରେ ଅନନ୍ତ ବାସୁକୀ ଉପରେ ଉପବେଶନ କରିଛନ୍ତି ।

ତଳଜଂଘାର ଦୁଇ ଖାକରାମୁଣ୍ଡି ମଝିରେ ଥିବା କୋଣରେ ବିରାଟ ଗଜବିଡାଳ ମୂର୍ତ୍ତି ରହିଛି । ଶରୀର ଭାଗ ସିଂହ ଓ ମୁଖ ଭାଗ ଗଜ ସଦୃଶ ଏହି ଅନନ୍ୟ ଗଜବିଡ଼ାଳ ମୂର୍ତ୍ତି ଅପସ୍ମାର ପୁରୁଷ ବା ରାକ୍ଷସକୁ ପାଦରେ ମର୍ଦ୍ଦନ କରୁଛନ୍ତି । ପ୍ରତ୍ୟେକ ଦିଗରେ ୪ଟି ଲେଖାଏଁ ବିଡ଼ାଳ; ସମୁଦାୟ ୧୬ଟି ବିଡ଼ାଳମୂର୍ତ୍ତି ଚତୁର୍ଦ୍ଦିଗରେ ରହିଛି ।

ଗଜବିଡ଼ାଳ ମୂର୍ତ୍ତି ସଂପର୍କରେ ପ୍ରତ୍ନତତ୍ତ୍ୱ ବିଶାରଦ ଡକ୍ଟର ଜେ.କେ. ପଟ୍ଟନାୟକ ଲେଖିଛନ୍ତି; The corner space in between the two khakaramundi shrines within the tala-jangha portion is occupied by the giant figures of gaja-simha, simha trampling over elephant or mythical animal gaja-vidala having the body of lion and the face of an elephant trampling over 'apasmarapurusa' or demon. ତଳଜଂଘା ଓ ଉପରଜଂଘାକୁ ବିଭକ୍ତ କରୁଥିବା ବନ୍ଧନାରେ ଫୁଲ, ଡାଳି, ଲତା ଏବଂ ସୈନ୍ୟବାହିନୀର ଯୁଦ୍ଧଯାତ୍ରା ଖୋଦିତ ହୋଇଛି । ଏହି ଯୁଦ୍ଧଯାତ୍ରାରେ ହସ୍ତୀ ଓ ଘୋଡ଼ା ସାମିଲ ହୋଇଛନ୍ତି ।

ବିମାନର ତିନିଦିଗକୁ ଲାଗି ତିନୋଟି ଛୋଟ ମନ୍ଦିର ବା 'ନିଶା' ରହିଛି । ଏଥିରେ ପାର୍ଶ୍ୱଦେବତା ଭାବରେ ଦକ୍ଷିଣରେ ନିଶାବରାହ, ପଶ୍ଚିମରେ ନିଶାନୃସିଂହ ଏବଂ ଉତ୍ତରରେ ନିଶାତ୍ରିବିକ୍ରମ ଅଛନ୍ତି । '' ଏହି ନିଶାଗୁଡ଼ିକ ପରବର୍ତ୍ତୀକାଳରେ ସଂଯୁକ୍ତ ହୋଇଛି । ପାର୍ଶ୍ୱଦେବଦେବୀ ମୁଖ୍ୟ ମନ୍ଦିରର ତିନି ପାର୍ଶ୍ୱରେ ଖୋପ (niche)ରେ ରହିବା କଥା । ଓଡ଼ିଶାର ମନ୍ଦିର ସ୍ଥାପତ୍ୟର ବିକାଶକ୍ରମରେ ପରବର୍ତ୍ତୀ କାଳରେ ଏହା ଏକ ସ୍ଥାପତ୍ୟ କୌଶଳ ଭାବରେ ମୁଖ୍ୟମନ୍ଦିରକୁ ଦୃଢ଼ ରଖିବା ସହ ପାର୍ଶ୍ୱଦେବତାଙ୍କ ଆସ୍ଥାନ ରୂପରେ ସଂଯୋଜିତ ହୋଇଛି ।'' ('ପୁରୀ ବୋଲି')

ବିମାନର ଉପରଜଂଘାରେ ଥିବା ପୀଢ଼-ମୁଣ୍ଡିମାନଙ୍କରେ ବିଷ୍ଣୁଙ୍କ ଦଶାବତାର ମୂର୍ତ୍ତି ରହିଛି । ଦକ୍ଷିଣ-ପୂର୍ବ କୋଣରେ ବରାହ ଏବଂ ନୃସିଂହ, ଦକ୍ଷିଣ ପଶ୍ଚିମ କୋଣରେ କଳକୀ ଏବଂ ବୁଦ୍ଧଙ୍କ ମୂର୍ତ୍ତି ଅଛି । ବରାଣ୍ଡି ନିମ୍ନରେ ଥିବା ରାହାପାଗର ଦୁଇଟି ଶିଖରରେ ବିଷ୍ଣୁଙ୍କ ଚତୁର୍ଦ୍ଧାମୂର୍ତ୍ତି ରହିଛି । ବିମାନର ପୂର୍ବ ପାର୍ଶ୍ୱସ୍ଥ ରାହାପାଗରେ ଏକ ବିଶାଳ ଗଜସିଂହ ମୂର୍ତ୍ତି ଅଛି, ଯାହା କି ମନ୍ଦିରର ସବୁଠାରୁ ବୃହତ୍ ଗଜସିଂହ । ପ୍ରତ୍ୟେକ ପାର୍ଶ୍ୱଦେବତା- ବରାହ, ନରସିଂହ ଓ ତ୍ରିବିକ୍ରମଙ୍କ ଉଭୟ ପାର୍ଶ୍ୱରେ ବିଷ୍ଣୁଙ୍କର ଚାରିଟି ଲେଖାଏଁ ମୂର୍ତ୍ତି, ମୋଟ ୨୪ ପ୍ରକାର ବିଷ୍ଣୁଙ୍କ ମୂର୍ତ୍ତି ଖୋଦିତ ହୋଇଛି । ବିଶିଷ୍ଟ ପ୍ରତ୍ନତତ୍ତ୍ୱବିତ୍ ଡକ୍ଟର ଜି.ସି. ଚାଉଲେ କହନ୍ତିଃ On both sides of each parswadebata shrines, in the outer wall, figures of Visnu four on either side is carved with depicting 24 forms of Visnus, such as Kesava, Madhava, Damodara, Narayana, Vishnu, etc.

ଅନୁରଥ ପାଗରେ ଉପରକୁ ଉପର ହୋଇ ୩ଟି ଲେଖାଏଁ କ୍ଷୁଦ୍ର ଅଙ୍ଗଶିଖର ବାମ ଓ ଡାହାଣ ପାର୍ଶ୍ୱରେ ରହିଛି । ସେଥିରେ ବ୍ରହ୍ମା, ବିଷ୍ଣୁ ଓ ଶିବଙ୍କ ପ୍ରତିମା ରହିଛି । ବିମାନର ଦକ୍ଷିଣ ପାର୍ଶ୍ୱସ୍ଥ ଅନୁରଥ ପାଗର ଉପର ଜଂଘାରେ ଶ୍ରୀକୃଷ୍ଣଙ୍କ କାଳୀୟ ଦଳନ ମୂର୍ତ୍ତି ଅଛି । ଉତ୍ତରପାର୍ଶ୍ୱସ୍ଥ ଅନୁରଥ ପାଗର ଉପରଜଂଘାରେ ମଧ୍ୟ ଶ୍ରୀକୃଷ୍ଣ ଓ ଦ୍ୱିଭୁଜ ବିଷ୍ଣୁଙ୍କ ମୂର୍ତ୍ତି ରହିଛି । ଏହି ଅନୁରଥ ପାଗର ଉଭୟ ପାର୍ଶ୍ୱରେ ପ୍ରାୟ ଛଅଫୁଟ ଉଚ୍ଚର ଏକ ବିଡ଼ାଳ ମୂର୍ତ୍ତି ବିଦ୍ୟମାନ । କୋଣକ ପାଗଟି ଓସାରିଆ ଓ କୋଣମାନ ଅର୍ଦ୍ଧବୃତ୍ତାକାର । ଉଭୟ ଅନୁରଥ ଓ କୋଣକ ପାଗରେ ଦିଗ୍‌ପାଳଙ୍କ ମୂର୍ତ୍ତି ଅଛି । ଉତ୍ତର ପାର୍ଶ୍ୱ କାନ୍ଥରେ ଉପବେଶନ କରିଥିବା ବିଷ୍ଣୁ, ଉର୍ଦ୍ଧ୍ୱବାହୁରେ ଗଦାପଦ୍ମ ଓ ନିମ୍ନବାହୁରେ ଶଙ୍ଖଚକ୍ର ଧାରଣ କରିଛନ୍ତି । ପୂର୍ବ ଓ ଦକ୍ଷିଣ ପାର୍ଶ୍ୱରେ ବିଷ୍ଣୁଙ୍କର ଅନେକ ମୂର୍ତ୍ତି ଥିଲେ ହେଁ ଦକ୍ଷିଣ ପାର୍ଶ୍ୱର ମୂର୍ତ୍ତିମାନଙ୍କରୁ ଅଧିକାଂଶ ଭଗ୍ନ ଅବସ୍ଥାରେ ରହିଥିବା ଦେଖାଯାଏ ।

ବିମାନର ଅଙ୍ଗଶିଖର ଓଡ଼ିଶାର ରେଖଦେଉଳର ଏକ ବୈଶିଷ୍ଟ୍ୟ । ବିମାନର ବାଡ଼ରେ ଥିବା ୨୪ଟି ଅଙ୍ଗଶିଖରରେ ଜଣେଜଣେ ଦେବଦେବୀ ବିରାଜିତ । ମନ୍ଦିର ଉପରେ ଉତ୍ତର କୋଣର ପୂର୍ବଦିଗରେ ନଟରାଜ ଓ ମଝିରେ ସୂର୍ଯ୍ୟଦେବତାଙ୍କ ମୂର୍ତ୍ତି, ବିମାନର ପୂର୍ବଦିଗରେ ବିବିଧ ଆୟୁଧ ଧାରଣ କରିଥିବା ଦିଗ୍‌ପାଳଙ୍କ ମୂର୍ତ୍ତି, ପଶ୍ଚିମଦିଗରେ କାଳୀ ଦକ୍ଷିଣ-ପଶ୍ଚିମ ଅଙ୍ଗ ଶିଖରରେ ଗଣେଶ ଓ ଦକ୍ଷିଣ-ପୂର୍ବ କୋଣରେ ବ୍ରହ୍ମାଙ୍କର ମୂର୍ତ୍ତି ଦେଖାଯାଏ ।

ମନ୍ଦିରର ରେଖ ବା ଚାଳ ଦେଉଳ ଭିତରକୁ ଆସ୍ତେ ଆସ୍ତେ କ୍ରମବକ୍ର ଗୋଲାକୃତି ଦୋଳି ସ୍ଥାନରେ ଏକତ୍ର ଯୋଡ଼ି ହୋଇଛି । ଅଧ୍ୟାପକ ଗୋପାଳକୃଷ୍ଣ ଦାସ ଲେଖିଛନ୍ତି, 'ଦେଉଳ ଗଣ୍ଡିର ଶୀର୍ଷ ପଥରଗୁଡ଼ିକ ଦୃଢ଼ ଭାବରେ ଧରି ରଖିବାପାଇଁ ୧୭୫ ଫୁଟ ଉଚ୍ଚରେ ଗୋଲାକାର ପ୍ରକାଣ୍ଡ ଆମଳକ ଶିଳା ବା ଅଁଳା ବେଢ଼ା ରହିଛି । କମଳାକୃତି ଆମଳକ ଶହେଗୋଟି ପାଖୁଡ଼ା ସମନ୍ୱିତ ଏହି ବିପୁଳାକୃତି ଆମଳକ ବହୁ ବିଶାଳକାୟ ପ୍ରସ୍ତର ଖଣ୍ଡଦ୍ୱାରା ନିର୍ମିତ । ଏଥିରେ ସମୁଦାୟ ୬୫ଗୋଟି ପ୍ରସ୍ତର ଲାଗିଥିବ ଅନୁମେୟ । ତଳ ଉପର ହୋଇ ଗୋଲାକାରରେ ସଜ୍ଜିତ ହୋଇଥିବା ପ୍ରସ୍ତର ଖଣ୍ଡଗୁଡ଼ିକ ବିଭିନ୍ନ କୌଶଳରେ ଦୁଇ ପାଷାଣ ମଝିରେ ଲୁହା ବାମ୍ଫୁ ଆଣି ଦିଆଯାଇଛି । ଆମଳକ ଶିଳାତଳେ କୋଣକ ପାଗ ଉପରେ ଦୋପିଛା ସିଂହ ଏବଂ ରାହପାଗର ଉପରେ ନମସ୍କାର ମୁଦ୍ରାରେ ଗରୁଡ଼ ଉପବେଶନ କରିଛନ୍ତି । ଆମଳକ ଶିଳା ଉପରେ ବୃହଦାକାର ଖପୁରି ଦେଇ ବିମାନର ମୁଣ୍ଡବନ୍ଧା ବା ଦେଉଳମୁଦ ହୋଇଛି । କଳସି ବା କୁମ୍ଭ ପଥର ଖପୁରି ଉପରେ ରହିଛି ।'' କଳସ ଉପରେ ଅଷ୍ଟଧାତୁର ନୀଳଚକ୍ରକୁ ଦୃଢ଼ ଭାବରେ ଧରି ରଖିବାପାଇଁ ଏକ ଲମ୍ବା ତଥା ଗୋଲାକାର ପ୍ରସ୍ତର ବା କଳସ ଘଡ଼ି ରହିଛି । 'ମହଣ ମହଣ ଓଜନର ଗଜସିଂହ, ଦୋପିଚ୍ଛା ସିଂହ, ଗରୁଡ଼ ମୂର୍ତ୍ତିକୁ ଶିଳ୍ପୀମାନେ ଏତେ ଉଚ୍ଚରେ ସ୍ଥାପନ କରିଥିଲେ । ବିମାନର ଉଚ୍ଚତା ଓ ଆମଳକର ଗୁରୁଭାର ଦେଖିବାମାତ୍ରେ ଦର୍ଶକର ହୃଦୟ ସ୍ତମ୍ଭୀଭୂତ ହୋଇଯାଏ ।'

କମନୀୟ ସୂକ୍ଷ୍ମ କାରୁକାର୍ଯ୍ୟ ଦୃଷ୍ଟିରୁ ଶ୍ରୀମନ୍ଦିରର ସ୍ଥାନ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଅଳସ କନ୍ୟା, ମୁଗ୍‌ଧା, ପଦ୍ମଗନ୍ଧା, ଚାମରୀ, ଗୁଣ୍ଠନୀ, ମାର୍ଦ୍ଦଳି, ଶୁକସାରିକା, ନୂପୁର ପାଦିକା ପ୍ରଭୃତି ସୁରସୁନ୍ଦରୀ (celestial nymph) ମୂର୍ତ୍ତିଗୁଡ଼ିକ ଅନୁରଥ ପାଗର ଉଭୟ ପାର୍ଶ୍ୱରେ ତରଙ୍ଗାୟିତ ଡାଳି ଓ ସୁଉଚ୍ଚ ପଦ୍ମପୀଠ ଉପରେ ଛନ୍ଦାୟିତ ଭଙ୍ଗୀମାରେ ଦଣ୍ଡାୟମାନ । ପ୍ରତ୍ୟେକ ପାର୍ଶ୍ୱରେ ଚାରିଟିକରି ସମୁଦାୟ ଷୋହଳଟି ଜୀବନ୍ତ ମଣିଷାକୃତି ସୁରସୁନ୍ଦରୀ ମୂର୍ତ୍ତି ରହିଛି ।'' ଏହି ସୁରସୁନ୍ଦରୀ ମୂର୍ତ୍ତିମାନ ଉତ୍କଳୀୟ ଚାରୁକଳାର ଉତ୍କୃଷ୍ଟ ନିଦର୍ଶନ ।

ରୋଷଘରର ସନ୍ନିକଟ ଗଙ୍ଗା ଓ ଯମୁନା କୂପ, ଈଶାନେଶ୍ୱର, ପାତାଳେଶ୍ୱର ମନ୍ଦିର, ମୁକ୍ତିମଣ୍ଡପ ସଂଲଗ୍ନ ନୃସିଂହ ମନ୍ଦିର ଏବଂ ପରବର୍ତ୍ତୀ ନାଟଗଣେଶ ମନ୍ଦିରମାନଙ୍କର ପ୍ରତ୍ନତାତ୍ତ୍ୱିକ ବୈଶିଷ୍ଟ୍ୟ ପ୍ରତି ଦୃଷ୍ଟିପାତ କରି ବିଶିଷ୍ଟ ପ୍ରତ୍ନତତ୍ତ୍ୱବିତ୍ ଡକ୍ଟର ବି.କେ.ରଥ ମତ ଦେଇଛନ୍ତି ଯେ ଏହି ନିର୍ମାଣଗୁଡ଼ିକ ପ୍ରାକ୍-ଗଙ୍ଗ ରାଜବଂଶ ସମୟର ଅର୍ଥାତ୍ ୧୦ମ-୧୧ଶ ଶତାବ୍ଦୀ ସମୟର । ଯଥାର୍ଥରେ ଏକ ଛୋଟ ପାହାଡ଼ ଉପରେ ଶ୍ରୀମନ୍ଦିର ପରିସର ଗଢ଼ିଉଠିଛି । ଏହି ପାହାଡ଼କୁ ନୀଳଶୈଳ, ନୀଳାଚଳ ଏବଂ ନୀଳକନ୍ଦର ବୋଲି ପୁରାଣ ସାହିତ୍ୟରେ କୁହାଯାଇଛି । ଡକ୍ଟର ରଥ ଲେଖିଛନ୍ତି:

All the above indicate the existence of few structures inside the complex before the Ganga period. It is only after the present temple was constructed for Lord Purusottama by the first Ganga King of Odisha

Chodagangadeva in the 12th century the complex started to develop and in due course it has come to its present position.

Presently one finds 137 subsidiaryshrines and old structures along with a number of modern constructions and sheds inside the complex. In fact the construction process seems to be an ongoing one as alterations and additions are still made by temple administration and different nijogas on the structures used by them.

The temple and shrines found inside the complex are of various types which include rekhadeula, pidhadeula, mohana, mandapa, ardha mandapa, chamber shrines with single or more than one chambers. There are also miniature structures.

ଶ୍ରୀମନ୍ଦିରର କଳା ଓ ସ୍ଥାପତ୍ୟ ସଂପର୍କରେ ବିସ୍ତୃତ ଆଲୋଚନା କରାଗଲେ ଏକ ସ୍ୱତନ୍ତ୍ର ପୁସ୍ତକ ହୋଇପାରିବ ।

**ପ୍ରସଙ୍ଗ ସୂଚନା**


୧. ଶ୍ରୀଜଗନ୍ନାଥ ମନ୍ଦିରର କଳା ଓ ସ୍ଥାପତ୍ୟ- ଅଧ୍ୟାପକ ଜଗନ୍ନାଥ ଦାଶ, ('ଶ୍ରୀଜଗନ୍ନାଥ', ରଥଯାତ୍ରା ସଂଖ୍ୟା, ୧୮୮୩)

୨. ଶ୍ରୀଜଗନ୍ନାଥ ମନ୍ଦିରର ଶିଳ୍ପକଳା- ଅଧ୍ୟାପକ ଗୋପାଳକୃଷ୍ଣ ଦାସ, ('ରାଷ୍ଟ୍ରଦେବତାର ଐଶ୍ୱର୍ଯ୍ୟ' ସଂକଳନ: ଆଲୋକପ୍ରଭା ପ୍ରକାଶନ, ଢେଙ୍କାନାଳ, ୨୦୦୨)

୩. ପୁରୀ ବୋଲି - ଡକ୍ଟର ସିଦ୍ଧେଶ୍ୱର ମହାପାତ୍ର, ଓ.ସା.ଏ., ଭୁବନେଶ୍ୱର

୪. ଉତ୍କଳୀୟ ଶିଳ୍ପକଳା (ପ୍ରବନ୍ଧ), 'ଶାବର ଶ୍ରୀକ୍ଷେତ୍ର ସମାଚାର', କୋରାପୁଟ, ଅଗଷ୍ଟ, ୨୦୧୪

୫. The Jagannath temple complex at Puri- Dr. B.K Rath

(Sri Jagannath: Enigmatic Lord of the Universe, Sisukalama, 2014)

୬. Art and Iconic Imagery on in the main sanctuary of the Jagannath Temple- Dr. J.K. Patnaik.

(Sri Jagannath: Enigmatic Lord of the Universe, Sisukalama, 2014)

୭. Hidden glory of Art & Architecture of Jagannath Temple, Puri- Dr. G. C. Chauley. (Studies in the Cult of Jagannath, (Ed) K.C. Mishra, 1991, Bhubaneswar.)




## ପରିଶିଷ୍ଟ - ୩

# ଶ୍ରୀମନ୍ଦିର ସଂରକ୍ଷଣ

**ଏ**ହି ପ୍ରାଚୀନ ଶ୍ରୀଜଗନ୍ନାଥ ମନ୍ଦିର ଓ ତା'ର ପରିସରସ୍ଥ ଅନ୍ୟାନ୍ୟ ମନ୍ଦିର ଓ ପ୍ରାଚୀର ଇତ୍ୟାଦିର ମରାମତି ଏବଂ ସଂରକ୍ଷଣ ନିଶ୍ଚିତ ଭାବରେ ଏକ କଠିନ କାର୍ଯ୍ୟ ।

ଖ୍ରୀଷ୍ଟୀୟ ୧୭ଶ ଶତାବ୍ଦୀରୁ ଶ୍ରୀମନ୍ଦିରର ମରାମତି ତଥା ସଂରକ୍ଷଣପାଇଁ ଉଦ୍ୟମ ହୋଇଥିବା ଇତିହାସରୁ ସୂଚନା ମିଳେ । ବିଭିନ୍ନ ସମୟରେ ବଜ୍ରପାତ, ସାମୁଦ୍ରିକ ଲୁଣି ପବନର ପ୍ରକୋପ, ବିଧର୍ମୀଙ୍କ ଆକ୍ରମଣ, ବିଭିନ୍ନ କାରଣରୁ ମନ୍ଦିର ଗାତ୍ରରେ ସୃଷ୍ଟି ହୋଇଥିବା ଫାଟ ଯୋଗୁଁ ବର୍ଷାପାଣି ପ୍ରବେଶ କରିବାଦ୍ୱାରା ପାଣି ଓ ଲୁଣି ପବନ ସଂସ୍ପର୍ଶରେ ମନ୍ଦିର ନିର୍ମାଣରେ ବ୍ୟବହୃତ ହୋଇଥିବା ଲୁହା କଡ଼ି (iron beam) ଓ ଲୁହା ଧାରକ(iron clip) କ୍ରମଶଃ ଦୁର୍ବଳ ହୋଇପଡ଼ିଲା । ବିଭିନ୍ନ ସମୟରେ ରାଜାମାନେ ମନ୍ଦିରକୁ ସୁରକ୍ଷିତ କରିବା ନିମନ୍ତେ ଚୂନର ପ୍ରଲେପ ଦେଇଥିଲେ । ତଦ୍ଦ୍ୱାରା ଫାଟ ବନ୍ଦ ହୋଇଯାଇ ମନ୍ଦିର ସୁରକ୍ଷିତ ରହିବ ବୋଲି ବିଶ୍ୱାସ କରାଯାଉଥିଲା ।

ମାଦଳାପାଞ୍ଜିରୁ ଜଣାଯାଏ ଯେ, ଭୋଇ ବଂଶର ରାଜା ନରସିଂହଦେବ (ଖ୍ରୀ. ୧୬୨୧-୧୬୪୭)ଙ୍କ ରାଜତ୍ୱକାଳରେ ବୋଧହୁଏ ପ୍ରଥମକରି ଶ୍ରୀମନ୍ଦିରରେ ଚୂନର ପ୍ରଲେପ ବା ପଲସ୍ତରା କାର୍ଯ୍ୟ ହୋଇଥିଲା । ଏହି କାର୍ଯ୍ୟ ସମାପ୍ତ ହେବାକୁ ପ୍ରାୟ ଏକ ବର୍ଷ ଲାଗିଥିଲା । ତାଙ୍କ ପରେ ରାଜା ହରେକୃଷ୍ଣ ଦେବ (ଖ୍ରୀ. ୧୭୧୬-୧୭୨୦), ବୀରକେଶରୀ ଦେବ (୧ମ) (ଖ୍ରୀ.୧୭୩୭-୧୭୯୩), ଦିବ୍ୟସିଂହ ଦେବ (୨ୟ) (ଖ୍ରୀ. ୧୭୯୩-୧୭୯୮), ରାମଚନ୍ଦ୍ର ଦେବ (୩ୟ) (ଖ୍ରୀ. ୧୮୧୭-୧୮୫୫)ଙ୍କ ସମୟରେ ମଧ୍ୟ ଚୂନ ପଲସ୍ତରା କାର୍ଯ୍ୟ ହୋଇଥିଲା ।

ଖ୍ରୀ. ୧୭୫୨ ପରେ ମରାଠାମାନେ ଓଡ଼ିଶା ତଥା ଶ୍ରୀମନ୍ଦିରର ଶାସନ ଦାୟିତ୍ୱ ନେବା ପରେ ଶ୍ରୀମନ୍ଦିରର ରକ୍ଷଣାବେକ୍ଷଣପାଇଁ କେତେକ ପଦକ୍ଷେପ ନେଇଥିଲେ । ବାବା ବ୍ରହ୍ମଚାରୀ ନାମକ ଜଣେ ମରାଠା ସନ୍ନ୍ୟାସୀଙ୍କ ଉଦ୍ୟମରେ ସିଂହଦ୍ୱାର ଗୁମୁଟ ଓ ମନ୍ଦିରର କେତେକ ଅଂଶର ମରାମତି ଏବଂ ପୁନଃନିର୍ମାଣ କରାଯାଇଥିଲା । ବୀରକେଶରୀ ଦେବ (୧ମ)ଙ୍କ ସମୟରେ ତାଙ୍କର ଠାକୁର ମା' (ହରେକୃଷ୍ଣ ଦେବଙ୍କ ବିଧବା ପାଟରାଣୀ) ରତ୍ନବେଦୀ ପୁନଃନିର୍ମାଣ କରିଥିଲେ । ସେ

ମଧ୍ୟ ଭୋଗମଣ୍ଡପର ଜୀର୍ଣ୍ଣୋଦ୍ଧାର ଓ ପଥର ଚଟାଣ ନିର୍ମାଣ କରାଇଥିଲେ । ଏହି ନିର୍ମାଣକାର୍ଯ୍ୟ ବୀରକେଶରୀଙ୍କ ୩୩ ଅଙ୍କରେ ହୋଇଥିଲା ।

ମାଦଳାପାଞ୍ଜି(ସଂ-ଆର୍ତ୍ତବଲ୍ଲଭ)ରୁ ଜଣାଯାଏ ଯେ, ତା ୬-୧୦-୧୬୯୪ରେ ପ୍ରବଳ ଝଡ଼ତୋଫାନ ହେବା ହେତୁ ବଡ଼ ଦେଉଳ ଉପରୁ ନୀଳଚକ୍ର ଭାଙ୍ଗି ଭଣ୍ଡ ଗଣେଶଙ୍କ ଆଗରେ ତଳେ ପଡ଼ିଲା । ସବୁ ଦେଉଳ ଉପରୁ ପଥର ଚକମାନ ପଡିଲା ।'' ଦିବ୍ୟସିଂହ ଦେବ (୧ମ)ଙ୍କ ରାଜତ୍ୱ କାଳରେ ବଡ଼ଦେଉଳ ଉପରେ ଅଷ୍ଟଧାତୁର ନୂତନ ନୀଳଚକ୍ର ସ୍ଥାପନ କରାଗଲା । ଅଙ୍କ ଗଣନା ପ୍ରକାରେ ଏହି ସ୍ମରଣୀୟ ଘଟଣା ତା ୨୬-୧-୧୭୧୫ରେ ଘଟିଥିଲା ।

୧୮୭୫ ମସିହା ଜୁଲାଇ ମାସରେ ଯେତେବେଳେ ଦିଅଁମାନେ ରଥଯାତ୍ରାଯୋଗୁଁ ଗୁଣ୍ଡିଚା ଘରେ ଅବସ୍ଥାନ କରିଥିଲେ ସେତେବେଳେ ଶ୍ରୀମନ୍ଦିର ଗର୍ଭଗୃହର ଛାତରୁ ତିନିଟି ବଡ଼ ଓ ଶକ୍ତ ପଥର ଖଣ୍ଡ ଖସି ପଡ଼ିଲା । ଏଥିଯୋଗୁଁ ଅବଶ୍ୟ କେହି ମୃତାହତ ହୋଇ ନଥିଲେ । ପୁରୀ ରାଜା ଦିବ୍ୟସିଂହ ଦେବ ତୃତୀୟ (ଖ୍ରୀ.୧୮୫୯-୧୮୮୮)ଙ୍କ ସମୟରେ ଏହି ଘଟଣା ଘଟିଥିଲା । ରାଜା ମରାମତି କାର୍ଯ୍ୟ କରାଇଥିଲେ । ତାଙ୍କର ଅନୁରୋଧରେ ସରକାର ପୂର୍ଣ୍ଣଚନ୍ଦ୍ର ସରକାର ନାମକ ଜଣେ ଓଭରସିଅରଙ୍କୁ ମରାମତି କାର୍ଯ୍ୟର ତଦାରଖ କରିବା ନିମନ୍ତେ ପଠାଇଥିଲେ ।

ଏହା ପରେ ୧୯୦୩ରୁ ୧୯୧୩ ମସିହା ମଧ୍ୟରେ ଶ୍ରୀମନ୍ଦିରର ମ୍ୟାନେଜର ତଥା ଡେପୁଟି ମାଜିଷ୍ଟ୍ରେଟ୍ ରାଜକିଶୋର ଦାସଙ୍କ ସମୟରେ ଶ୍ରୀମନ୍ଦିରରେ କେତେକ ମରାମତି କାର୍ଯ୍ୟ ହୋଇଥିଲା ।

ପୁରୀ ଶ୍ରୀଜଗନ୍ନାଥ ମନ୍ଦିରକୁ ଜାତୀୟ କୀର୍ତ୍ତି ରୂପେ ଭାରତ ସରକାର ତାଙ୍କର ବିଜ୍ଞପ୍ତି ସଂଖ୍ୟା ୨/୩୪/୭୨-ଏମ୍, ତା ୩-୨-୧୯୭୫ରେ ଘୋଷଣା କଲେ । (under the provisions of Section-4 of the Ancient Monuments and Archaeological Sites and Remains Act, 1958) । ଭାରତୀୟ ପ୍ରତ୍ନତାତ୍ତ୍ୱିକ ସର୍ବେକ୍ଷଣ ସଂସ୍ଥା (Archaeological Survey of India) ଶ୍ରୀମନ୍ଦିର ସମେତ ପାର୍ଶ୍ୱଦେବଦେବୀ ମନ୍ଦିରମାନ (subsidiary shrines)କୂର୍ମ ବେଢ଼ା, ମେଘନାଦ ପ୍ରାଚୀର ଓ ବେଢ଼ା ମଧ୍ୟରେ ଥିବା ଦୁଇଟି ଉପବନର ରକ୍ଷଣାବେକ୍ଷଣ ଦାୟିତ୍ୱ ନେଲେ । ଯଦିଓ ପୂର୍ବରୁ ଦାୟିତ୍ୱ ନେଇଥିଲେ କିନ୍ତୁ ଭାରତୀୟ ପ୍ରତ୍ନତାତ୍ତ୍ୱିକ ସର୍ବେକ୍ଷଣ ସଂସ୍ଥା ଓ ଶ୍ରୀମନ୍ଦିର ପରିଚାଳନା କମିଟି ମଧ୍ୟରେ ଆବଶ୍ୟକ ଚୁକ୍ତି, ୨୨-୮-୧୯୭୯ରେ ସ୍ୱାକ୍ଷରିତ ହୋଇଥିଲା । ପରିଚାଳନା କମିଟି ତରଫରୁ ଶ୍ରୀମନ୍ଦିର ପ୍ରଶାସକ ଗଙ୍ଗାଧର ଦାସ ଚୁକ୍ତିରେ ସ୍ୱାକ୍ଷର କରିଥିଲେ ।

ପ୍ରତ୍ନତାତ୍ତ୍ୱିକ ସର୍ବେକ୍ଷଣ ସଂସ୍ଥା (ଏ.ଆସ୍.ଆଇ.) ତରଫରୁ ଗୋଟିଏ ବିଶେଷଜ୍ଞ କମିଟି (Expert Committee)ତାଙ୍କର ମହାନିର୍ଦ୍ଦେଶକ(Director General)ଙ୍କ ଅଧ୍ୟକ୍ଷତାରେ ଗଠନ କରାଗଲା । ଏହି ବିଶେଷଜ୍ଞ କମିଟିକୁ ସାହାଯ୍ୟ କରିବାକୁ ବୈଷୟିକ (Technical) କମିଟି ଓ ସ୍ଥାନୀୟ (Local) କମିଟି ଗଠିତ ହେଲା । ବିଭିନ୍ନ କମିଟିର ବୈଠକମାନ ନିୟମିତ

ବସୁଅଛି ଓ ସେଥିରେ ସଂରକ୍ଷଣ କାର୍ଯ୍ୟ ଅଗ୍ରଗତିର ସମୀକ୍ଷା କରାଯାଇ ଆବଶ୍ୟକ ପଦକ୍ଷେପ ନିଆଯାଉଛି ।

ମୁଖ୍ୟ ମନ୍ଦିର ବା ବଡ଼ ଦେଉଳ ଓ ତା' ସହିତ ପାର୍ଶ୍ୱମନ୍ଦିର(୯୫) ମାନ ବହଳ ଚୂନ ପଲସ୍ତରାଦ୍ୱାରା ଆଚ୍ଛାଦିତ ହୋଇଥିଲା । ବିଶେଷଜ୍ଞମାନେ ମତ ଦେଲେ ଯେ, ଚୂନ ପଲସ୍ତରା ଛଡ଼ାଯିବା ନିତାନ୍ତ ଜରୁରୀ, କାରଣ ପଲସ୍ତରା ବା ପ୍ରଲେପ ନମନୀୟ ଓ ଛିଦ୍ରାଳ (spongy and porous) ହୋଇଗଲାଣି ଏବଂ ଯେଉଁ ଉଦ୍ଦେଶ୍ୟରେ ପ୍ରଲେପ କରାଯାଇଥିଲା (କ୍ଷରଣ ପ୍ରତିରୋଧ ପାଇଁ), ତାହା ଆଉ କାମ ଦେଉନାହିଁ । ବରଂ ପଲସ୍ତରାଦ୍ୱାରା ମନ୍ଦିର ଉପରେ ଚାପ ଓ ଓଜନ ବଢ଼ୁଛି ।

ବିଶେଷଜ୍ଞମାନଙ୍କ ମତାନୁସାରେ ପ୍ରଥମେ ଭିତର ବେଢ଼ାସ୍ଥ ମହାଲକ୍ଷ୍ମୀ ମନ୍ଦିରରୁ ଚୂନଛଡ଼ା ଆରମ୍ଭ ହେଲା । ନଷ୍ଟ ହୋଇଯାଇଥିବା ଏବଂ ସ୍ଥାନରେ ନଥିବା କେତେକ ସ୍ଥାପତ୍ୟ ଅଂଶମାନ ବଦଳା ଯାଇଥିଲା ଏବଂ ଚୂନ ଅଂଶମାନଙ୍କରେ ଢଳେଇ ଏବଂ ଧାତବ ଖିଲ ଲଗାଯାଇଥିଲା । ସବୁ ଅନାବୃତ୍ତ ଓ କଳଙ୍କି ଲାଗିଥିବା ଲୁହାର ଚାପୁଆଣିକୁ ବାହାର କରାଯାଇ ତମ୍ବା କିମ୍ବା କଳଙ୍କି ଲାଗୁନଥିବା ଇସ୍ପାତ୍ ଚାପୁଆଣି (dowels) ପ୍ରତିସ୍ଥାପନ କରାଗଲା ।

ଲକ୍ଷ୍ମୀ ମନ୍ଦିର ମରାମତି ଓ ସଂରକ୍ଷଣ କାର୍ଯ୍ୟ ପରେ ମୁଖ୍ୟ ମନ୍ଦିର ବା ଶ୍ରୀଜଗନ୍ନାଥ ମନ୍ଦିରର ଚୂନଛଡ଼ା କାର୍ଯ୍ୟ ଆରମ୍ଭ କରାଗଲା । ଏହି ମନ୍ଦିରର ବାହାର ପାର୍ଶ୍ୱରେ ପଲସ୍ତରାର ନଅଟି ସ୍ତର (Layers)ଦୃଷ୍ଟିଗୋଚର ହୋଇଥିଲା । ଏକ ସମୟରେ ନୃସିଂହ ମନ୍ଦିର, ସୂର୍ଯ୍ୟ ମନ୍ଦିର ଓ ବିମଳା ମନ୍ଦିରର ଚୂନ ପଲସ୍ତରା ଛଡ଼ାଇବା କାର୍ଯ୍ୟ ଆରମ୍ଭ କରାଗଲା । ପ୍ରଥମେ ନୃସିଂହ ମନ୍ଦିରର ଚୂନଛଡ଼ା କାର୍ଯ୍ୟ ସଂପୂର୍ଣ୍ଣ କରାଯାଇ ଏହାର ଢାଞ୍ଚା ସଂରକ୍ଷଣ ଓ ରାସାୟନିକ ପରିରକ୍ଷଣ କରାଗଲା । ଚୂନଛଡ଼ା ଶେଷ ହେବା ପରେ ନୃସିଂହ ମନ୍ଦିରର ବାହାର ପାର୍ଶ୍ୱ କାନ୍ଥରେ ଓ ପ୍ରବେଶ ଦ୍ୱାରର ଉଭୟ ପଟରେ ଅନେକ ଶିଳାଲିପି ଦୃଷ୍ଟିଗୋଚର ହୋଇଥିଲା । ଏହି ଶିଳାଲିପିମାନ ପରେ ବିଖ୍ୟାତ ଗବେଷକ ଡକ୍ଟର ସତ୍ୟନାରାୟଣ ରାଜଗୁରୁ ପାଠକରି ଏକ ପୁସ୍ତକ ପ୍ରକାଶ କରିଛନ୍ତି ।

ନୃସିଂହ ମନ୍ଦିର ପରେ ସୂର୍ଯ୍ୟମନ୍ଦିର ଓ ବିମଳା ମନ୍ଦିରର ଚୂନ ଛଡ଼ାଇବା କାର୍ଯ୍ୟ ସମାପ୍ତ ହୋଇ ସଂରକ୍ଷଣ କାର୍ଯ୍ୟ କରାଯାଇଥିଲା ଏବଂ ରାସାୟନିକ ଉପଚାର କରାଯାଇଥିଲା । ୧୯୯୦ ମସିହା ବେଳକୁ ଏହି ଦୁଇ ମନ୍ଦିରର କାର୍ଯ୍ୟ ଶେଷ ହୋଇଥିଲା । ପରେ ପରେ ପଶ୍ଚିମ ଦିଗର କ୍ଷୀରଚୋରା ଗୋପୀନାଥ ମନ୍ଦିର, ଭଣ୍ଡ ଗଣେଶ, ସରସ୍ୱତୀ ଓ ନୀଳମାଧବ ମନ୍ଦିରମାନଙ୍କରୁ ଚୂନ ଛଡ଼ାଯାଇ ସଂରକ୍ଷଣ କାର୍ଯ୍ୟ କରାଯାଇଥିଲା ।

ମନ୍ଦିରମାନଙ୍କରୁ ଚୂନଛଡ଼ା କାର୍ଯ୍ୟ ବନ୍ଦ କରିବାପାଇଁ ୧୯୭୮ ମସିହାରେ ଓଡ଼ିଶା ହାଇକୋର୍ଟରେ ଏକ ରିଟ୍ ଗୃହୀତ ହୋଇ ରହିତାଦେଶ ହେବା ଫଳରେ କାର୍ଯ୍ୟ ସ୍ଥଗିତ ରହିଥିଲା । ୧୯୮୫ରେ ରହିତାଦେଶ ଉଠିବା ପରେ ପୁଣି କାର୍ଯ୍ୟ ହେଲା । ପୁନଶ୍ଚ ୧୯୮୬ରେ ଆଉ ଦୁଇଟି ରିଟ୍ ହାଇକୋର୍ଟରେ ଦାଖଲ ହୋଇ ଶୁଣାଣି ପରେ ଖାରଜ ହୋଇଥିଲା ।

ମୁଖ୍ୟ ମନ୍ଦିର ବା ବଡ଼ଦେଉଳରୁ ଚୂନଛଡ଼ା ଯିବାରୁ  ମନ୍ଦିର ଗାତ୍ରରେ ନିପୁଣ ଚାରୁକଳା ଦୃଷ୍ଟିଗୋଚର ହେଲା । ଉତ୍କଳୀୟ ଶିଳ୍ପୀ ପଥର ଦେହରେ ଏପରି ସୂକ୍ଷ୍ମ କାରୁକାର୍ଯ୍ୟ କରିପାରୁଥିଲେ ।  ବଡ଼ଦେଉଳରୁ ଚୂନ ପଲସ୍ତରା ବାହାର କରାଗଲାବେଳେ ମନ୍ଦିର ଢାଞ୍ଚାରେ କ୍ଷତ, ଫାଟ  ଓ କେତେକ ସ୍ଥାନରେ ସ୍ଥାପତ୍ୟାଂଶ ନଥିବା ଦେଖାଗଲା । ଗୋଟିଏ ପରେ ଗୋଟିଏ ନୂତନ ଖୋଦିତ ପଥର ସେ ସ୍ଥାନରେ ପ୍ରତିସ୍ଥାପନ କରାଗଲା । ପର୍ଯ୍ୟାୟକ୍ରମେ ମରାମତି କାର୍ଯ୍ୟ କରାଯାଇଥିଲା ।

ତା.୧୪.୬.୧୯୯୦ରେ ବଡ଼ଦେଉଳର ଶିଖର ଦେଶରେ ଥିବା ଅମଳକ ବା ଅଁଳା ବେଢ଼ାରୁ ପ୍ରାୟ ଛଅ ଟନ୍ ଓଜନର ଏକ ପଥର ପଶ୍ଚିମପଟୁ ତଳେ ପଡ଼ିବା ଫଳରେ ମନ୍ଦିରର ସୁରକ୍ଷା ଓ ପ୍ରତ୍ନତତ୍ତ୍ୱ ସଂସ୍ଥାର କାର୍ଯ୍ୟ ପ୍ରତି ଜନସାଧାରଣଙ୍କ ମନରେ ଘୋର ଆଶଙ୍କା ଉପୁଜିଥିଲା । ପରବର୍ତ୍ତୀ ମାସ ଅର୍ଥାତ୍ ଜୁଲାଇରେ ପୁରୀଠାରେ ନବମ ବିଶେଷଜ୍ଞ କମିଟିର ବୈଠକରେ ଏହି ବିଷୟ ବିସ୍ତୃତ ପର୍ଯ୍ୟାଲୋଚନା କରାଯାଇ ସର୍ବସମ୍ମତିକ୍ରମେ ସ୍ଥିର କରାଯାଇଥିଲା ଯେ, ଅଁଳା ବେଢ଼ାରୁ ପଥର ଖସିଥିବା ଶୂନ୍ୟସ୍ଥାନରେ ଅନୁରୂପ ଏକ ନୂତନ ପଥର ଖଞ୍ଜାଯିବ ।

ତଦନୁଯାୟୀ ଉତ୍କୃଷ୍ଟମାନର ବଉଳମାଳା (Khondalite) ପଥର ଅଣାଗଲା । ତାହାକୁ ଡ୍ରେସିଂ କରାଯାଇ ପୁରୁଣା ପଥର ମାପରେ ଖୋଦନ କରାଗଲା । ଭିତର ବେଢ଼ାର ଉତ୍ତର-ପଶ୍ଚିମ କୋଣରେ ଏକ ଶକ୍ତ ଭାଡ଼ି ବା ମଞ୍ଚ (scaffolding) ବଡ଼ ଦେଉଳର ଉଚ୍ଚତା ସମାନ ସ୍ଥାପନ କରାଗଲା । ଉଚ୍ଚ ଶକ୍ତିସଂପନ୍ନ ଉତ୍ତୋଳନ ଯନ୍ତ୍ର, ଲୌହ ଦଉଡ଼ି ସାହାଯ୍ୟରେ ଏହି ନୂତନ ପଥରକୁ ଉଠାଯାଇ ପ୍ରାୟ ୧୮୦ଫୁଟ ଉଚ୍ଚରେ ଥିବା 'ଅଁଳା'ର ଶୂନ୍ୟସ୍ଥାନରେ ଖଞ୍ଜାଗଲା । ଫେବ୍ରୁଆରି ମାସ ୧୯୯୧ ମସିହାରେ ଏହି ସାହସିକ କାର୍ଯ୍ୟ ପ୍ରତ୍ନତତ୍ତ୍ୱ ସଂସ୍ଥା କରିଥିଲେ ।

ଇତି ମଧ୍ୟରେ ନବମ ବିଶେଷଜ୍ଞ କମିଟି ବୈଠକରେ ହୋଇଥିବା ନିଷ୍ପତ୍ତି ଅନୁଯାୟୀ ଶ୍ରୀମନ୍ଦିର ବେଢ଼ାରେ ଥିବା ଦୁଇଟି ବଗିଚା ବା ଉପବନର ରକ୍ଷଣାବେକ୍ଷଣ ଦାୟିତ୍ୱ ପ୍ରତ୍ନତତ୍ତ୍ୱ ସର୍ବେକ୍ଷଣ ସଂସ୍ଥାଠାରୁ କାଢି ଅଣାଯାଇ ପୂର୍ବପରି ଶ୍ରୀମନ୍ଦିର ପ୍ରଶାସନ ଉପରେ ନ୍ୟସ୍ତ କରାଗଲା ।

୧୩ ଅଗଷ୍ଟ ୧୯୯୨ ମସିହାରେ ଶ୍ରୀମନ୍ଦିର ଗର୍ଭଗୃହର ଦକ୍ଷିଣ-ପଶ୍ଚିମ କୋଣରୁ ପ୍ରାୟ ଏକ ଟନ୍ ଓଜନର ଦୁଇଖଣ୍ଡ ପ୍ରଲମ୍ବିତ ପଥର (corbelled stone) ଖସି ପଡ଼ିଲା । ସେଦିନ ଥିଲା ଶ୍ରୀବଳଭଦ୍ରଙ୍କ ଜନ୍ମ ତିଥି । ଓଜନ ସମ୍ଭାଳି ରଖିବାପାଇଁ କାନ୍ଥରୁ ବାହାରି ରହିଥିବା ପଥରକୁ କୋର୍‌ବେଲ୍ ଅର୍ଥାତ୍ ପ୍ରଲମ୍ବିତ ବା ପ୍ରକ୍ଷେପିତ ପଥର କୁହାଯାଏ । ପରେ ବିଶେଷଜ୍ଞମାନେ ଯାଞ୍ଚ୍ କଲାରୁ ଜଣାଗଲା ଯେ ପ୍ରାୟ ଦଶଖଣ୍ଡ କୋରବେଲ୍ ପଥର ବିଭିନ୍ନ ସମୟରେ ଲୌହ ଚାପୁଆଣି ପ୍ରସାରଣ ଓ ଫାଟ ଯୋଗୁଁ ଖସି ପଡ଼ିଅଛି । ଶ୍ରୀମନ୍ଦିରର ଦୃଢ଼ତା ବା ସ୍ଥାୟିତ୍ୱ ଓ ଅନ୍ୟାନ୍ୟ ସମସ୍ୟା ସଂପର୍କରେ ଯାଞ୍ଚ କରି ପରାମର୍ଶ ଦେବାକୁ ଭାରତର ବିଭିନ୍ନ ପ୍ରାନ୍ତରୁ ବିଶେଷଜ୍ଞମାନଙ୍କୁ ପୁରୀ ଆସିବାପାଇଁ ଆମନ୍ତ୍ରଣ କରାଗଲା । ଏକ ଉଚ୍ଚସ୍ତରୀୟ ସମନ୍ୱୟ କମିଟି ଗଢ଼ାଗଲା । ଏହି କମିଟିରେ ଓଡ଼ିଶାର ନିର୍ମାଣ ବିଭାଗର ଶାସନ ସଚିବ, ପୁରୀ ଜିଲ୍ଲାପାଳ, ପ୍ରତ୍ନତତ୍ତ୍ୱ ସର୍ବେକ୍ଷଣ ସଂସ୍ଥାର ମହାନିର୍ଦ୍ଦେଶକ, ନିର୍ଦ୍ଦେଶକ ସଂରକ୍ଷଣ ଓ ନିର୍ଦ୍ଦେଶକ ବିଜ୍ଞାନ ସଭ୍ୟ ରହିଲେ । ଏସ୍.ଇ.ଆର୍.ସି.

(S.E.R.C.)ଘାଜିଆବାଦ, ଏନ୍.ଜି.ଆର୍.ଆଇ. (N.G.R.I.) ହାଇଦ୍ରାବାଦ, ଆଇ.ଆଇ.ଟି. (I.I.T.)ଖଡ଼ଗପୁର, ସି.ବି.ଆର୍.ଆଇ (C.B.R.I.)ରୁର୍କି ଓ ଆର୍.ଆର୍.ଏଲ୍ (R.R.L.)ଭୁବନେଶ୍ୱରରୁ ବିଶେଷଜ୍ଞ ପ୍ରତିନିଧିମାନେ ନିମନ୍ତ୍ରିତ ହୋଇ ଯୋଗ ଦେଇଥିଲେ । ସମନ୍ୱୟ କମିଟିର ସଭ୍ୟମାନେ ତଥା ବିଶେଷଜ୍ଞମାନେ ମତ ଦେଲେ ଯେ, କାଳବିଳମ୍ବ ନକରି ଗର୍ଭଗୃହ ଓ ଶ୍ରୀମନ୍ଦିରର ଅଭ୍ୟନ୍ତର ତୁରନ୍ତ ମରାମତି କରାଯାଉ, ନଚେତ୍ ବିପଦକୁ ଏଡାଇ ହେବନାହିଁ । କିନ୍ତୁ ଦିଅଁମାନଙ୍କୁ ରତ୍ନ ସିଂହାସନରୁ ଅନ୍ୟତ୍ର ଅପସାରଣ କରାନଗଲେ ଏହି ମରାମତି କାର୍ଯ୍ୟ ହୋଇପାରିବ ନାହିଁ । ଶ୍ରୀମନ୍ଦିର ସେବକମାନଙ୍କ ସହ ବହୁ ଆଲୋଚନା ଓ ବିଚାରବିମର୍ଶ କରାଯାଇ ସ୍ଥିର କରାଗଲା ପରେ ନାଟ ମନ୍ଦିରରେ ଭିତରକାଠଠାରୁ ଜୟବିଜୟ ଦ୍ୱାର ମଧ୍ୟବର୍ତ୍ତୀ ସ୍ଥାନରେ ଏକ ଅସ୍ଥାୟୀ ସିଂହାସନ କାଠରେ ନିର୍ମାଣ କରାଯାଇ ଦିଅଁମାନଙ୍କୁ ସେଠାରେ ବିଜେ କରାଯିବ । ତଦନୁଯାୟୀ ରତ୍ନସିଂହାସନ ଅନୁରୂପ ଶାଳକାଠରେ ଏକ ସିଂହାସନ ନିର୍ମାଣ କରାଯାଇ ଉକ୍ତ ସ୍ଥାନରେ ସ୍ଥାପନ କରାଗଲା । ଦିଅଁମାନଙ୍କୁ ରତ୍ନସିଂହାସନରୁ ଦଇତାପତିମାନେ ପହଣ୍ଡିକରି ତା ୨୯.୧୧.୧୯୯୨ ପ୍ରାତଃକାଳରେ ଅସ୍ଥାୟୀ ସିଂହାସନକୁ ବିଜେ କରାଇଲେ । ଶ୍ରୀମନ୍ଦିରର ସମସ୍ତ ସେବକ ଓ କର୍ମଚାରୀଙ୍କ ଆନ୍ତରିକ ସାହଯ୍ୟ ଓ ସହଯୋଗ ଅବିସ୍ମରଣୀୟ ହୋଇ ରହିବ ।

ଯୁଦ୍ଧକାଳୀନ ଭିତ୍ତିରେ ଗର୍ଭଗୃହ ଓ ଅନ୍ୟାନ୍ୟ ସ୍ଥାନର ମରାମତି ଓ ସଂରକ୍ଷଣ କାର୍ଯ୍ୟ କରାଯାଇ ମେ, ୧୯୯୩ ସୁଦ୍ଧା ସମାପନ କରାଯିବା ସକାଶେ ଗୋଟିଏ ଟାସ୍କଫୋର୍ସ ଗଠନ କରାଗଲା । ଏହାର ପ୍ରତ୍ୟକ୍ଷ ତଦାରଖ ଦାୟିତ୍ୱରେ ନିର୍ମାଣ ବିଭାଗ ଶାସନ ସଚିବ ଓ ପ୍ରତ୍ନତତ୍ତ୍ୱ ସଂସ୍ଥାର ମହାନିର୍ଦ୍ଦେଶକ ରହିଲେ ।

କୋରବେଲ୍ ନଥିବା ସ୍ଥାନରେ ନୂତନ ଖୋଦିତ ପଥର ଖଞ୍ଜାଗଲା । ଅଭ୍ୟନ୍ତର ବା ଭିତର କାନ୍ଥର ଉପରିଭାଗକୁ ବିନ୍ଧ କରାଯାଇ ପି.ଏମ୍. ସିମେଣ୍ଟ (polymer modified cement)ତରଳ ଯାନ୍ତୁଣି ମସଲା (liquid mortar) ଦ୍ୱାରା ଢଳେଇ କରାଯାଇ ଦୃଢ଼ୀଭୂତ କରାଗଲା । କୋରବେଲ୍ ପଥରମାନଙ୍କୁ ଷ୍ଟେନ୍‌ଲେସ୍ ଷ୍ଟିଲ୍ ରଡ଼୍‌ଦ୍ୱାରା ଧରି ରଖାଯାଇ ଇପୋକ୍ସି (epoxy)ମୋର୍ଟାର ଦ୍ୱାରା ମୁଦ କରାଗଲା । ଗର୍ଭଗୃହ ମଧ୍ୟରେ ଖଞ୍ଜାଯିବାପାଇଁ ଏକ ସ୍ୱତନ୍ତ୍ର ଇସ୍ପାତ ରଡ଼୍ ଦୁର୍ଗାପୁର ଷ୍ଟିଲ୍‌ପ୍ଲାଣ୍ଟରୁ ଅଣା ଯାଇଥିଲା । ଗର୍ଭଗୃହ ଛାତକୁ ଅଧିକ ସୁଦୃଢ଼ କରିବା ତଥା ଭାର ବହନ କରିବାପାଇଁ ଷ୍ଟେନ୍‌ଲେସ୍ ଷ୍ଟିଲ୍‌ର ଏକ ଭାର ଧାବକ ଠେସ (truss) ଛାତ ତଳେ ସ୍ଥାପନ କରାଗଲା । ଏହାର ନକ୍‌ସା ଖଡ଼ଗପୁର ଆଇ.ଆଇ.ଟି.ର ପ୍ରଫେସର ଏ.ପି. ଗୁପ୍ତ ପ୍ରସ୍ତୁତ କରିଥିଲେ ଓ ଓଡ଼ିଶା କ୍ଷୁଦ୍ରଶିଳ୍ପ ନିଗମ ଏହାକୁ ନିର୍ମାଣ କରିଥିଲେ ।

ବଡ଼ଦେଉଳରେ ତିନିଟି ମହଲା ରହିଅଛି । ପ୍ରଥମ ଓ ଦ୍ୱିତୀୟ ମହଲାର ଭିତର କାନ୍ଥକୁ ଆବଶ୍ୟକ ଜାଗାରେ ଢଳେଇ କରାଯାଇ ସୁଦୃଢ଼ କରାଯାଇଥିଲା । ଦ୍ୱିତୀୟ ମହଲାର ଚଟାଣରେ ପଡ଼ିଥିବା କେତେଗୁଡ଼ିଏ ଭଗ୍ନ କୋର୍‌ବେଲ୍ ପଥର ଖଣ୍ଡକୁ ବାହାର କରାଯାଇଥିଲା । କୋଲକାତାର ଦୁଇଟି ବିଖ୍ୟାତ୍ ଫାର୍ମ କାଲଟେକ୍ (caltech) ଓ ସିକୋ (cico) ଦ୍ୱାରା ଢଳେଇ କାର୍ଯ୍ୟ କରାଯାଇଥିଲା । ଗର୍ଭଗୃହର ଭିତର କାନ୍ଥମାନଙ୍କୁ ଦୃଢ଼ କରିବାପାଇଁ ୯ଟି କୋରବେଲ୍ ପଥର ଓ

୧୩୯ଟି ପଥର ଖଣ୍ଡର ସ୍ଥାନ ପୂରଣ (replace) କରାଯାଇଥିଲା । ଗର୍ଭଗୃହର ମରାମତି ତଥା ସଂରକ୍ଷଣ କାର୍ଯ୍ୟ ସମାପନ ପରେ ଦିଅଁମାନଙ୍କୁ ପୁନର୍ବାର ରତ୍ନସିଂହାସନକୁ ତା ୨-୭-୧୯୯୩ରେ ବିଜେ କରାଯାଇଥିଲା । ଜଣାଯାଏ ଯେ, ଗର୍ଭଗୃହର ସଂରକ୍ଷଣ ବାବଦରେ ପ୍ରତ୍ନତତ୍ତ୍ୱ ସଂସ୍ଥା (A.S.I.)ସେତେବେଳେ ଏକକୋଟି ବାସ୍ତରି ଲକ୍ଷ ଟଙ୍କା ବ୍ୟୟ କରିଥିଲେ ।

ଶ୍ରୀମନ୍ଦିର ଶିଖରର ପଲସ୍ତରା ସଂପୂର୍ଣ୍ଣ ଛଡ଼ାଯିବା ପରେ ଦୁର୍ବଳ ଅମଳକକୁ ଦୃଢ଼ କରାଯାଇଥିଲା । 'ଖପୁରି', 'ବେକି' ଓ 'ଅଁଳା'ର ଉପଯୁକ୍ତ ସଂରକ୍ଷଣ କରାଗଲା । ଏହି କାର୍ଯ୍ୟ ୧୯୯୫ ମସିହା ଭିତରେ ଶେଷ କରାଯାଇଥିଲା ।

ରଥଯାତ୍ରା କାଳରେ ଦିଅଁମାନେ ଗର୍ଭଗୃହରେ ଅନୁପସ୍ଥିତ ଥିବାବେଳେ ପ୍ରତ୍ନତତ୍ତ୍ୱ ସଂସ୍ଥାର ଯନ୍ତ୍ରୀମାନେ ଗର୍ଭଗୃହ ପରିଦର୍ଶନ କରନ୍ତି ଓ ଆବଶ୍ୟକ ହେଲେ ସୀମିତ ସମୟ କାଳରେ ଯଥାସମ୍ଭବ ସଂରକ୍ଷଣ କାର୍ଯ୍ୟ କରନ୍ତି ।

ପରବର୍ତ୍ତୀ କାଳରେ ପ୍ରତ୍ନତତ୍ତ୍ୱ ସର୍ବେକ୍ଷଣ ସଂସ୍ଥା ଦ୍ୱାରା ନିମ୍ନଲିଖିତ ଦେବଦେବୀ ମନ୍ଦିର ଓ ଅନ୍ୟାନ୍ୟ କେତେକ ଗୃହ ଇତ୍ୟାଦିର ମରାମତି ଏବଂ ନବୀକରଣ କାର୍ଯ୍ୟ କରାଯାଇଛି ।

ମହାଲକ୍ଷ୍ମୀ ମନ୍ଦିର, ବିମଳା ମନ୍ଦିର, କୋଣାର୍କ ସୂର୍ଯ୍ୟମନ୍ଦିର, ବୈକୁଣ୍ଠେଶ୍ୱର ମନ୍ଦିର, ଗୌରାଙ୍ଗ ମନ୍ଦିର, ରାଧାବଲ୍ଲଭ ମନ୍ଦିର (ବାଇଶି ପାହାଚସ୍ଥ), ବାରଭାଇ ହନୁମାନ ମନ୍ଦିର, ବଟ ମଙ୍ଗଳା ମନ୍ଦିର, ନାଟ ଗଣେଶ ମନ୍ଦିର, ଉତ୍ତରେଶ୍ୱର ମନ୍ଦିର, ଐଶାନେଶ୍ୱର ମନ୍ଦିର, ସତ୍ୟନାରାୟଣ ମନ୍ଦିର, ଗରୁଡ଼ସ୍ତମ୍ଭ, ପଣ୍ଡାଦ୍ୱାର, ମହାଲକ୍ଷ୍ମୀ, ସୂର୍ଯ୍ୟ ଓ ମେର୍ଢା ରୋଷଘରମାନ, ମୁକ୍ତିମଣ୍ଡପ, ଜଳକ୍ରୀଡ଼ା ମଣ୍ଡପ, ଜଗମୋହନର ଛାତ, ଭିତର ବେଢ଼ାର ଚଟାଣ, ମହାଲକ୍ଷ୍ମୀ ଭଣ୍ଡାର ଘର, ପୂଜାପଣ୍ଡା ନିଯୋଗ, ସୁଆର ମହାସୁଆର ନିଯୋଗ ଓ ପ୍ରତିହାରୀ ନିଯୋଗମାନଙ୍କର କାର୍ଯ୍ୟାଳୟ ଗୃହମାନ, ଶ୍ରୀମନ୍ଦିରର ଶାଖା କାର୍ଯ୍ୟାଳୟ ଗୃହ, ମେଘନାଦ ପ୍ରାଚୀର, ଦକ୍ଷିଣଦ୍ୱାର ଓ ପଶ୍ଚିମ ଦ୍ୱାର ଗୁମୁଟ । ବର୍ତ୍ତମାନ ସିଂହଦ୍ୱାର ଗୁମୁଟ ସଂରକ୍ଷଣ କାର୍ଯ୍ୟ ଶେଷ ହୋଇଛି । ଶ୍ରୀମନ୍ଦିରେ ଜଗମୋହନର ଉତ୍ତର ଦିଗର ଚୂନଛଡ଼ା କାର୍ଯ୍ୟ ଶେଷ ହୋଇଛି ଏବଂ ଜଗମୋହନର କଳସ ପୁନଃନିର୍ମାଣ କରାଯାଇଛି ।



## ପରିଶିଷ୍ଟ - ୪

# ରଥ ନିର୍ମାଣ

**ପ୍ର**ତ୍ୟେକ ବର୍ଷ ଶ୍ରୀଗୁଣ୍ଡିଚା ଯାତ୍ରା ବା ରଥଯାତ୍ରାପାଇଁ ତିନିଗୋଟି ନୂତନ ରଥ ନିର୍ମାଣ କରାଯାଏ, କିନ୍ତୁ ତିନି ରଥର ସାରଥି, ଘୋଡ଼ା, ପାର୍ଶ୍ୱଦେବତା , କଳସ, ବ୍ରେକ୍ କାଠ ଓ ରଥର ଠେଲା ବାଡ଼ ଇତ୍ୟାଦି ପ୍ରତ୍ୟେକ ବର୍ଷ ନିର୍ମାଣ କରାଯାଏ ନାହିଁ । ଯେଉଁ ବର୍ଷ ନବକଳେବର ପଡ଼େ, ସେହି ବର୍ଷ ରଥ ନିର୍ମାଣ ବେଳେ ଏ ସମସ୍ତ ନିର୍ମାଣ ହୁଏ ।

ଓଡ଼ିଶା ସରକାରଙ୍କ ଜଙ୍ଗଲ ବିଭାଗ ରଥ ନିର୍ମାଣପାଇଁ ସମସ୍ତ କାଠ ବିନା ମୂଲ୍ୟରେ ଶ୍ରୀମନ୍ଦିର ପ୍ରଶାସନକୁ ଯୋଗାଇ ଦିଅନ୍ତି । ପୂର୍ବେ ପୁରୀ ରାଜାଙ୍କ ଅମଳରେ ଦଶପଲ୍ଲା ରାଜା ପରମ୍ପରା ଅନୁସାରେ କାଠ ଯୋଗାଇ ଦେଉଥିଲେ । ନୟାଗଡ଼ ଡି. ଏଫ୍. ଓ ରଥ ନିର୍ମାଣପାଇଁ ନିମ୍ନମତେ ନିର୍ଦ୍ଧାରିତ ମାପର ଶୁଖିଲା ବା ସିଜିନ୍ଡ୍ କାଠ ଯୋଗାଉଛନ୍ତି । କାଠ କାଟିବା ଓ ପରିବହନ ଖର୍ଚ୍ଚ ସେ ବହନ କରନ୍ତି ।

| କାଠର ନାମ | ଉଦ୍ଦେଶ୍ୟ | ମାପ | ସଂଖ୍ୟା |
|---|---|---|---|
| ଫାଶି | ରଥର ତୁମ୍ବ ନିର୍ମାଣ ପାଇଁ | ୬ ଫୁଟ ଗୋଲାଇ× ୯ ଫୁଟ ଲମ୍ବା | ୨୨ |
| ଧଉରା | ଦଣ୍ଡା ଓ ଅଖ ପାଇଁ | (୩'×୪୦') | ୫୦ |
| ଫାଶି | ପଇ ପାଇଁ | (୬'×୧୨') | ୫୦ |
| ଅସନ | ଗୟଳ ପାଇଁ | (୩'×୧୦') | ୩୧୨ |
| ଧଉରା ଓ ଅସନ | ଅରମୁଣ୍ଡି ପାଇଁ | (୩'×୧୨') | ୪୨୮ |
| | | **ମୋଟ** | **୮୬୨** |

ସାଧାରଣତଃ ପ୍ରତି ବର୍ଷ ନିର୍ଦ୍ଧାରିତ ସଂଖ୍ୟାଠାରୁ କିଛି ଅଧିକ କାଠ ଆସିଥାଏ ଓ ମାପରେ ମଧ୍ୟ ଫରକ ଥାଏ । କେତେ ବର୍ଷ ତଳେ କିଛି ଫାଶି କାଠ ଅନୁଗୁଳ ଜଙ୍ଗଲରୁ ଅଣାଯାଇଥିଲା । ଆବଶ୍ୟକ ସଂଖ୍ୟକ ଫାଶି କାଠ ନୟାଗଡ଼ ବନାଞ୍ଚଳରେ ମିଳୁନଥିବାରୁ ଅନ୍ୟାନ୍ୟ ବନାଞ୍ଚଳରୁ ଯୋଗାଡ଼କରି ଓ ଦାନସୂତ୍ରରେ ବ୍ୟକ୍ତି ବିଶେଷଙ୍କଠାରୁ ଅଣାଯାଉଅଛି ।

ଏହି କାଠ ବ୍ୟତୀତ ପ୍ରତିବର୍ଷ ଖୋର୍ଦ୍ଧା ଡିଭିଜନର ଡି.ଏଫ୍.ଓ. ବିନା ମୂଲ୍ୟରେ ରଥର ପଟା ନିର୍ମାଣପାଇଁ ନିର୍ଦ୍ଧାରିତ ମାପର କଞ୍ଚାକାଠ (green timber)ଯୋଗାଇ ଦିଅନ୍ତି । କିନ୍ତୁ ଏହି କାଠ ଜଙ୍ଗଲରୁ କାଟି ଆଣିବା ଓ ପୁରୀରେ ପହଞ୍ଚାଇବା ବାବଦ ପରିବହନ ଖର୍ଚ୍ଚ ଶ୍ରୀମନ୍ଦିର ପ୍ରଶାସନ ବହନ କରିଥାନ୍ତି । ନିମ୍ନମତେ ୨୭୪ଟି କଞ୍ଚା କାଠ ଆସିଥାଏ ।

| | | |
|---|---|---|
| କଂସା, ଶିମିଳି ପଟା | ୨$\frac{୧}{୨}$ '×୧୦' | ୪୬ |
| ପାଳଧୁଆ | ୩'×୧୦' | ୮୫ |
| ମହାନିମ୍ବ | ୩'×୧୦' | ୨୦ |
| ଗମ୍ଭାରି | ୨$\frac{୧}{୨}$ '×୧୨' | ୦୧ |
| ମଇ | ୩'×୧୦' | ୧୫ |
| କଦମ୍ବ | ୩'×୧୦' | ୦୪ |
| କଳଚୂଆ ବଳା | ୯'×୭' | ୬୦ |
| ମଇ, ଦେବଦାରୁ | | |
| କିମ୍ବା ପାଳଧୁଆ | ୫'×୧୯' | ୪୨ |
| ଦେବଦାରୁ | ୫'×୧୦' | ୦୧ |
| | **ମୋଟ** | **୨୭୪** |

(ଦ୍ରଷ୍ଟବ୍ୟ : ରଥଯାତ୍ରା କୋର୍ଡ଼)

ରଥକାଠ ପୁରୀରେ ଆସି ପହଞ୍ଚିବା ଓ ରଥ ନିର୍ମାଣର ବିଭିନ୍ନ ପର୍ଯ୍ୟାୟପାଇଁ କେତେକ ତିଥି ନିମ୍ନ ପ୍ରକାରେ ନିର୍ଦ୍ଦିଷ୍ଟ ଅଛି ।

| | |
|---|---|
| ରଥକାଠ ପୁରୀରେ ପହଞ୍ଚିବା ଅନୁକୂଳ | ଶ୍ରୀପଞ୍ଚମୀ |
| କାଠଚିରା | ଶ୍ରୀରାମ ନବମୀ |
| ରଥ ନିର୍ମାଣ ଅନୁକୂଳ | ଅକ୍ଷୟତୃତୀୟା |
| ଚକ ତିଆରି ହୋଇ ଦିଅଁଙ୍କ ଆଜ୍ଞାମାଳ ଲାଗେ (ଅନ୍ତତଃ ଛଅଟି ଚକ) | ଭଉଁରୀ ଦିନ |
| ଗୁଜ ଅନୁକୂଳ | ନୃସିଂହ ଚତୁର୍ଦ୍ଦଶୀ |
| ଚାରି ନାହାକ ଡେରା ଅନୁକୂଳ | ଦେବସ୍ନାନ ପୂର୍ଣ୍ଣିମା |
| ରଥଖଳାରୁ ସିଂହଦ୍ୱାରଯାଏଁ ରଥଟଣା ହୋଇ ରହିଥାଏ | ରଥଯାତ୍ରା ପୂର୍ବଦିନ |

ତିନୋଟି ରଥପାଇଁ ମୁଖ୍ୟତଃ ୧୦ ଜଣ ମହାରଣା (ବଢ଼େଇ), ୬ଜଣ ଭୋଇ, ୩ଜଣ କମାର, ୩ଜଣ ରୂପକାର, ୩ଜଣ ଚିତ୍ରକର ଓ ଜଣେ କରତି କାମ କରନ୍ତି। ଏମାନଙ୍କ ସେବା ବଂଶାନୁକ୍ରମିକ । ୧୦ ଜଣ ମହାରଣାଙ୍କୁ ସାହାଯ୍ୟ କରିବାକୁ ପ୍ରତ୍ୟେକ ରଥପାଇଁ ଅନ୍ତତଃ ୨୦

ଜଣ ଲେଖାଏଁ (ମୋଟ ୬୦ ଜଣ) ସାହାଯ୍ୟକାରୀ ବଢ଼େଇ ରହନ୍ତି । ଏମାନଙ୍କୁ 'ଭାଇପୁଅ' କୁହାଯାଏ ଓ ଏମାନେ ବିଧିବଦ୍ଧ ସେବକ ନୁହଁନ୍ତି । ମହାରଣା, ଭୋଇ, ରୂପକାର, କମାର ଓ ଭାଇପୁଅମାନେ ରଥ ନିର୍ମାଣ ବେଳେ ଦୈନିକ ମଜୁରୀ ପାଆନ୍ତି । ଏହି ମଜୁରୀ ଶ୍ରୀମନ୍ଦିର ପ୍ରଶାସନ ସ୍ଥିର କରିଥାନ୍ତି । ମଜୁରୀ ବ୍ୟତୀତ ମହାରଣାମାନେ ରଥକାଠର କିଛି ଅଂଶ (ରସଦାୟକ) ପାଆନ୍ତି । 'ରଥ ପୁରସ୍କାର' ନାମରେ ସ୍ୱତନ୍ତ୍ର ଆର୍ଥିକ ପୁରସ୍କାର ମହାରଣା, ଭୋଇ, ରୂପକାର, କମାର ଓ କରତି ପାଆନ୍ତି । ଏତଦ୍‌ବ୍ୟତୀତ, ଏମାନେ ଝଡ଼େଇଲଦା ତାଡ଼ ଓ ଅନ୍ୟାନ୍ୟ କେତେକ ପ୍ରସାଦ ଓ ଦ୍ରବ୍ୟ ପ୍ରାପ୍ୟ ଆକାରରେ ପାଇଥାନ୍ତି ।

ପ୍ରତ୍ୟେକ ରଥ ପାଇଁ ୪ଟି ଲେଖାଏଁ (ମୋଟ ସର୍ବାଧିକ ୧୨ଟି) ରଥଟଣା ଦଉଡ଼ି ଆବଶ୍ୟକ ପଡ଼େ । ପ୍ରତ୍ୟେକ ବର୍ଷ କିଛି ନୂଆ ଦଉଡ଼ି କିଣା ହୋଇ ଆସେ । କେରଳ ସରକାରଙ୍କ କଏର କର୍ପୋରେସନ୍ ସହିତ ଯୋଗାଯୋଗ କରାଯାଇ ରଥଟଣା ଦଉଡ଼ି କିଣାଯାଉଥିଲା । ୨୦୧୧ଠାରୁ ରଥଯାତ୍ରାପାଇଁ ଓଡ଼ିଶା କତା ନିଗମରୁ କିଣାଯାଇଅଛି । ରଥଟଣା ଦଉଡ଼ି କତାରେ ତିଆରି ଓ ତୈଳାକ୍ତ (oiled) । ଏହାର ଗୋଲେଇ ୮ ଇଞ୍ଚ ଓ ଲମ୍ବା ୨୫୦ ଫୁଟ । ରଥଟଣା ଦଉଡ଼ି ବ୍ୟତୀତ କେତେକ ଘେର ଦଉଡ଼ି (cordon rope)ର ଆବଶ୍ୟକତା ପଡ଼ିଥାଏ । ଘେର ଦଉଡ଼ି ମଧ୍ୟ କତାରେ ତିଆରି; କିନ୍ତୁ ତୈଳାକ୍ତ ନୁହେଁ । ଏହି ଦଉଡ଼ିର ଗୋଲେଇ ୩ଇଞ୍ଚ ଓ ଲମ୍ବା ୨୫୦ ଫୁଟରୁ ୪୫୦ ଫୁଟ ଯାଏଁ ହୋଇଥାଏ ।

ତିନି ରଥ ଉପରେ ଆଚ୍ଛାଦନପାଇଁ ପ୍ରାୟ ଏକ ହଜାର ମିଟରର ତଥା ବିଭିନ୍ନ ରଙ୍ଗର (ନାଲି, ସବୁଜ, ହଳଦିଆ ଓ କଳା) ସୂତା କପଡ଼ା ବ୍ୟବହୃତ ହୁଏ । ଏହି କନା ଅନେକ ବର୍ଷ ହେଲା ଚୌଦ୍ୱାର ଓ.ଟି.ଏମ୍.ରୁ ପ୍ରତିବର୍ଷ କିଣା ହୋଇ ଆସୁଥିଲା, ସଂପ୍ରତି ଅନ୍ୟ ସଂସ୍ଥାରୁ କିଣା ହେଉଥିବା ଜଣାଯାଏ, ଯେହେତୁ ଓ.ଟି.ଏମ୍. ବନ୍ଦ ହୋଇଗଲାଣି ।

ବଡ଼ଠାକୁରଙ୍କ ରଥ (ତାଳଧ୍ୱଜ)ରେ ନାଲି ଓ ସବୁଜ କନା ଲାଗେ । ମହାପ୍ରଭୁଙ୍କ ରଥ (ନନ୍ଦିଘୋଷ)ରେ ନାଲି ଓ ହଳଦିଆ କନା ଏବଂ ସୁଭଦ୍ରାଙ୍କ ରଥ (ଦେବଦଳନ)ରେ ନାଲି ଓ କଳା କନା ଲାଗେ । ତାଳଧ୍ୱଜ, ନନ୍ଦିଘୋଷ ଓ ଦେବଦଳନ ବା ଦର୍ପଦଳନ ରଥମାନ ଯଥାକ୍ରମେ ୧୪, ୧୬ ଓ ୧୨ ଚକ ବିଶିଷ୍ଟ । ଚକର ଉଚ୍ଚତା ଯଥାକ୍ରମେ ୬ଫୁଟ ୬ଇଞ୍ଚ, ୬ ଫୁଟ ଓ ୬ ଫୁଟ ୮ ଇଞ୍ଚ । ରଥର ଉଚ୍ଚତା (କଳସଠାରୁ ଭୂମିଯାଏଁ) ହେଲା ତାଳଧ୍ୱଜର ୪୬ ଫୁଟ ୪ ଇଞ୍ଚ, ନନ୍ଦିଘୋଷର ୪୫ ଫୁଟ ୧୧ଇଞ୍ଚ ଓ ଦେବଦଳନର ୪୨ ଫୁଟ ।

ରଥର ନିର୍ମାଣ ପରେ ରଥଯାତ୍ରାପାଇଁ ରଥଗୁଡ଼ିକ ଯାନ୍ତ୍ରିକ ଦୃଷ୍ଟିକୋଣରୁ ଉପଯୁକ୍ତ ବୋଲି ପୁରୀ ରାସ୍ତା ଓ ଗୃହ ନିର୍ମାଣ ଡିଭିଜନର କାର୍ଯ୍ୟନିର୍ବାହୀ ଯନ୍ତ୍ରୀ ଏକ 'ଫିଟ୍‌ନେସ୍' ସାର୍ଟିଫିକେଟ୍ ଦିଅନ୍ତି । ସେ ବିଭିନ୍ନ ସମୟରେ ରଥ ନିର୍ମାଣ କାର୍ଯ୍ୟ ମଧ୍ୟ ତଦାରଖ କରିଥାନ୍ତି । ଶ୍ରୀମନ୍ଦିର ପ୍ରଶାସକ, ସହକାରୀ ପ୍ରଶାସକ ରଥନିର୍ମାଣ, ରଥ କାଠ ଆସିବା ଓ ମହାରଣା ଏବଂ ଭୋଇମାନଙ୍କ ମଜୁରୀ ତଥା ଅନ୍ୟାନ୍ୟ ପ୍ରାପ୍ୟ ପାଉଣା କଥା ବୁଝିଥାନ୍ତି । ରଥନିର୍ମାଣର ବୈଷୟିକ ତତ୍ତ୍ୱାବଧାନ ପୁରୀ ପୂର୍ତ୍ତ ବିଭାଗର ନିର୍ବାହୀ ଯନ୍ତ୍ରୀ କରନ୍ତି ।

କେତେ ବର୍ଷ ହେଲା ରଥମାନଙ୍କୁ ପୂର୍ବାପେକ୍ଷା ଅଧିକ ଆକର୍ଷଣୀୟ ଭାବରେ ସଜା ଯାଉଛି । ୧୯୮୯ରେ ରଥମାନଙ୍କରେ ପିତଳରେ ତିଆରି କଦଳୀଗଛ, ମଗର ମୁଣ୍ଡ, ମାଛ ଇତ୍ୟାଦି ଖଞ୍ଜା ଗଲା । ଏହା ବ୍ୟତୀତ ଅଧିକ ସଂଖ୍ୟକ କାଠରେ ତିଆରି ଝୁମ୍ପା ଓ ସଖୀ କଣ୍ଢେଇ ମଧ୍ୟ ରଥମାନଙ୍କରେ ଲଗାଗଲା ।

## ଶ୍ରୀଜଗନ୍ନାଥ ବନ ପ୍ରକଳ୍ପ

କେତେକ ନିର୍ଦ୍ଦିଷ୍ଟ କାରଣରୁ ଫାଶିକାଠର ବିଶେଷ ଅଭାବ ଦେଖାଦେବାରୁ ଓ ଭବିଷ୍ୟତରେ ରଥନିର୍ମାଣରେ ଅସୁବିଧା ଉପୁଜିବା ହୃଦୟଙ୍ଗମ କରି ରାଜ୍ୟ ବନବିଭାଗ ୧୯୮୫-୮୬ ମସିହାଠାରୁ ସ୍ୱତନ୍ତ୍ର ଭାବେ ଫାଶି ବୃକ୍ଷ ରୋପଣ ଆରମ୍ଭ କରିଥିଲେ । ୧୯୯୭ ମସିହାରେ ବନ ବିଭାଗ, ଗଜପତି ମହାରାଜାଙ୍କ ପରାମର୍ଶକ୍ରମେ 'ଶ୍ରୀଜଗନ୍ନାଥ ବନ ପ୍ରକଳ୍ପ' ନାମରେ ଏକ ପ୍ରକଳ୍ପର ଖସଡ଼ା ପ୍ରସ୍ତୁତ କଲେ । ଏଥିପାଇଁ ଶ୍ରୀମନ୍ଦିର କର୍ତ୍ତୃପକ୍ଷ ଓ ରାଜସ୍ୱ ବିଭାଗ ମଧ୍ୟ ସେମାନଙ୍କ ଜମିରେ ଏହି ବୃକ୍ଷରୋପଣପାଇଁ ରାଜି ହୋଇଥିଲେ । ଏହା ପରେ ବେସରକାରୀ ପ୍ରଚେଷ୍ଟାରେ ମଧ୍ୟ ବୃକ୍ଷରୋପଣପାଇଁ ଜଗନ୍ନାଥପ୍ରେମୀ କେତେକ ଭକ୍ତ ଆଗେଇ ଆସିଲେ । ୨୦୦୦ ମସିହାରେ ରାଜ୍ୟ ସରକାର 'ଶ୍ରୀଜଗନ୍ନାଥ ବନପ୍ରକଳ୍ପ' କାର୍ଯ୍ୟକ୍ରମ ଚାଲୁକଲେ । ୨୦୦୦-୨୦୦୧ ଆର୍ଥିକ ବର୍ଷଠାରୁ ୨୦୦୪-୨୦୦୫ ଆର୍ଥିକବର୍ଷ ଯାଏଁ ଏହି ପ୍ରକଳ୍ପ ମାଧ୍ୟମରେ ପ୍ରାୟ ୨୨୮୪ ହେକ୍ଟର ଜମିରେ ବୃକ୍ଷରୋପଣ କରାଯାଇଛି । ଜୁନ୍ ୨୦୧୧ ସୁଦ୍ଧା ୨୩୬୫ ହେକ୍ଟର ଜମିରେ ବୃକ୍ଷରୋପଣ ହୋଇସାରିଛି । ଏଥିରେ ୪୫ ଲକ୍ଷ ଚାରା ରୋପଣ କରାଯାଇଥିବା ଜଣାଯାଏ ।



# ପରିଶିଷ୍ଟ - ୫

# ଶତାବ୍ଦୀର ଶେଷ ନବକଳେବର

'ନବ କଳେବର' ଅର୍ଥ ନୂତନ ଶରୀର ବା ବିଗ୍ରହ । ଅର୍ଥାତ୍ ଶ୍ରୀମନ୍ଦିରର ରତ୍ନ ସିଂହାସନରେ ବିରାଜିତ ଚତୁର୍ଦ୍ଧାମୂର୍ତ୍ତିଙ୍କର ନୂତନ କଳେବର ଧାରଣ । ବହୁ ବ୍ୟକ୍ତିଙ୍କର ଭ୍ରାନ୍ତଧାରଣା ରହିଛି ଯେ ବାର ବର୍ଷରେ ଥରେ ନବ କଳେବର ହୁଏ । ଗତ ନବ କଳେବର ୧୯୯୬ ମସିହାରେ ହୋଇଥିଲା । ତତ୍ ପୂର୍ବରୁ ୧୯୭୭ ମସିହାରେ ହୋଇଥିଲା । ଗତ ଶତାବ୍ଦୀରେ ୧୯୧୨, ୧୯୩୧, ୧୯୫୦, ୧୯୬୯, ୧୯୭୭ ଓ ୧୯୯୬ ମସିହାରେ ଏହା ହୋଇଥିଲା । ସୁତରାଂ ବାର ବର୍ଷରେ ନବ କଳେବର ହୁଏ ନାହିଁ । ଯେଉଁବର୍ଷ ଦୁଇଟି ଆଷାଢ଼ ମାସ ପଡ଼େ ,ସେହି ବର୍ଷ ହିଁ ନବ କଳେବର ହୁଏ । ଶ୍ରୀମନ୍ଦିର ସ୍ୱତ୍ୱଲିପିରେ ଲେଖାଅଛି, ''ଯେଉଁ ବର୍ଷ ଯୋଡ଼ା ଆଷାଢ଼ (ମଳ) ପଡ଼େ ସେହି ବର୍ଷ ଠାକୁରଙ୍କ ନବକଳେବର ବିଧି ହୁଏ ଓ ଅଣସର ସମୟ ଦେଢ଼ ମାସ ହୁଏ, ଏହାକୁ ମହାଅଣସର କୁହାଯାଏ ।''

ଇତିହାସରୁ ଜଣାଯାଏ ଯେ, ଅତୀତରେ ବେଳେବେଳେ ଯୋଡ଼ା ଆଷାଢ଼ ପଡ଼ିଥିଲେ ମଧ୍ୟ ନବ କଳେବର ବିଭିନ୍ନ ଅସୁବିଧାଯୋଗୁଁ ହୋଇପାରି ନାହିଁ । ଆହୁରି ମଧ୍ୟ ନବ କଳେବର ବର୍ଷରେ ସଂପୂର୍ଣ୍ଣ ନୂତନ ବିଗ୍ରହ ଗଠନ କରାଯାଇ ନାହିଁ । ନବ କଳେବର ବିଧି ଦୁଇ ପ୍ରକାର ରହିଛି । ଗୋଟିଏ ହେଉଛି- ନୂତନ ବିଗ୍ରହ ନିର୍ମାଣପାଇଁ ପରମ୍ପରା ବା ବିଧିବିଧାନ ଅନୁଯାୟୀ ବନଯାଗ, ଦାରୁ ଅନ୍ୱେଷଣ, ବିଗ୍ରହ ନିର୍ମାଣ ତଥା ବ୍ରହ୍ମ ପରିବର୍ତ୍ତନ ଓ ଅନ୍ୟଟି ହେଲା 'ଶ୍ରୀଅଙ୍ଗ ଫିଟା' । ଏଥିରେ ବନଯାଗ ବା ଦାରୁ ଅନ୍ୱେଷଣ କରାଯାଏ ନାହିଁ । କେବଳ ଦିଅଁମାନଙ୍କର ଶ୍ରୀଅଙ୍ଗ ଫିଟା ଯାଇ ଶ୍ରୀଅଙ୍ଗର ଆବଶ୍ୟକ ନିର୍ମାଣ କାର୍ଯ୍ୟ କରାଯାଏ । 'ଶ୍ରୀଅଙ୍ଗ ଫିଟା'ରେ 'ବ୍ରହ୍ମ'ଙ୍କୁ ସ୍ପର୍ଶ କରାଯାଏ ନାହିଁ ।

ଚୈତ୍ରମାସ ଶୁକ୍ଳପକ୍ଷ ଦଶମୀ ତିଥିରେ ନବ କଳେବରର ପ୍ରଥମ ପର୍ଯ୍ୟାୟ 'ବନଯାଗ'ର ଶୁଭାରମ୍ଭ ହୁଏ । ଏହି ଦିନ ଶ୍ରୀମନ୍ଦିରରେ ମଧ୍ୟାହ୍ନ ଧୂପ ଶେଷ ହେବା ପରେ ପତି ମହାପାତ୍ର ସେବକ ରତ୍ନ ସିଂହାସନ ଉପରକୁ ଉଠି 'ଚାରିବାଡ଼'ର ଅର୍ଥାତ୍ ଶ୍ରୀବଳଭଦ୍ର, ଦେବୀ ସୁଭଦ୍ରା,

ଶ୍ରୀଜଗନ୍ନାଥ ଓ ସୁଦର୍ଶନଙ୍କର ଶ୍ରୀଅଙ୍ଗରୁ 'ଆଜ୍ଞାମାଳ' (ଫୁଲମାଳ) ବାହାର କରି ଆଣି, ତିନି ବାଡ଼ର ଆଜ୍ଞାମାଳ ତିନିବାଡ଼ର ମୁଖ୍ୟ ଦଇତା ବା ବାଡ଼ଗ୍ରାହୀମାନଙ୍କୁ ଦେଇ, ନିଜେ ସୁଦର୍ଶନଙ୍କର ଆଜ୍ଞାମାଳ ନିଅନ୍ତି । କାରଣ ପତିମହାପାତ୍ର ହେଉଛନ୍ତି, ସୁଦର୍ଶନଙ୍କ ବାଡ଼ର ବାଡ଼ଗ୍ରାହୀ । ଦଇତା ଓ ପତି ମହାପାତ୍ରଙ୍କୁ ମିଶାଇ 'ଦଇତାପତି' କୁହାଯାଏ । ଏମାନଙ୍କର ନିଯୋଗର ନାମ ଦଇତାପତି ନିଯୋଗ। ପତି ମହାପାତ୍ର ବ୍ରାହ୍ମଣ ସେବକ। ଦଇତାମାନେ ବ୍ରାହ୍ମଣ ନୁହଁନ୍ତି ।

ଗର୍ଭଗୃହ ସମ୍ମୁଖସ୍ଥ ଅଣସର ପିଣ୍ଡିଠାରେ ଭିତରଛ ମହାପାତ୍ର ଦାରୁ ଅନ୍ୱେଷଣପାଇଁ ଆଜ୍ଞାମାଳ ପାଇଥିବା ବାଡ଼ଗ୍ରାହୀ ଦଇତାପତିଙ୍କୁ ଓ ଅନ୍ୟାନ୍ୟ ଦଇତା ସେବକଙ୍କୁ ବାରଲାଗି ଶାଢ଼ି (ପାଟ ବସ୍ତ୍ର) ସେମାନଙ୍କ ଶିରରେ ବାନ୍ଧନ୍ତି । ଗତ ନବ କଳେବର (୧୯୯୬)ରେ ଭିତରଛ ମଧୁସୂଦନ ମହାପାତ୍ର ନିମ୍ନଲିଖିତ ଆଜ୍ଞାମାଳ ପାଇଥିବା ବାଡ଼ଗ୍ରାହୀଙ୍କୁ ଶାଢ଼ି ବାନ୍ଧି ଥିଲେ ।

ସୁଦର୍ଶନଙ୍କ ବାଡ଼- ଶ୍ରୀ ରଘୁନାଥ ପତି ମହାପାତ୍ର

ବଡ଼ବାଡ଼ (ବଳଭଦ୍ର)- ଶ୍ରୀ ହଳଧର ଦାସ ମହାପାତ୍ର

ମଝିବାଡ଼ (ସୁଭଦ୍ରା)- ଶ୍ରୀ ବିଶ୍ୱନାଥ ଦାସ ମହାପାତ୍ର

ମହାପ୍ରଭୁଙ୍କ ବାଡ଼ (ଜଗନ୍ନାଥ)- ଶ୍ରୀ ଜଗନ୍ନାଥ ସ୍ୱାଇଁ ମହାପାତ୍ର

ତା'ପରେ ଅନ୍ୟାନ୍ୟ ଦଇତା ସେବକମାନଙ୍କୁ ଶାଢ଼ି ବାନ୍ଧିବା ପରେ ଜୟ ବିଜୟ ଦ୍ୱାରଠାରେ ଦେଉଳକରଣ ଓ ତଡ଼ାଉକରଣଙ୍କୁ ଭିତରଛ ମହାପାତ୍ର ଶାଢି ବାନ୍ଧନ୍ତି। ଦେଉଳକରଣ ଶ୍ରୀ ଚନ୍ଦ୍ରଶେଖର ମଙ୍ଗରାଜ ଓ ତଡ଼ାଉକରଣ ଶ୍ରୀ ସୁଧାଂଶୁ ଶେଖର ପଟ୍ଟନାୟକଙ୍କୁ ଶାଢ଼ି ବନ୍ଧାଯାଇଥିଲା । ଏହା ଥିଲା 'ବାରଲାଗି' ଶାଢ଼ି । ତା'ପରେ ଉକ୍ତ ଦ୍ୱାରଠାରେ ଲେଙ୍କା ସେବକ (ଈଶ୍ୱର ଚନ୍ଦ୍ର ମହାନ୍ତି) ଓ ଚାରି ଜଣ ବିଶ୍ୱକର୍ମା (ବଢ଼େଇ) ସେବକଙ୍କୁ 'ସୂତାଶାଢି ବନ୍ଧାଯାଇଥିଲା । (ଏହି ବିଶ୍ୱକର୍ମାମାନେ ଥିଲେ ସୁଦର୍ଶନ ବାଡ଼- ଶ୍ରୀ ବଳରାମ ମହାରଣା, ବଡ଼ବାଡ଼- ଶ୍ରୀ ଦାମୋଦର ମହାପାତ୍ର, ମଝିବାଡ଼- ଶ୍ରୀକୃଷ୍ଣ ମହାରଣା ଓ ମହାପ୍ରଭୁଙ୍କ ବାଡ଼ ଶ୍ରୀ ଲିଙ୍ଗରାଜ ମହାପାତ୍ର)।

ବନଯାଗ ଯାତ୍ରାରେ ଦଇତାପତି, ଦେଉଳକରଣ, ତଡ଼ାଉକରଣ, ଲେଙ୍କା, ବିଶ୍ୱକର୍ମା ପ୍ରଭୃତିଙ୍କ ସହିତ ଶ୍ରୀମନ୍ଦିରର ରାଜଗୁରୁ ଓ ଦେଉଳ ପୁରୋହିତ ଯାଇଥିଲେ। ଏମାନଙ୍କ ବ୍ୟତୀତ ଆଉ ତିନି ଜଣ ବ୍ରାହ୍ମଣ ଯାଇଥିଲେ। ସର୍ବମୋଟ ଏହିପରି ସାତଜଣ ବ୍ରାହ୍ମଣ ବିଭିନ୍ନ କର୍ମକର୍ମାଣି କରିବାକୁ ଯାଇଥିଲେ । ସେମାନେ ହେଲେ ସର୍ବଶ୍ରୀ- ରମେଶ ଚନ୍ଦ୍ର ରାଜଗୁରୁ, ପ୍ରମୋଦ କୁମାର ରାଜଗୁରୁ, କେଶବ ଚନ୍ଦ୍ର ରାଜଗୁରୁ, ସିଦ୍ଧେଶ୍ୱର ମହାପାତ୍ର (ଦେଉଳ ପୁରୋହିତ), ବଳରାମ ଦାଶ, କୃଷ୍ଣଚନ୍ଦ୍ର ମହାପାତ୍ର, ଶରତ ଚନ୍ଦ୍ର ଷଡ଼ଙ୍ଗୀ । ଏମାନେ ପୃଥକ ଭାବରେ ଚରୁ, ସମିଧ, ବ୍ରହ୍ମା, ମନ୍ତ୍ର ଓ ଅସ୍ତ୍ର, ଜାପକ, ପୁସ୍ତକାଚାର୍ଯ୍ୟ, ଆଚାର୍ଯ୍ୟ ଓ ମଣ୍ଡଳାଚାର୍ଯ୍ୟ କର୍ମ କରିବାପାଇଁ ବନଯାଗରେ ଯାଇଥିଲେ ।

ନବ କଳେବର ବନଯାଗ ଯାତ୍ରାରେ 'ବିଶ୍ୱାବସୁ' ଭାବରେ ଜନୈକ ଅଭିଜ୍ଞ ଦଇତା ସେବକ କାର୍ଯ୍ୟ କରନ୍ତି । କେଉଁ ଦଇତା ଏହି କାର୍ଯ୍ୟ କରିବେ ତାହା ଦଇତାପତି ସେବକମାନେ ସ୍ଥିର କରନ୍ତି । ଗତ ନବ କଳେବର ବେଳେ 'ଦଇତାପତି ନିଯୋଗର ପରିଚାଳନା କମିଟି' ଶ୍ରୀ ରାଜ

କିଶୋର ଦାସ ମହାପାତ୍ର ବିଶ୍ୱାବସୁ ଭାବରେ ସେବାକାର୍ଯ୍ୟ କରିବେ ବୋଲି ସର୍ବସମ୍ମତି କ୍ରମେ ସ୍ଥିର କରି ତାଙ୍କର ନାମ ଶ୍ରୀମନ୍ଦିର ପ୍ରଶାସକଙ୍କୁ ଜଣାଇଥିଲେ । ତଦନୁଯାୟୀ ପ୍ରଶାସକ ଆବଶ୍ୟକ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିଥିଲେ ଏବଂ ଗଜପତି ମହାରାଜାଙ୍କୁ ଜଣାଇଥିଲେ ।

ଶାଢ଼ିବନ୍ଧା ପର୍ବ ପରେ ଦଇତାପତି ଓ ଅନ୍ୟମାନେ ଜଗମୋହନ ଦେଇ ରାଜାଙ୍କ ନଅର ବାଟେ ଜଗନ୍ନାଥବଲ୍ଲଭ ମଠକୁ ଯାଆନ୍ତି । ନଅରଠାରେ ରାଜାଙ୍କ ଶ୍ରୀହସ୍ତ ଛୁଆଁ ଗୁଆ ରାଜଗୁରୁ ବିଶ୍ୱାବସୁଙ୍କୁ ଦିଅନ୍ତି । ପରମ୍ପରା ଅନୁସାରେ ବନଯାଗ ଯାତ୍ରୀ ଦଳ ବଡ଼ଦାଣ୍ଡସ୍ଥ ଜଗନ୍ନାଥ ବଲ୍ଲଭ ମଠରେ ତିନି ଓଳି ଅବସ୍ଥାନ କରନ୍ତି । ସିଂହଦ୍ୱାରଠାରୁ ଜଗନ୍ନାଥ ବଲ୍ଲଭ ମଠ ପର୍ଯ୍ୟନ୍ତ ଯାତ୍ରାକାଳରେ ଓଲାର, ଘଣ୍ଟ, କାହାଳୀ ଓଗେର ପଟୁଆର କରାଯାଏ ।

ଗତ ଥର ଚୈତ୍ର ଶୁକ୍ଳ ଦଶମୀ ଶୁକ୍ରବାର (ତା ୨୯-୩-୧୯୯୬) ଦିନ ମଧ୍ୟାହ୍ନ ଧୂପ ପରେ ବନଯାଗ ଯାତ୍ରାର ଶୁଭ ଅନୁକୂଳ ହୋଇଥିଲା । ସେହି ଦିନ ରାତ୍ରରେ ସମସ୍ତେ ଜଗନ୍ନାଥ ବଲ୍ଲଭ ମଠରେ ରହିଥିଲେ । ପରବର୍ତ୍ତୀ ଦିନ ଅର୍ଥାତ୍ ୩୦ ତାରିଖ ଶନିବାର ମଧ୍ୟ ସେଠାରେ ରହିଥିଲେ । ସେଦିନ ରାତି ସାଢ଼େ ଗୋଟାଏ (ଅର୍ଥାତ୍ ୩୧ ତାରିଖ, ରବିବାର, ୧ଟା୩୦ ଏ.ଏମ୍.)ରେ ଜଗନ୍ନାଥବଲ୍ଲଭ ମଠରୁ ବନଯାଗ ଯାତ୍ରୀ ଦଳ ବାହାରି କୋଣାର୍କ ରାସ୍ତା ଦେଇ କାକଟପୁର ଅଭିମୁଖେ ଚାଲି ଚାଲି ଯାଇଥିଲେ । ୩୧ ତାରିଖ ରାତିରେ ସମସ୍ତେ କୋଣାର୍କ ନାଟ ମଣ୍ଡପରେ ରହିଥିଲେ । ପରଦିନ ଅର୍ଥାତ୍ ୧-୪-୧୯୯୬ରେ ସେମାନେ କୋଣାର୍କ-କାକଟପୁର ମଧ୍ୟସ୍ଥ ଏକ ସ୍ଥାନରେ ରାତ୍ରିଯାପନ କଲେ । ୨-୪-୧୯୯୬ ଦିନ ପୂର୍ବାହ୍ନରେ ସମସ୍ତେ କାକଟପୁରରେ ପହଞ୍ଚି ଦେଉଳିମଠରେ ଅବସ୍ଥାନ କରିଥିଲେ । ପୂର୍ବ ନବ କଳେବର ୧୯୭୭ରେ କେତେକ ଅସୁବିଧା ହେତୁ ସମସ୍ତେ ଦେଉଳି ମଠରେ ରହି ନଥିଲେ । ଅଧିକାଂଶ ସେବକ କାକଟପୁରର ସୋମେଶ୍ୱର ମନ୍ଦିର ପରିସରରେ ରହିଥିଲେ ।

ପରବର୍ତ୍ତୀ ଦିନ (୩-୪-୯୬) ପୂର୍ବାହ୍ନ ଦଶଟା ସମୟରେ କାକଟପୁର ମଙ୍ଗଳା ଠାକୁରାଣୀ ମନ୍ଦିର ପୂଜକ ଓ ପରିଚାଳନା କର୍ତ୍ତୃପକ୍ଷ ଘଣ୍ଟ, ଛତି, ତ୍ରାସ ସହିତ ଏକ ବର୍ଣ୍ଣାଢ଼୍ୟ ଶୋଭାଯାତ୍ରାରେ ଦେଉଳି ମଠକୁ ଆସି ଦଇତାପତି, ବ୍ରାହ୍ମଣ ପ୍ରଭୃତି ସେବକମାନଙ୍କୁ ସମ୍ବର୍ଦ୍ଧନା ସହକାରେ ପଟୁଆର କରି ଠାକୁରାଣୀ ମନ୍ଦିରକୁ ପାଛୋଟି ନେଇଥିଲେ । ତତ୍‌ପରେ ସେଠାରେ ବିଧି ଅନୁଯାୟୀ ମା'ମଙ୍ଗଳାଙ୍କର ମାଜଣା କରାଯାଇଥିଲା । ମାଜଣା ସମୟରେ ଠାକୁରାଣୀ ମନ୍ଦିରର ଜଗମୋହନରେ ଶ୍ରୀମନ୍ଦିରରୁ ଯାଇଥିବା ରାଜଗୁରୁ, ଦେଉଳ ପୁରୋହିତ ଓ ଅନ୍ୟାନ୍ୟ ବ୍ରାହ୍ମଣମାନେ ଚଣ୍ଡୀପାଠ କରିଥିଲେ । ମାଜଣା ପରେ ଠାକୁରାଣୀଙ୍କୁ ଶ୍ରୀମନ୍ଦିର ପ୍ରଶାସନ ତରଫରୁ ପ୍ରଦତ୍ତ ଶାଢ଼ିଲାଗି ଏବଂ ମହାପ୍ରସାଦ ସମର୍ପଣ କରାଯାଇଥିଲା । ମାଜଣା କାର୍ଯ୍ୟ ଅପରାହ୍ଣ ପ୍ରାୟ ଏକଟା ବେଳକୁ ଶେଷ ହୋଇଥିଲା ।

ଯଥା ସମୟରେ ଉପଯୁକ୍ତ ଦାରୁ (ନିମ୍ବ ବୃକ୍ଷ)ର ସନ୍ଧାନ ପାଇବାକୁ ଦଇତାପତି ଓ ବ୍ରାହ୍ମଣ ସେବକମାନେ ମଙ୍ଗଳା ଠାକୁରାଣୀଙ୍କର କୃପାଭିକ୍ଷା କରନ୍ତି । ଏଥିପାଇଁ 'ସ୍ୱପ୍ନାବତୀ' ମନ୍ତ୍ର ଜପ କରିବାକୁ ହୁଏ । କେତେ ଜଣ ସେବକଙ୍କୁ ସ୍ୱପ୍ନାଦେଶ ହୋଇଥିଲା ବୋଲି ବିଶ୍ୱାସ କରାଯାଏ ।

ପରବର୍ତ୍ତୀ ଦିନଠାରୁ ଦଇତାମାନେ ଦାରୁ ଅନ୍ୱେଷଣପାଇଁ ବିଭିନ୍ନ ଦିଗକୁ ଯାତ୍ରା କରିଥିଲେ । ଦାରୁବୃକ୍ଷ ଓ ତା'ର ପରିବେଶରେ କେତେଗୋଟି ବିଶେଷ ଲକ୍ଷଣ ଥିବା ଆବଶ୍ୟକ । ଯଥାଃ

ବୃକ୍ଷଟି ମୂଳରୁ ଅନ୍ତତଃ ଦଶଫୁଟରୁ ଊର୍ଦ୍ଧ୍ୱ ସଳଖ ଓ ନିଦା ହେବା ଆବଶ୍ୟକ । ବୃକ୍ଷ ମୂଳରେ କିମ୍ବା ନିକଟରେ ଉଇ ହୁଙ୍କା ଥିବ କିମ୍ବା ସର୍ପ ବାସ କରୁଥିବ । ବୃକ୍ଷ ନିକଟରେ ବରୁଣ ଗଛ କିମ୍ବା ସାହାଡ଼ା ଗଛ ଥିବ । ବୃକ୍ଷରେ କୌଣସି ପକ୍ଷୀ ବାସ କରୁ ନଥିବେ । ବୃକ୍ଷ ଦେହରେ କୀଟଦଷ୍ଟ ଚିହ୍ନ କିମ୍ବା ବଜ୍ରପାତର ଚିହ୍ନ ନଥିବ । ବୃକ୍ଷଟି ନଦୀ, ଶ୍ମଶାନ, ମଠ କିମ୍ବା ମନ୍ଦିର ନିକଟରେ ଥିବ । ବୃକ୍ଷରେ ଶଙ୍ଖ, ଚକ୍ର, ଗଦା, ପଦ୍ମ ଚିହ୍ନ ଥିବା ଆବଶ୍ୟକ । 'ସୁତ ସଂହିତା'ରେ ଲେଖାଅଛି ଯେ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଓ ସୁଦର୍ଶନଙ୍କ ଦାରୁର ବର୍ଣ୍ଣ ଯଥାକ୍ରମେ କୃଷ୍ଣ, ଶ୍ୱେତ, ପୀତ ଓ ରକ୍ତ ବର୍ଣ୍ଣ ହେବା ସଙ୍ଗେ ସଙ୍ଗେ ଏଥିରେ ଶଙ୍ଖ, ଚକ୍ର, ଗଦା, ପଦ୍ମ ଚିହ୍ନ ଥିବା ଆବଶ୍ୟକ ।

ଯେଉଁ ଦାରୁ (ନିମ୍ବ) ବୃକ୍ଷରେ ଉଲ୍ଲିଖିତ ଲକ୍ଷଣ ମଧ୍ୟରୁ ଅଧିକାଂଶ ଲକ୍ଷଣ ଥିବ ସେହି ବୃକ୍ଷକୁ ଦଇତାପତିମାନେ ମନୋନୀତ କରନ୍ତି ।

ପ୍ରଥମେ ସୁଦର୍ଶନଙ୍କ ଦାରୁ ବୃକ୍ଷ ଚିହ୍ନଟ ପରେ ବୃକ୍ଷର ଚଉପାଶ ସଫା ହୁଏ । ବୃକ୍ଷ ନିକଟରେ ଯଜ୍ଞଶାଳା ଓ ଅନତିଦୂରରେ ଦଇତାପତି ଓ ବ୍ରାହ୍ମଣମାନଙ୍କପାଇଁ ଚାଳିଆ ନିର୍ମାଣ କରାଯାଏ । ଯଜ୍ଞଶାଳାରେ ଲେଙ୍କା ସେବକ ନେଇଥିବା ସୁଦର୍ଶନ ଚକ୍ର ସ୍ଥାପନ କରାଯାଏ । ମହାନୃସିଂହ ମନ୍ତ୍ରରେ ଘୃତାହୁତି ଦେଇ ବ୍ରାହ୍ମଣମାନେ ବୃକ୍ଷରେ ଥିବା ଭୂତ, ପ୍ରେତ ତଥା ଅଦୃଶ୍ୟ ଶକ୍ତିମାନଙ୍କୁ ବୃକ୍ଷ ଛାଡ଼ି ଚାଲିଯିବାପାଇଁ ଆହ୍ୱାନ କରନ୍ତି । ନୃସିଂହ ମନ୍ତ୍ରରାଜ ବା ମହାନୃସିଂହ ମନ୍ତ୍ରରେ ହୋମ ହୁଏ । ପାତାଳ ନୃସିଂହ ମନ୍ତ୍ରରେ ଜପ ଓ ହୋମ ହୁଏ । ନୃସିଂହ ପୂଜା, ସୁଦର୍ଶନ ପୂଜା ଓ ଅସ୍ତ୍ର ପୂଜା ଇତ୍ୟାଦି କର୍ମ ହୁଏ । ବୃକ୍ଷଛେଦନ ନିମନ୍ତେ ଉଦ୍ଦିଷ୍ଟ ସୁନା, ରୁପା ଓ ଲୁହା କୁରାଢ଼ିକୁ ସୁଦର୍ଶନ ମନ୍ତ୍ରରେ ଅଭିମନ୍ତ୍ରିତ କରାଯାଏ । ସୁନା, ରୁପା ଓ ଲୁହା କୁରାଢ଼ିଦ୍ୱାରା ଯଥାକ୍ରମେ ପତିମହାପାତ୍ର, ବିଶ୍ୱାବସୁ ଓ ବିଶ୍ୱକର୍ମାମାନେ ଜଣକ ପରେ ଜଣେ ଦାରୁ ବୃକ୍ଷକୁ ଆଘାତ କରିଥାନ୍ତି । ଏହି ସମୟରେ ମହା ନୃସିଂହ ମନ୍ତ୍ର ଓ ବିଷ୍ଣୁ ସୂକ୍ତ ବୋଲାଯାଏ । ତା'ପରେ ବିଶ୍ୱକର୍ମାମାନେ ବୃକ୍ଷକୁ ମୂଳରୁ କାଟିବା ଆରମ୍ଭ କରନ୍ତି ।

ବୃକ୍ଷଟି ଭୂତଳଶାୟୀ ହେଲା ପରେ ମାପ ଅନୁସାରେ ଏହାକୁ ଖଣ୍ଡ ଖଣ୍ଡ କଟାଯାଏ । କେବଳ ମଞ୍ଜ ଅଂଶଟିକୁ ରଖାଯାଏ । ଏହି ଅଂଶଟିକୁ 'ଚଉପାଟ' କୁହାଯାଏ । ଚଉପାଟ ହେବା ପରେ ବୃକ୍ଷର ବଳକା ଡାଳପତ୍ର, ଛାଲି ଇତ୍ୟାଦି ଗାତକରି ପୋତାଯାଏ । ଏହା ପରେ ଦାରୁକୁ ଶଗଡ଼ିରେ ପୁରୀକୁ ଅଣାଯାଏ । ଏହି ନବନିର୍ମିତ ଶଗଡ଼ିର ଦୈର୍ଘ୍ୟ ଆଠ ହାତ ଓ ଏହାର ଚାରିଟି ନିଦା ଚକ ଥାଏ । ଚକ, ଅଖ ଓ ଦଣ୍ଡା ସାଧାରଣତଃ ବର, ତେନ୍ତୁଳି ଓ କେନ୍ଦୁ କାଠରେ ତିଆରି ହୋଇଥାଏ । ଶଗଡ଼ିକୁ ବ୍ରାହ୍ମଣ ପ୍ରତିଷ୍ଠା କରନ୍ତି । ଦାରୁକୁ ଶଗଡ଼ିରେ ରଖାଯାଇ ପାଟବସ୍ତ୍ରଦ୍ୱାରା ଘୋଡ଼ାଇ ରଖାଯାଏ ଓ ଦଉଡ଼ିରେ ବନ୍ଧାଯାଏ । ଶଗଡ଼ିକୁ ମୋଟା କତା ଦଉଡ଼ିରେ ବନ୍ଧାଯାଇ ଟାଣି ଟାଣି ପୁରୀକୁ ଅଣାଯାଏ । ବାଟରେ ଜନସାଧାରଣ ତଥା ଭକ୍ତମାନେ ଟାଣିଟାଣି ନିଅନ୍ତି । ବାଟରେ ବିଭିନ୍ନ ଗ୍ରାମବାସୀ ଦାରୁ ଶଗଡ଼ିକୁ ଭକ୍ତି ଭାବରେ ପୂଜାର୍ଚ୍ଚନା କରନ୍ତି । ଘଣ୍ଟ, ମର୍ଦ୍ଦଳ ଓ ସଂକୀର୍ତ୍ତନ କରି ସମ୍ବର୍ଦ୍ଧନା ଜଣାନ୍ତି ।

ପରମ୍ପରାନୁସାରେ ଦାରୁ ଶଗଡ଼ି ଛଇତନା, ନୂଆନଈ ରାସ୍ତାରେ ପୁରୀକୁ ଆସିଲେ ଗୁଣ୍ଡିଚା ମନ୍ଦିର ପାର୍ଶ୍ୱସ୍ଥ ନୃସିଂହ ମନ୍ଦିର ନିକଟରେ ରହେ । ପିପିଲି, ସାତଶଙ୍ଖ, ସାକ୍ଷୀଗୋପାଳ ଓ ଚନ୍ଦନପୁର ଦେଇ ଆସିଲେ ଅଠର ନଳା ନିକଟସ୍ଥ ଆଲାମ ଚଣ୍ଡୀ ମନ୍ଦିର ନିକଟରେ ରହେ । ପରଦିନ ସକାଳେ ଦାରୁ ଶଗଡ଼ିକୁ ଘଣ୍ଟ, ଛତି ଓ କାହାଳୀ ସହ ପଟୁଆରରେ ଶ୍ରୀମନ୍ଦିରକୁ ଅଣାଯାଏ । ଶ୍ରୀମନ୍ଦିରର ଉତ୍ତର ଦ୍ୱାରବାଟେ ଦାରୁ ଶଗଡ଼ି ପାହାଚ ଚଢ଼ି କୋଇଲି ବୈକୁଣ୍ଠ ମଧ୍ୟକୁ ପ୍ରବେଶ କଲେ ସେଠାରେ ପଣା ଭୋଗ କରାଯାଇ ଦାରୁ ଶଗଡ଼ିକୁ ସେଠାରେ ନିର୍ମିତ ଅସ୍ଥାୟୀ ଦାରୁ ଘରେ ରଖାଯାଏ । ବିଧି ଅନୁସାରେ ପ୍ରଥମେ ସୁଦର୍ଶନ, ତା'ପରେ ଯଥାକ୍ରମେ ବଳଭଦ୍ର, ସୁଭଦ୍ରା ଓ ଜଗନ୍ନାଥ ମହାପ୍ରଭୁଙ୍କ ଦାରୁ ଶଗଡ଼ି ପୁରୀକୁ ଅଣାଯାଏ । ସ୍ନାନ ପୂର୍ଣ୍ଣିମା ପୂର୍ବରୁ ଏହା ଅଣାଯିବା ବିଧି ।

ଗତ ନବ କଳେବର (୧୯୯୬)ରେ ଦାରୁ ମିଳିଥିବା ସ୍ଥାନଃ

ଶ୍ରୀ ସୁଦର୍ଶନଙ୍କ ଦାରୁ- କଟକ ଜିଲ୍ଲା ନିଆଳି ବ୍ଲକ ମାଧବ ମୌଜାର ବିଶୋଇ ଡିହ ସାହି । (୨୦.୪.ରେ ଦାରୁ ଶଗଡି ଶ୍ରୀମନ୍ଦିରରେ ପହଞ୍ଚିଲା । ) ଶ୍ରୀ ବଳଭଦ୍ରଙ୍କ ଦାରୁ- କଟକ ଜିଲ୍ଲା ସାଲେପୁର ବ୍ଲକର ରାମକୃଷ୍ଣପୁର ଗ୍ରାମ (୮.୫.ରେ ଶ୍ରୀମନ୍ଦିରରେ ପହଞ୍ଚିଲା ।) ଦେବୀ ସୁଭଦ୍ରାଙ୍କ ଦାରୁ- ପୁରୀ ଜିଲ୍ଲା ଅସ୍ତରଙ୍ଗ ବ୍ଲକ୍‌ର ମାଲଦା ଗ୍ରାମ । ( ୯.୫.ରେ ଶ୍ରୀମନ୍ଦିରରେ ପହଞ୍ଚିଲା ।) ଶ୍ରୀଜଗନ୍ନାଥଙ୍କ ଦାରୁ- ଖୋର୍ଦ୍ଧା ଜିଲ୍ଲାର ଦଧିମାଛଗାଡ଼ିଆ ଗ୍ରାମ ( ୧୭.୫ରେ ଶ୍ରୀମନ୍ଦିରରେ ପହଞ୍ଚିଲା ।)

କୋଇଲି ବୈକୁଣ୍ଠରେ ଚାରି ଦାରୁ ଶଗଡ଼ି ରହିବାପାଇଁ ଦାରୁଘର, ନୃସିଂହ ମଣ୍ଡପ, ନ୍ୟାସ ମଣ୍ଡପ, ଦାରୁସ୍ନାନ ମଣ୍ଡପ, ଏକାଦଶ କଳସ ମଣ୍ଡପ, ଯଜ୍ଞ ମଣ୍ଡପ, କର୍ମ କୁଟୀର ଏବଂ ଅଙ୍କୁରାରୋପଣ ଗୃହ ନିର୍ମାଣ କରାଯାଏ ।

ତାଃ ୩୦-୫-୯୬ (ଚମ୍ପକ ଦ୍ୱାଦଶୀ)ରେ ସାତଜଣ ବ୍ରାହ୍ମଣ ବରଣ, ଅଙ୍କୁରାରୋପଣ (ଅଙ୍କୁରାରୋପଣ ଗୃହରେ) ଆରମ୍ଭ ହୋଇଥିଲା । ଅଙ୍କୁରାରୋପଣ ପାଇଁ ଶୁଭ ବେଳା ସଂଧ୍ୟା ୭ଟା୩୫ରୁ ରାତି ୯ଟା ୪୫ ଭିତରେ ସ୍ଥିର କରାଯାଇଥିଲା ।

ତାଃ ୧-୬ ରେ ଦେବସ୍ନାନ ନୀତି ପାଳିତ ହୋଇଥିଲା । ସ୍ନାନ ମଣ୍ଡପରେ ଶ୍ରୀଜଗନ୍ନାଥ ସମେତ ଚତୁର୍ଦ୍ଧାମୂର୍ତ୍ତିଙ୍କର ସ୍ନାନ ନୀତି ହେବା ସଙ୍ଗେ ସଙ୍ଗେ କୋଇଲି ବୈକୁଣ୍ଠରେ ନିର୍ମିତ ଦାରୁଘରେ ଦାରୁମାନଙ୍କୁ ସଂପୃକ୍ତ ସେବକମାନଙ୍କ ଦ୍ୱାରା ବିଧି ଅନୁସାରେ ସ୍ନାନ କରାଯାଇ ଥିଲା ।

୩ତାରିଖ (ଦ୍ୱିତୀୟା)ରେ ଅନ୍ୟାନ୍ୟ ବ୍ରାହ୍ମଣ ବରଣ, ବିଦ୍ୟାପତି, ବିଶ୍ୱାବସୁ ଓ ବିଶ୍ୱକର୍ମା ବରଣ, ଅଗ୍ନି ସ୍ଥାପନ, ବହିର୍ବନଯାଗ ଯଜ୍ଞ (କର୍ମ କୁଟୀରରେ) ହୋଇଥିଲା । ଶ୍ରୀମନ୍ଦିର ଦକ୍ଷିଣୀ ଘରେ ବିରାଜିତ ଲକ୍ଷ୍ମୀ ନୃସିଂହ ବିଗ୍ରହକୁ ପତି ମହାପାତ୍ର ବିଜେ କରିନେଇ କୋଇଲି ବୈକୁଣ୍ଠରେ ପୂର୍ବୋକ୍ତ ନୃସିଂହ ମଣ୍ଡପରେ ସ୍ଥାପନ କରିଥିଲେ । ଉକ୍ତ ଦିନ ରାତିରେ ପୁଣି ଥରେ ଅଙ୍କୁରାରୋପଣ କାର୍ଯ୍ୟ ବ୍ରାହ୍ମଣମାନେ କରିଥିଲେ । ପରବର୍ତ୍ତୀ ଦିନ ( ୪ତାରିଖ) ବ୍ରାହ୍ମଣ ବରଣ, ମଣ୍ଡଳାଦି କର୍ମ ଶେଷ କରାଗଲା । ୫ତାରିଖ (ଚତୁର୍ଥୀ)ରେ ଅନ୍ୟାନ୍ୟ ବ୍ରାହ୍ମଣ ବରଣ, ପ୍ରତିଷ୍ଠା କର୍ମ ଓ ବିଗ୍ରହ ନିର୍ମାଣ ଆରମ୍ଭ (କର୍ମ କୁଟୀରରେ) ହୋଇଥିଲା । ପୁନର୍ବାର ବିଦ୍ୟାପତି ଓ ବିଶ୍ୱାବସୁ ବରଣ,

ନ୍ୟାସ ଦାରୁ ଅଧିବାସ, ନୃସିଂହଙ୍କ ମାଜଣା ଓ ହୋମକର୍ମ ଆରମ୍ଭ ହୋଇଥିଲା । ୬ତାରିଖ (ପଞ୍ଚମୀ)ଠାରୁ ୧୪ତାରିଖ ଯାଏଁ ଯଜ୍ଞ ଚାଲିଥିଲା। ପ୍ରତିଷ୍ଠା କର୍ମ ଓ ବିଗ୍ରହ ନିର୍ମାଣ କାର୍ଯ୍ୟ ଚାଲିଥିଲା । ୧୫ତାରିଖ (ଚତୁର୍ଦ୍ଦଶୀ-ମଳ) ଯଜ୍ଞରେ ଗଜପତି ମହାରାଜାଙ୍କ ଦ୍ୱାରା ପୂର୍ଣ୍ଣାହୁତି ପ୍ରଦାନ, ନୃସିଂହ ଠାକୁରଙ୍କ ବାହୁଡା ବିଜେ ଏବଂ ରାତିରେ ଘଟ ପରିବର୍ତ୍ତନ କାର୍ଯ୍ୟ ଗୋପନରେ ଦଇତାପତିଙ୍କ ଦ୍ୱାରା କରାଯାଇଥିଲା ।

କୋଇଲି ବୈକୁଣ୍ଠରେ ଯଜ୍ଞାଦି କର୍ମରେ ସତର ଜଣ ବ୍ରାହ୍ମଣ ବରଣ ହୋଇ ଆଚାର୍ଯ୍ୟ, ନ୍ୟାସାଚାର୍ଯ୍ୟ, ବ୍ରହ୍ମା, ଚରୁ, ସମିଧ, ସ୍ୱସ୍ତିବାଚକ, ପ୍ରଚାରକ, ଅଗ୍ନିରକ୍ଷକ, ଶାଳାରକ୍ଷକ ପ୍ରଭୃତି କର୍ମରେ ନିୟୋଜିତ ହୋଇଥିଲେ । ଦେଉଳ ପୁରୋହିତ ପଣ୍ଡିତ ହରିହର ମହାପାତ୍ର ସର୍ବେ ଉପଦେଷ୍ଟା ଭାବରେ କାର୍ଯ୍ୟ କରିଥିଲେ । ଏମାନଙ୍କ ବ୍ୟତୀତ ଆହୁରି ୫୫ଜଣ ବ୍ରାହ୍ମଣ ବରଣ ହୋଇଥିଲେ । ଏମାନେ ଶ୍ରୀମନ୍ଦିରର ଅନ୍ୟାନ୍ୟ ପରିସର ଓ ପୁରୀ ସହରର ବିଭିନ୍ନ ଦେବଦେବୀ ପୀଠରେ ଗୀତା, ଭାଗବତ, ବେଦ, ଅଧ୍ୟାତ୍ମ ରାମାୟଣ, ବିଷ୍ଣୁ ସହସ୍ର ନାମ, ଗୋପାଳ ସହସ୍ର ନାମ, ଶ୍ରୀରାମ ସହସ୍ର ନାମ, ଶ୍ରୀସୂକ୍ତ, ଲକ୍ଷ୍ମୀ ସୂକ୍ତ, ନବଗ୍ରହ ସ୍ତୋତ୍ର, ନୃସିଂହ କବଚ ଓ ସ୍ତୋତ୍ର, ସିଦ୍ଧ ବିନାୟକ ସ୍ତୋତ୍ର ପାଠ କରିଥିଲେ । ଦେବୀ ପୀଠମାନଙ୍କରେ ଚଣ୍ଡୀପାଠ କରାଯାଇଥିଲା । ଅଷ୍ଟଶମ୍ଭୁ ଓ ବିଭିନ୍ନ ଶିବ ମନ୍ଦିରରେ ଅଭିଷେକ କର୍ମ କରାଯାଇଥିଲା ।

ଶ୍ରୀମନ୍ଦିରର ଦଶଜଣ ମୁଖ୍ୟ ମହାରଣା (ବିଶ୍ୱକର୍ମା) ବିଗ୍ରହ ନିର୍ମାଣ କାର୍ଯ୍ୟ ନିଷ୍ଠାପର ଭାବରେ କରିଥିଲେ ।

ଚତୁର୍ଦ୍ଦଶୀ ମଧ୍ୟ ରାତ୍ରରେ ଘଟ ପରିବର୍ତ୍ତନ ବା ବ୍ରହ୍ମ ପରିବର୍ତ୍ତନ କାର୍ଯ୍ୟ ଅତ୍ୟନ୍ତ ଗୋପନୀୟ ଭାବରେ ସମ୍ପନ୍ନ ହୋଇଥିଲା । ଚାରି ଦ୍ୱାର ବନ୍ଦ ହୋଇ କେବଳ ଦଇତା ଓ ପତି ମହାପାତ୍ରଙ୍କ ବ୍ୟତୀତ ଅନ୍ୟ କେହି ମନ୍ଦିରରେ ରହିବା ବାରଣ କରାଯାଇଥିଲା । କେବଳ ବାହାର ବେଢ଼ାର ବାଇଶି ପାହାଚରେ ଦେଉଳ କରଣ ପରମ୍ପରାନୁସାରେ ଖଣ୍ଡା ଧରି ଜଗି ରହିଥିଲେ । ଶ୍ରୀମନ୍ଦିରକୁ ସମ୍ପୂର୍ଣ୍ଣ ଅନ୍ଧକାର ରଖାଯାଇଥିଲା । ଏପରିକି ଶ୍ରୀମନ୍ଦିର ବାହାରେ ସାରା ସହରରେ ମଧ୍ୟ ବିଜୁଳି ଆଲୋକ ବନ୍ଦ କରାଯାଇଥିଲା । ଶ୍ରୀମନ୍ଦିର ବାହାରେ ସିଂହଦ୍ୱାର ସୂଚନା କେନ୍ଦ୍ରରେ ଶ୍ରୀମନ୍ଦିର ପ୍ରଶାସକ ଓ ଅନ୍ୟାନ୍ୟ କେତେଜଣ ଅଧିକାରୀ ସାରାରାତି ବସି ରହିଥିଲେ ।

ଉକ୍ତ ରାତ୍ରରେ ନବନିର୍ମିତ ବିଗ୍ରହମାନଙ୍କୁ ଦଇତାପତିମାନେ କୋଇଲିବୈକୁଣ୍ଠର ନିର୍ମାଣ କୁଟୀରରୁ ପହଣ୍ଡି ବିଜେ କରାଇ ଅଣସର ପିଣ୍ଡିକୁ ଆଣନ୍ତି । ତା' ପରେ ଶୁଭ ମୁହୂର୍ତ୍ତ ଦେଖି, ପୁରାତନ ବିଗ୍ରହମାନଙ୍କରୁ ବ୍ରହ୍ମ ପଦାର୍ଥ ବାହାର କରାଯାଇ ଗୋପନୀୟ ବିଧି ବିଧାନ ଅନୁସାରେ ନୂତନ ବିଗ୍ରହମାନଙ୍କରେ ସ୍ଥାପନ କରାଯାଏ । ବ୍ରହ୍ମ ସ୍ଥାପନ ହେବା ପରେ ବ୍ରହ୍ମସ୍ଥଳୀକୁ ନ୍ୟାସ ଦାରୁଦ୍ୱାରା ଆବୃତ କରାଯାଏ ଓ ବଜ୍ର କାଛେଣି ବନ୍ଧାଯାଏ । ଏହା ପରେ ପୁରାତନ ବିଗ୍ରହମାନଙ୍କୁ କୋଇଲି ବୈକୁଣ୍ଠରେ ଥିବା ଶିଆଳି ଲତାତଳେ ସମାଧିସ୍ଥ କରାଯାଇଥିଲା । କୋଠସୁଆଁସିଆମାନେ ନିର୍ଦ୍ଦିଷ୍ଟ ମାପର ସମାଧି ଗର୍ତ୍ତ ପୂର୍ବରୁ ଖୋଳିଥିଲେ । ପୁରାତନ ବିଗ୍ରହମାନଙ୍କ ସହିତ ରଥର ପାର୍ଶ୍ୱଦେବତା, ସାରଥି, ଘୋଡ଼ା ଆଦି ପୋତା ଯାଇଥିଲା । ପରବର୍ତ୍ତୀ ଦିନ ତାଃ ୧୬-୬-୯୬

ଅପରାହ୍‌ଣରେ ଦଇତାପତିମାନେ ସିଂହଦ୍ୱାର ବାଟେ ପଦାକୁ ବାହାରି ମାର୍କଣ୍ଡେୟ ପୋଖରୀକୁ ଗାଧୋଇବାକୁ ଯାଇଥିଲେ । ଗାଧୋଇବା ପରେ ପୁଣି ସିଂହଦ୍ୱାର ଦେଇ ଶ୍ରୀମନ୍ଦିରକୁ ପ୍ରବେଶ କରି ମୁକ୍ତିମଣ୍ଡପ ପାଖରେ ଓଦା ଗାମୁଛାଯାକ ପକାଇଥିଲେ । ଜନୈକ ଧୋବା ସେସବୁ ନେଇଥିଲେ ।

ପରମ୍ପରାନୁସାରେ ମହାପ୍ରଭୁଙ୍କ 'ଜ୍ଞାତି' ହିସାବରେ ଦଇତାମାନେ ବିଧିପୂର୍ବକ ଶୁଦ୍ଧିକ୍ରିୟା ପାଳନ କରନ୍ତି । ତ୍ରୟୋଦଶୀ ଦିନ ଦ୍ୱାଦଶାହ ନିମନ୍ତେ ବ୍ରାହ୍ମଣ, ସାଧୁସନ୍ଥ, ଛତିଶା ନିଯୋଗ, ଦଇତାପତି, ମୁକ୍ତିମଣ୍ଡପର ପଣ୍ଡିତମଣ୍ଡଳୀ ଓ ବିଶିଷ୍ଟ ବ୍ୟକ୍ତିମାନେ ଶ୍ରୀମନ୍ଦିର ବେଢ଼ାରେ ମହାପ୍ରସାଦ ପାଆନ୍ତି । ତାଃ ୨୭-୬-୯୬ରେ ରାତି ଆଠଟାରୁ ପ୍ରାୟ ଭୋର ପର୍ଯ୍ୟନ୍ତ ପଚାଶ ହଜାରରୁ ଉର୍ଦ୍ଧ୍ୱ ବ୍ୟକ୍ତି ଶ୍ରୀମନ୍ଦିରର ପରିସରରେ ମହାପ୍ରସାଦ ସେବନ କରିଥିଲେ ।

ଏହା ପରଠାରୁ ନୂତନ ବିଗ୍ରହମାନଙ୍କର ସପ୍ତାବରଣ କର୍ମ ଆରମ୍ଭ କରାଯାଏ । ସପ୍ତାବରଣ ମାନେ ଦାରୁ, ଚେହେଲି, ଚଉବନ୍ଧ (ଖଣ୍ଡୁଆ ଓ ଛାଚିପାଟ) ବାସୁଙ୍ଗୀ ପାଟ, ଓଷୁଅ, ରକ୍ତ ବସ୍ତ୍ର ଓ ଶ୍ରୀମୁଖ ଓତା । ଏହିପରି ସପ୍ତାବରଣ ଦ୍ୱାରା ବିଗ୍ରହ ନିର୍ମାଣ ସମାପନ ହୁଏ । 'ବନକ ଲାଗି' କାର୍ଯ୍ୟ ସରିବା ପରେ ଯଥାରୀତି ଅମାବାସ୍ୟା ଦିନ 'ନେତ୍ରୋତ୍ସବ' ନୀତି ହୁଏ । ଗତ ନବ କଳେବର ବେଳେ ଜୁଲାଇ ୧୬ତାରିଖରେ ନେତ୍ରୋତ୍ସବ ଓ ନବ ଯୌବନ ଦର୍ଶନ ନୀତି ହୋଇଥିଲା । ୧୭ତାରିଖରେ ଶ୍ରୀଗୁଣ୍ଡିଚା ଯାତ୍ରା ଆରମ୍ଭ ହୋଇଥିଲା । ଲକ୍ଷ ଲକ୍ଷ ଦର୍ଶନାର୍ଥୀ ଭକ୍ତ ତିନି ରଥ ଉପରେ ନବ ବିଗ୍ରହଙ୍କୁ ଦର୍ଶନ କରିବାର ସୌଭାଗ୍ୟ ଲାଭ କରିଥିଲେ ।

ନବକଳେବର ୧୯୯୬ ଥିଲା ଗତ ଶତାବ୍ଦୀର ଶେଷ ଓ ସର୍ବାପେକ୍ଷା ସଫଳ ନବକଳେବର । ବିଭିନ୍ନ ଖବରକାଗଜ ତଥା ଗଣମାଧ୍ୟମରେ ଏହାର ଅଭୂତପୂର୍ବ ସାଫଲ୍ୟକୁ ନିର୍ବିବାଦରେ ସ୍ୱୀକାର କରାଯାଇଥିଲା ।



## ପରିଶିଷ୍ଟ - ୬

# ଚତୁର୍ଦ୍ଧାମୂର୍ତ୍ତିଙ୍କର ଉଚ୍ଚତା

ରତ୍ନବେଦୀରେ ବିରାଜିତ ଚତୁର୍ଦ୍ଧା ଦାରୁମୂର୍ତ୍ତିଙ୍କର ଉଚ୍ଚତା କେତେ ଏହା ଜାଣିବା ସକାଶେ ବହୁ ଭକ୍ତଙ୍କ ମନରେ ଆଗ୍ରହ ରହୁଛି । ବିଗ୍ରହମାନଙ୍କର ପ୍ରକୃତ ଉଚ୍ଚତା ଜାଣିବା ସହଜ ନୁହେଁ । ବିଗ୍ରହମାନଙ୍କର ଉଚ୍ଚତା ଏବଂ ବିଭିନ୍ନ ଶ୍ରୀଅଙ୍ଗର ମାପ ସଂପୂର୍ଣ୍ଣ ଗୋପନୀୟ ରଖାଯାଇଛି । ଏହା କେବଳ ସଂପୃକ୍ତ ସେବକମାନଙ୍କୁ ଗୋଚର । ଦଇତାପତି ସେବକମାନଙ୍କ ପାଖରେ ଥିବା ଗୁପ୍ତ ପୋଥିରେ ବିଗ୍ରହ ନିର୍ମାଣ ସଂପର୍କରେ ତଥ୍ୟ ରହିଥିବା ଜଣାଯାଏ । ସେମାନଙ୍କ ନିର୍ଦ୍ଦେଶ ତଥା ତତ୍ତ୍ୱାବଧାନରେ ଶ୍ରୀମନ୍ଦିରର ବିଶ୍ୱକର୍ମା (ବଢ଼େଇ) ସେବକମାନେ ନବକଳେବର ବେଳେ କୋଇଲିବୈକୁଣ୍ଠଠାରେ ବିଗ୍ରହ ନିର୍ମାଣ କରନ୍ତି । ଏହି ନିର୍ମାଣ କାର୍ଯ୍ୟ ସଂପୂର୍ଣ୍ଣ ଗୋପନୀୟ ଭାବେ କରାଯାଏ । ସଂପୃକ୍ତ ସେବକଙ୍କ ବ୍ୟତୀତ ଅନ୍ୟକେହି ଏହା ଦେଖନ୍ତି ନାହିଁ ।

ଶ୍ରୀମନ୍ଦିରର ସ୍ୱତ୍ୱଲିପି, ନୀଳାଦ୍ରି ମହୋଦୟ (ସଂପାଦନା- ବ୍ରଜକିଶୋର ସ୍ୱାଇଁ, ବାମଦେବ ସଂହିତା (ସଂପାଦନା- ଜୟକୃଷ୍ଣ ମିଶ୍ର) ଓ ମାଦଳା ପାଞ୍ଜି (ସଂପାଦନା- ଆର୍ତ୍ତବଲ୍ଲଭ ମହାନ୍ତି) ପୁସ୍ତକମାନଙ୍କରେ ବିଗ୍ରହମାନଙ୍କର ମାପ ସଂପର୍କରେ ଉଲ୍ଲେଖ ନାହିଁ । ମାଦଳାପାଞ୍ଜି ସଦୃଶ ଅନ୍ୟ ଏକ ପୋଥି 'ଚକଡ଼ାପୋଥି'ରେ ଉଲ୍ଲେଖ ଅଛି ''ରାଜା ବଡ଼ ପଦ୍ମନାଭ ପଟ୍ଟନାୟକଙ୍କୁ ଆଜ୍ଞାଦେଲେ । ସେ ଯାଇ କୁଜଙ୍ଗଠାରୁ ମହାପ୍ରଭୁଙ୍କୁ ଆଣିଲେ । ମହାରାଜା ସ୍କନ୍ଦପୁରାଣ ବିଧିରେ ଚଉରାଶି ଯବରେ ଦାରୁ ଶ୍ରୀମୂର୍ତ୍ତି କରି ଭିତର ପୋଟଳରେ ଶାଳଖା ବିଜେ କରାଇ ଶ୍ରୀମୂର୍ତ୍ତି କଲେ । (ଚକଡ଼ା ପୋଥି ଓ ଚୟିନୀ ଚକଡ଼ା-ସଂପାଦନା-କୃପାସିନ୍ଧୁ ବିଶ୍ୱାଳ) । 'ସ୍କନ୍ଦ ପୁରାଣ'ର ଉତ୍କଳ ଖଣ୍ଡରେ ବିଗ୍ରହମାନଙ୍କର ଉଚ୍ଚତା ବା ମାପ ଉଲ୍ଲେଖ ନାହିଁ । ଚକଡ଼ାପୋଥିରେ 'ଚଉରାଶି ଯବରେ ଦାରୁ ଶ୍ରୀମୂର୍ତ୍ତି କରି' ବୋଲି ଯାହା ଲେଖାଅଛି ସେଥିରୁ ଅନୁମାନ କରାଯାଏ ଯେ କେବଳ ମହାପ୍ରଭୁ ଜଗନ୍ନାଥଙ୍କ ଉଚ୍ଚତା ୮୪ ଯବ ।

ବିଶିଷ୍ଟ ଲେଖକ ସୁରେନ୍ଦ୍ର ମହାନ୍ତି ତାଙ୍କର ଇଂରାଜୀ ପୁସ୍ତକ 'ଲର୍ଡ଼ ଜଗନ୍ନାଥ'ରେ ଲେଖିଛନ୍ତି ଯେ 'ନୀଳାଦ୍ରି ମହୋଦୟ'ରେ ଉଲ୍ଲେଖ ପ୍ରକାରେ ବଳଭଦ୍ର ଠାକୁରଙ୍କ ଉଚ୍ଚତା ୮୫ ଯବ, ମହାପ୍ରଭୁ ଜଗନ୍ନାଥଙ୍କ ଉଚ୍ଚତା ୮୪ ଯବ ଏବଂ ଦେବୀ ସୁଭଦ୍ରାଙ୍କ ଉଚ୍ଚତା ୫୨ ଯବ । ସୁଦର୍ଶନଙ୍କ ଉଚ୍ଚତା ଜଗନ୍ନାଥଙ୍କ ଉଚ୍ଚତା ସହିତ ସମାନ, ଅର୍ଥାତ୍ ୮୪ ଯବ, କିନ୍ତୁ ଉପଲବ୍ଧ ହେଉଥିବା 'ନୀଳାଦ୍ରି

ମହୋଦୟ' ବହିରେ ବିଗ୍ରହମାନଙ୍କର ଉଚ୍ଚତା କିମ୍ବା ଶ୍ରୀ ଅଂଗର ବିଭିନ୍ନ ଅଂଶର ମାପ ଉଲ୍ଲେଖ ନାହିଁ ।

ଏହି ଲେଖକ ଶ୍ରୀମନ୍ଦିରରେ ସହକାରୀ ପ୍ରଶାସକ ଥିଲାବେଳେ ତଡ଼ାଉକରଣ ✓ସୁଦର୍ଶନ ପଟ୍ଟନାୟକଙ୍କ ପାଖରେ 'ମାଦଳାପାଞ୍ଜି'ର କିଛି ଅଂଶ ଦେଖିଥିଲା । ସେଥିରୁ ପ୍ରାପ୍ତ ତଥ୍ୟ ଅନୁସାରେ ମଧ୍ୟମ ଆଙ୍ଗୁଳି ଯବମାପ ଅନୁସାରେ ଶ୍ରୀଜଗନ୍ନାଥଦେବଙ୍କର ଚକ୍ରାକୃତି ଘଟଣାକୁ ୮୪ ଯବ; ଶ୍ରୀବଳରାମଦେବଙ୍କର ଶଙ୍ଖାକୃତି ଘଟଣାକୁ ୮୪ ଯବ, ଶ୍ରୀସୁଭଦ୍ରାଦେବୀଙ୍କର ପଦ୍ମାକୃତି ଘଟଣାକୁ ୫୦ଯବ ୮ ବିଶ୍ୱା, ଶ୍ରୀସୁଦର୍ଶନ ଦେବଙ୍କର ଗଦାକୃତି ଘଟଣାକୁ ୮୦ ଯବ କୁହାଯାଇଛି । 'ଘଟଣା'ର ଅର୍ଥ ଗଠନ ବା ନିର୍ମାଣ ।

ଜଗବନ୍ଧୁ ସିଂହଙ୍କ 'ପ୍ରାଚୀନ ଉତ୍କଳ'ରେ ଲେଖାଅଛି ଯେ ଜଗନ୍ନାଥ, ବଳଭଦ୍ର ଏବଂ ସୁଦର୍ଶନ ଠାକୁରମାନଙ୍କର ଉଚ୍ଚତା ପ୍ରତ୍ୟେକ ୮୪ ଯବ । ଦେବୀ ସୁଭଦ୍ରାଙ୍କର ୫୨ ଯବ ।

ବିଭିନ୍ନ ପ୍ରକାର ଯବ ମାପ ରହିଛି । ଏଠାରେ ଉଲ୍ଲେଖ ଥିବା ଯବମାପ ହେଉଛି ମଧ୍ୟମ ଆଙ୍ଗୁଳି ଯବ ମାପ; ଯାହାକି ମଝି ଆଙ୍ଗୁଳିର ମଝି ଅଂଶର ଦୈର୍ଘ୍ୟକୁ ବୁଝାଏ । ଏହି ଦୈର୍ଘ୍ୟ ପାଖାପାଖି ବା ପ୍ରାୟ ଏକ ଇଞ୍ଚ ।

ବିଶିଷ୍ଟ ଗବେଷକ ଗୟାଚରଣ ତ୍ରିପାଠୀ ଲେଖିଛନ୍ତି ଯେ ସେମାନେ ୧୯୭୧ ମସିହାରେ ଦେଉଳକରଣଙ୍କଠାରୁ ସଂଗ୍ରହ କରିଥିବା ଏକ ପାଣ୍ଡୁଲିପି ପ୍ରକାରେ ବଳଭଦ୍ର, ଜଗନ୍ନାଥ ଓ ସୁଦର୍ଶନଙ୍କର ଉଚ୍ଚତା ୮୪ ଯବ ଏବଂ ସୁଭଦ୍ରାଙ୍କର ୫୨.୫ ଯବ । ଶ୍ରୀ ତ୍ରିପାଠୀ ଲେଖିଛନ୍ତି:

The way and means of carving the images as well as the measurements of the different parts of the statues are a very closely guarded secret of the Daitas. The carpenters of the Daitas fashion the images on the basis of the details contained in old palm-leaf manuscripts which they possess from their family tradition. Some of the details are, however, also found in the old manuscript of the Madala Panji procured by us from the Deula Karana of the Temple in 1971. According to this manuscript the height of Balabhadra and Jagannath as well as of Sudarsana amounts to 84 Yavas each, whereas that of Subhadra only 52.5 Yavas. (The C.J.R.T.O- Ed. by A. Eschmann, H. Kulke, G.C. Tripathy)

ବିଶ୍ୱସ୍ତ ସୂତ୍ରରୁ ଏହି ଲେଖକଙ୍କଦ୍ୱାରା ସଂଗୃହୀତ ତଥ୍ୟ ଅନୁସାରେ ଚତୁର୍ଦ୍ଧାମୂର୍ତ୍ତିଙ୍କର ଉଚ୍ଚତା ହେଉଛି-

ଶ୍ରୀବଳଭଦ୍ର- ୮୭ ଯବ; ଶ୍ରୀଜଗନ୍ନାଥ- ୮୪ ଯବ
ଦେବୀ ସୁଭଦ୍ରା- ୭୦ ଯବ; ଶ୍ରୀସୁଦର୍ଶନ- ୮୪ ଯବ



## ପରିଶିଷ୍ଟ - ୭

# କୋଠଭୋଗ

**ଶ୍ରୀ**ମନ୍ଦିରରେ ପ୍ରତ୍ୟହ ବିଭିନ୍ନ ଧୂପରେ ପ୍ରଶାସନ ତରଫରୁ କୋଠଭୋଗ ବା ରାଜଭୋଗ ହୁଏ । ଏହି ଭୋଗର ତାଲିକା ନିମ୍ନରେ ପ୍ରଦତ୍ତ ହେଲା । ଏହି ତାଲିକାରେ ସୂପକାରମାନଙ୍କ ପକ୍ଷରୁ ହେଉଥିବା ଭୋଗମଣ୍ଡପ ବା ବରାଦି ଭୋଗ ଅନ୍ତର୍ଭୁକ୍ତ ହୋଇନାହିଁ ।

| | | | |
|---|---|---|---|
| **ଗୋପାଳବଲ୍ଲଭ ଭୋଗ :** | ପାଗ ଖଇ | – | ୪୪ ଓଳି |
| | ସାନ ନଡ଼ିଆ କୋରା | – | ୨୨୮ |
| | ବଡ଼ ନଡ଼ିଆ କୋରା | – | ୨୯ |
| | ପାଚିଲା କଦଳୀ | – | ୩ ସରା (୭ ମୂର୍ତ୍ତି) |
| | ଦହି | – | ୪ ବଡ଼ା (୪୦୦ ଗ୍ରାମ୍) |
| | ପାତି ବା ଖୁଦି ନଡ଼ିଆ | – | ୩ ସରା |

ପୂର୍ବରୁ ବଲ୍ଲଭ ଭୋଗରେ ଖୁଆମଣ୍ଡା, ସର, ରାବିଡ଼ି ଭୋଗ ହେଉଥିଲା । ଏବେ ଆଉ ହେଉନାହିଁ । ତା ୨-୯-୧୯୮୮ଠାରୁ ଖୁଆମଣ୍ଡା (୧୦ଟି), ରାବିଡ଼ି, ସର ଓ ଦହି ବଲ୍ଲଭଭୋଗ ସମାପ୍ତି ପରେ ଜଗମୋହନରେ ସର୍ପାମଣୋହି କରାଯାଉଛି ।

| | | | |
|---|---|---|---|
| **ସକାଳ ଧୂପ :** | ପିଠାପୁଳି | – | ୪ ସରା |
| | ହଂସକେଳି | – | ୨ ସରା |
| | ବଡ଼କାନ୍ତି | – | ୫ ସରା |
| | ସାନକାନ୍ତି | – | ୩ ସରା |
| | ଏଣ୍ଡୁରି | – | ୬ ଗୋଟା |
| | ମାଠପୁଳି | – | ୬ ଗୋଟା |
| | କାକତୁଆ ଝିଲ୍ଲି | – | ୪ ଗୋଟା |
| | ଆଳୁ କଦଳୀ ଭଜା | – | ୧ ସରା |

| | | |
|---|---|---|
| ଅଦା ପାଚେଡ଼ି | – | ୪ ସରା |
| ବୁନ୍ଦିଆ | – | ୧ ସରା |
| ଥାଳି ଖେଚୁଡ଼ି | – | ୬ କୁଡୁଆ (ବଡ଼ ଠାକୁରଙ୍କର) |
| ଥାଳି ଖେଚୁଡ଼ି | – | ୨ କୁଡୁଆ (ସୁଭଦ୍ରାଙ୍କର) |
| ଥାଳି ଖେଚୁଡ଼ି | – | ୨ କୁଡୁଆ (ସୁଦର୍ଶନଙ୍କର) |
| ଥାଳି ଖେଚୁଡ଼ି | – | ୪ କୁଡୁଆ (ଜଗନ୍ନାଥଙ୍କର) |
| ତାଟ ଖେଚୁଡ଼ି | – | ୬ କୁଡୁଆ |
| ମେଣ୍ଢାମୁଣ୍ଡିଆ ଖେଚୁଡ଼ି | – | ୧ କୁଡୁଆ |
| ବଡ଼ କାନିକା | – | ୩ କୁଡୁଆ |
| ସାନ କାନିକା | – | ୨ କୁଡୁଆ |
| ଓଳି ଖେଚୁଡ଼ି | – | ୯ କୁଡୁଆ |
| ନୁଖୁରା ଖେଚୁଡ଼ି | – | ୪ କୁଡୁଆ |
| ବଡ଼ ଓଳି ଖେଚୁଡ଼ି | – | ୩ ଓଳି |
| ସାନ ଓଳି ଖେଚୁଡ଼ି | – | ୩ ଓଳି |
| ଶାଗ | – | ୫ ଓଳି |
| ଚଣ୍ଡମାଠପୁଳି | – | ୯ ଓଳି (ପୂଜାପଣ୍ଡାଙ୍କର) |

**ମଧ୍ୟାହ୍ନ ଧୂପ :**

| | | |
|---|---|---|
| ବଡ଼ପିଠା (ପିଠାପୁଳି) | – | ୪ ସରା |
| ଛେନାପିଠା | – | ୨ ସରା |
| ତିପୁରୀ | – | ୫ ମୂର୍ତ୍ତି |
| ବଡ଼ ଆରିସା | – | ୧୮ ମୂର୍ତ୍ତି |
| ସାନ ଆରିସା | – | ୨୧ ମୂର୍ତ୍ତି |
| ମାଠପୁଳି | – | ୧୭ ମୂର୍ତ୍ତି |
| ବଡ଼ବଡ଼ା | – | ୯ ମୂର୍ତ୍ତି |
| ସାନବଡ଼ା | – | ୯ ମୂର୍ତ୍ତି |
| ବଡ଼ କାକରା | – | ୧ ସରା |
| ସାନ କାକରା | – | ୧୨ ମୂର୍ତ୍ତି |
| ଝଡ଼େଇଲଦା ଗୁଳା | – | ୧୨ ମୂର୍ତ୍ତି |
| ଝଡ଼େଇଲଦା | – | ୨ ଓଳି |
| ତାଟ ମନୋହର | – | ୮ ମୂର୍ତ୍ତି |
| ସୁଆର ମନୋହର | – | ୩୦ ମୂର୍ତ୍ତି |

| | | |
|---|---|---|
| ଥାଳିପକା ଧଉଳା | – | ୯ ମୂର୍ତ୍ତି |
| ବଡ଼ ଖଇର ଚୂଳ | – | ୧ ମୂର୍ତ୍ତି |
| ସାନ ଖଇର ଚୂଳ | – | ୪ ମୂର୍ତ୍ତି |
| ବଡ଼ ପୁଷ୍ପାଳକ ଆରିସା | – | ୧୦ ମୂର୍ତ୍ତି |
| ମରିଚ ଲଡ୍ଡୁ | – | ୫୦ ମୂର୍ତ୍ତି |
| ବଡ଼ ପିଠା | – | ୪ ସରା |
| ମହାବୀର ପିଠା | – | ୭ ସରା (୧୪ ପଟ) |
| ଗୋଟିକିଆ ପଟପିଠା | – | ୩ ପଟ |
| ଫେଣି | – | ୧ ସରା |
| ଟାକୁଆ | – | ୪ ସରା |
| ଗଜା | – | ୧ ଓଳି |
| ପାଗ ଆରିସା | – | ୯ ମୂର୍ତ୍ତି |
| ବଡ଼ପାଗ ଆରିସା | – | ୬ ମୂର୍ତ୍ତି |
| ଝଡ଼େଇଲଦା ଡାଡ଼ | – | ୧ ମୂର୍ତ୍ତି |
| ବିରି ବଡ଼ି | – | ୪ ଓଳି |
| ବଡ଼ଠାକୁରଙ୍କ ଥାଳି ଅନ୍ନ | – | ୯ କୁଡୁଆ |
| ସୁଭଦ୍ରାଙ୍କ ଥାଳି ଅନ୍ନ | – | ୩ କୁଡୁଆ |
| ସୁଦର୍ଶନଙ୍କ ଥାଳି ଅନ୍ନ | – | ୨ କୁଡୁଆ |
| ଜଗନ୍ନାଥଙ୍କ ଥାଳି ଅନ୍ନ | – | ୪ କୁଡୁଆ |
| ଭୋଗ ଓରିଆ | – | ୫ କୁଡୁଆ |
| ବଡ଼ ଓଳି ଓରିଆ | – | ୧୦ ଓଳି |
| ସାନ ଓଳି ଓରିଆ | – | ୪ ଓଳି |
| ପିତି ଅନ୍ନ | – | ୪ ଓଳି |
| ମୁଗ ଡାଲି | – | ୪ ଓଳି |
| ବଡ଼ ଓଳି ମରିଚପାଣି | – | ୪ ଓଳି |
| ସାନ ଓଳି ମରିଚପାଣି | – | ୫ ଓଳି |
| କଡ଼ମ୍ବା ହାଣ୍ଡି | – | ୩ ଗୋଟା |
| ସାନ କଡ଼ମ୍ବା | – | ୩ ଓଳି |
| ପଣା | – | ୫ ଓଳି |
| ବଡ଼ ବଡ଼ି କ୍ଷୀରି | – | ୧ ଓଳି |
| ସାନ ବଡ଼ି କ୍ଷୀରି | – | ୪ ଓଳି |

| | | | |
|---|---|---|---|
| | ସୁଜି ବଡ଼ି କ୍ଷୀରି | – | ୧ ଓଳି |
| | ସୁବାସ ପଖାଳ | – | ୧୧ ଓଳି |
| | ସାକରା | – | ୨ ଓଳି |
| **ସଂଧ୍ୟାଧୂପ :** | ଚୁପୁଡ଼ା ପଖାଳ | – | ୧୯ ଓଳି |
| | ପାଣି ପଖାଳ | – | ୨୩ ଓଳି |
| | ସାନ ଓଳି ପଖାଳ | – | ୨ ଓଳି |
| | ସାକରା | – | ୫ ଓଳି |
| | କଅଁଳ ପୁଳି | – | ୩ ମୂର୍ତ୍ତି |
| | ମାଠପୁଳି | – | ୨୨ ମୂର୍ତ୍ତି |
| | ଅମାଲୁ (ହାତପୋଡ଼ା) | – | ୭ ମୂର୍ତ୍ତି |
| | ବଡ଼ ଅମାଲୁ | – | ୨୧ ମୂର୍ତ୍ତି |
| | ସାନ ଅମାଲୁ | – | ୮୩ ମୂର୍ତ୍ତି |
| **ବଡ଼ସିଂହାର ଧୂପ :** | ସରପୁଳି ପିଠା | – | ୫ ମୂର୍ତ୍ତି |
| | ସୁଆର ପିଠା | – | ୧ ସରା (୩ ପଟ) |
| | ରୋଷ ପାଇକ | – | ୧ ସରା (୨ ପଟ) |
| | ବିରିବୁହା ପିଠା | – | ୧ ସରା (୨ ପଟ) |
| | କଦଳୀ ବଡ଼ା | – | ୧୫ ମୂର୍ତ୍ତି |
| | ମିଠା ପଖାଳ | – | ୧୧ ଓଳି |
| | କ୍ଷୀରି | – | ୬ ଓଳି |
| | କାଞ୍ଜି | – | ୩ ଓଳି |



## ପରିଶିଷ୍ଟ - ୮

# ଶ୍ରୀମନ୍ଦିର ସମ୍ବନ୍ଧିତ କେତେକ ଶବ୍ଦାର୍ଥ

**ଅଖଣ୍ଡ-** ଦିନରାତି ନିରବଚ୍ଛିନ୍ନ ଭାବରେ ଜଳୁଥିବା ପ୍ରଦୀପ

**ଅଙ୍ଗିଲା-** ନିଜସ୍ୱ, ଅଙ୍ଗଲଗା

**ଅଣସର ପିଣ୍ଡି-** ଭିତରକାଠଠାରୁ କଳାହାଟ ଦ୍ୱାରକୁ ଲାଗି ପଥରର ପିଣ୍ଡି

**ଅଧିବାସ-** ଶୁଭ କାର୍ଯ୍ୟରେ ପୂର୍ବ ଦିନ ହେଉଥିବା କର୍ମ

**ଅପସର-** ପିଠି ତକିଆ

**ଅମୋଣିଆ-** ମଣୋହି ହୋଇ ନଥିବା ଭୋଗଦ୍ରବ୍ୟ

**ଆଲଟ-** ଏକ ପ୍ରକାର ବଡ଼ପଙ୍ଖା

**ଉତୁରୀ-** ଉତ୍ତରୀୟ

**ଉପଚାର ସେବକ-** ଅନୁମତିପ୍ରାପ୍ତ (ଛତିଶା ନିଯୋଗ ଅନ୍ତର୍ଭୁକ୍ତ ନୁହେଁ) ଚାମର ସେବକ

**ଉଲାଗି-** ବେଶ ପୋଷାକ, ମାଳଚୂଳ ଆଦି ବାହାର କରାଯିବା

**ଉଲ୍ଲାଖ-** କନା

**ଏକା ଏକ ସେବକ-** ଏକା ଏକା ସେବା କରୁଥିବା ସେବକ

**ଉଡ଼ିଆଣି-** କଟି ମେଖଳା

**ଓଲାର-** ଏକ ପ୍ରକାର ଛତ୍ର

**ଓଷୁଅ-** ଝୁଣା, ରାଶିତେଲ ଓ ପାଣିରେ ପ୍ରସ୍ତୁତ ଏକ ପ୍ରକାର ଲେପ ବା ମଲମ

**କର ପଇଠ / ହାତ ପଇଠ-** କେତେକ ନୀତିରେ ତଳିଚ୍ଛ ଓ ପ୍ରଧାନୀ ସେବକଦ୍ୱୟ ହାତରେ ହାତ ଥୋଇ ଆଗେ ଆଗେ ଯିବା

**କରାଳ-** ଠାକୁରଙ୍କ ଶ୍ରୀଅଙ୍ଗରୁ କଢ଼ାଯାଇଥିବା ଓଷୁଅ

**କଳାକନାଟି-** ଛତାର ସେବକ

**କାଣ୍ଡ ହେଙ୍ଗୁଡ଼-** ବେଣ୍ଟନୀତିରେ ବ୍ୟବହୃତ ଶର

**କାଣ୍ଡ ହେଙ୍ଗୁଳ-** ଶାରଦୀୟ ପୂଜାରେ ବିମଳା ଠାକୁରାଣୀଙ୍କୁ ଅର୍ପିତ ନାଲି ଶାଢ଼ି

**ଖଟୁଆ ନିତିଆନି-** ମାଛ

**ଖଡ଼ି ପ୍ରସାଦ-** ଅଣସରରେ ଶ୍ରୀମୁଖ ଚିତ୍ରଣରେ ବ୍ୟବହୃତ ଖଡ଼ି ଆଦି ସାମଗ୍ରୀର ଅବଶେଷ

**ଖଦି ଚାମର-** ଠାକୁରଙ୍କୁ ବିଞ୍ଚିବାପାଇଁ ବ୍ୟବହୃତ ଚଉଡ଼ା ଖଣ୍ଡୁଆ

**ଖଳି ପ୍ରସାଦ-** ଶ୍ରୀଅଙ୍ଗରେ ଲେପନ ନିମନ୍ତେ ଗହମରେ ପ୍ରସ୍ତୁତ ଖଳି

**ଖଲର-** ତ୍ରୁଟି

**ଖେଇ / କ୍ଷେଇ-** ସେବାର ପ୍ରାପ୍ୟ ଭାବରେ ମିଳୁଥିବା ଭୋଗର ଅଂଶ

**ଗଦିଫେଟା-** ଚଉଡ଼ା ନୂଆ କନା

**ଘଣ୍ଟଛତା ଭୋଗ-** ଘଣ୍ଟ, ଛତି, କାହାଳୀ ସହିତ ଆଗରେ ତଳିଛ ଓ ପ୍ରଧାନୀ ସେବକଙ୍କ ହାତପଇଠରେ ନିଆଯାଉଥିବା ନୈବେଦ୍ୟ

**ଚଉପଟ-** ଦାରୁ ନିମନ୍ତେ ବୃକ୍ଷ କଟାଯାଇ ଗଡ଼ ଗଡ଼ କରାଯିବା ପରେ ଅବଶିଷ୍ଟ ମଞ୍ଜ ଅଂଶ

**ଚଉସରା-** ଚାରିସରିଆ ମାଳ

**ପ୍ରସାଦଲାଗି-** କେତେକ ନୀତିରେ ପୂଜା ବସିବା ପୂର୍ବରୁ ଠାକୁରଙ୍କ ବକ୍ଷ ଦେଶରେ ଟିକିଏ ଚନ୍ଦନ ଲାଗି କରାଯାଏ। ତା'ପରେ ଧୂପ ବନ୍ଦାପନା ଶେଷ ହୋଇ ସେହି ଚନ୍ଦନ ମଇଲମ କରାଯାଏ ।

**ସର୍ବାଙ୍ଗ-** କେତେକ ବିଶେଷ ନୀତିରେ ଚନ୍ଦନରେ କର୍ପୂର, କେଶର, ଚୁଆ, କସ୍ତୁରୀ ପଡ଼ି ଦିଅଁଙ୍କ ସର୍ବାଙ୍ଗରେ ଲେପନ କରାଯାଉଥିବାରୁ ତାହାକୁ ସର୍ବାଙ୍ଗ କୁହାଯାଏ । ଘଣ୍ଟ, ଛତା, କାହାଳୀ ସହ ଚନ୍ଦନ ଘରୁ ପିଙ୍ଗଣରେ ଚନ୍ଦନ ବିଜେ କରାଗଲେ ତାହାକୁ 'ଘଣ୍ଟ ଛତା ସର୍ବାଙ୍ଗ' କୁହାଯାଏ ।

**ଚନ୍ଦନ ଅର୍ଗଳି-** ଭିତର କାଠ

**ଚାର / ଚାରମାଳ-** ତାଳଗଡ଼ରେ ତିଆରି ଘୋଷରା ପାହାଚ । ଘୋଷରା ତଳେ ବନ୍ଧାଯାଇଥିବା କାଠଗଡ଼କୁ ମାଲ (ମାଳ) କୁହାଯାଏ ।

**ଜଉଡାବ-** ଜଉରେ ତିଆରି ବେଲୁନ୍ ଭଳି ପଦାର୍ଥ । ଏଥିରେ ଫଗୁ ରଖାଯାଇ ଫଗୁଖେଳ ହୁଏ ।

**ଜନକପୁରୀ-** ଗୁଣ୍ଡିଚା ଘର

**ଟେରା-** ଆଢୁଆଳ ପାଇଁ କନାର ପରଦା

**ଠାଆ ସଜ-** ଭୋଜନ ନିମନ୍ତେ ଆବଶ୍ୟକ ପାତ୍ରସମୂହ

**ଡମ୍ବରୁ-** ଡମ୍ବରୁ ଆକୃତିର ଆସନ

**ଡାଳିମ୍ବା ଅନ୍ନ**- ବଗଡ଼ା ଅନ୍ନ

**ତଡ଼କୀ**- କର୍ଣ୍ଣ ଅଳଙ୍କାର ବିଶେଷ

**ତଡ଼ପ**- ବସ୍ତ୍ର ବିଶେଷ

**ତାଟ**- ବାଉଁଶ ବା ତାଳପତ୍ରରେ ନିର୍ମିତ ବଡ଼ ଡାଲା, ଯେଉଁଥିରେ ବିଭିନ୍ନ ସାମଗ୍ରୀ ପଠାଯାଏ ।

**ତାଡ଼**- ଏକ ବଡ଼ ମାଟିପାତ୍ର

**ତ୍ରିମୁଣ୍ଡି**- ଦିଅଁଙ୍କ ମସ୍ତକ ଉପରି ଭାଗ; ଏକ ପୁଷ୍ପ ଭୂଷା

**ଦଣ୍ଡଛତ୍ର**- ଲମ୍ବ ଦଣ୍ଡଥିବା ଛତ୍ର

**ଦରଶୁଆ କରାଇବା**- ଦର୍ଶାଇବା

**ଦରଶୁଆ ଝିଲି**- ପହିଲି ଭୋଗରେ ଲାଗୁଥିବା ବଡ଼ଝିଲି

**ଧଣ୍ଡା ମାଳ**- ଲମ୍ବମାଳ, ବାରହାତିଆ ମାଳ

**ଧୁକୁଡ଼ି ଦ୍ୱାର**- ଶ୍ରୀମନ୍ଦିର ଭିତର କାଠ କଡ଼ରେ ଭିତରକୁ ଯିବାପାଇଁ ଏକ କଡ଼ ରାସ୍ତା

**ଧୋପଖାଳ**- ଧୁଆଧୋଇ, ସଫାସଫି

**ନାକୁଆସି**- ଶ୍ରୀମୁଖରେ ଚିତାତଳରୁ ନାସାଗ୍ର ପର୍ଯ୍ୟନ୍ତ ସ୍ଥାନରେ ଲାଗୁଥିବା ଏକ ଅଳଙ୍କାର ବିଶେଷ

**ନାଟପା ମଣ୍ଡପ**- ନାଟମଣ୍ଡପ

**ନିଉଛାଳି**- ସାଷ୍ଟାଙ୍ଗ ପ୍ରଣାମ

**ପଛ ଭଅଣ୍ଡ**- ଆବଶ୍ୟକତା ଅନୁଯାୟୀ ଭୋଗମଣ୍ଡପରେ ଅତିରିକ୍ତ ଭୋଗ

**ପଟୁଆର**- ଶୋଭାଯାତ୍ରା, ସମାବେଶ

**ପଟୋଇ**- ଓଳି

**ପାଗପଟି**- ପଗଡ଼ି

**ପୋଛା**- ସିଂହାସନରେ ପଡ଼ିଥିବା ଟଙ୍କା ପଇସା, ସଂପୃକ୍ତ ସେବକ ତଳେ ଠିଆହୋଇ ହାତପାଇବା ପର୍ଯ୍ୟନ୍ତ ପୋଛି ଆଣିବା

**ଫୁଲୁରି**- ବାସ୍ନାତେଲ, ପୁଷ୍ପବାସିତ ତେଲ

**ବଲ୍ଲଭ ବଡ଼ସିଂହାର**- କେତେକ ଦିନରେ ବଡ଼ସିଂହାର ଧୂପ ପରେ ଅତିରିକ୍ତ ଭୋଗ

**ବାଇହାଣ୍ଡି**- ଶ୍ରୀମନ୍ଦିରରେ ବ୍ୟବହୃତ ସବୁଠାରୁ ବଡ଼ ହାଣ୍ଡି

**ବାଘମୁହାଁ**- ତୁଣ୍ଡି

**ବାହୁଟ**- ବାହୁର ରକ୍ଷାକବଚ

**ବିଜେ ପ୍ରତିମା**- ଉତ୍ସବ ମୂର୍ତ୍ତି

**ବିଭୀଷଣ ବନ୍ଦାପନା-** ଦକ୍ଷିଣାଭିମୁଖ ବନ୍ଦାପନା

**ଭୋଗ ଡାକିଯିବା-** ପଙ୍କ୍ତିରେ ଭୋଗ ବାଢ଼ିବାକୁ ଡାକିବାକୁ ଯିବା

**ମଇଲମ-** ବେଶ, ଅଳଙ୍କାର ଇତ୍ୟାଦି କଢ଼ାଯିବା ବା ଉଲାଗି ହେବା

**ମଝାଲ-** ମଧ୍ୟମ ଧରଣର

**ମଙ୍ଗଳାରୋପଣ-** ମଙ୍ଗଳ କାମନା କରି କରାଯାଉଥିବା ବିଧି

**ଅମୃତମଣୋହି-** ଦେବଦେବୀଙ୍କ ନିମନ୍ତେ ଉତ୍ସର୍ଗିତ ଭୂସମ୍ପତ୍ତି

**ଚକ୍ରମଣୋହି-** ନୀଳଚକ୍ର ଆଡ଼କୁ ଟେକି ମହାପ୍ରଭୁଙ୍କ ଉଦ୍ଦେଶ୍ୟରେ ଅର୍ପିତ ନୈବେଦ୍ୟ

**ସର୍ପାମଣୋହି-** ଦିଅଁଙ୍କ ଉଦ୍ଦେଶ୍ୟରେ ସମର୍ପଣ କରି କରାଯାଉଥିବା ଭୋଗ

**ମହାଖଳା-** ବଡ଼ଦାଣ୍ଡରେ ରଥନିର୍ମାଣ କରାଯାଉଥିବା ଅଞ୍ଚଳ

**ମହାସ୍ନାନ-** ବିଶେଷ ସ୍ନାନ ବିଧି

**ଯାତ୍ରାର୍ଗୀ ମହାସ୍ନାନ-** ଯାତ୍ରା ଦିନମାନଙ୍କରେ ହେଉଥିବା ଅତିରିକ୍ତ ଶୁଦ୍ଧି ବା ସ୍ନାନନୀତି

**ମାଲ ବାହାରିବା-** ଧୂପ ଶେଷ ପରେ ଭିତରୁ କିମ୍ବା ଭୋଗମଣ୍ଡପରୁ ଭୋଗଦ୍ରବ୍ୟ ବାହାରିବା

**ମୁଦଲ-** ରାଜାଦେଶ

**ମୁର୍ଉ୍ମୂଳ-** ନୈବେଦ୍ୟକୁ ଅର୍ପଣଯୋଗ୍ୟ କରିବା, ଅଦା, ହେଙ୍ଗୁ ଓ ଘିଅର ଫୁଟଣା ଦେବା

**ମେଣ୍ଢାପୋଡ଼ି-** ଦୋଳ ପୂର୍ଣ୍ଣିମା ପୂର୍ବଦିନ ଦୋଳବେଦୀ ପରିସରରେ ଅନୁଷ୍ଠିତ ଅଗ୍ନି ଉତ୍ସବ

**ମେଣ୍ଢାମୁଣ୍ଡିଆ ଖେଚୁଡ଼ି-** ଏକପ୍ରକାର ଖେଚୁଡ଼ି ଭୋଗ

**ରାଜପ୍ରସାଦ-** ରାଜାଙ୍କ ନିକଟକୁ ଯାଉଥିବା ଦେବ ବିସର୍ଜିତ ପଦାର୍ଥ, ଯଥାଃ ଶ୍ରୀଅଙ୍ଗର ଚନ୍ଦନ ଓ ପାଟଡ଼ୋର ଇତ୍ୟାଦି

**ଶିରକପଡ଼ା-** ଠାକୁରଙ୍କ ମସ୍ତକରେ ଲାଗି ହେଉଥିବା ବସ୍ତ୍ର ବିଶେଷ

**ସଦାବର୍ତ୍ତ-** ଗରିବ, ସାଧୁ, ସନ୍ନ୍ୟାସୀ, ଅତିଥିଙ୍କୁ ନିୟମିତ ଅନ୍ନ ଦାନ

**ସୋମନାଥ ମଣ୍ଡପ-** ମାଜଣା ମଣ୍ଡପ

**ହଣା-** ଭୋଗ, ବିଶେଷତଃ ପିଠାଭୋଗର ଏକ ଅଂଶ ବା ଭାଗ

**ହଳଦୀପାଣି-** ବାହାର ଚନ୍ଦନ ଯାତ୍ରାର ଶେଷ ଦିନ

**ହାତୁଆଣି-** ହାତଧୋଇବା ପାଇଁ ପାଣି



# ପରିଶିଷ୍ଟ - ୯

# ନିର୍ବାଚିତ ଗ୍ରନ୍ଥସୂଚୀ


| | |
|---|---|
| ୧. ସ୍କନ୍ଦ ପୁରାଣ | (ସଂ) ବଥାବା ଚୈତନ୍ୟ ଚରଣ ଦାସ |
| (ଉତ୍କଳ ଖଣ୍ଡ ବା ଶ୍ରୀପୁରୁଷୋତ୍ତମ ମାହାତ୍ମ୍ୟମ୍) | (ଭାଗବତ ଆଶ୍ରମ ପୁରୀ) |
| ୨. ସ୍କନ୍ଦ ପୁରାଣ (ଉତ୍କଳ ଖଣ୍ଡ) | ଅନୁବାଦକ ପଣ୍ଡିତ ହରିହର ମିଶ୍ର (ଧର୍ମଗ୍ରନ୍ଥ ଷ୍ଟୋର, କଟକ) |
| ୩. ନାରଦ ପୁରାଣ | |
| ୪. ବ୍ରହ୍ମ ପୁରାଣ | |
| ୫. ପଦ୍ମ ପୁରାଣ | |
| ୬. ମତ୍ସ୍ୟ ପୁରାଣ | |
| ୭. ମହାଭାରତ | ସାରଳା ଦାସ |
| ୮. ଦେଉଳ ତୋଳା | ଶିଶୁକୃଷ୍ଣ ଦାସ |
| ୯. କପିଳ ସଂହିତା | (ସଂ) କେଦାରନାଥ ଗବେଷଣା ପରିଷଦ ଭୁବନେଶ୍ୱର-୨ |
| ୧୦. ନୀଳାଦ୍ରି ମହୋଦୟଃ (୧ମ ଓ ୨ୟ ଖଣ୍ଡ) | (ସଂ) ଡକ୍ଟର ବ୍ରଜ କିଶୋର ସ୍ୱାଇଁ (ସଦଗ୍ରନ୍ଥ ନିକେତନ ପୁରୀ) |
| ୧୧. ବାମଦେବ ସଂହିତା | (ସଂ) ପ୍ରଫେସର ଜୟକୃଷ୍ଣ ମିଶ୍ର (ସଦଗ୍ରନ୍ଥ ନିକେତନ ପୁରୀ) |
| ୧୨. ମହାପୁରୁଷ ବିଦ୍ୟା | |
| ୧୩. ଓଡ଼ିଆ ସାହିତ୍ୟର କ୍ରମ ପରିଣାମ | ପଣ୍ଡିତ ନୀଳକଣ୍ଠ ଦାଶ |
| ୧୪. ଓଡ଼ିଆ ସାହିତ୍ୟରେ ଶ୍ରୀଜଗନ୍ନାଥ ଚେତନା | ପ୍ରଫେସର ବାସୁଦେବ ସାହୁ |

| | |
|---|---|
| ୧୫. ପ୍ରାଚୀନ ଉତ୍କଳ | ଜଗବନ୍ଧୁ ସିଂହ |
| ୧୬. ଜଗନ୍ନାଥ ମନ୍ଦିର ଓ ଜଗନ୍ନାଥ ତତ୍ତ୍ୱ | ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ (ଫ୍ରେଣ୍ଡସ୍ ପବ୍ଲିଶର୍ସ, କଟକ) |
| ୧୭. ଶ୍ରୀପୁରୁଷୋତ୍ତମ ରହସ୍ୟ | ବାବା ଚୈତନ୍ୟ ଚରଣ ଦାସ (ଭାଗବତ ଆଶ୍ରମ, ପୁରୀ) |
| ୧୮. ଶ୍ରୀଜଗନ୍ନାଥ ତତ୍ତ୍ୱ | ପ୍ରଫେସର ଗୋପୀନାଥ ମହାପାତ୍ର (ନାଲନ୍ଦା, କଟକ) |
| ୧୯. ଶ୍ରୀ ପୁରୁଷୋତ୍ତମ ଶ୍ରୀମନ୍ଦିର | ଡ. ସତ୍ୟନାରାୟଣ ରାଜଗୁରୁ (ଓ.ସା.ଏ., ଭୁବନେଶ୍ୱର) |
| ୨୦. ଶ୍ରୀଜଗନ୍ନାଥ | ଓଡ଼ିଶା ସାହିତ୍ୟ ଏକାଡେମୀ, ଭୁବନେଶ୍ୱର |
| ୨୧. ଶ୍ରୀମନ୍ଦିର ଃ ଶ୍ରୀଜଗନ୍ନାଥ | (ସଂ) ମନୋରଂଜନ ସିଂହାରୀ, ପୁରୀ |
| ୨୨. ପୁରୁଷୋତ୍ତମ ଶ୍ରୀଜଗନ୍ନାଥ ସଂସ୍କୃତି | ପରମାନନ୍ଦ ତ୍ରିପାଠୀ (ଫ୍ରେଣ୍ଡସ୍ ପବ୍ଲିଶର୍ସ, କଟକ) |
| ୨୩. ପୁରୀ ବୋଲି | ଡକ୍ଟର ସିଦ୍ଧେଶ୍ୱର ମହାପାତ୍ର (ଓ.ସା.ଏ. ଭୁବନେଶ୍ୱର) |
| ୨୪. ଶ୍ରୀକ୍ଷେତ୍ର ଦର୍ଶନ | ଜଗବନ୍ଧୁ ପାଢ଼ୀ (ସଦ୍‌ଗ୍ରନ୍ଥ ନିକେତନ, ପୁରୀ) |
| ୨୫. ଶ୍ରୀକ୍ଷେତ୍ର ଦର୍ଶନ | ଡକ୍ଟର ପୂର୍ଣ୍ଣଚନ୍ଦ୍ର ମିଶ୍ର (ସଦ୍‌ଗ୍ରନ୍ଥ ନିକେତନ, ପୁରୀ) |
| ୨୬. ଜଗନ୍ନାଥ ଚେତନାର ଉଦ୍ଭବ ଓ ବିକାଶ | ପ୍ରଫେସର ବାସୁଦେବ ସାହୁ |
| ୨୭. ଶ୍ରୀକ୍ଷେତ୍ର ମାହାତ୍ମ୍ୟ | ହରିହର ବାହିନୀପତି, ପୁରୀ |
| ୨୮. ଶ୍ରୀକ୍ଷେତ୍ର ପୌରୁଷ | ପ୍ରଫୁଲ୍ଲଚନ୍ଦ୍ର ପଟ୍ଟନାୟକ, ପୁରୀ |
| ୨୯. ଶ୍ରୀଜଗନ୍ନାଥ ପରିକ୍ରମା | ଶରତ ଚନ୍ଦ୍ର ମହାପାତ୍ର, ପୁରୀ |
| ୩୦. ସେବକ ଦର୍ପଣ | ବୈଦ୍ୟନାଥ ଗୋଛିକାର, ପୁରୀ |
| ୩୧. ଶ୍ରୀକ୍ଷେତ୍ର ଃ ଶ୍ରୀଜଗନ୍ନାଥ | ଉତ୍କଳ ପାଠକ ସଂସଦ, କଟକ |
| ୩୨. ଶ୍ରୀମନ୍ଦିର ସେବା ଓ ସେବକ | ଡକ୍ଟର ବଂଶୀଧର ମହାନ୍ତି |
| ୩୩. ଶ୍ରୀଜଗନ୍ନାଥ ଓ ଓଡିଆ ସାହିତ୍ୟ | ଡକ୍ଟର କୃଷ୍ଣଚରଣ ବେହେରା |
| ୩୪. ଶ୍ରୀଜଗନ୍ନାଥ ସଂସ୍କୃତି | ଓଡ଼ିଶା କଲଚରାଲ୍ ଫୋରମ୍ |

| | | |
|---|---|---|
| | | (ସାଥୀ ମହଲ, କଟକ) |
| ୩୫. | ଭାରତୀୟ ଧର୍ମଶାସ୍ତ୍ର | ଡକ୍ଟର ଭଗବାନ ପଣ୍ଡା |
| ୩୬. | ନୃସିଂହ ଆରାଧନା | ଡକ୍ଟର ବିଚିତ୍ରାନନ୍ଦ ମହାନ୍ତି |
| ୩୭. | ଦାରୁ ଦେବତା | ଡକ୍ଟର ବେଣୀମାଧବ ପାଢ଼ୀ<br>(କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର୍, କଟକ) |
| ୩୮. | କୃଷ୍ଟି ଓ ଦୃଷ୍ଟି | ଡକ୍ଟର ବେଣୀମାଧବ ପାଢ଼ୀ<br>(ତାରାତାରିଣୀ ପୁସ୍ତକାଳୟ, ବ୍ରହ୍ମପୁର) |
| ୩୯. | ଶ୍ରୀଜଗନ୍ନାଥ ତତ୍ତ୍ୱ ବିମର୍ଷ | ଡକ୍ଟର ବେଣୀମାଧବ ପାଢ଼ୀ<br>(ଗ୍ରନ୍ଥମନ୍ଦିର, କଟକ) |
| ୪୦. | ଶ୍ରୀକ୍ଷେତ୍ର ଶ୍ରୀମନ୍ଦିର ଶ୍ରୀଜଗନ୍ନାଥ | ପ୍ରାଧ୍ୟାପକ ଗୋପାଳ ଚନ୍ଦ୍ର ତ୍ରିପାଠୀ |
| ୪୧. | ଶ୍ରୀକ୍ଷେତ୍ରର ଅଜ୍ଞାତ ଅଧ୍ୟାୟ | ପଣ୍ଡିତ ହରିହର ମହାପାତ୍ର<br>(ଏସ୍.ବି ପବ୍ଲିକେଶନସ୍, କଟକ) |
| ୪୨. | ଶ୍ରୀକ୍ଷେତ୍ରର ଶ୍ରୀଦେବୀ | ପଣ୍ଡିତ ହରିହର ମହାପାତ୍ର<br>(ଏସ୍.ବି ପବ୍ଲିକେଶନସ୍, କଟକ) |
| ୪୩. | ଶ୍ରୀମନ୍ଦିରର ଦ୍ୱାଦଶ ଯାତ୍ରା ଓ ପର୍ବପର୍ବାଣି | ପଣ୍ଡିତ ହରିହର ମହାପାତ୍ର ଓ ଅନ୍ନପୂର୍ଣ୍ଣା ମିଶ୍ର |
| ୪୪. | ଶ୍ରୀଜଗନ୍ନାଥ ଦର୍ଶନ | ଡକ୍ଟର ପୂର୍ଣ୍ଣଚନ୍ଦ୍ର ମିଶ୍ର<br>(ପ୍ରାଚୀ ସାହିତ୍ୟ ପ୍ରତିଷ୍ଠାନ, କଟକ) |
| ୪୫. | ମହାଦେବତା | ଆଶୁତୋଷ ପ୍ରସାଦ ପଟ୍ଟନାୟକ<br>(ଫ୍ରେଣ୍ଡର୍ସ ପବ୍ଲିଶର୍ସ, କଟକ) |
| ୪୬. | ଜଗନ୍ନାଥାଷ୍ଟକମ୍ | (ସଂ) ପ୍ରଫେସର ଗୌରୀ କୁମାର ବ୍ରହ୍ମା |
| ୪୭. | ଯୁଗେ ଯୁଗେ ଶ୍ରୀକ୍ଷେତ୍ର-ଶ୍ରୀଜଗନ୍ନାଥ | ଡକ୍ଟର ସୂର୍ଯ୍ୟ ନାରାୟଣ ଦାଶ |
| ୪୮. | ବୈଚିତ୍ର୍ୟମୟ ଶ୍ରୀମନ୍ଦିର | ଶରତ ଚନ୍ଦ୍ର |
| ୪୯. | ବିବର୍ତ୍ତନ ଧାରାରେ ଶ୍ରୀଜଗନ୍ନାଥ | ଡକ୍ଟର ହରିହର କାନୁନ୍‌ଗୋ |
| ୫୦. | ଇତିହାସ, ପରମ୍ପରା ଓ ଶ୍ରୀଜଗନ୍ନାଥ | ଡକ୍ଟର ହରିହର କାନୁନ୍‌ଗୋ |
| ୫୧. | ବାଲି ନଅରର ଐତିହ ଗାଥା | ନାରାୟଣ ନନ୍ଦ |
| ୫୨. | ଶ୍ରୀଜଗନ୍ନାଥ ଓ ନେପାଳ | ଅନିରୁଦ୍ଧ ଦାସ ଓ ପଣ୍ଡିତ ସଦାଶିବ ରଥଶର୍ମା<br>(ବିଦ୍ୟାପୁରୀ, କଟକ) |

| | |
|---|---|
| ୫୩. ନିର୍ବାଚିତ ପ୍ରବନ୍ଧ ସଂକଳନ | ପ୍ରଫେସର ଗଗନେନ୍ଦ୍ରନାଥ ଦାଶ (ବିଦ୍ୟାପୁରୀ, କଟକ) |
| ୫୪. ମାଦଳାପାଞ୍ଜି | (ସଂ) ପ୍ରଫେସର ଆର୍ତ୍ତବଲ୍ଲଭ ମହାନ୍ତି |
| ୫୫. ମାଦଳାପାଞ୍ଜି | (ସଂ) ପ୍ରାଧ୍ୟାପକ ମୃତ୍ୟୁଞ୍ଜୟ ନାୟକ (ଫ୍ରେଣ୍ଡର୍ସ ପବ୍ଲିଶର୍ସ, କଟକ) |
| ୫୬. ମାଦଳାପାଞ୍ଜି | (ସଂ) ଡକ୍ଟର ବାଉରିବନ୍ଧୁ କର |
| ୫୭. ଚକଡ଼ାପୋଥି ଓ ଚକଡ଼ା ବସାଣ ବା ଚୟିନୀ ଚକଡ଼ା | ସୁଧାକର ପଟ୍ଟନାୟକ |
| ୫୮. ଶ୍ରୀଶ୍ରୀ ପୁରୁଷୋତ୍ତମ ଜଗନ୍ନାଥ ମନ୍ଦିର ସେବକ ଖଟଣୀ ନିଯୋଗ କର୍ମାଙ୍ଗୀ | ଅନାମ-୧୯ ପତ୍ରିକା, ୧୯୮୩ରେ ପ୍ରକାଶିତ |
| ୫୯. ମୁକ୍ତିମଣ୍ଡପ | ଡକ୍ଟର ଭାସ୍କର ମିଶ୍ର (ସଦ୍‌ଗ୍ରନ୍ଥ ନିକେତନ, ପୁରୀ) |
| ୬୦. ଉତ୍କଳର ଗୌରବ ମୁକ୍ତିମଣ୍ଡପ | ଦୁର୍ଗାପ୍ରସାଦ ମହାପାତ୍ର |
| ୬୧. ଓଡ଼ିଶାର ତନ୍ତ୍ର ସଂସ୍କୃତି | ଓ.ସା.ଏ., ଭୁବନେଶ୍ୱର |
| ୬୨. ତନ୍ତ୍ର ଶିରୋମଣି ଶ୍ରୀଜଗନ୍ନାଥ | ରାଜେନ୍ଦ୍ର କୁମାର ମହାନ୍ତି (ମହାବୀର ପ୍ରକାଶନ, ଭୁବନେଶ୍ୱର) |
| ୬୩. ନୀଳକନ୍ଦରର ଶ୍ରୀଜଗନ୍ନାଥ | ରାଜେନ୍ଦ୍ର କୁମାର ମହାନ୍ତି (ମହାବୀର ପ୍ରକାଶନ, ଭୁବନେଶ୍ୱର) |
| ୬୪. ଓଡ଼ିଶାର ଦେବୀପୀଠ | ରାଜେନ୍ଦ୍ର କୁମାର ମହାନ୍ତି (ମହାବୀର ପ୍ରକାଶନ, ଭୁବନେଶ୍ୱର) |
| ୬୫. ପୁରୀର ମଠ ସଂସ୍କୃତି | ଡକ୍ଟର ଭାସ୍କର ମିଶ୍ର (ସଦ୍‌ଗ୍ରନ୍ଥ ନିକେତନ ପୁରୀ) |
| ୬୬. ମଠ ସଂସ୍କୃତି | ଡକ୍ଟର ଭାସ୍କର ମିଶ୍ର (ଫ୍ରେଣ୍ଡସ୍ ପବ୍ଲିଶର୍ସ କଟକ) |
| ୬୭. ଶ୍ରୀଚୈତନ୍ୟ ମହାପ୍ରଭୁଙ୍କ ପଦାଙ୍କପୂତ ଓଡ଼ିଶା | ଡକ୍ଟର ଫକୀର ମୋହନ ଦାସ |
| ୬୮. ମହାଲକ୍ଷ୍ମୀ, ମହାପ୍ରସାଦ, ମହାପ୍ରଭୁ | ରବୀନ୍ଦ୍ର ନାରାୟଣ ମିଶ୍ର |

| | | |
|---|---|---|
| ୬୯. | ଓଡ଼ିଶାର ପ୍ରତ୍ନତତ୍ତ୍ୱ ଓ ଅନ୍ୟାନ୍ୟ ପ୍ରବନ୍ଧ | ପରମାନନ୍ଦ ଆଚାର୍ଯ୍ୟ |
| ୭୦. | ଶ୍ରୀମନ୍ଦିର ଅଭିଲେଖ ମାଳା | ଜଗବନ୍ଧୁ ପାଢ଼ୀ (ପ୍ରକାଶନ-ଶ୍ରୀମନ୍ଦିର ପ୍ରଶାସନ, ପୁରୀ) |
| ୭୧. | ଯୁଗେ ଯୁଗେ ରଥଯାତ୍ରା- | ଶ୍ରୀମନ୍ଦିର ପ୍ରଶାସନ, ପୁରୀ |
| ୭୨. | ଶ୍ରୀଜଗନ୍ନାଥ ଚେତନାର ଶାସ୍ତ୍ରୀୟ ଭିତ୍ତିଭୂମି | ଶ୍ରୀମନ୍ଦିର ପ୍ରଶାସନ, ପୁରୀ |
| ୭୩. | ଶ୍ରୀଜଗନ୍ନାଥଙ୍କ ବେଶ ରହସ୍ୟ | ପଣ୍ଡିତ ସଦାଶିବ ରଥ ଶର୍ମା |
| ୭୪. | କଳ୍ପବୃକ୍ଷ ମାହାତ୍ମ୍ୟ | ପଣ୍ଡିତ ସଦାଶିବ ରଥ ଶର୍ମା |
| ୭୫. | ସ୍ଥାପତ୍ୟରେ ମୈଥୁନ କଳା | ପଣ୍ଡିତ ସଦାଶିବ ରଥ ଶର୍ମା |
| ୭୬. | ଓଡ଼ିଶା ଇତିହାସ | ଡକ୍ଟର ହରେକୃଷ୍ଣ ମହତାବ |
| ୭୭. | ଉତ୍କଳ ଇତିହାସ | ପଣ୍ଡିତ କୃପାସିନ୍ଧୁ ମିଶ୍ର |
| ୭୮. | ଖୁରୁଧା ଇତିହାସ | କେଦାରନାଥ ମହାପାତ୍ର |
| ୭୯. | ଉତ୍‌କଳ ଇତିହାସର ଏକ ଅଜ୍ଞାତ ଅଧ୍ୟାୟ | ଚକ୍ରଧର ମହାପାତ୍ର |
| ୮୦. | ଖୋର୍ଦ୍ଧା ଇତିହାସର ଅନ୍ତରାଳେ | ଫକୀର ହରିଚନ୍ଦନ |
| ୮୧. | ଓଡ଼ିଶା ଇତିହାସ | ଡକ୍ଟର ଦଣ୍ଡପାଣି ବେହେରା |
| ୮୨. | ଓଡ଼ିଆ ଜାତିର ଇତିହାସ | ଡକ୍ଟର ନବୀନ କୁମାର ସାହୁ |
| ୮୩. | ଓଡ଼ିଶାର ସାଂସ୍କୃତିକ ଇତିହାସ (୨ୟ) | ଡକ୍ଟର ଯଜ୍ଞକୁମାର ସାହୁ |
| ୮୪. | ଗଛତଳେ ଓ ଗୁମ୍ଫା ଭିତରେ ଶ୍ରୀଜଗନ୍ନାଥ ଓ ସୋନପୁର | ପବିତ୍ରମୋହନ ନାୟକ |
| ୮୫. | ଆଞ୍ଚଳିକ ଜନଶ୍ରୁତି ଓ ଇତିହାସ | ଡକ୍ଟର କୈଳାସ ଚନ୍ଦ୍ର ଦାଶ (ମୟୂର ପବ୍ଲିକେଶନ୍, ଭୁବନେଶ୍ୱର) |
| ୮୬. | ପ୍ରବନ୍ଧେ ଶ୍ରୀଜଗନ୍ନାଥ | ମହୀମୋହନ ତ୍ରିପାଠୀ (ନାଳନ୍ଦା, କଟକ) |
| ୮୭. | ଭାଷା ପ୍ରବନ୍ଧେ ଜଗନ୍ନାଥ | ମହୀମୋହନ ତ୍ରିପାଠୀ (ବସନ୍ତ ପବ୍ଲିକେଶନ, କଟକ) |
| ୮୮. | ପ୍ରବନ୍ଧେ ପୁରୁଷୋତ୍ତମ | ମହୀମୋହନ ତ୍ରିପାଠୀ (ଦୀପକ ପବ୍ଲିକେଶନ, କଟକ) |

୮୯. ଶ୍ରୀମନ୍ଦିର ଲୁଣ୍ଠନର ଇତିହାସ — ଡକ୍ଟର ସୁରେନ୍ଦ୍ର କୁମାର ମିଶ୍ର (ଏସ୍.ବି. ପବ୍ଲିକେଶନ, କଟକ)

୯୦. ନବ କଳେବର — ଡକ୍ଟର କାହ୍ନୁ ଚରଣ ମିଶ୍ର

୯୧. ଦାରୁବ୍ରହ୍ମଙ୍କର ନବ କଳେବର — କୃଷ୍ଣଚନ୍ଦ୍ର ମହାପାତ୍ର ଓ ଭାସ୍କର ମିଶ୍ର (ଓଡ଼ିଶା ବୁକ୍ ଷ୍ଟୋର୍, କଟକ)

୯୨. ପୁରୁଷୋତ୍ତମ ତତ୍ତ୍ୱ ଓ ନବ କଳେବର — ଜଗବନ୍ଧୁ ପାଢ଼ୀ (ଗ୍ରନ୍ଥ ମନ୍ଦିର, କଟକ)

୯୩. ନବ କଳେବର ତଥ୍ୟ ସମୀକ୍ଷା — ସୋମନାଥ ଖୁଣ୍ଟିଆ, ପୁରୀ

୯୪. ପରଂବ୍ରହ୍ମଙ୍କ ନବ କଳେବର — ରବୀନ୍ଦ୍ର ନାରାୟଣ ମିଶ୍ର (କାହାଣୀ ପ୍ରକାଶନୀ, କଟକ)

୯୫. ଶ୍ରୀଦାରୁବ୍ରହ୍ମଙ୍କ ଲୀଳା ରହସ୍ୟ — ରବୀନ୍ଦ୍ର ନାଥ ପ୍ରତିହାରୀ

୯୬. ଶ୍ରୀଦାରୁବ୍ରହ୍ମଙ୍କ ଆଜ୍ଞାମାଳ ରହସ୍ୟ — ରବୀନ୍ଦ୍ର ନାଥ ପ୍ରତିହାରୀ

୯୭. ନିବନ୍ଧେ ନୀଳାଦ୍ରି — ଅସିତ ମହାନ୍ତି

୯୮. ପୁରୀ ଶ୍ରୀଜଗନ୍ନାଥ ମନ୍ଦିରର ସ୍ୱତ୍ୱଲିପି (Record of rights) — ଓଡ଼ିଶା ସରକାରଙ୍କ ବିଧିବିଭାଗ ଦ୍ୱାରା ୧୯୫୫ ମସିହାରେ ଓଡ଼ିଶା ଗେଜେଟ୍‌ରେ ପ୍ରକାଶିତ

୯୯. ଶ୍ରୀଜଗନ୍ନାଥ ପଦ୍ୟାବଳୀ (୨୦୧୦) — (ସଂ) ଡକ୍ଟର କ୍ଷେତ୍ରବାସୀ ନାୟକ, ଡକ୍ଟର ଲାବଣ୍ୟ ନାୟକ

୧୦୦. ଶ୍ରୀଜଗନ୍ନାଥ ମନ୍ଦିର ସେବାୟତଙ୍କ ସାମାଜିକ ଓ ଅର୍ଥନୈତିକ ଜନଗଣନା, ୨୦୦୫ — ଶ୍ରୀମନ୍ଦିର ପ୍ରଶାସନ

1. History of Orissa — Dr. H.K. Mahatab
2. History of Orissa — Dr. K.C. Panigrahi
3. Antiquities of Orissa — R.L. Mitra
4. History of Orissa (Vol.I&II) — W. Hunter, A sterling. J. Beams & N.K Sahu (Ed. N.K Sahu, Susil Gupta (India) Ltd. Calcutta)

| | | |
|---|---|---|
| 5. | History of Jagannath Temple in the 19th Century | P. Mukherjee |
| 6. | Orissa and her remains | M.M. Ganguly |
| 7. | Jagannath in the history and religious traditions of Orissa | Dr. G.N. Mohapatra |
| 8. | Land of Vishnu | Dr. G.N. Mohapatra |
| 9. | The Cult of Jagannath | Dr. K.C. Mishra (Firma R.L, Calcutta) |
| 10. | The Cult of Jagannath and the Regional Tradition of Orissa | (E.d.) H. Kulke and others (Manohar Publication, New Delhi) |
| 11. | Indian culture and the Cult of Jagannath | Pt. Binayak Mishra |
| 12. | Inscriptions of Orissa (Vol: 1 to 3) | Dr. S.N Rajguru |
| 13. | Studies in the cult of Jagannath | Ed. K.C Mishra (Institute of Orissan culture, BBSR) |
| 14. | Jagannath Temple correspondences | Orissa Archives, Bhubaneswar |
| 15. | Report of the Special officer under the Puri Sri Jagannath Temple (Administration) Act-1952 | Govt of Orissa (Law dept.)-1961 |
| 16. | Sri Jagannath Temple Manual | Sri Jagannath temple management |
| 17. | Sri Jagannath Temple (Ammendment) Act, 2004 | Orissa Gazette Extraordinary, Dec-27, 2004 |
| 18. | Inscriptions of the Temples of Puri and origin of Sri Purusottam Sri Jagannath | Dr. S.N. Rajguru, (Sri J.N. Sanskrit Vishwavidyalaya, Puri) |

19. A Bibliography on Lord Jagannath (1st Edn-1992) — Sanskrit Vishwavidyalaya, Puri

20. Jagannath in Historical Perspectives — (Ed.) R.N. Dash.

21. Bruton's visit to Lord Jagannath — P.T. Nair

22. The Early Voyagers of the East (Vol: I & II) — A.P. Patnaik (Prativa Prakashan, Delhi, 2003)

23. The Cultural Heritage of Odisha Sri Jagannath Special Volume (Puri district, part-III), 2010 — State Level Vyasakabi Fakirmohan Smruti Sansad, Bhubaneswar

24. Charles Grome's Report on the Temple of Jagannath, 10-June, 1805 — Orissa State Archives, Dept.of Culture, Orissa Govt. (Ist. Edn, 2002)

25. NabaKalebara of Shri Jagannath, Puri — Dr. B.M. Mishra (S.O.A. University Press, Bhubaneswar

26. Sri Jagannath: Enigmatic Lord of the Universe — (E.d) R.C. Pradhan Sishukalam, Bhubaneswar






ଶ୍ରୀ ମହୀମୋହନ ତ୍ରିପାଠୀ ପ୍ରାବନ୍ଧିକ, ସାହିତ୍ୟ ସମାଲୋଚକ ଓ ଶ୍ରୀଜଗନ୍ନାଥ ସଂସ୍କୃତିର ଗବେଷକ ଭାବରେ ସୁପରିଚିତ । ସେ ଦଶବର୍ଷରୁ ଊର୍ଦ୍ଧ୍ୱକାଳ ପୁରୀ ଶ୍ରୀଜଗନ୍ନାଥ ମନ୍ଦିର ପ୍ରଶାସନରେ କାର୍ଯ୍ୟ କରି ପ୍ରାୟ ଚାରିବର୍ଷ ସେଠାରେ ପ୍ରଶାସକ ତଥା ମୁଖ୍ୟ କାର୍ଯ୍ୟନିର୍ବାହୀ ଥିଲେ । ୧୯୯୬ ନବକଳେବର ସମୟରେ ସେ ଥିଲେ ଶ୍ରୀମନ୍ଦିରର ପ୍ରଶାସକ । ଅଦ୍ୟାବଧି ଶ୍ରୀ ତ୍ରିପାଠୀଙ୍କର ପନ୍ଦରଟି ପୁସ୍ତକ ପ୍ରକାଶ ପାଇଛି । ଶ୍ରୀଜଗନ୍ନାଥଙ୍କ ସଂପର୍କିତ ତାଙ୍କର କେତୋଟି ପୁସ୍ତକ ହେଲା- ୧. ପ୍ରବନ୍ଧେ ଶ୍ରୀଜଗନ୍ନାଥ, ୨. ଭାଷା ପ୍ରବନ୍ଧେ ଜଗନ୍ନାଥ, ୩. ପ୍ରବନ୍ଧେ ପୁରୁଷୋତ୍ତମ, ୪. ଶ୍ରୀମନ୍ଦିର ଇତିହାସର କେତେକ ଛିନ୍ନ ପୃଷ୍ଠା, ୫. ଚେତନା ପୁରୁଷୋତ୍ତମ ( କବିତା), ୬. A Brief Look At SriJagannatha Temple ଇତ୍ୟାଦି ।

'ଆମ ଓଡ଼ିଶା' ପକ୍ଷରୁ ପ୍ରକାଶିତ ଏହି ପୁସ୍ତକ ଶ୍ରୀଜଗନ୍ନାଥଙ୍କ ସଂପର୍କରେ ଶ୍ରୀ ତ୍ରିପାଠୀଙ୍କର ଦୀର୍ଘ ଅଧ୍ୟୟନ ଓ ଅନୁଧ୍ୟାନର ତଥ୍ୟରେ ସମୃଦ୍ଧ ।




ISBN 978-81-89436-30-8